# ଚନ୍ଦ୍ରଲୋକରେ
# ପ୍ରଥମ ମଣିଷ

( ଅନୁବାଦ ଉପନ୍ୟାସ )



H. G. WELLS ଙ୍କ ବିଶ୍ୱବିଖ୍ୟାତ ଉପନ୍ୟାସ

FIRST MEN IN THE MOON ର

ଅବିକଳ ଓଡ଼ିଆ ଅନୁବାଦ

# ଚନ୍ଦ୍ରଲୋକରେ ପ୍ରଥମ ମଣିଷ

ଅନୁବାଦକ—ଅଶ୍ୱିନୀ କୁମାର ପୂଜାରୀ ଏମ୍. ଏ., ବି. ଏଲ୍.

# ମୁଖବନ୍ଧ

ଚନ୍ଦ୍ରାନ୍ତର ଭ୍ରମଣ ଆଜି ଆଉ ରୂପ କଥାର ଅଲସ୍ତ କଳ୍ପନା ନୁହେଁ। ଯାହା ଦିନେ ଅସମ୍ଭବ ଥିଲା ତାହା ଆଜି ସମ୍ଭବ ହୋଇଛି ବା ସମ୍ଭବ ହେବାକୁ ଯାଉଛି। ବିଶେଷତଃ ଗତ ୩/୪ ବର୍ଷ ହେଲା ଏ ଦିଗରେ ବୈଜ୍ଞାନିକମାନଙ୍କର ଚେଷ୍ଟା ଆହୁରି ବଢ଼ି ଚାଲିଛି। କାରଣ ଆଣବିକ ଶକ୍ତିର ଉଦ୍ଭାବନ ପରେ ଏହି ସମସ୍ୟା ଆଉ ଜଟିଳ ବୋଲି ମନେ ହେଉନାହିଁ। ଆସନ୍ତା କେତେ ବର୍ଷ ମଧ୍ୟରେ ମନୁଷ୍ୟ ଚନ୍ଦ୍ରଲୋକକୁ ଯାଇ ପାରିବ ବୋଲି ବୈଜ୍ଞାନିକମାନେ ମନେ କଲେଣି।

ଆମ ପୃଥିବୀର ଅତି ପଡ଼ୋଶୀ ଗ୍ରହ ଏଇ ଚନ୍ଦ୍ର। ତାକୁ ନେଇ କେତେ କଳ୍ପନା, କେତେ ସ୍ୱପ୍ନ, କେତେ ଉପମା, କେତେ ପ୍ରେମାଶ୍ରୁ ଆମ ମୁଣ୍ଡ ମଧ୍ୟରେ ସଂସ୍କାରର ଜମାଟ ବାନ୍ଧି ରହିଥିଲା। କେତେବେଳେ ଚନ୍ଦ୍ର ଥିଲା ଆମର "ଜହ୍ନ-ମାମୁଁ" କେତେବେଳେ ପୁଣି ସେ ପ୍ରିୟା ମୁଖର ଉପମାନ—କେତେବେଳେ ପୁଣି ସମୁଦ୍ର ମନ୍ଥନରୁ ଉତ୍ଥିତ ମା ଲକ୍ଷ୍ମୀଙ୍କର ସହୋଦର—କେତେବେଳେ ବା ରାହୁଭୁକ୍ତ ବ୍ୟସ୍ତ ବିକଳ ଚନ୍ଦ୍ର—। ଏହିଭଳି ଅସଂଖ୍ୟ କଳ୍ପନାର ଜାଲରେ ଆମେ ଚନ୍ଦ୍ରକୁ ବାନ୍ଧି ରଖିଥିଲୁ।

ମାତ୍ର ବିଶ୍ୱବିଖ୍ୟାତ ଔପନ୍ୟାସିକ ଏଇଚ୍. ଜେ. ୱେଲସ ଚନ୍ଦ୍ର ସମ୍ବନ୍ଧେ ଆମର କଳ୍ପନାକୁ ସମ୍ପୂର୍ଣ୍ଣ ଭାବେ ହଲଚଲ କରିଦେଇଛନ୍ତି। ପଚାଶ ଷାଠିଏ ବର୍ଷ ପୂର୍ବରୁ ୱେଲସ୍ ଯାହା ସବୁ କଳ୍ପନା କରିଯାଇଥିଲେ, ଆଜି ତନ୍ମଧ୍ୟରୁ କେତୋଟି ବାସ୍ତବରେ ପରିଣତ ହୋଇ ସାରିଲଣି। ୱେଲ୍ସ ନିଜେ ଥିଲେ ଜଣେ ବୈଜ୍ଞାନିକ। ମାତ୍ର ନିତ୍ୟ ପ୍ରଗତିଶୀଳ ଏହି ବିଜ୍ଞାନ, ପରିଣାମରେ କିପରି ମନୁଷ୍ୟ ସମାଜର ଧ୍ୱଂସ ସାଧନ କରିବ ଏହାହିଁ ତାଙ୍କ ଲିଖିତ ସମସ୍ତ ବୈଜ୍ଞାନିକ ଉପନ୍ୟାସର ମୂଳକଥା। ବିଜ୍ଞାନ ମନୁଷ୍ୟର ସୃଜନୀ-ପ୍ରତିଭାରୁ ସମ୍ଭୂତ ସତ୍ୟ। ମାତ୍ର ଏହାହିଁ ଶେଷରେ ତା'ଠାରେ ଧ୍ୱଂସର ପ୍ରତିଭା ସୃଷ୍ଟି କରି ସର୍ବଶେଷରେ ତାକୁ ହିଁ ଧ୍ୱଂସ କରିବ। ବିଜ୍ଞାନ ବଳରେ ମନୁଷ୍ୟ ଅଜ୍ଞାନ ହେଲଣି ଓ ଭବିଷ୍ୟତରେ ଆହୁରି ହେବ। ମନୁଷ୍ୟପରି ଅପରିଣାମଦର୍ଶୀ, କଳହପ୍ରବଣ, ଯୁଦ୍ଧଖୋର, ଲୋଭୀ, ହିଂସ୍ର, ଅସହିଷ୍ଣୁ, କ୍ଷମତାପ୍ରିୟ ଓ ଧୈର୍ଯ୍ୟ-

ମାନ ଜୀବ ହାତରେ ବିଜ୍ଞାନ ଏକ ଅପଶକ୍ତିର କାର୍ଯ୍ୟ କରିବ । ଏହାହିଁ ବେଲ୍ସ୍ ତାଙ୍କର ଅନ୍ୟାନ୍ୟ ଉପନ୍ୟାସ, ପରି "ଫାଷ୍ଟ ମେନ୍ ଇନ୍ ଦ ମୁନ୍"ରେ ଇଙ୍ଗିତରେ ସୂଚାଇଛନ୍ତି ।

ବିଜ୍ଞାନକୁ ସାହିତ୍ୟର ପୋଷାକ ପିନ୍ଧାଇଦେଲେ ତାହା କିଭଳି ରୂପ ଧାରଣ କରିବ, ତାହା ଏହି ଉପନ୍ୟାସଟି ହିଁ ବେଶ୍ ରୂପେ ଦେଖାଇ ପାରିଛି । କେବଳ ବିଜ୍ଞାନର ବ୍ୟର୍ଥତା ଦର୍ଶାଇବାକୁ ନୁହେଁ—ସାହିତ୍ୟକୁ ବିଜ୍ଞାନମୁଖୀ କରାଇ ସାହିତ୍ୟିକ ଭାବ ଓ କଳ୍ପନାକୁ ଚିନ୍ତାଶ୍ରୟୀ କରାଇବାହିଁ ବେଲସଙ୍କ ଉପନ୍ୟାସର ଲକ୍ଷ୍ୟ । ଏହି ଉପନ୍ୟାସ କାଳ୍ପନିକ ସତ୍ୟ—ମାତ୍ର ଲେଖକଙ୍କର ଏହି କଳ୍ପନା ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ପକ୍ଷେ ଏକ ବାସ୍ତବ-ଚିନ୍ତାର ବିଷୟ ହୋଇ ଉଠିଛି ।

ପ୍ରକୃତରେ ଯେଉଁଦିନ ପୃଥିବୀ ସହିତ ଚନ୍ଦ୍ର ଓ ଅନ୍ୟ ଗ୍ରହମାନଙ୍କର ଗମନାଗମନ ପଥ ଓ ଯାନ ଆବିଷ୍କୃତ ହୋଇ କାର୍ଯ୍ୟକାରୀ ହେବ, ସେଦିନ ସମଗ୍ର ପୃଥିବୀର ଚିନ୍ତାଧାରା ଓଲଟପାଲଟ ହୋଇଯିବ । ଆମର ସମସ୍ତ ଜ୍ଞାନ ବିଜ୍ଞାନ, ରାଜନୀତି, ଧର୍ମ ଓ ଆଚାର ବ୍ୟବହାରରେ କି ଯେ ଅଦ୍ଭୁତ ଓ ଚମତ୍କାର ପରିବର୍ତ୍ତନ ହୋଇଯିବ ତାହାହିଁ ଦେଖିବାକୁ ଓ ଅନୁଭବ କରିବାକୁ ଅନ୍ତତଃ ସେତେଦିନ ପର୍ଯ୍ୟନ୍ତ ବଞ୍ଚିବା ପାଇଁ ଲୋଭହୁଏ । କିନ୍ତୁ, ବେଲସ ଉପନ୍ୟାସର ଶେଷରେ ଯେପରି କରୁଣ ସ୍ୱରରେ ନିରାଶ ବାଣୀ ଶୁଣାଇ ଯାଇଛନ୍ତି, ସେ ପ୍ରତି ଆଜଠୁଁ ସତର୍କ ନରହିଲେ ଆମ ବିଜ୍ଞାନର ସବୁ ଚେଷ୍ଟା ଓ ଶକ୍ତି ବ୍ୟର୍ଥ ଓ ପଣ୍ଡ ହୋଇଯିବାର ଆଶଙ୍କା ଅଛି ।

ଏହି ଉପନ୍ୟାସଟିକୁ ମୂଳ ଇଂରାଜୀରୁ ଉତ୍କଳ ଭାଷାରେ ଅନୁବାଦ କରି ସୁଲେଖକ ବନ୍ଧୁ ଅଶ୍ୱିନୀକୁମାର ପୂଜାରୀ ଆମ୍ଭମାନଙ୍କର ପ୍ରଶଂସାର ପାତ୍ର ହୋଇଅଛନ୍ତି । ଆମ ସାହିତ୍ୟରେ ଅନୁବାଦ ଖୁବ୍ କମ୍ । ବିଶ୍ୱ ସାହିତ୍ୟର ଉନ୍ନତ ଓ ଉଜ୍ଜ୍ୱଳ ଭାବଧାରା ସଙ୍ଗେ ପରିଚିତ ନହେଲେ ଆମର ମାନସିକ ବିକାଶ ଯେ ପ୍ରଗତିଶୀଳ ହେବ ନାହିଁ ଏଥିରେ ଦ୍ୱିରୁକ୍ତି ନାହିଁ । ଓଡ଼ିଆ ସାହିତ୍ୟରେ ଯେଉଁ କେତୋଟି ଅନୁବାଦ ପୁସ୍ତକ ଅଛି, ତନ୍ମଧ୍ୟରୁ କେତେକ ମୂଳ ଲେଖାର ମର୍ମାନୁବାଦ, କେତେକ ବା ସଂକ୍ଷିପ୍ତାନୁବାଦ ଓ କେତେକ ପୁଣି ଓଡ଼ିଆ ସ୍ଥାନ, କାଳ ଓ ପାତ୍ରର ଛଦ୍ମ ରୂପଧରି ମୂଳଲେଖାର ଭାବାନୁ-

ବାଦ ମାତ୍ର । ମାତ୍ର ଅଶ୍ୱିନୀବାବୁ ଏହି ଉପନ୍ୟାସଟିକୁ ମୌଳିକ ଗ୍ରନ୍ଥରୁ ଖାଣ୍ଟି ଓ ଅବିକଳ ଅନୁବାଦ କରି ଅଛନ୍ତି । ମୁଁ ସମ୍ବଲପୁରରେ ଥିବାବେଳେ ତାଙ୍କର ଏହି ମୂଲ୍ୟବାନ ପାଣ୍ଡୁଲିପିଟି ପଢ଼ିଥିଲି ଓ ମୂଳ ବହିସଙ୍ଗେ ମିଳାଇ ମଧ୍ୟ ପଢ଼ିଥିଲି । ଅଶ୍ୱିନୀବାବୁ ଜଣେ ସୁଲେଖକ ଏବଂ ଏହି ଅନୁବାଦ କାର୍ଯ୍ୟରେ ମଧ୍ୟ ସେ ତାହାଙ୍କର କୁଶଳୀହସ୍ତର ପରିଚୟ ଦେଇଅଛନ୍ତି । ଅନ୍ୟ ଉପନ୍ୟାସ କଥା ଅଲଗା, ମାତ୍ର ୱେଲ୍‌ସଙ୍କର ବୈଜ୍ଞାନିକ ଉପନ୍ୟାସ ଗୁଡ଼ିକୁ ଖାଣ୍ଟି ଓଡ଼ିଆ ଭାଷାରେ ଅବିକଳ ଅନୁବାଦ କରି ମୂଳଗ୍ରନ୍ଥର ଭାବ ଓ ଶୈଳୀକୁ ଅନୁବାଦରେ ଯଥାଯଥ ରକ୍ଷାକରିପାରିବା ଯେ କେଡ଼େ କଷ୍ଟକର କାର୍ଯ୍ୟ—ସେ କଥା ଏହାକୁ ନ ପଢ଼ିଲେ ବୁଝିହେବ ନାହିଁ । ଯେଉଁଠାରେ ସେ ଉପଯୁକ୍ତ ଓଡ଼ିଆ ପରିଭାଷା ପାଇ ନାହାନ୍ତି, ସେଠାରେ ସେ ନିଜେ ହିଁ ଶବ୍ଦର ସୃଷ୍ଟି କରିଛନ୍ତି । ଯଥା ୱେଲ୍‌ସଙ୍କ "Mooni" ଅଶ୍ୱିନୀ ବାବୁଙ୍କ ଭାଷାରେ ହୋଇଛି ଚନ୍ଦ୍ରୀ "Let him go to hell" କୁ ଅଶ୍ୱିନୀବାବୁ କରିଛନ୍ତି—"ଚୁଲିକି ଯାଉ ଲୋକଟା ।" 'ଇତ୍ୟାଦି' ଏହାହିଁ ଅଶ୍ୱିନୀ ବାବୁଙ୍କ ଅନୁବାଦର ମୌଳିକତା । First men in the moon ଅନ୍ୟ କୌଣସି ଭାରତୀୟ ଭାଷାରେ ଅନୂଦିତ ହୋଇ ନାହିଁ । ଓଡ଼ିଆ ଭାଷାରେ ଏହା ପ୍ରଥମ । ଅଶ୍ୱିନୀ ବାବୁଙ୍କୁ ଏଥିପାଇଁ ବଧାଇ ଜଣାଉଛୁ ।

ଆମର ମାଟ୍ରିକ ଓ ଆଇ. ଏ. କ୍ଲାସର ଛାତ୍ରମାନେ ବାଜେ ଡିଟେକ୍‌ଟିଭ୍ ଉପନ୍ୟାସ ପଢ଼ି ସମୟ ନଷ୍ଟ ନ କରି ଗୋଏନ୍ଦା ଉପନ୍ୟାସ ଠାରୁ ଆହୁରି ଚିତ୍ତାକର୍ଷକ, କୌତୂହଳ ଉଦ୍ରେକକ ଓ ଶିକ୍ଷାପ୍ରଦ ଏହି ଉପନ୍ୟାସଟିକୁ ପଢ଼ନ୍ତୁ, ଏବଂ ପଢ଼ି ଉପକୃତ ହୁଅନ୍ତୁ, ଏହାହିଁ ମୋର କାମନା ।

ମହାପାତ୍ର ନୀଳମଣି ସାହୁ
ଅଧ୍ୟାପକ, ଭଦ୍ରକ କଲେଜ
ଝୁଲଣ ପୂର୍ଣ୍ଣିମା—୧୯୬୩

# ସୂଚୀପତ୍ର



---



"ମହାଗୁରୁଙ୍କର ସ୍ଥିର, ଶାନ୍ତ ଦୃଷ୍ଟିତଳେ ମୁଁ ନିଃସହାୟ ଭାବରେ ପଡ଼ି ରହିଲି ପରି ବୋଧ ହେଲା ।"

# ୧

# ଲିମ୍ପନେଠାରେ କେଭରଙ୍କ ସହିତ ବେଡ୍‌ଫୋଡ଼ଙ୍କର ସାକ୍ଷାତ

ଦକ୍ଷିଣ ଇଟାଲିର ନେଳିଆ ଆକାଶ ତଳେ ଦ୍ରାକ୍ଷାପତ୍ରର ଘନଚ୍ଛାୟା ମଧ୍ୟରେ ଏହା ଲେଖିବାକୁ ବସିଲା ବେଳେ ସହସା ଆଶ୍ଚର୍ଯ୍ୟବୋଧ ହେଉଛି ଯେ କେଭରର ଏହି ଅତ୍ୟାଶ୍ଚର୍ଯ୍ୟ ଦୁଃସାହସିକ ଅଭିଯାନରେ ମୋର ସହଯୋଗ ନିତାନ୍ତ ଦୈବକ୍ରମେ ଘଟିଥିଲା । ହୁଏତ ଯେ କୌଣସି ଲୋକର ଭାଗ୍ୟରେ ଏହା ଘଟି ପାରିଥାଆନ୍ତା । ମୁଁ ଯେତେବେଳେ ମନେ କରୁଥିଲି ଯେ କୌଣସି ପ୍ରକାର ଗୋଳମାଳର ସମ୍ଭାବନାରୁ ମୁଁ ଦୂରରେ ଅଛି, ସେତେବେଳେହିଁ ଏହି ଘଟଣାରେ ମତେ ଜଡ଼ିତ ହେବାକୁ ପଡ଼ିଲା । ଲିମ୍ପନେକୁ ମୁଁ ପୃଥିବୀର ସବୁଠାରୁ ଘଟଣାବିହୀନ ସ୍ଥାନ ବୋଲି ମନେ କରି ସେଠାକୁ ଯାଇଥିଲି । ମୁଁ କହୁଥିଲି, "ଏହିଠାରେହିଁ ମୁଁ ଶାନ୍ତି ପାଇବି ଓ ମୋର କାମ କରିବାର ସୁଯୋଗ ପାଇବି ।"

କିନ୍ତୁ ତାର ଶେଷ ପରିଣତି ହେଲା ଏହି ବହି । ମନୁଷ୍ୟର କ୍ଷୁଦ୍ରବୁଦ୍ଧିର ସହିତ ଭାଗ୍ୟର ଗତି କଦାପି ଖାପ ଖାଏ ନାହିଁ ।

ଏଠାରେ କହି ରଖେଁ, ଅଳ୍ପଦିନ ତଳେ କେତେଗୋଟି ବ୍ୟବସାୟର ଉଦ୍ୟୋଗ କରିବାକୁ ଯାଇ ମତେ ବିସ୍ତର କ୍ଷତିଗ୍ରସ୍ତ ହେବାକୁ ପଡ଼ିଥିଲା । ବର୍ତ୍ତମାନ ସମସ୍ତ ପ୍ରକାର ସମ୍ପଦ ଦ୍ୱାରା ପରିବେଷ୍ଟିତ ହୋଇ ମୋର ପୂର୍ବ ଦୁରବସ୍ଥା କଥା ସ୍ୱୀକାର କରିବାକୁ ଆମୋଦ ଲାଗେ । ଏହି ଦୁର୍ଭାଗ୍ୟ ଯେ କେତେକାଂଶରେ ମୋର ନିଜ ଦୋଷରୁ ଘଟିଥିଲା, ଏକଥା ମଧ୍ୟ ମୁଁ ସ୍ୱୀକାର କରୁଛି । ହୋଇପାରେ କୌଣସି କୌଣସି ଦିଗରେ ମୋର କିଛି ଦକ୍ଷତା ଅଛି, କିନ୍ତୁ ବ୍ୟବସାୟ ଚଳେଇବାର ଦକ୍ଷତା ତା ଭିତରେ ଯାଏ ନା । ସେ ସମୟରେ ମୁଁ ତରୁଣ ଥିଲି, ଏବଂ ତାରୁଣ୍ୟର ଅନ୍ୟାନ୍ୟ ଆପତ୍ତିଜନକ ପ୍ରକାଶ ମଧ୍ୟରେ ଥିଲା ମୋର କାର୍ଯ୍ୟଦକ୍ଷତାର ଗର୍ବ । ମୁଁ ବର୍ତ୍ତମାନ ବି ବୟସରେ ତରୁଣ ଅଛି, କିନ୍ତୁ ମୋର ଜୀବନରେ ଯେଉଁସବୁ ଘଟଣା ଘଟି-ଯାଇଛି ତାହା ମୋର ମନରୁ ତାରୁଣ୍ୟକୁ କେତେକାଂଶରେ ଲିଭେଇ ଦେଇଅଛି । ହେଲେ ତାହା ମୋର ମନ ତଳେ କୌଣସି ଜ୍ଞାନକୁ ପ୍ରକଟିତ କରି ପାରିଛି କି ନା, ତାହା ଅବଶ୍ୟ ସନ୍ଦେହର କଥା ।

ଯେଉଁ ବ୍ୟବସାୟ-ପ୍ରଚେଷ୍ଟାରେ ମୁଁ କେଣ୍ଡ ଜିଲ୍ଲାର ଲମ୍ପନେ ଗ୍ରାମରେ ଉପସ୍ଥିତ ହୋଇଥିଲି ତାର ବିସ୍ତୃତ ଆଲୋଚନା କରିବାର ଆବଶ୍ୟକତା ଏଠାରେ ନାହିଁ । ଆଜିକାଲି ବ୍ୟବସାୟ ସନ୍ଧାନ କାର୍ଯ୍ୟରେ ମଧ୍ୟ ଦୁଃସାହ-ସିକତାର ଚିହ୍ନ ମିଳିଥାଏ । ମତେ ବିପଦ ଆପଦର ସମ୍ଭାବନା ମୁଣ୍ଡେଇ ନେବାକୁ ହୋଇଥିଲା । ଏ ସବୁ ବିଷୟରେ ବରାବର କେତେକ ପରିମାଣରେ ନେଣ ଦେଣ କାରବାର ଥାଏ, ଏବଂ ମୋ କପାଳକୁ ଶେଷରେ ଦେବାକୁହିଁ ପଡ଼ିଥିଲା ; ଅବଶ୍ୟ ମୋର ଅନିଚ୍ଛା ସତ୍ତ୍ୱେ । ଯେତେବେଳେ ମୁଁ ସବୁକଥା ଝାଡ଼ିଝୁଡ଼ି ଦେଇ ବସିଥିଲି, ସେତେବେଳେ ବି ବେଳକାଳ ଉଣ୍ଡି ଜଣେ କଳିଆଖୋର ସ୍ୱତ୍ୱକାର ବାଦ ସାଧିବାକୁ ଆସିଲା । ତୁମେ ବି ବୋଧହୁଏ କେବେ ଏହି ଅସମ୍ମାନ-ବୋଧର ତୀବ୍ର ଜ୍ୱାଳା ଲକ୍ଷ୍ୟ କରିଛ, କିମ୍ବା କେବଳ ଅନୁଭବ କରି ଦେଖିଛ । ସେ ଜୋକ ପରି ମୋ ପଛରେ ଲାଗି ରହିଲା । ଶେଷରେ ମୁଁ ଭାବିଲି ଯେ, କିରାଣୀ ଭାବରେ ଖଟି ରୋଜଗାର କରିବାକୁ ମୁଁ ଯଦି ପ୍ରସ୍ତୁତ ନୁହେଁ, ତାହାହେଲେ ଗୋଟିଏ ନାଟକ ଲେଖିବା ଛଡ଼ା ଏ

ଅବସ୍ଥାରୁ ବୁଝିବାର ଆଉ ଉପାୟ ନାହିଁ । ମୋର କଳ୍ପନା ଶକ୍ତି ଅଛି, ଏବଂ ଉନ୍ନତ ରୁଚଜ୍ଞାନ ଅଛି; ତେଣୁ ସେହି ଦୁର୍ଭାଗ୍ୟ ଦ୍ୱାରା ପରାସ୍ତ ହେବା ପୂର୍ବରୁ ପାରୁ ପର୍ଯ୍ୟନ୍ତ ଲଢ଼ି ଦେଖିବାକୁ ମୁଁ ସ୍ଥିର କଲି । ସେତେବେଳେ ଆପଣାର ବ୍ୟବସାୟ-ଦକ୍ଷତାରେ ମୋର ବିଶ୍ୱାସ ଛଡ଼ା, କୌଣସି ଭଲ ନାଟକ ଲେଖିବାର କ୍ଷମତା ମୋର ଅଛି ବୋଲି ମଧ୍ୟ ମୁଁ ବିଶ୍ୱାସ କରୁଥିଲି । ଏହା ବୋଧହୁଏ ଗୋଟିଏ ଅସାଧାରଣ ବୃତ୍ତି ନୁହେଁ । ଏଇ ବ୍ୟବସାୟ କାର୍ଯ୍ୟ ବାହାରେ ଧନ ଅର୍ଜନ କରିବା ପାଇଁ ଏହି ବୃତ୍ତି ତୁଲ୍ୟ ବୃତ୍ତି ଆଉ ନାହିଁ । ଏହାହିଁ ମୋର ମତ ନିୟନ୍ତ୍ରଣ କରିଥିଲା । ପ୍ରକୃତରେ, ଏହି ଅଲେଖା ନାଟକକୁ ଦୁର୍ଦ୍ଦିନ ପାଇଁ ଗୋଟିଏ ସୁବିଧାଜନକ ସଞ୍ଚୟ ବୋଲି ଗଣନା କରିବା ମଧ୍ୟ ମୋର ଅଭ୍ୟାସ ହୋଇଯାଇଥିଲା । ସେହି ଦୁର୍ଦ୍ଦିନ ଉପସ୍ଥିତ ହେଲା, ଏବଂ ମୁଁ କାମରେ ଲାଗିଗଲି ।

କିଛିଦିନ ଭିତରେ ମୁଁ ଜାଣି ପାରିଲି ଯେ ନାଟକ ଲେଖିବା ବ୍ୟାପାରଟା ମୁଁ ଯାହା ଅନୁମାନ କରିଥିଲି ତାଠାରୁ ଅଧିକ ସମୟସାପେକ୍ଷ କାର୍ଯ୍ୟ । ଏହା ଲେଖିବାକୁ ଦଶଦିନ ଲାଗିବ ବୋଲି ପ୍ରଥମେ ମୁଁ ଧରି ନେଇ ଥିଲି ଏବଂ ଏହି ଲେଖା କାମ ଚାଲୁଥିବା ଭିତରେ ଅଳ୍ପଦିନ ପାଇଁ ମୁଣ୍ଡ ଗୁଞ୍ଜିବାକୁ ଗୋଟିଏ ସ୍ଥାନ ଖୋଜିବା ଲାଗି ମୁଁ ଲଣ୍ଡନକୁ ଆସିଥିଲି । ସେହି ଗ୍ରେଟ ବଙ୍ଗଳାଘରଟି ପାଇ ମୁଁ ନିଜକୁ ଭାଗ୍ୟବାନ ମନେକଲି । ତିନବର୍ଷର ଚୁକ୍ତିରେ ମୁଁ ତାହା ପାଇଲି । ସେଠାରେ ଅଳ୍ପ କେତେକ ଆସବାବ ପତ୍ର ସଜାଡ଼ି ରଖିଲି ଏବଂ ନାଟକ ଲେଖା କାମ ଚାଲୁଥିବା ଭିତରେ ନିଜ ହାତରେ ରାନ୍ଧି ଖାଇଲି । ସେ ରାନ୍ଧଣା ଅବଶ୍ୟ ମୋର ଗୃହିଣୀ ଶ୍ରୀମତୀ ବର୍ଣ୍ଣ୍ଙ୍କର ମନକୁ ପାଇ ନ ଥାନ୍ତା ତଥାପି ତାହା ସୁସ୍ୱାଦୁ ହୋଇଥିଲା । କଫି ପାଇଁ କେଟଲି ଓ ଡିମ୍ବ, ଆଳୁ ପାଇଁ କଡ଼େଇ ଓ ମାଂସ ଭାଜିବା ପାଇଁ ତାଉଆ—ଏହାହିଁ ଥିଲା ମୋର ସ୍ୱାଚ୍ଛନ୍ଦ୍ୟର ସାମାନ୍ୟ ଉପକରଣ । କେହି ସବୁବେଳେ ଜାକଜକମରେ ରହି ପାରିବ ନାହିଁ, ତେବେ ସରଳଭାବରେ ଚଳିବାର ଉପାୟ ତ ରହିଛି । ତା ଛଡ଼ା, ଧାରରେ ଗୋଟିଏ ଅଠର ଗ୍ୟାଲନଆ ବିଅର ମଦ୍ୟର ଭାଣ୍ଡ ମୁଁ ଯୋଗାଡ଼ କରି ରଖିଲି;

ଏବଂ ଗୋଳ ଲୁଟିବାଲୁ ଆସି ପାଉଁ ଲୁଟି ଯୋଗେଇ ଦେଉଥାଏ । ଅବଶ୍ୟ ଏହା ଯେ ଖୁବ ଆଡ଼ମ୍ବରଜନକ ହୋଇଥିଲା ତାହା ନୁହେଁ, କିନ୍ତୁ ଏହାଠାରୁ ଅଧିକ କଷ୍ଟରେ ମଧ୍ୟ ମୁଁ ଆଗରୁ ଚଳି ଆସିଥିଲି । ବିଚରା ଲୁଟିବାଲୁକୁ ନଗଦ ପଇସା ନ ଦେଇ ପାରିବାରୁ ମୋର ଟିକେ ଦୁଃଖ ହୋଇଥିଲା— ଲୋକଟା ଥିଲା ଖୁବ ଭଲ—କିନ୍ତୁ ତା ପାଇଁ ମଧ୍ୟ ମୋର ଆଶା ରହିଥିଲା ।

କେହି ଯଦି ନିର୍ଜନତା କାମନା କରେ, ତାହା ହେଲେ ଲିମ୍ପର୍ନେହିଁ ତା ପାଇଁ ଉପଯୁକ୍ତ ସ୍ଥାନ । କେଣ୍ଟର କାଦୁଅ ମାଟିମୟ ଅଞ୍ଚଳରେ ଏହା ଅବସ୍ଥିତ । ମୋର ବଙ୍ଗଳା ଥିଲା ଗୋଟିଏ ପୁରାତନ ସାମୁଦ୍ରିକ ପାହାଡ଼ର ଧାରରେ । ତାହା ରୋମନେ ମାର୍ଶର ସମତଳ ଭୂମିର ସେ ପାଖରେ ଥିବା ସମୁଦ୍ର ଆଡ଼କୁ ଅନାଇ ରହିଥିଲା । ଅଟ୍ଠ ଓଦା ପାଗରେ ଏହି ସ୍ଥାନ ଥିଲା ପ୍ରାୟ ଅଗମ୍ୟ । ମୁଁ ଶୁଣିଛି, ଯେ, ସମୟ ସମୟରେ ଡାକବାଲା ଏହି ପଥର ଅଧିକତର ଯନ୍ତ୍ରଣାଦାୟକ ଅଞ୍ଚଳଗୁଡ଼ିକ ପାଦରେ ପଟାଲଗାଇ ପାର ହେଉଥିଲା । ଅବଶ୍ୟ ମୁଁ ତାଙ୍କୁ ଏପରି ଭାବରେ ଯିବାର କେବେ ଦେଖି ନାହିଁ, କିନ୍ତୁ ସେ ଦୃଶ୍ୟ ବେଶ କଳ୍ପନା କରି ପାରୁଛି । ଯେଉଁ ଅଳ୍ପସଂଖ୍ୟକ କୁଟୀର ଓ ଦୋକାନ ନେଇ ବର୍ତ୍ତମାନ ଏହି ଗ୍ରାମଟି ଗଠିତ, ସେମାନଙ୍କର ଦୁଆର ବାହାରେ ବାର୍ଚ ଗଛର ବଡ଼ ବଡ଼ ଝାଡ଼ୁ ଯେ ତାହୋଇ ଥାଏ । ସେ ସବୁ କାଦୁଅର ବଡ଼ଭାଗ ପୋଛି ପକାଇବା କାମରେ ଲଗାଯାଏ । ଏଥିରୁ ବୁଝି ଯିବ, ଏ ଅଞ୍ଚଳର ଅବସ୍ଥା କପରି । ଏହାର ପୂର୍ବଗୌରବର ଅସ୍ପଷ୍ଟ ସ୍ମୃତି ଏପର୍ଯ୍ୟନ୍ତ ରହିଛି ବୋଲି ସ୍ଥାନଟି ଅଛି, ନ ହେଲେ ବୋଧହୁଏ ଲୋପ ପାଇ ଯାଆନ୍ତାଣି । ରୋମୀୟ ଯୁଗରେ ଏହା ଥିଲା ଇଂଲଣ୍ଡର ସୁବୃହତ୍ତ ବନ୍ଦର, ପୋର୍ଟସ ଲେମାନସ; କିନ୍ତୁ ବର୍ତ୍ତମାନ ସମୁଦ୍ର ଏହା ପାଖରୁ ଚାରିମାଇଲ ଦୂରକୁ ଘୁଞ୍ଚିଗଲାଣି । ଉଚ୍ଚ ପାହାଡ଼ମାନଙ୍କର ତଳେ ତଳେ ପଥରର ଗୋଲାକାର ସ୍ତୂପ ଏବଂ ରୋମୀୟ ଇଷ୍ଟକ ନିର୍ମାଣର ଗଦା ସବୁ ରହିଛି ଏବଂ ଏହିଠାରୁ ସ୍ଥାନେ ସ୍ଥାନେ ପଥର ବସା ହୋଇଥିବା ପୁରୁଣା ୱାଟ୍‌ଲିଙ୍ଗ ଷ୍ଟ୍ରିଟ୍ ଉତ୍ତର ଦିଗକୁ ଗତି କରିଛି ଠିକ୍ ଗୋଟିଏ ତୀର ପରି । ଏହି ପାହାଡ଼ ଉପରେ ଛିଡ଼ାହୋଇ ଅତୀତର ସେ ସବୁ କଥା ମୁଁ ଭାବି

ଦେଖୁଥିଲି—ସେହି କ୍ଷୁଦ୍ର ଜାହାଜ ଶ୍ରେଣୀ ଓ ସୈନିକ ଫଉଜ, ବନ୍ଦୀ ଓ ରାଜକର୍ମଚାରୀଗଣ, ରମଣୀ ଓ ବଣିକଦଳ ଏବଂ ମୋ ପରି ବ୍ୟବସାୟାନ୍ୱେଷୀ ବୃନ୍ଦ—ବନ୍ଦରକୁ ଯା ଆସ କରୁଥିବା ସମସ୍ତ ବ୍ୟସ୍ତ ଜନତା ଓ କୋଳାହଳ କଥା ମୁଁ ଭାବି ଦେଖୁଥିଲି । କିନ୍ତୁ ବର୍ତ୍ତମାନ ସେଠାରେ ଅବଶିଷ୍ଟ ମାର୍ଶ ଘାସର ଗଡ଼ାଣିଆ ଭୂମି ଉପରେ ଭଙ୍ଗା ଇଟା ମାଟିର ଗଦା, ଗୋଟିଏ ଦୁଇଟି ମେଣ୍ଢା—ଆଉ ମୁଁ ! ଏବଂ ଯେଉଁଠାରେ ବନ୍ଦର ଥିଲା, ସେଠାରେ ଅଛି ସମତଳ ଜଳାଭୂମି । ତାହା ସୁଦୂର ଉନ୍‌ଜେନେସ୍ ପର୍ଯ୍ୟନ୍ତ ବକ୍ରାକାରରେ ଲମ୍ବିଯାଇଛି, ଏବଂ ତାର ମଝିରେ ମଝିରେ ଚିହ୍ନିତ ହୋଇଛି ବୃକ୍ଷରାଜି ଓ ପୁରୁଣା ମଧ୍ୟଯୁଗୀୟ ସହରର ଗୀର୍ଜା—ଅଟ୍ଟାଳିକାର ବନ୍ଧୁ । ଏହି ଅଟ୍ଟାଳିକା ଗୁଡ଼ିକ ମଧ୍ୟ ଲେମାନେସ୍ ପରି ନିଶ୍ଚିହ୍ନ ହୋଇଯିବାକୁ ବସିଛନ୍ତି ।

ସେହି ଜଳାଭୂମିର ଦୃଶ୍ୟ ପ୍ରକୃତରେ ଅତି ଚମତ୍କାର ଥିଲା । ପ୍ରାୟ ପନ୍ଦର ମାଇଲ ଦୂରରେ ଥିଲା ଉନ୍‌ଜେନେସ୍; ତାହା ସମୁଦ୍ର ଉପରେ ବୋଇତ ପରି ଦେଖାଯାଉଥିଲା ଏବଂ ଆହୁରି ପଶ୍ଚିମକୁ ଥିଲା ଅସ୍ତଗାମୀ ସୂର୍ଯ୍ୟ ତଳେ ହେଷ୍ଟିଙ୍ଗସ୍ ପାର୍ଶ୍ୱସ୍ଥ ପାହାଡ଼ ଶ୍ରେଣୀ । ବେଳେ ବେଳେ ତାହା ଖୁବ୍ ନିକଟରେ ଓ ସ୍ପଷ୍ଟଭାବରେ ଦେଖାଯାଉଥିଲା । କେତେବେଳେ ବା ଝାପସା ଓ ଅନୁଚ୍ଚ ଦେଖାଯାଉଥିଲା, ଏବଂ ମଝିରେ ମଝିରେ ପାଗର ଅନିଶ୍ଚିତ ଅବସ୍ଥା ଯୋଗୁଁ ସମ୍ପୂର୍ଣ୍ଣ ଭାବରେ ଦୃଷ୍ଟିରୁ ଅପସାରିତ ହେଉଥିଲା ଏବଂ ଜଳାଭୂମିର ନିକଟତର ଅଂଶଗୁଡ଼ିକ ଖାଲ ଆଉ ନାଳମାନଙ୍କ ଦ୍ୱାରା ଗୁନ୍ଥାହୋଇ ଚକ୍ ଚକ୍ କରୁଥିଲା ।

ମୁଁ ଯେଉଁ ଝରକା ନିକଟରେ କାର୍ଯ୍ୟରତ ଥିଲି, ତାହା ଏହି ପର୍ବତ ଚୂଡ଼ାର ଶୀର୍ଷରେଖାର ସମ୍ମୁଖୀନ ଥିଲା ଏବଂ ଏହି ଝରକାରୁହିଁ ପ୍ରଥମେ କେଭରର ଉପରେ ମୋର ଆଖି ପଡ଼ିଲା । ଠିକ୍ ସେହି ମୁହୂର୍ତ୍ତରେ ମୁଁ ନାଟକର ଦୃଶ୍ୟ ଚୟନ ନେଇ ଖୁବ ବ୍ୟସ୍ତ ହୋଇ ପଡ଼ିଥିଲି ଓ ଏହି କାର୍ଯ୍ୟର କଠିନତା ବିଷୟରେ ସଚେତନ ହୋଇ ଉଠିଥିଲି ; ତେଣୁ ସ୍ୱଭାବତଃ ସେ ମୋର ଦୃଷ୍ଟି ଆକର୍ଷଣ କଲା ।

ସୂର୍ଯ୍ୟ ବୁଡ଼ି ଯାଇଥିଲା ; ଆକାଶରେ ଥିଲା ସବୁଜ ଓ ପୀତ ବର୍ଣ୍ଣର ସ୍ନିଗ୍ଧ ଶାନ୍ତ, ଏବଂ ସେହି ପଟ୍ଟଭୂମିରେ ସେ ଦିଶୁଥିଲା କଳା—ଅଦ୍ଭୁତ, କ୍ଷୁଦ୍ରକାୟ ମୂର୍ତ୍ତି ।

ସେ ଥିଲା ଗେଡ଼ା, ଗୋଲଗାଲ, ସରୁ ଗୋଡ଼ିଆ ବୁଲୁଟିଆ ମଣିଷଟିଏ, ଏବଂ ଚାଲିଲା ବେଳେ ଦେହ ଝୁଣି ଝୁଣି ଚାଲୁଥିଲା । ତାର ଅସାମାନ୍ୟ ବ୍ୟକ୍ତିତ୍ୱକୁ ସେ ଢାଙ୍କିଥିଲା ଗୋଟିଏ କ୍ରିକେଟ୍ ଟୋପି, ଲମ୍ବା କୋଟ ଏବଂ ସାଇକେଲ ଚଳାଇବାର ପାଇଜାମା ଓ ମୋଜାଦ୍ୱାରା । ସେ ଯେ କାହିଁକି ଏପରି ବେଶ ପିନ୍ଧିଥିଲା ମୁଁ ଜାଣି ପାରିଲି ନାହିଁ, କାରଣ ସେ କେବେ ସାଇକେଲ ଚଳାଉ ନ ଥିଲା କିମ୍ବା କ୍ରିକେଟ ଖେଳୁ ନ ଥିଲା । ଏପରି ପୋଷାକ ଗୋଟିଏ ଦୈବ ସଂଯୋଗ ଛଡ଼ା ଆଉ କିଛି ନୁହେଁ, କିନ୍ତୁ କିପରି ଏହି ସଂଯୋଗ ଘୁଟିଥିଲା କେଜାଣି ! ସେ ତାର ହାତ ଆଉ ବାହୁ ଦ୍ୱାରା ନାନାପ୍ରକାର ଭଙ୍ଗୀ କରୁଥିଲା, ଏବଂ ତାର ମୁଣ୍ଡ ଇଆଡ଼େ ସିଆଡ଼େ ଛୁଆଁଉଥିଲା ଓ 'କ୍ଳୁ-କ୍ଳୁ' ଶବ୍ଦ କରୁଥିଲା । ଏହି 'କ୍ଳୁ-କ୍ଳୁ' ଶବ୍ଦ ମନେ ହେଉଥିଲା କୌଣସି ବହିର୍ଜଗତଜାତ ଶବ୍ଦପରି । ଏପରି ଶବ୍ଦ କେହି କେବେ ଶୁଣି ନଥିବ ଏବଂ ଥରକୁ ଥର ଅଦ୍ଭୁତ ଧ୍ୱନି କରି ସେ ତାର ତଣ୍ଟି ସଫା କରୁଥିଲା ।

କିଛି ସମୟ ପୂର୍ବରୁ ବର୍ଷା ହୋଇଯାଇଥିଲା, ତେଣୁ ତାର ଛୁଟିକିପଡ଼ିଲା ପରି ଚାଲିବା ଢଙ୍ଗ ରାସ୍ତାର ପିଚ୍ଛିଳତା ଯୋଗୁଁ ଆହୁରି ବଢ଼ିଯାଇଥିଲା । ଠିକ୍ ସୂର୍ଯ୍ୟର ସାମନା ସାମନି ପହଞ୍ଚି ସେ ଠିଆ ହୋଇପଡ଼ିଲା, ପକେଟରୁ ଘଣ୍ଟା କାଢ଼ିଲା, ଏବଂ କିଛି ସମୟ ଇତଃସ୍ତତ କରିବାକୁ ଲାଗିଲା । ତା ପରେ ପ୍ରାୟ ହଠାତ୍ ଛିଙ୍କି ହୋଇଗଲା ପରି ଭଙ୍ଗୀରେ ସେ ବୁଲିପଡ଼ିଲା ଏବଂ ଭରବରରେ ଓଲଟା ଫେରି ଚାଲିଲା । ତାର ଅଙ୍ଗଭଙ୍ଗୀ ଶାନ୍ତ ହୋଇଗଲା, କିନ୍ତୁ ସେ ଖୁବ୍ ଲମ୍ବ ଲମ୍ବ ପାଦ ପକେଇ ଚାଲିବାକୁ ଲାଗିଲା । ଏହି ଚାଲିରୁ ତାର ପାଦର ବୃହତ୍ ଆକାର ସ୍ପଷ୍ଟ ଜଣାପଡ଼ିଲା । ଅବଶ୍ୟ ପାଦରେ କାଦୁଅ ଲାଗିକି ଯାଇଥିବାରୁ ତାହା ଏପରି ବିଚିତ୍ର ରକମର ବଡ଼ ଦେଖାଯାଉଥିଲା ।

ଏହି ଘଟଣା ମୋର ପ୍ରବାସର ପ୍ରଥମ ଦିନରେ ଘଟିଥିଲା । ସେତେବେଳକୁ ମୋର ନାଟକ ଲେଖାର ଉତ୍ସାହ ଥିଲା ସର୍ବାଧିକ ଏବଂ ଏହି ଘଟଣା କେବଳ ଗୋଟିଏ ବିରକ୍ତିଜନକ ଗୋଳମାଳ ବୋଲି ମୁଁ ମନେକଲି । ପାଞ୍ଚ ମିନିଟ ମାହାଲିଆ ଗଲା । ମୁଁ ପୁଣି ମୋର ଦୃଶ୍ୟ ଚିତ୍ରଣରେ ମନ ଦେଲି । କିନ୍ତୁ ତା'ପର ସନ୍ଧ୍ୟାରେ ଯେତେବେଳେ ସେହି ଆବିର୍ଭାବ ପୁଣି ଠିକ ସେଇରକମ ଭାବରେ ଘଟିଲା ଏବଂ କେବଳ ସେହି ସନ୍ଧ୍ୟାରେ ନୁହେଁ, ପୁଣି ତା'ପର ସନ୍ଧ୍ୟାରେ; ଏବଂ ବାସ୍ତବିକ ବର୍ଷା ନ ପଡ଼ୁଥିଲେ ପ୍ରତି ସନ୍ଧ୍ୟାରେ, ସେତେବେଳେ ଦୃଶ୍ୟଚିତ୍ରଣ ପ୍ରତି ମନ ସଂଯୋଗ କରିବା କାଠିକର ପାଠ ହୋଇପଡ଼ିଲା । ମୁଁ ମନେ ମନେ କହିଲି, "ଚୂଲିକି ଯାଉ ଲୋକଟା । ସେ କଣ୍ଢେଇ ନାଚ ଶିଖିବାକୁ ଚେଷ୍ଟା କରୁଛି ନା କଣ ।" ତାପରେ ଅନେକଦିନ ପର୍ଯ୍ୟନ୍ତ ପ୍ରତି ସନ୍ଧ୍ୟାରେ ମୁଁ ତାକୁ ଅଭିଶାପ ଦେବାକୁ ଲାଗିଲି ।

ଏହାପରେ ମୋର ବିରକ୍ତି ବଦଳରେ ଆସିଲା ଆଶ୍ଚର୍ଯ୍ୟବୋଧ ଏବଂ ଔତ୍ସୁକ୍ୟ । ଏହି ଲୋକଟା'ର ଏପରି କରିବାର କାରଣ କଣ ହୋଇପାରେ ? ଚତୁର୍ଦ୍ଦଶ ଦିନ ମୁଁ ଆଉ ସମ୍ଭାଳି ପାରିଲି ନାହିଁ । ସେ ଆସି ଦେଖାଦେବା ସଙ୍ଗେ ସଙ୍ଗେ ମୁଁ ଦୁଆର ଖୋଲିଲି, ବାରଣ୍ଡା ପାରହେଲି ଏବଂ ସେ ଯେଉଁଠି ସାଧାରଣତଃ ଅଟକେ ସେହି ଅଡ଼କୁ ଅଗ୍ରସର ହେଲି ।

ମୁଁ ତା ପାଖରେ ଆସି ପହଞ୍ଚିଲା ବେଳକୁ ସେ ତାର ଘଣ୍ଟା କାଢ଼ି ସାରିଥାଏ । ପୂର୍ବରୁ ମୁଁ ତାକୁ କେବଳ ଆଲୁଅର ବିପରୀତ ଦିଗରେ ଦେଖିଥିଲି—ବର୍ତ୍ତମାନ ଦେଖିଲି, ତା ମୁହଁଟା ମାଂସଲ ଓ ଲାଲ ଏବଂ ଆଖି ଯୋଡ଼ିକ ନାଲିଚଆ-ମାଟିଆ ରଙ୍ଗର । ସେ ଫେରିବାକୁ ବସିଲାବେଳେ ମୁଁ କହିଲି, "ସେକେଣ୍ଡକ ଲାଗି ଟିକେ ରହନ୍ତୁ !"

ସେ ବିସ୍ମିତ ଭାବରେ ଚାହିଁଲା । କହିଲା, "ସେକେଣ୍ଡେ ? ନିଶ୍ଚୟ ନିଶ୍ଚୟ । କିମ୍ବା ଯଦି ଆପଣ ଅଧିକ ସମୟ ମୋ ସହିତ କଥା କହିବାକୁ ଚାହାନ୍ତି—ଏହା ବିଶେଷ ବଡ଼ ବ୍ୟାପାର ବି ନୁହେଁ—ତାହାହେଲେ ମେ

ସମ୍ଭବତ ଆସି ପାରିବେ କି ? ଆପଣଙ୍କର ସେକେଣ୍ଡକ ତ ପାରିହୋଇ ଗଲାଣି ।"

"ନିଶ୍ଚୟ ଆସିପାରିବ" ଏହା କହି ମୁଁ ତା ପାଖେ ପାଖେ ଚାଲିବାକୁ ଆରମ୍ଭ କଲି ।

ସେ କହିଲା, "ମୋର ସ୍ୱଭାବଗୁଡ଼ିକ ନିୟମବନ୍ଧା । ମୋର କଥାବାର୍ତ୍ତା କରିବାର ସମୟ ଅବଶ୍ୟ—ସୀମାବଦ୍ଧ ।"

"ବୋଧହୁଏ ଏଇଟା ଆପଣଙ୍କର ବ୍ୟାୟାମ କରିବାର ସମୟ ?"

"ଆଜ୍ଞା ହଁ । ସୂର୍ଯ୍ୟାସ୍ତର ଶୋଭା ଉପଭୋଗ କରିବା ପାଇଁ ମୁଁ ଏଠାକୁ ଆସେଁ ।"

"ଆଜ୍ଞା ନା ।"

"କ'ଣ କହିଲେ ?"

"ଆପଣ ସୂର୍ଯ୍ୟ ଆଡ଼କୁ ଅନାନ୍ତି ବି ନାହିଁ ।"

"ଅନାଏ ନାହିଁ ?"

"ନା । ମୁଁ ତେରଟି ସନ୍ଧ୍ୟା ଆପଣଙ୍କୁ ଲକ୍ଷ୍ୟ କରିଛି; ଥରେ ବି ଆପଣ ସୂର୍ଯ୍ୟାସ୍ତ ଦେଖି ନାହାନ୍ତି—ଥରେ ବି ନୁହେଁ ।",

ତାର ଭ୍ରୂଲତା କୁଞ୍ଚିତ ହୋଇ ଆସିଲା । ସତେ ଯେମିତି ସେ କୌଣସି ସମସ୍ୟାର ସମ୍ମୁଖୀନ ହୋଇଛି ।

"ଯାହାହେଉ, ମୁଁ ସୂର୍ଯ୍ୟାଲୋକ ଉପଭୋଗ କରେ—ମାନେ ଏଇ ବାୟୁମଣ୍ଡଳ । ମୁଁ ଏଇରାସ୍ତା ଧରି ଯାଏ, ସେଇ ଫାଟକ ବାଟ ଦେଇ—" ସେ ତାର ପଛକୁ ମୁଣ୍ଡ ଝୁଙ୍କାଇ ଦେଖାଇଲା—"ତା ପରେ ବୁଲିକରି—"

"ମୋଟେ ନୁହେଁ । ଆପଣ ସେଆଡ଼େ କେବେ ଯାଇନାହାନ୍ତି । ସବୁ ବାଜେ କଥା । ସେଆଡ଼େ ଜମା ବାଟନାହିଁ । ଧରନ୍ତୁ ଆଜିକାର ସନ୍ଧ୍ୟା—"

"ଓହୋ ! ଆଜିକାର ସନ୍ଧ୍ୟା ! ଆଚ୍ଛା ରହନ୍ତୁ । ହଁ, ହଁ ! ମୁଁ ମୋର ଘଣ୍ଟା ଦେଖିଲି, ଜାଣିଲି ଯେ ମୁଁ ମୋର ନିୟମିତ ଅଧଘଣ୍ଟା ଉପରେ ତିନି

ମିନଟ ବେଶି ବୁଲିଲିଣି । ତାପରେ ଠିକ୍ କଲି ଯେ, ନା ସେଆଡ଼େ ବୁଲି କରି ଯିବା ପାଇଁ ଆଉ ସମୟ ନାହିଁ, ତାପରେ ଫେରିଲି—"

"ବରାବର ଆପଣ ଏପରି କରନ୍ତି ?"

ସେ ମୋ ଆଡ଼େ ଅନାଇଲା । ଚନ୍ଦ୍ରାକର ଦେଖିଲି । କହିଲି, "ବୋଧହୁଏ ତା ସତ । ବର୍ତ୍ତମାନ ବୁଝିପାରୁଛି । କିନ୍ତୁ, ଆପଣ କେଉଁ ବିଷୟରେ ମୋ ସହିତ ଆଳାପ କରିବାକୁ ଚାହୁଁଥିଲେ ?"

"ଅବଶ୍ୟ, ଏଇ ବିଷୟରେ ।"

"ଏଇ ବିଷୟରେ ?"

"ହଁ । ଆପଣ ଏପରି କରନ୍ତି କାହିଁକି ? ପ୍ରତି ସନ୍ଧ୍ୟାରେ ଆପଣ ଗୋଟେ ଶବ୍ଦ କରି କରି ଆସନ୍ତି—"

"ଶବ୍ଦ କରି କରି ?"

"ହଁ, ଏମିତି"—ମୁଁ ତାର 'ଝୁ-ଝୁ' ଶବ୍ଦ ଅନୁକରଣ କରି ଶୁଣାଇ ଦେଲି । ସେ ମୋ ଆଡ଼େ ଅନାଇଲା; ବୁଝାଗଲା ଏପରି ଶବ୍ଦ ତାର ପସନ୍ଦ ହେଲା ନାହିଁ । ପଚାରିଲା, "ଏଁ, ମୁଁ 'ସେମିତି' କରେଁ ?"

"ପ୍ରତି ସନ୍ଧ୍ୟାରେ ।"

"ମୁଁ ତ ସ୍ୱା ଜାଣି ନଥିଲି ।"

ସେ ହଠାତ୍ ଠିଆହୋଇ ପଡ଼ିଲା । ଗମ୍ଭୀର ଭାବରେ ମତେ ନିରୀକ୍ଷଣ କଲା । କହିଲା, "ଏହା କଣ ସମ୍ଭବ ଯେ ମୁଁ ଗୋଟିଏ 'ଅଭ୍ୟାସ' କରି ପକେଇଛି ?"

"ହଁ, ସେଇ ରକମ ତ ମନେ ହେଉଛି, ନା କଣ କହୁଛନ୍ତି ?"

ସେ ଦୁଇଟି ଆଙ୍ଗୁଠିରେ ତାର ତଳ ଓଠ ଭିଡ଼ିଧରିଲା । ତାର ପାଦ ନିକଟରେ ଥିବା କାଦୁଅ ପାଣି ଆଡ଼େ କିଛି ସମୟ ଅନେଇ ରହିଲା ।

ତାପରେ କହିଲା, "ମୋର ମନ ବଡ଼ ଚିନ୍ତାମଗ୍ନ ଥାଏ । ଆପଣ ଜାଣିବାକୁ ଚାହାନ୍ତି, 'କାହିଁକି' ! ଦେଖନ୍ତୁ ମହାଶୟ, ଏକଥା ସତ ଯେ, ମୁଁ ଏ ରକମ କାହିଁକି କରେ ତା ତ ଜାଣେ ନାହିଁ । ଏପରି କି ମୁଁ ଏହା କରୁଥିଲି ବୋଲି ବି ଜାଣି ନ ଥିଲି । ବର୍ତ୍ତମାନ ଖିଆଲ ଦେଖି ମୁଁ ବୁଝିପାରୁଛି ଯେ, ଆପଣ ଯାହା କହିଲେ ତାହା ସତ—ମୁଁ କେବେହେଲେ ପଢ଼ିଆ ସେ ପଟେ ଯାଇନାହିଁ..... ଏହି ସବୁ କଥା ଆପଣଙ୍କୁ ବିରକ୍ତ କରେ ?"

କୌଣସି କାରଣ ବଶତଃ ତା ଉପରେ ମୋର ବିରକ୍ତି କମି ଆସିବାକୁ ଆରମ୍ଭ କଲା । ମୁଁ କହିଲି, "ଠିକ୍ 'ବିରକ୍ତ' ନୁହେଁ, କିନ୍ତୁ—ଅନ୍ଦାଜ କରି ଦେଖନ୍ତୁ ଆପଣ, ଗୋଟିଏ ନାଟକ ଲେଖୁଛନ୍ତି !"

"ଏପରି ଅନ୍ଦାଜ କରି ଦେଖିବା ତ ମୋ ପକ୍ଷରେ ସମ୍ଭବ ନୁହେଁ ।"

"ଅଚ୍ଛା, ମନେ କରନ୍ତୁ, ଗଭୀର ମନୋନିବେଶ ଦରକାର ହେବା କୌଣସି କାର୍ଯ୍ୟ କରୁଛନ୍ତି ।"

"ଓହୋ ! ନିଶ୍ଚୟ !" ସେ ଚିନ୍ତାମଗ୍ନ ହୋଇ ପଡ଼ିଗଲା । ତା ମୁହଁରେ ଦୁଃଖର ଏପରି ସ୍ପଷ୍ଟ ଛାପ ପଡ଼ିଲା ଯେ ତା ପ୍ରତି ମୋର ମନ ଆହୁରି ନରମ ହୋଇ ଆସିଲା । ସତରେ, ଭ୍ରମର ଅଜଣା ଅଶୁଣା ଲୋକ ସରକାରୀ ରାସ୍ତା ଉପରେ କାହିଁକି ଗୁଣୁ ଗୁଣୁ ଶବ୍ଦ କଲା, ଏକଥା ଦାବୀ କରି ବସିବାଟା ତ ନହାତି ଜୋରଜବରଦସ୍ତି କଥା ।

ସେ କ୍ଷୀଣ ଭାବରେ କହିଲା, "ଦେଖନ୍ତୁ, ଏଇଟା ମୋର ସ୍ୱଭାବ ।"

"ହଁ, ହଁ, ମୁଁ ବୁଝି ପାରୁଛି ।"

"ଏହା ମତେ ବନ୍ଦ କରିବାକୁ ହେବ ।"

"କିନ୍ତୁ ଆପଣ ଯଦି ଅସୁବିଧା ବୋଧ କରନ୍ତି ତାହା ହେଲେ ବନ୍ଦ କରିବା କି ଦରକାର । ପ୍ରକୃତରେ, ମୋର କି ଅଧିକାର ଅଛି—ଏହା ତ ଅଯଥା ହସ୍ତକ୍ଷେପ କରିବା କଥା ।"

ସେ କହିଲା, "ନା, ନା, ମୋଟେ ନୁହେଁ । ମୁଁ ପ୍ରକୃତରେ ଆପଣଙ୍କ ନିକଟରେ ଋଣୀ । ଏପରି ବ୍ୟାପାର ସବୁ ଦୂର କରିବା ତ ମୋର ଉଚିତ ! ଭବିଷ୍ୟତରେ ଆଉ ଏପରି ହେବ ନାହିଁ । ଦେଖନ୍ତୁ—ସେଇ ଶବ୍ଦଟା—ଆପଣ ପଥରେ ଦେଖେଇ ଦେବେ କି ?"

ମୁଁ କହିଲି, "ପ୍ରାୟ ଏଇରକମ—ଜ୍କୁ-ଜ୍କୁ ଉଇଉ, ଜ୍କୁ-ଜ୍କୁ ଉଇଉ, କିନ୍ତୁ ଦେଖନ୍ତୁ—"

"ମୁଁ ଆପଣଙ୍କ ନିକଟରେ ବଡ଼ କୃତଜ୍ଞ । ବାସ୍ତବିକ, ମୁଁ ବୁଝି ପାରୁଛି ମୁଁ ବଡ଼ ଅସଙ୍ଗତ ଭାବରେ ଅନ୍ୟମନସ୍କ ହୋଇ ପଡ଼ୁଛି । ଆପଣ ଉଚିତ କାର୍ଯ୍ୟ କରିଛନ୍ତି ମହାଶୟ, ସମ୍ପୂର୍ଣ୍ଣ ଉଚିତ କାର୍ଯ୍ୟ । ମୁଁ ଆଉ ଏପରି କରିବି ନାହିଁ । ଆଚ୍ଛା, ମୁଁ ଯେ ଆପଣଙ୍କୁ ଅନେକ ବାଟ ନେଇ ଆସିଲିଣି ।"

"ଆଶା କରେ, ମୋର ଧୃଷ୍ଟତା—"

"ମୋଟେ ନୁହେଁ, ମୋଟେ ନୁହେଁ ।"

ଆମେ ଦୁହେଁ ପରସ୍ପରକୁ କ୍ଷଣକ ପାଇଁ ନିରୀକ୍ଷଣ କଲୁଁ । ମୁଁ ମୋର ଟୋପି ଟେକି ତାକୁ ଶୁଭ-ସନ୍ଧ୍ୟା ଜଣାଇଲି । ସେ ତାର ଚୁଆଁଡ଼ି ହେଲପରି ଭଙ୍ଗୀରେ ପ୍ରତ୍ୟୁତ୍ତର ଦେଲା । ତା ପରେ ଆମେ ନିଜ ନିଜ ବାଟରେ ଗଲୁଁ ।

ଦୁଆର ପାଖରେ ପହଞ୍ଚି ମୁଁ ତାର ଅପସୃୟମାନ ମୂର୍ତ୍ତି ଆଡ଼େ ଅନାଇ ଦେଖିଲି । ତାର ଭଙ୍ଗୀ ଆଶ୍ଚର୍ଯ୍ୟଭାବରେ ବଦଳି ଯାଇଥିଲା । ବୋଧହେଲା, ସେ ଖୁବ୍ ସଙ୍କୁଚିତ ଆଉ ନିସ୍ତେଜ ହୋଇ ପଡ଼ିଛି । ତାର ପୂର୍ବର ଅଙ୍ଗଭଙ୍ଗୀ ଆଉ ଜ୍କୁ-ଜ୍କୁ କରିବାର ମୂର୍ତ୍ତି ସହିତ ତୁଳନା କରି ତାର ଅବସ୍ଥା ବଡ଼ କରୁଣ ମନେ ହେଲା । ସେ ଦୃଷ୍ଟିରୁ ଅପସାରିତ ହେବା ପର୍ଯ୍ୟନ୍ତ ମୁଁ ତାକୁ ଚାହିଁ ରହିଲି । ତା ପରେ, ମୋର ନିଜର ବ୍ୟାପାର ବାହାରେ ମୁଣ୍ଡ ପୂରେଇବା ଉଚିତ ନଥିଲା ବୋଲି ଭାବି ମୋର ବଙ୍ଗଳା ଓ ନାଟକକୁ ମୁଁ ଫେରିଆସିଲି ।

ତା ପର ସନ୍ଧ୍ୟାରେ ମୁଁ ତାଙ୍କୁ ଆଉ ଦେଖିଲି ନାହିଁ । ତା ପର ସନ୍ଧ୍ୟାରେ ବି ନୁହେଁ । କିନ୍ତୁ ତା କଥା ସବୁବେଳେ ମୋର ମନେ ଥାଏ । ସେ ଯେ ମୋର ନାଟକର କଥା ବସ୍ତୁରେ ଗୋଟିଏ ଭାବ ପ୍ରବଣ ହାସ୍ୟାସ୍ପଦ ଚରିତ୍ର ରୂପେ ବେଶ୍ ଖାପ ଖାଆନ୍ତା ଏକଥା ମୋର ମଗଜ ଭିତରେ ଖେଳୁଥାଏ । ତୃତୀୟ ଦିନ ସେ ମୋ ସହିତ ସାକ୍ଷାତ କରିବାକୁ ଆସିଲା ।

କି କାମରେ ସେ ମୋ ପାଖକୁ ଆସିପାରେ ଏହା ମୁଁ ଭାବି ଠିକ୍ କରି ପାରିଲି ନାହିଁ । ସେ କିଛି ସମୟ ପର୍ଯ୍ୟନ୍ତ ନିତାନ୍ତ ସାଧାରଣ ଭାବରେ ଏଣୁ ତେଣୁ ଗପିଲା, ତାପରେ ହଠାତ୍ ତାର ଉଦ୍ଦେଶ୍ୟ ବ୍ୟକ୍ତ କଲା । ତାର ଉଦ୍ଦେଶ୍ୟ ଥିଲା ମୋର ବଙ୍ଗଳାଟି କିଣିନେଇ ମତେ ସେଠୁ ତଡ଼ିବା ।

ସେ କହିଲା, "ଦେଖନ୍ତୁ, ଆପଣଙ୍କୁ ମୁଁ ଜମା ଦୋଷ ଦେଉ ନାହିଁ, କିନ୍ତୁ ଆପଣ ଗୋଟିଏ ଅଭ୍ୟାସ ନଷ୍ଟ କରିଦେଲେ ଏବଂ ଏହା ଯୋଗୁଁ ମୋର ଦିନ ଗୁଡ଼ିକ ନଷ୍ଟ ହୋଇ ଯାଉଛି । ମୁଁ ଏହି ବାଟ ଦେଇ ବର୍ଷ ବର୍ଷ ଚାଲି ଆସିଛି—ବର୍ଷ ବର୍ଷ । ଅବଶ୍ୟ ଗୁଣୁ ଗୁଣୁ ଶବ୍ଦ କରିଛି·······ଆପଣଙ୍କ ଯୋଗୁଁ ସବୁ ବନ୍ଦ ହୋଇଗଲା ।"

ସେ ଅନ୍ୟ କୌଣସି ବାଟ ଦେଇ ଯାଇପାରେ ବୋଲି ମୁଁ ପ୍ରସ୍ତାବ କଲି ।

"ନା । ଆଉ ଅନ୍ୟ ବାଟ ନାହିଁ । ଏହାହିଁ ଏକମାତ୍ର ବାଟ । ମୁଁ ଅନୁସନ୍ଧାନ କରି ଦେଖିଛି । ବର୍ତ୍ତମାନ—ପ୍ରତି ଓପରଓଳି ଚାରିଟାବେଳେ—ମୁଁ ନିରୁପାୟ ହୋଇ ପଡ଼ୁଛି ।"

"କିନ୍ତୁ, ମହାଶୟ, ଯଦି ବ୍ୟାପାରଟା ଆପଣଙ୍କ ପକ୍ଷରେ ଏତେ ପ୍ରୟୋଜନୀୟ—"

"ଏହା ଅତି ଗୁରୁତ୍ୱପୂର୍ଣ୍ଣ । ଦେଖନ୍ତୁ, ମୁଁ—ମୁଁ ହେଉଛି ଜଣେ ଗବେଷଣାକାରୀ—ବୈଜ୍ଞାନିକ ଗବେଷଣାରେ ମୁଁ ବ୍ୟାପୃତ । ମୋର ବୟସ—" ସେ ଅଟକି ଯାଇ ଭାବିବାକୁ ଲାଗିଲା । ତା ପରେ ପ୍ରାୟ ମୋ ଆଖି ନିକଟରେ ହଠାତ୍ ଆଙ୍ଗୁଠି ଟେକି କହିଲା, "ସେଇ ଦିଗରେ । ଗଛ ସେ ପଟେ ଧଳା

ତମିନ ଥିବା ଯେଉଁ କୋଠାଟି ଦେଖା ଯାଉଛି, ସେଇଠି ଏବଂ ମୋର ପରିସ୍ଥିତି ଅତି ଅସ୍ୱାଭାବିକ—ଅସ୍ୱାଭାବିକ । ମୁଁ ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ଉଦ୍ଭାବନ ପ୍ରାୟ ଶେଷ କରିବା ଉପରେ । ଆପଣ ବିଶ୍ୱାସ କରନ୍ତୁ, ଆଜି ପର୍ଯ୍ୟନ୍ତ ଉଦ୍ଭାବିତ ବସ୍ତୁମାନଙ୍କ ମଧ୍ୟରେ ଏହା ହେଉଛି ଅନ୍ୟତମ ସର୍ବଶ୍ରେଷ୍ଠ ଉଦ୍ଭାବନ । ଏଥିପାଇଁ ଅବିରତ ଚିନ୍ତା ଆବଶ୍ୟକ, ଅବିରତ ମାନସିକ ଶାନ୍ତି ଓ ତତ୍ପରତା ଆବଶ୍ୟକ । ଏଥିପାଇଁ ଓପରଓଲ ହେଉଛି ମୋର ପ୍ରକୃଷ୍ଟ ସମୟ —ନୂତନ ଭାବ, ନୂତନ ଚିନ୍ତାଧାରାର ଆଲୋଡ଼ନ ପାଇଁ ।"

"କିନ୍ତୁ ଆପଣ ତ ବର୍ତ୍ତମାନ ବି ଏ ବାଟ ଦେଇ ଆସି ପାରନ୍ତି ।"

"ବର୍ତ୍ତମାନ ସବୁ ଅନ୍ୟ ରକମ ହୋଇଯିବ । ମୁଁ ଆତ୍ମସଚେତନ ହୋଇ ପଡ଼ିବି ! ଭାବିବି ଯେ ଆପଣ ନାଟକ ଲେଖାରେ ବ୍ୟସ୍ତ ଅଛନ୍ତି— ବିରକ୍ତ ହୋଇ ମତେ ଲକ୍ଷ୍ୟ କରୁଛନ୍ତି—ଆଉ ମୋ କାମ କଥା ମୁଁ ଭାବି ପାରିବି ନାହିଁ । ନା ! ବଙ୍ଗଳାଟା ମୋତେ ନେବାକୁ ହିଁ ପଡ଼ିବ ।"

ମୁଁ ଭାବି ଦେଖିଲି । କୌଣସି ଶେଷ ଉତ୍ତର ଦେବା ପୂର୍ବରୁ ବିଷୟଟି ଭଲଭାବରେ ଚିନ୍ତାକରି ଦେଖିବାକୁ ହେବ ତ । ସେ ସମୟରେ ବ୍ୟବସାୟ କରିବାକୁ ମୁଁ ସାଧାରଣତଃ ଖୁବ୍ ପ୍ରସ୍ତୁତ ଥିଲି । ବିଜ୍ଞାନ ବ୍ୟାପାର ମତେ ସର୍ବଦା ଆକୃଷ୍ଟ କରୁଥିଲା । କିନ୍ତୁ ପ୍ରଥମତଃ ବଙ୍ଗଳାଟି ମୋର ଦରକାର ନ ଥିଲା ଏବଂ ଯଦିବା ମୁଁ ତାକୁ ଭଲ ଦାମରେ ବଙ୍ଗଳାଟି ବିକି ପାରିଲି, ମାଲ ହସ୍ତାନ୍ତରିତ କଲାବେଳେ ଅଡ଼ୁଆ ହୋଇପାରେ, ଯଦି ଘର ମାଲିକ ବ୍ୟାପାରଟିର ସନ୍ଧାନ ପାଇଗଲେ । ଦ୍ୱିତୀୟତଃ ଋଣଗ୍ରସ୍ତ ଅବସ୍ଥାରୁ ମୁଁ ସେତେବେଳକୁ ଖଲାସ ହୋଇ ନଥିଲି । ଏହି ବ୍ୟବସାୟରେ ଖୁବ ସାବଧାନତାର ଆବଶ୍ୟକତା ଥିଲା । ତା ଛଡ଼ା ସେ କୌଣସି ଦାମୀ ଉଦ୍ଭାବନରେ ନିୟୁକ୍ତ ହୋଇଥିବାର ସମ୍ଭାବନା ମତେ ଆକୃଷ୍ଟ କରିଥିଲା । ମୁଁ ଭାବି ଦେଖିଲି ମତେ ଏହି ଗବେଷଣା ବିଷୟରେ ଆହୁରି ଖବର ଜାଣି-ବାକୁ ହେବ; ଅବଶ୍ୟ କୌଣସି ଅସତ୍ ଉଦ୍ଦେଶ୍ୟରେ ନୁହେଁ, କେବଳ ଏହି କଥା ଭାବି ଯେ ଏହା କଣ ଜାଣିପାରିଲେ ମୋର ନାଟକ ଲେଖା

ଶ୍ରାନ୍ତରୁ ଟିକେ ବିଶ୍ରାମ ମିଳିବ । ତେଣୁ ମୁଁ ଇଙ୍ଗିତରେ ଜାଣିବାକୁ ଚେଷ୍ଟା କଲି ।

ସେ ଅବଶ୍ୟ ଜଣାଇବାକୁ ଖୁବ୍ ପ୍ରସ୍ତୁତ ଥିଲା । ବାସ୍ତବିକ ସେ ଥରେ କହିବାକୁ ଆରମ୍ଭ କଲାପରି କଥାବାର୍ତ୍ତା ସମ୍ପୂର୍ଣ୍ଣ ଏକପାଖିଆ ହୋଇଗଲା । ସେ ଏପରି ଭାବରେ ତା'ର ବକ୍ତବ୍ୟ କହିଗଲା ଯେପରିକି କଥାଗୁଡ଼ିକ ଅନେକ ଦିନରୁ ତା ପେଟ ଭିତରୁ ଉଛୁଳିବାକୁ ଚାହୁଁଥିଲା; ଯେପରିକି ସେ ଅନେକ ଥର କଥାଗୁଡ଼ିକ ମନେ ମନେ ଆବୃତ୍ତି କରିସାରିଥିଲା । ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ସେ ଗପିଲା । ସ୍ୱୀକାର କରିବାକୁ ହେଉଛି ଯେ ତାର ବକ୍ତୃତା ମୋ ପକ୍ଷରେ କାଳ ଆଗରେ ମୂଳା ଗୁଡ଼ବେଇଲା ପରି ଲାଗିଲା । କିନ୍ତୁ ଏହା ସତ୍ତ୍ୱେ ଆପଣାର ନିର୍ଦ୍ଧାରିତ କାମରେ ଅବହେଳା କଲେ ଯେଉଁ ମଜା ଟିକିକ ମିଳେ ତାହା ମତେ ମିଳିଥିଲା । ତାର ପ୍ରଥମ ଦିନର ବକ୍ତୃତାରୁ ସେ ଯେ କି କାମରେ ବ୍ୟାପୃତ ଥିଲା ଏ ବିଷୟରେ ମୁଁ ଖୁବ୍ କମ ଧାରଣା କରି ପାରିଲି । ତାର ବକ୍ତୃତାର ଅଧେ ତ କେବଳ ବୈଜ୍ଞାନିକ ଶବ୍ଦ ଯାହାକି ମୋର ଜ୍ଞାନର ସମ୍ପୂର୍ଣ୍ଣ ବାହାରେ; ତା ଛଡ଼ା, ତାର କହିବା ଅନୁସାରେ, କେତୋଟି ବିଷୟ ସେ ମୌଳିକ ଗଣିତ ସାହାଯ୍ୟରେ ବ୍ୟାଖ୍ୟା କରିଦେଲା । ଏହି ବ୍ୟାଖ୍ୟା ସେ ଗୋଟିଏ କପିଙ୍ଗ୍ ପେନସିଲ ସାହାଯ୍ୟରେ ଲଫାପା ଉପରେ ଏପରି ଭାବରେ ଗଣନା କରି ବୁଝାଇବାକୁ ଲାଗିଲା ଯେ ବୁଝିବାର ଛଳନା କରିବା ମଧ୍ୟ ମୋ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା । ମୁଁ କେବଳ "ହଁ, ଠିକ୍ କଥା" "କହିଯାଅ" ଇତ୍ୟାଦି ଧ୍ୱନି କରି ଚାଲିଲି । ଯାହାହେଉ ମୁଁ ଯେତିକି ବୁଝିପାରିଲି ସେଥିରୁ ମୋର ବିଶ୍ୱାସ ଜନ୍ମିଲା ଯେ ସେ ଆବିଷ୍କାର ନେଇ ଖେଳ ଖେଳୁଥିବା ସାମାନ୍ୟ ଖାମଖିଆଲି ଲୋକ ନୁହେଁ । ତାର ଚେହେରାଟା ସେଇ ଢଙ୍ଗର ଥିଲେ ମଧ୍ୟ, ତା ଭିତରେ ଏପରି ଗୋଟିଏ ଶକ୍ତିର ପରିଚୟ ମିଳୁଥିଲା ଯାହା ଜଣେଇ ଦେଉଥିଲା ଯେ ଲୋକଟା ବାକେ ଖାମଖିଆଲି ହେବା ଅସମ୍ଭବ । ଜିନିଷଟା ଯାହା ହୋଇଥାଉନା କାହିଁକି ଏହା ନିଶ୍ଚୟ କୌଣସି ଯାନ୍ତ୍ରିକ କ୍ଷମତାଶାଳୀ ବସ୍ତୁ । ତାର ଗୋଟିଏ ଶ୍ରେଷ୍ଠ କାରଖାନା-ଘର ଏବଂ ତିନିଜଣ ସହକାରୀ ଅଛନ୍ତି ବୋଲି ସେ

କହିଲି । ସେମାନେ ଆଗେ ଠିକ୍ ବଢ଼େଇ ଥିଲେ; କିନ୍ତୁ ସେ ସେମାନଙ୍କୁ ତାଲିମ କରି ନେଇଥିଲି । ଏହି ଗ୍ରେଟିଆ କାରିଖାନାରୁ ଆରମ୍ଭ କରି ତାର ସର୍ବସତ୍ତ୍ୱ ଲାଭ କରିବା ଭଳିଆ ଅବସ୍ଥା ଆସିବାକୁ କେତେ ସମୟ ବା ଲାଗିବ ? ସେ ତାର କାରଖାନା ଦେଖିବାପାଇଁ ମତେ ନିମନ୍ତ୍ରଣ କଲି । ମୁଁ ତତ୍‌କ୍ଷଣାତ୍ ରାଜି ହୋଇଗଲି ଏବଂ ମୁଁ ତାହା ଦେଖିବାକୁ ଯେ ନିତାନ୍ତ ବ୍ୟଗ୍ର, ଏହି କଥାଟା ଉପରେ ଜୋର ଦେଇ କହିଲି । ବଙ୍ଗଳା ବଦଳର ପ୍ରଶ୍ନଟା ବେଶ୍ ସୁବିଧାରେ ସ୍ଥଗିତ ରହିଗଲା ।

ଶେଷରେ ସେ ଯିବାପାଇଁ ବାହାରିଲା ଏବଂ ଏତେ ଡେରି ଯାଏ ରହି ଯାଇଥିବା ପାଇଁ ଦୁଃଖ ପ୍ରକାଶ ମଧ୍ୟ କଲା । ସେ କହିଲା ଯେ ତାର କାମ ବିଷୟରେ ଗପିବାର ଆନନ୍ଦ ପାଇବାକୁ ତାକୁ ଖୁବ୍ କମ୍ ସୁବିଧା ମିଳିଥାଏ । ମୋ ପରି ବୁଦ୍ଧିମାନ ଶ୍ରୋତା ସେ ପ୍ରାୟ ପାଏ ନାହିଁ, ଆଉ ଫିଟମତ ବୈଜ୍ଞାନିକମାନଙ୍କ ସହିତ ସେ ପ୍ରାୟ ମିଶେ ନାହିଁ । ଏହାର କାରଣ ସେ ବୁଝେଇ ଦେଲା, "ତାଙ୍କ ଭିତରେ ଏପରି କ୍ଷୁଦ୍ର ମନୋଭାବ ପୂରିରହିଛି, ଏତେ ଷଡ଼ଯନ୍ତ୍ର ଚାଲିଛି ! ବାସ୍ତବିକ୍, କେହି ଯଦି ଗୋଟିଏ ଚମତ୍କାର ଭାବ—କୌଣସି ନୂତନ ଉର୍ବର ପ୍ରଣାଳୀ ଲାଭ କଲା ତ......ଅବଶ୍ୟ ମୁଁ ନିନ୍ଦା କରିବାକୁ ଚାହେଁ ନାହିଁ, କିନ୍ତୁ—"

ମୁଁ ବରାବର ଆବେଗ ଉପରେ କାର୍ଯ୍ୟ କରିଥାଏ । ତେଣୁ ତାଠାରେ ମୁଁ ଯେଉଁ ପ୍ରସ୍ତାବ କଲି ହୁଏ ତ ତାର ଆଗ ପଛ ବିଚାର ନ ଥିଲା । କିନ୍ତୁ ତୁମେ ଜାଣ, ମୁଁ ନାଟକ ଲେଖିବାକୁ ବସି ଲଞ୍ଜେନୋଠାରେ ଚଉଦ ଦିନ ପର୍ଯ୍ୟନ୍ତ ନିଃସଙ୍ଗ ଭାବରେ ରହିଥିଲି; ତା ଛଡ଼ା ତାର ଭ୍ରମଣରେ ବାଧା ଦେଇଥିବାରୁ ସେ ପର୍ଯ୍ୟନ୍ତ ମୋ ମନରେ ଅନୁତାପ ରହିଥିଲା । ମୁଁ କହିଲି, "ଆଚ୍ଛା, ମୁଁ ଆପଣଙ୍କର ଯେଉଁ ଅଭ୍ୟାସଟା ଭାଙ୍ଗିଦେଲି ତା ବଦଳରେ ଏଇ ନୂତନ ଅଭ୍ୟାସଟା କଲେ କେମିତି ହୁଅନ୍ତା ? ଅବଶ୍ୟ ବଙ୍ଗଳା ବିଷୟରେ ଆମେ ନିଷ୍ପତ୍ତି କରିବା ପର୍ଯ୍ୟନ୍ତ । ଆପଣଙ୍କ କାମ କଥା ଆପଣ ମନେ ମନେ ଆଲୋଚନା କରିବାକୁ ଚାହାନ୍ତି ତ । ଏ ପର୍ଯ୍ୟନ୍ତ

ଶ୍ରାନ୍ତରୁ ଟିକେ ବିଶ୍ରାମ ମିଳିବ । ତେଣୁ ମୁଁ ଇଙ୍ଗିତରେ ଜାଣିବାକୁ ଚେଷ୍ଟା କଲି ।

ସେ ଅବଶ୍ୟ ଜଣାଇବାକୁ ଖୁବ୍ ପ୍ରସ୍ତୁତ ଥିଲା । ବାସ୍ତବିକ ସେ ଥରେ କହିବାକୁ ଆରମ୍ଭ କଲାପରି କଥାବାର୍ତ୍ତା ସମ୍ପୂର୍ଣ୍ଣ ଏକପାଖିଆ ହୋଇଗଲା । ସେ ଏପରି ଭାବରେ ତା'ର ବକ୍ତବ୍ୟ କହିଚାଲିଲା ଯେପରିକି କଥାଗୁଡ଼ିକ ଅନେକ ଦିନରୁ ତା ପେଟ ଭିତରୁ ଉଚ୍ଛୁଳିବାକୁ ଚାହୁଁଥିଲା; ଯେପରିକି ସେ ଅନେକ ଥର କଥାଗୁଡ଼ିକ ମନେ ମନେ ଆବୃତ୍ତି କରିସାରିଥିଲା । ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ସେ ଗପିଲା । ସ୍ୱୀକାର କରିବାକୁ ହେଉଛି ହେ ତା'ର ବକ୍ତୃତା ମୋ ପକ୍ଷରେ କାଲି ଆଗରେ ମୂଳା ଗୁଡ଼େଇବା ପରି ଲାଗିଲା । କିନ୍ତୁ ଏହା ସତ୍ତ୍ୱେ ଆପଣାର ନିର୍ଦ୍ଧାରିତ କାମରେ ଅବହେଳା କଲେ ଯେଉଁ ମଜା ଟିକକ ମିଳେ ତାହା ମତେ ମିଳିଥିଲା । ତା'ର ପ୍ରଥମ ଦିନର ବକ୍ତୃତାରୁ ସେ ଯେ କି କାମରେ ବ୍ୟାପୃତ ଥିଲା ଏ ବିଷୟରେ ମୁଁ ଖୁବ୍ କମ ଧାରଣା କରି ପାରିଲି । ତାର ବକ୍ତୃତାର ଅଧେ ତ କେବଳ ବୈଜ୍ଞାନିକ ଶବ୍ଦ ଯାହାକି ମୋର ଜ୍ଞାନର ସମ୍ପୂର୍ଣ୍ଣ ବାହାରେ; ତା ଛଡ଼ା, ତାର କହିବା ଅନୁସାରେ, କେତୋଟି ବିଷୟ ସେ ମୌଳିକ ଗଣିତ ସାହାଯ୍ୟରେ ବ୍ୟାଖ୍ୟା କରିଦେଲା । ଏହି ବ୍ୟାଖ୍ୟା ସେ ଗୋଟିଏ କପିଙ୍ଗ୍ ପେନସିଲ ସାହାଯ୍ୟରେ ଲଫାପା ଉପରେ ଏପରି ଭାବରେ ଗଣନା କରି ବୁଝାଇବାକୁ ଲାଗିଲା ଯେ ବୁଝିବାର ଛଳନା କରିବା ମଧ୍ୟ ମୋ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା । ମୁଁ କେବଳ "ହଁ, ଠିକ୍ କଥା" "କହିଯାଅ" ଇତ୍ୟାଦି ଧ୍ୱନି କରି ଚାଲିଲି । ଯାହାହେଉ ମୁଁ ଯେତିକି ବୁଝିପାରିଲି ସେଥିରୁ ମୋର ବିଶ୍ୱାସ ଜନ୍ମିଲା ଯେ ସେ ଆବିଷ୍କାର ନେଇ ଖେଳ ଖେଳୁଥିବା ସାମାନ୍ୟ ଖାମଖିଆଲି ଲୋକ ନୁହେଁ । ତାର ଚେହେରାଟା ସେଇ ରକମର ଥିଲେ ମଧ୍ୟ, ତା ଭିତରେ ଏପରି ଗୋଟିଏ ଶକ୍ତିର ପରିଚୟ ମିଳୁଥିଲା ଯାହା ଜଣେଇ ଦେଉଥିଲା ଯେ ଲୋକଟା ବାକେ ଖାମଖିଆଲି ହେବା ଅସମ୍ଭବ । କିନ୍ତୁ ଯାହା ହୋଇଥାଉନା କାହିଁକି ଏହା ନିଶ୍ଚୟ କୌଣସି ଯାନ୍ତ୍ରିକ କ୍ଷମତାଶାଳୀ ବସ୍ତୁ । ତାର ଗୋଟିଏ ଶ୍ରେଷ୍ଠ କାରଖାନା-ଘର ଏବଂ ତିନିଜଣ ସହକାରୀ ଅଛନ୍ତି ବୋଲି ସେ

କହିଲି । ସେମାନେ ଆଗେ ଠିକା ବଢ଼େଇ ଥିଲେ; କିନ୍ତୁ ସେ ସେମାନଙ୍କୁ ତାଲିମ କରି ନେଇଥିଲା । ଏହି ଛୋଟିଆ କାରିଖାନାରୁ ଆରମ୍ଭ କରି ତାର ସର୍ବସ୍ୱ ଲାଭ କରିବା ଭଳିଆ ଅବସ୍ଥା ଆସିବାକୁ କେତେ ସମୟ ବା ଲାଗିବ ? ସେ ତାର କାରଖାନା ଦେଖିବାପାଇଁ ମତେ ନିମନ୍ତ୍ରଣ କଲା । ମୁଁ ତତ୍‌କ୍ଷଣାତ୍ ରାଜି ହୋଇଗଲି ଏବଂ ମୁଁ ତାହା ଦେଖିବାକୁ ଯେ ନିତାନ୍ତ ବ୍ୟଗ୍ର, ଏହି କଥାଟା ଉପରେ ଜୋର ଦେଇ କହିଲି । ବଙ୍ଗଳା ବଦଳାର ପ୍ରଶ୍ନଟା ବେଶ୍ ସୁବିଧାରେ ସ୍ଥଗିତ ରହିଗଲା ।

ଶେଷରେ ସେ ଯିବାପାଇଁ ବାହାରିଲା ଏବଂ ଏତେ ଡେରିଯାଏ ରହି ଯାଇଥିବା ପାଇଁ ଦୁଃଖ ପ୍ରକାଶ ମଧ୍ୟ କଲା । ସେ କହିଲା ଯେ ତାର କାମ ବିଷୟରେ ଗପିବାର ଆନନ୍ଦ ପାଇବାକୁ ତାକୁ ଖୁବ୍ କମ୍ ସୁବିଧା ମିଳିଥାଏ । ମୋ ପରି ବୁଦ୍ଧିମାନ ଶ୍ରୋତା ସେ ପ୍ରାୟ ପାଏ ନାହିଁ, ଆଉ ଖାତମତ ବୈଜ୍ଞାନିକମାନଙ୍କ ସହିତ ସେ ପ୍ରାୟ ମିଶେ ନାହିଁ । ଏହାର କାରଣ ସେ ବୁଝେଇ ଦେଲା, "ତାଙ୍କ ଭିତରେ ଏପରି କ୍ଷୁଦ୍ର ମନୋଭାବ ପୂରିରହିଛି, ଏତେ ଷଡ଼ଯନ୍ତ୍ର ଚାଲିଛି ! ବାସ୍ତବିକ୍, କେହି ଯଦି ଗୋଟିଏ ଚମତ୍କାର ଭାବ—କୌଣସି ନୂତନ ଢଙ୍ଗର ପ୍ରଣାଳୀ ଲାଭ କଲା ତ......ଅବଶ୍ୟ ମୁଁ ନିନ୍ଦା କରିବାକୁ ଚାହେଁ ନାହିଁ, କିନ୍ତୁ—"

ମୁଁ ବରାବର ଆବେଗ ଉପରେ କାର୍ଯ୍ୟ କରିଥାଏ । ତୋଠାରେ ମୁଁ ଯେଉଁ ପ୍ରସ୍ତାବ କଲି ହୁଏ ତ ତାର ଆଗ ପଛ ବିଚାର ନ ଥିଲି । କିନ୍ତୁ ତୁମେ ଜାଣ, ମୁଁ ନାଟକ ଲେଖିବାକୁ ବସି ଲଣ୍ଟନେଠାରେ ଚଉଦ ଦିନ ପର୍ଯ୍ୟନ୍ତ ନିଃସଙ୍ଗ ଭାବରେ ରହିଥିଲି; ତା ଛଡ଼ା ତାର ଭ୍ରମଣରେ ବାଧା ଦେଇଥିବାରୁ ସେ ପର୍ଯ୍ୟନ୍ତ ମୋ ମନରେ ଅନୁତାପ ରହିଥିଲା । ମୁଁ କହିଲି, "ଆଚ୍ଛା, ମୁଁ ଆପଣଙ୍କର ଯେଉଁ ଅଭ୍ୟାସଟା ଭାଙ୍ଗିଦେଲି ତା ବଦଳରେ ଏଇ ନୂତନ ଅଭ୍ୟାସଟା କଲେ କେମିତି ହୁଅନ୍ତା ? ଅବଶ୍ୟ ବଙ୍ଗଳା ବିଷୟରେ ଆମେ ନିଷ୍ପତ୍ତି କରିବା ପର୍ଯ୍ୟନ୍ତ । ଆପଣଙ୍କ କାମ କଥା ଆପଣ ମନେ ମନେ ଆଲୋଚନା କରିବାକୁ ଚାହାନ୍ତି ତ । ଏ ପର୍ଯ୍ୟନ୍ତ

ତାହା ଆପଣ ସନ୍ଧ୍ୟାକାଳୀନ ଭ୍ରମଣ ସମୟରେ କରୁଥିଲେ । ଦୁର୍ଭାଗ୍ୟ-ବଶତଃ ତାର ଇତି ହୋଇଛି—ପୂର୍ବର ବ୍ୟବସ୍ଥା ଆପଣ ଆଉ ଫେରି ପାଇ-ପାରିନାହାନ୍ତି; କିନ୍ତୁ ଏଠାକୁ ଆସି ଆପଣଙ୍କର କାର୍ଯ୍ୟ ବିଷୟରେ ମୋ ସହିତ ଗଳ୍ପ କଲେ ତ ହୁଅନ୍ତା । ମତେ ଗୋଟିଏ କାନ୍ଥ ରୂପେ ବ୍ୟବହାର କରନ୍ତୁ, ଆପଣଙ୍କର ଭାବନା ସବୁ ତା ଉପରକୁ ଫୋପାଡ଼ି ପୁଣି ଧରି ପାରିବେ । ଆପଣଙ୍କର ଭାବକୁ ପ୍ରେରିଇବା ପାଇଁ ମୋର ଯଥେଷ୍ଟ ଜ୍ଞାନ ନାହିଁ, ଏହା ସତ—ଆଉ ମୁଁ କୌଣସି ବୈଜ୍ଞାନିକଙ୍କୁ ବି ଜାଣେ ନାହିଁ—"

ମୁଁ ଅଟକି ଗଲି । ସେ ବିଷୟଟି ବିଚାର କରି ଦେଖୁଥିଲା । କଥାଟା ତା ମନକୁ ପାଇଲା ବୋଧହୁଏ । ସେ କହିଲା, "କିନ୍ତୁ ମୋର ଭୟ, ମୁଁ ଆପଣଙ୍କୁ ବିରକ୍ତ କରିବି ।"

"ଆପଣ ଭାବୁଛନ୍ତି ମୋର ମୋଟେ ବୁଝିବାର ଶକ୍ତି ନାହିଁ ।"

"ଆହା, ତା ନୁହେଁ । କିନ୍ତୁ ବୈଜ୍ଞାନିକ ତତ୍ତ୍ୱ—"

"ଯାହା ହେଉ, ଆଜି ତ ଆପଣଙ୍କର ବକ୍ତୃତା ମୋର ଖୁବ ଚିତ୍ତାକର୍ଷକ ହୋଇଛି ।"

"ଅବଶ୍ୟ ଏହାଦ୍ୱାରା ମୋର ଅନେକ ସୁବିଧା ହେବ । କୌଣସି ବିଷୟ ବୁଝାଇବା ଦ୍ୱାରା ଯେପରି ନିଜର ଚିନ୍ତାଧାରା ପରିଷ୍କୃତ ହୁଏ ଅନ୍ୟ କାହିଁରେ ସେପରି ହୁଏନା । ଏପର୍ଯ୍ୟନ୍ତ—"

"ଆଜ୍ଞା, ସେ କଥା ଆଉ କାହିଁକି କହୁଛନ୍ତି ।"

"କିନ୍ତୁ ପ୍ରକୃତରେ ଆପଣ ଏଥିପାଇଁ ସମୟ ଦେଇପାରିବେ ତ ?"

ମୁଁ ଖୁବ୍ ନିର୍ଭରତା ସହିତ ଜବାବ ଦେଲି, "କର୍ମ ପରିବର୍ତ୍ତନ ଅପେକ୍ଷା ଉତ୍କୃଷ୍ଟ ବିଶ୍ରାମ ଆଉ ନାହିଁ ।"

ସେଇଠି ବ୍ୟାପାରଟି ଶେଷ ହେଲା । ବାରଣ୍ଡାର ପାହାଚ ପାଖରେ ସେ ଫେରି ଗୁହାଁଲା । କହିଲା, "ମୁଁ ତ ଆପଣଙ୍କ ପାଖରେ ଆଗରୁ ଖୁବ୍ ଋଣୀ ହୋଇ ରହିଛି ।"

ମୁଁ ଗୋଟିଏ ଜିଜ୍ଞାସାସୂଚକ ଶବ୍ଦ କଲି ।

ସେ ବୁଝେଇ ଦେଲା, "ମୋର ସେଇ ହାସ୍ୟାସ୍ପଦ ଗୁଣୁ ଗୁଣୁ କରିବାର ଅଭ୍ୟାସ ଆପଣ ସମ୍ପୂର୍ଣ୍ଣ ଆରୋଗ୍ୟ କରି ଦେଇଛନ୍ତି ।"

ମୁଁ ତାର କୌଣସି ସେବା କରିବାକୁ ସକ୍ଷମ ହେବା ଯୋଗୁଁ ସେ ଖୁବ୍ ଆନନ୍ଦିତ, ଏଇ ରକମ କଣ ଗୋଟାଏ ମୁଁ କହିଲି । ସେ ଫେରିଗଲା ।

ବୋଧହୁଏ ଆମର କଥାବାର୍ତ୍ତା ସନ୍ଧାନ ଚିନ୍ତାରେ ସେ ତତ୍‌କ୍ଷଣାତ୍ ମଗ୍ନ ହୋଇ ପଡ଼ିଥିବ । କାରଣ ତାର ହାତ ପୁଣି ଆଗପରି ଭଙ୍ଗୀ କରିବାକୁ ଆରମ୍ଭ କଲା । ଆଉ, 'ଜ୍ଞୁ-ଜ୍ଞୁ' ଶବ୍ଦର କ୍ଷୀଣଧ୍ୱନି ମୋ ପାଖକୁ ପବନରେ ଭାସି ଆସିଲା.....

ଯାହାହେଉ, ସେଥିପାଇଁ ମୋ ମୁଣ୍ଡବଥା କାହିଁକି ? .....

ସେ ତା ପରଦିନ, ଏବଂ ପୁଣି ତା ପରଦିନ ଆସିଲା । ପଦାର୍ଥବିଜ୍ଞାନ ବିଷୟରେ ଦୁଇଟି ବକ୍ତୃତା ଶୁଣେଇ ଦେଇଗଲା । ସେଥିରେ ଆଉ ଉଭୟଙ୍କର ଲାଭ । "ଇଥର", "ବଳ ନଳୀ" ଏବଂ "ଅଭିକର୍ଷୀ ସ୍ଥୈତିକ ଶକ୍ତି" ଇତ୍ୟାଦି ବିଷୟରେ ସେ ଏପରି ଭାବରେ ଗପି ଚାଲିଲା ଯେପରିକି କଥାଗୁଡ଼ାକ ଖୁବ୍ ବୋଧଗମ୍ୟ ହେଉଛି । ଆଉ ମୁଁ ଚଉକିରେ ବସି ତାକୁ କୁହାଇବା ଲାଗି 'ହଁ, ହଁ', 'କହିଯାଅ', ମୁଁ ବେଶ ବୁଝି ପାରୁଛି ଇତ୍ୟାଦି କହିଚାଲିଲି । ବିଷୟଟି ପ୍ରକୃତରେ ଅତ୍ୟନ୍ତ ଦୁରୂହ ଥିଲା, କିନ୍ତୁ ମୁଁ ଯେ ତାହା ବୁଝିପାରୁ ନାହିଁ ଏ କଥା ବୋଧହୁଏ ସେ ଆଦୌ ସନ୍ଦେହ କରୁ ନ ଥିଲା । ବେଳେ ବେଳେ ମୋ ମନରେ ସଂଶୟ ଆସୁଥାଏ, ମୁଁ ମୋର ସମୟର ଅପବ୍ୟବହାର କରୁ ନାହିଁ ତ ? ଯାହାହେଉ ସେହି ଅଭିଶପ୍ତ ନାଟକ ଲେଖାରୁ ତ ବିଶ୍ରାମ ମିଳିଥିଲା । ମଝିରେ ମଝିରେ କୌଣସି କୌଣସି ବିଷୟ ମୋ ମୁଣ୍ଡରେ ଟିକେ ଅଧେ ପଶେ, କିନ୍ତୁ ସମ୍ପୂର୍ଣ୍ଣ ବୁଝିବା ପୂର୍ବରୁ ପୁଣି ସବୁ ଗୋଳମାଳିଆ ହୋଇଯାଏ । କେତେବେଳେ ବା ମୁଁ ଏକାବେଳକେ ଅମନୋଯୋଗୀ ହୋଇପଡ଼େ, ଏବଂ ସବୁ ଗୁଡ଼ାକୁଡ଼ ଚୁପ୍‌ଚାପ୍ ବସି ତା

ମୁହଁକୁ ଅନାଇ ରହେ ଆଉ ଭାବେ, 'ଏ ସବୁ ବାଜେ କଥା ଗୁଡ଼ା ଏଇ ଲୋକଟାକୁ ଗୋଟିଏ ଭଲ ଉପନ୍ୟାସର ପ୍ରଧାନ ଚରିତ୍ର ରୂପେ ଗଢ଼ିବାକୁ ବସିଲେ ତ ମନ୍ଦ ହୁଅନ୍ତା ନାହିଁ । ତା ପରେ ହୁଏ ତ ମୁଁ ପୁଣି ତାର ବାସ୍ତବତାର ଖିଅ ଟିକେ ଧରିପାରେ ।

ସୁବିଧା ପାଇବା ମାତ୍ରକେ ତାର ବସା ଦେଖିବାକୁ ମୁଁ ଗଲି । ଘରଟା ଥିଲା ଖୁବ୍ ବଡ଼ ଆଉ ଆସବାବ ପତ୍ର ବଡ଼ ଅଯତ୍ନରେ ରଖାଯାଇଥିଲା । ତାର ତିନିଜଣ ସହକାରୀଙ୍କୁ ଛାଡ଼ିଦେଲେ ସେଠାରେ ଆଉ ଚାକର ବାକର ନ ଥିଲେ । ତାର ଖାଦ୍ୟ ଆଉ ବ୍ୟକ୍ତିଗତ ଜୀବନ ପ୍ରଣାଳୀରେ ଥିଲା ଦାର୍ଶନିକ ସୁଲଭ ସରଳତା । ସେ କେବେ ମଦ୍ୟ କି ଆମିଷ ସ୍ପର୍ଶ କରୁ ନ ଥିଲା, ଏବଂ ଯୁକ୍ତିଯୁକ୍ତ ଶୃଙ୍ଖଳା ସହିତ ଚଳୁଥିଲା । ତାର ଯନ୍ତ୍ରପାତି ଦେଖି ମୋର ଅନେକ ସଂଶୟର ସମାଧାନ ହୋଇଗଲା । ଭିତରୁ ଚଟାଣ ଯାଏ ସମସ୍ତ କାର୍ଯ୍ୟ ତତ୍ପରତାର ଆଭାସ ଦେଉଥିଲା । ସେହି ସୁଦୂର ଗ୍ରାମରେ ଏହା ଦେଖିବାଟା ଥିଲା ଆଶ୍ଚର୍ଯ୍ୟର ବିଷୟ । ତଳମହଲର କୋଠରୀମାନଙ୍କରେ ବେଞ୍ଚ ଆଉ ଯନ୍ତ୍ରପାତି ଜମା ହୋଇଥିଲା । ଆଉ ପଛଘର ଓ ବାସନମଜା କୁଣ୍ଡ ସୁନ୍ଦର ଅଗ୍ନିକୁଣ୍ଡରେ ପରିବର୍ତ୍ତିତ ହୋଇଥିଲା । ମାଟିତଳ କୋଠରୀରେ ଡାଇନେମା ଖଞ୍ଜା ଯାଇଥିଲା, ଆଉ ବଗିଚାରେ ରଖାଯାଇଥିଲା ଗ୍ୟାସପରିମାପକ ଯନ୍ତ୍ର । ସେ ମତେ ସବୁ ଜିନିଷ ଏପରି ନିର୍ଭରଶୀଳ ଆବେଗ ସହିତ ଦେଖାଇଲା, ଯାହାକି ଅତିବେଶି ନିଃସଙ୍ଗ ଭାବରେ ରହୁଥିବା ଲୋକଠାରେହିଁ ସମ୍ଭବ । ତାର ନିଃସଙ୍ଗତା ବର୍ତ୍ତମାନ ରୂପ ନେଇଥିଲା ଅତ୍ୟଧିକ ପ୍ରତ୍ୟୟରେ ଏବଂ ମୋର ସୌଭାଗ୍ୟ ଯେ ମୁଁ ତାହା ଲାଭ କରିପାରିଥିଲି ।

ସହକାରୀ ତିନିଜଣ ଯେଉଁ "ଖିଚୁଡ଼ି କାମ କଲା ବାଲା" ଶ୍ରେଣୀରୁ ଆସିଥିଲେ, ସେମାନେ ଥିଲେ ତାର ଉପଯୁକ୍ତ ନମୁନା । ସେମାନେ ନିର୍ବୁଦ୍ଧିଆ ହେଲେ ବି ବଶ୍ୟତାଶୀଳ ଥିଲେ; ଆଉ କର୍ମୋତ୍ସାହୀ, ବିନୀତ ଓ ବଳିଷ୍ଠ ଥିଲେ । ସ୍ପେରଗସ ନାମକ ଯେଉଁ ଲୋକଟା ରନ୍ଧାବଢ଼ା ଓ ଧାତୁକାର୍ଯ୍ୟ କରୁଥିଲା, ସେ ଆଗେ ଥିଲା ଜଣେ ନାବିକ, ଦ୍ୱିତୀୟ ଲୋକ ବୀଚସ୍ ଥିଲା ବଢ଼େଇ; ଏବଂ ତୃତୀୟ ଜଣକ ଆଗେ ଥିଲା ଠିକାମାଲି, ବର୍ତ୍ତମାନ ସାଧାରଣ-ସହକାରୀ । ସେମାନେ

ସାମାନ୍ୟ ଶ୍ରମିକର କାର୍ଯ୍ୟ କରୁଥିଲେ, ଯାହା ବୁଦ୍ଧିର କାର୍ଯ୍ୟ, ତାହା ସବୁ କେଭର କରୁଥିଲା । ମୋର ଝାପସା ଜ୍ଞାନ ସହିତ ତୁଳନା କରି କହିଲେ ମଧ୍ୟ ସେମାନଙ୍କୁ ବୁଝାଯିବ ସମ୍ପୂର୍ଣ୍ଣ ଅଙ୍କ ।

ବର୍ତ୍ତମାନ ଗବେଷଣାର ସ୍ୱରୂପ ବିଷୟରେ କିଛି କହିବାକୁ ହେବ । କିନ୍ତୁ ଦୁଃଖର କଥା, ଏଇଠି ଆସୁଛି ଅସଲ ଅଡୁଆ । ମୁଁ ବିଜ୍ଞାନବିତ୍ ନୁହେଁ ଏବଂ ଯଦି କେଭରର ଉଚ୍ଚ ବୈଜ୍ଞାନିକ ଭାଷାରେ ତାର ଗବେଷଣାର ଉଦ୍ଦେଶ୍ୟ ବିଷୟରେ ମୁଁ କିଛି କହିବାକୁ ଯିବି ତାହାହେଲେ କେବଳ ପାଠକଙ୍କୁ ନୁହେଁ ନିଜକୁ ମଧ୍ୟ ମୁଁ ଗୋଲ୍‌କ ଧନ୍ଦାରେ ପୂରେଇବି । ଏବଂ ମୁଁ ନିଶ୍ଚୟ କୌଣସି ଭୁଲ କରି ବସିବି, ଏବଂ ତଦ୍ଦ୍ୱାରା ଦେଶର ପ୍ରତ୍ୟେକ ଗାଣିତିକ ପଦାର୍ଥ ବିଜ୍ଞାନର ଛାତ୍ରଙ୍କ ଦୃଷ୍ଟିରେ ମୁଁ ଉପହାସର ପାତ୍ର ହେବି । ତେଣୁ ମୁଁ ଭାବୁଛି, ମୋ ପକ୍ଷରେ ପ୍ରକୃଷ୍ଟ ଉପାୟ ହେଉଛି ମୋର ନିଜର ଦେଶିକ ଭାଷାରେ ଏ ବିଷୟରେ ଯେତିକି ବୁଝିପାରିଲି ତାହା ବ୍ୟକ୍ତ କରିବା । ଯେଉଁ ଜ୍ଞାନ ପ୍ରତି ମୋର କୌଣସି ଦାବୀ ନାହିଁ ସେହି ଜ୍ଞାନର ମୁଖା ପିନ୍ଧିବାକୁ ମୁଁ ଚେଷ୍ଟା କରିବି ନାହିଁ ।

କେଭରର ଅନୁସନ୍ଧାନର ଲକ୍ଷ୍ୟ ଥିଲା ଏପରି କୌଣସି ବସ୍ତୁ ଯାହାକି "ଅସ୍ୱଚ୍ଛ" ହେବ—ସେ ବୋଧହୁଏ ଅନ୍ୟ କୌଣସି ଶବ୍ଦ ବ୍ୟବହାର କରିଥିଲା, ତାହା ମୁଁ ଭୁଲି ଗଲିଣି, କିନ୍ତୁ "ଅସ୍ୱଚ୍ଛ" ଦ୍ୱାରା ଜିନିଷଟି ବୁଝା-ଯାଇପାରିବ—ତାହା ସମସ୍ତ ପ୍ରକାର ବିକିରଣଶୀଳ ଶକ୍ତି ପ୍ରତି "ଅସ୍ୱଚ୍ଛ" ହେବ । ସେ ମତେ ବୁଝେଇ ଦେଲା, "ବିକୀରଣଶୀଳ ଶକ୍ତି" ହେଉଛି ଉତ୍ତାପ ବା ଆଲୋକ ପରି ଜିନିଷ, କିମ୍ବା ତାହା କେତେ ବର୍ଷ ତଳର ସେହି ଅତି ଆଲୋକିତ ରୋଣ୍ଟଜେନ୍ ରଶ୍ମି, କିମ୍ବା ମାର୍କୋନିଙ୍କର ବୈଦ୍ୟୁତିକ ତରଙ୍ଗ କିମ୍ବା ମାଧ୍ୟାକର୍ଷଣ ଶକ୍ତି । ସେ କହିଲା ଯେ ଏ ସମସ୍ତ ଜିନିଷ କେନ୍ଦ୍ରରୁ ବିକୀର୍ଣ୍ଣ ହୋଇ ଦୂରବର୍ତ୍ତୀ ଜିନିଷମାନଙ୍କ ଉପରେ କ୍ରିୟା କରନ୍ତି । ସେଥିରୁ ଆସିଛି "ବିକୀରଣଶୀଳ ଶକ୍ତି" ନାମ । ପ୍ରାୟ ସବୁ ପଦାର୍ଥ କୌଣସି ନା କୌଣସି ପ୍ରକାରର "ବିକୀରଣଶୀଳ ଶକ୍ତି" ପ୍ରତି ଅସ୍ୱଚ୍ଛ ଅଟନ୍ତି । ଉଦାହରଣ ସ୍ୱରୂପ

କାଚ ଆଲୋକ ପ୍ରତି ସ୍ୱଚ୍ଛ ଅଟେ, କିନ୍ତୁ ଉତ୍ତାପ ପ୍ରତି ଏହା ଅନେକ କମ "ସ୍ୱଚ୍ଛ" । ତେଣୁ ଏହା ଅଗ୍ନି-ପର୍ଦ୍ଦା ରୂପେ ବ୍ୟବହୃତ ହୁଏ ଏବଂ ଫିଟିକିରି ଆଲୋକ ପ୍ରତି ସ୍ୱଚ୍ଛ ଅଟେ, କିନ୍ତୁ ଉତ୍ତାପକୁ ସମ୍ପୂର୍ଣ୍ଣ ରୂପେ ଅବରୋଧ କରେ । ଅନ୍ୟ ପକ୍ଷରେ, କାର୍ବନ୍ ଡାଇସଲ୍ଫାଇଡ୍ ଓ ଆଇଓଡ଼ିନ୍‌ର ଦ୍ରବଣ ଆଲୋକକୁ ସମ୍ପୂର୍ଣ୍ଣରୂପେ ଅବରୋଧ କରେ ; କିନ୍ତୁ ଏହା ଉତ୍ତାପ ପ୍ରତି ସ୍ୱଚ୍ଛ ଅଟେ । ଏହା ଅଗ୍ନିକୁ ତୁମଠାରୁ ଆଡ଼ୁଆଳ କରିପାରିବ, କିନ୍ତୁ ତାର ସମସ୍ତ ଉତ୍ତାପ ତୁମକୁ ଯୋଗାଇ ଦେବ । ଧାତୁ ସବୁ କେବଳ ଉତ୍ତାପ ଓ ଆଲୋକ ପ୍ରତି ନୁହନ୍ତି, ବୈଦ୍ୟୁତିକ ଶକ୍ତି ପ୍ରତି ମଧ୍ୟ ଅସ୍ୱଚ୍ଛ ଅଟନ୍ତି । କିନ୍ତୁ ଏହି ଶକ୍ତି ଆଇଓଡ଼ିନ୍-ଦ୍ରବ ଓ କାଚ ମଧ୍ୟରେ ଗତି କରିପାରେ ଯେପରିକି କୌଣସି ବାଧାହିଁ ନାହିଁ । ଇତ୍ୟାଦି, ଇତ୍ୟାଦି ।

ସମସ୍ତ ପରିଚିତ ପଦାର୍ଥ ମାଧ୍ୟାକର୍ଷଣ ଶକ୍ତି ପ୍ରତି "ସ୍ୱଚ୍ଛ" ଅଟନ୍ତି । ତୁମେ ଆଲୋକ ଓ ଉତ୍ତାପକୁ, କିମ୍ବା ପୃଥିବୀର ଚାପକୁ, କିମ୍ବା ସୂର୍ଯ୍ୟର ବୈଦ୍ୟୁତିକ ପ୍ରଭାବକୁ କୌଣସି ଜିନିଷଠାରୁ ବିଚ୍ଛିନ୍ନ କରିବାପାଇଁ ଅନେକ ରକମର ଆବରଣ ବ୍ୟବହାର କରିପାରିବ; ତୁମେ ଧାତୁପର୍ଦ୍ଦାଦ୍ୱାରା କୌଣସି ଜିନିଷକୁ ମାର୍କୋନି-ରଶ୍ମିଠାରୁ ଘୋଡ଼ାଇ ପାରିବ; କିନ୍ତୁ ସୂର୍ଯ୍ୟ ଓ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିକୁ ନିଷ୍କ୍ରିୟ କରିବା ପାଇଁ କୌଣସି ଜିନିଷ ନାହିଁ । କିନ୍ତୁ କାହିଁକି ଯେ ଏପରି କୌଣସି ଜିନିଷ ନ ରହିବ ଏହା କହିବା କଠିନ । କେଭର୍ ସ୍ୱୀକାର କରିପାରିଲେ ନାହିଁ ଯେ ଏପରି କୌଣସି ଜିନିଷର ସତ୍ତା ରହିବା ଅସମ୍ଭବ । ମୁଁ ବା କିପରି ତା କଥାର ପ୍ରତିବାଦ କରନ୍ତି । ଏପରି ସମ୍ଭାବନାର କଥା ତ ମୁଁ ଆଗରୁ କେବେ ଭାବି ନ ଥିଲି । ଏପରି କୌଣସି ପଦାର୍ଥର ସମ୍ଭାବନା ଯେ ଅଛି, ଏବଂ ସେହି ପଦାର୍ଥକୁ ଯେ କେତେଗୁଡ଼ିଏ ବ୍ୟବସ୍ଥା ପୂରଣକରିବାକୁ ପଡ଼ିବ, ଏ ବିଷୟରେ ସେ କାଗଜରେ ଗଣନା କରି ଯାହା ଦେଖାଇଦେଲେ ତାହା ଅବଶ୍ୟ ଲର୍ଡ଼ କେଲଭିନ୍ କିମ୍ବା ଅଧ୍ୟାପକ ଲଜ୍ କିମ୍ବା ଅଧ୍ୟାପକ କାର୍ଲ ପିୟରସନ୍ ପ୍ରଭୃତି ବିଜ୍ଞାନବିତ୍‌ମାନେ ବୁଝିପାରିଥାନ୍ତେ । କିନ୍ତୁ ସେଥିରେ ମୋର ଏକାଦମ ମୁଣ୍ଡ ଗୋଳେଇଗଲା । ତାର ଯୁକ୍ତି ଥିଲା ଅତି ବିସ୍ମୟଜନକ । କିନ୍ତୁ ତଦ୍ଦ୍ୱାରା ମୁଁ ସେତେବେଳେ ଯେତେ ବିସ୍ମିତ ଓ ଅଭିଭୂତ ହେଲେ ମଧ୍ୟ

ବର୍ତ୍ତମାନ ସେହି ଯୁକ୍ତିକୁ ଏଠାରେ ପୁନରୁଦ୍ଧାର କରିବା ମୋ ପକ୍ଷରେ ଅସମ୍ଭବ । ସେତେବେଳେ ମୁଁ ତାଙ୍କ ସବୁ କଥାରେ "ହଁ", "କହିଯାଅ" ଇତ୍ୟାଦି ମାତ୍ର ଦେଉଥିଲି । ଏହି କାହାଣୀ ସମ୍ପର୍କରେ ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ତାଙ୍କର ବିଶ୍ୱାସ ଥିଲା, ସେ କେତେଗୋଟି ଧାତୁ ଓ ଗୋଟିଏ ନୂତନ ମୌଳିକ ଦ୍ରବ୍ୟର ଜଟିଳ ସମିଶ୍ରଣ ଦ୍ୱାରା ମାଧ୍ୟାକର୍ଷଣ ଶକ୍ତି-ପ୍ରତିରୋଧୀ ଏହି ପଦାର୍ଥ ନିର୍ମାଣ କରିବାକୁ ସମର୍ଥ ହେବ । ଏହି ମୌଳିକ ଦ୍ରବ୍ୟର ନାମ ବୋଧହୁଏ 'ହେଲିୟମ୍' ; ଏହା ଲଣ୍ଡନଠାରୁ ମୋହର-ମରା ପ୍ରସ୍ତର ପାତ୍ରରେ ତା ପାଖକୁ ପଠାଯାଉଥିଲା । ଏହି ବିଷୟର ବିଶେଷ ବିବରଣୀ ନେଇ ସଂଶୟ ଉପୁଜୁଛି, କିନ୍ତୁ ମୁଁ ପ୍ରାୟ ନିଶ୍ଚିତ ଭାବରେ କହିପାରେ ଯେ ଯେଉଁ ଜିନିଷଟି ପ୍ରସ୍ତର ପାତ୍ରରେ ତା ପାଖକୁ ପଠାଯାଉଥିଲା ତାର ନାମ 'ହେଲିୟମ୍' । ଏହି ଜିନିଷଟି ଥିଲା ଗ୍ୟାସ୍ ଭଳିଆ ଓ ପାତଳା । ଆହା ସେତେବେଳେ ଯଦି ମୁଁ ତାଙ୍କର କଥାଗୁଡ଼ିକ ଟିପି ରଖିଥାନ୍ତି······

କିନ୍ତୁ ଭବିଷ୍ୟତର ଘଟଣା ଦୃଷ୍ଟିରୁ ସେ କଥାସବୁ ଲେଖିରଖିବାର ଆବଶ୍ୟକତା ଯେ ସେତେବେଳେ ଥିଲା ଏହା ବା ମୁଁ କିପରି ଜାଣନ୍ତି ?

ଯାହାର ଟିକିଏବି କଳ୍ପନା ଶକ୍ତି ଅଛି ସେ ଏହି ପଦାର୍ଥ ସାହାଯ୍ୟରେ ଯେ ଅନେକ ଅସାଧାରଣ କାର୍ଯ୍ୟ କରାଯାଇପାରେ ଏକଥା ବୁଝିପାରିବ; ତେଣୁ କେଭରର ଦୁର୍ବୋଧ ଭାଷା-କୁହୁଡ଼ି ମଧ୍ୟରୁ ମୁଁ ଯେତେବେଳେ ଏହି ସତ୍ୟଟି ସଂଗ୍ରହ କରିପାରିଲି, ସେତେବେଳେ ମୋ ମନରେ ଯେଉଁ ଉତ୍ତେଜନା ଜାତ ହେଲା ତାହା ବୁଝି ସେ କିଛିଟା ସହାନୁଭୂତି ପ୍ରକାଶ କରି ପାରିବ । ନାଟକରେ ହାସ୍ୟରସର ଅବତାରଣା ପାଇଁ ତାକୁ ବ୍ୟବହାର କରିବାର ଭାବନା ସେତେବେଳେ କୁଆଡ଼େ ଗଲା ? ମୋର ତ ଅନେକ ବେଳଯାଏ ବିଶ୍ୱାସ ବି ହେଲାନାହିଁ ଯେ ମୁଁ ତାର ବକ୍ତବ୍ୟକୁ ଠିକ୍ ରୂପେ ହୃଦ୍ବୋଧ କରି ପାରିପାରିଛି । ଅଭ, ମୁଁ ଏପରି କୌଣସି ପ୍ରଶ୍ନ କରିବାକୁ ଚେଷ୍ଟା କରୁ ନ ଥିଲି, ଯଦ୍ଦ୍ୱାରା କି ସେ ଅନୁମାନ କରି ପାରିବ, ତାର ପ୍ରତିପାଦନର ବ୍ୟାଖ୍ୟା

ଦ୍ୱାରା ସେ ଜଗତର ବିରାଟ ଦୁର୍ବୋଧତା ସୃଷ୍ଟି କରୁଛି । ମୁଁ ଏଠାରେ ସବୁକଥା ପ୍ରାଞ୍ଜଳ ଭାବରେ ବୁଝାଇ ପାରିନାହିଁ, ତେଣୁ ମୋର ବିବରଣୀରୁ ଏହି ଆଶ୍ଚର୍ଯ୍ୟ ପଦାର୍ଥଟି ପ୍ରକୃତରେ ତିଆରି ହୋଇପାରିବ ବୋଲି ମୋର ବିଶ୍ୱାସ କେତେଦୂର ଗଭୀର ଥିଲା ତାହା ଅନ୍ଦାଜ କରିବା କାହାରି ପକ୍ଷରେ ସମ୍ଭବ ନୁହେଁ । ସେହି କାରଣରୁ କାହାରି ସମ୍ପୂର୍ଣ୍ଣ ସହାନୁଭୂତି ମୁଁ ଆଶା କରୁ ନାହିଁ ।

ତାର ବଳ ଦେଖିବାକୁ ସିବାଦିନଠାରୁ ମୁଁ ବୋଧହୁଏ ଆଉ କେବେ ପୂର୍ବ ଘଣ୍ଟାକ ଲାଗି ମୋ ନାଟକ ପ୍ରତି ମନୋନିବେଶ କରିନାହିଁ । ମୋର କଳ୍ପନାଶକ୍ତିକୁ ସେତେବେଳେ ଅନ୍ୟ ଖୋରାକ ମିଳି ଯାଇଥିଲା । ଏହି ପଦାର୍ଥର ବିରାଟ ସମ୍ଭାବନାର କୌଣସି ଶେଷସୀମା ଥିଲାପରି ବୋଧ ହେଲାନାହିଁ; ଯେଉଁ ଦିଗରୁ ଭାବି ଦେଖିଲି ମୁଁ ଖାଲି ବିପ୍ଳବ ଆଉ ଅଲୌକିକ ଘଟଣା ଦେଖିବାକୁ ପାଇଲି । ଉଦାହରଣ ସ୍ୱରୂପ ଯଦି ଜଣେ ବୋଝ ଉଠାଇବାକୁ ଚାହେଁ, ତାହା ଯେତେ ଭାରି ହୋଇଥାଉନା କାହିଁକି, ଏହି ପଦାର୍ଥରୁ ଖଣ୍ଡେ ତା ତଳେ ଥୋଇଦେଲେ ଗୋଟିଏ କୁଟା ସାହାଯ୍ୟରେ ମଧ୍ୟ ବୋଝଟି ଉଠାଯାଇ ପାରିବ । ମୋର ପ୍ରଥମ ସ୍ୱାଭାବିକ ପ୍ରବୃତ୍ତି ହେଲା ଯେ ଏହି ଉପାୟକୁ ତୋପ ଓ ଲୌହ ପରିହିତ ଯୁଦ୍ଧ ଜାହାଜ ଏବଂ ଯୁଦ୍ଧୋପଯୋଗୀ ସମସ୍ତ ଉପକରଣ ଓ କୌଶଳରେ ପ୍ରୟୋଗ କଲେ ହୁଅନ୍ତା । ତାପରେ ଜାହାଜରେ ମାଲ ସରବରାହ ଓ ଯାନବାହନରେ ଯାତାୟାତ, ଗୃହନିର୍ମାଣ ଓ ମନୁଷ୍ୟର ସମସ୍ତ ପ୍ରକାର ଶିଳ୍ପରେ ଏହା ବ୍ୟବହାର କରାଯାଆନ୍ତା । ଯେଉଁ ଦୈବସଂଯୋଗ ମତେ ଏହି ନୂତନ ସମୟର—ନୂତନ ଯୁଗର—ଜନ୍ମ ମୁହୂର୍ତ୍ତରେ ଆଣି ପହଞ୍ଚାଇ ଦେଇଥିଲା ସେପରି ସଂଯୋଗ ସହସ୍ର ବର୍ଷରେ ଥରେ ମାତ୍ର ଆସେ । ମୁଁ ଯେତେ ଭାବି ବସିଲି ଏହାର ନୂତନତମ ସମ୍ଭାବନା ମୋର ମନରେ ଉଦିତ ହେଲା । ତାର ଆୟତନ ବଢ଼ି ଚାଲିଲା । ଅନ୍ୟାନ୍ୟ ସମ୍ଭାବନା ଭିତରେ ମୁଁ ଦେଖିଲି ଯେ ମୋର ବ୍ୟବସାୟୀ ଜୀବନର ପୁନର୍ଜନ୍ମର ଏହା ସୁଯୋଗ । ମୁଁ ମାନସ ପଟରେ ଦେଖି ପାରିଲି, ଗୋଟିଏ ମୂଳ କୋମ୍ପାନୀ ଏବଂ ତାର ବହୁ ଶାଖା କୋମ୍ପାନୀ— ଆମର ଚତୁର୍ଦ୍ଦିଗରେ ତାର ପ୍ରଯୋଜନା—ସତ୍ତ୍ୱାଧିକାର, ବିଶ୍ୱାସାଧିକାର

ବ୍ୟବସ୍ଥାସ୍ୱ ମିଣ୍ଡଲୀ ଏବଂ ବିଶେଷ-ସୁବିଧା-ଲାଭ ବଢ଼ି ଚାଲିଛି, ବଢ଼ି ଚାଲିଛି ପରିଶେଷରେ ଗୋଟିଏ ବିରାଟ କେଉଁ ଗ୍ରାଇଣ୍ଟ କୋମ୍ପାନୀ ସମସ୍ତ ପୃଥିବୀକୁ ଚଳାଉଛି ଏବଂ ଶାସନ କରୁଛି ।

ଏବଂ ତା ମୂଳରେ ଅଛି ମୁଁ !

ମୁଁ ମୋର ପଥ ନିଶ୍ଚିତ ଭାବରେ ବାଛି ନେଲି । ମୁଁ ଜାଣିଥିଲି ଯେ ମୁଁ ଏହାଦ୍ୱାରା ସମସ୍ତ ପଣ କରି ବସୁଛି । ତଥାପି ଦ୍ୱିଧା ମନରେ ତେଇଁ ପଡ଼ିଲି ।

ମୁଁ କହିଲି, "ଆମେ ଯାହା ଉଦ୍ଭାବନ କରିବାକୁ ଯାଉଛୁଁ ତାର ତୁଳନାସ୍ୱ ବସ୍ତୁ ଆଜି କେବେ ହୋଇ ନାହିଁ"—"ଆମେ" ଉପରେ ଜୋର ଦେଇ ମୁଁ କଥାଟା କହିଲି—"ମୁଁ ଏଥିରେ ଯୋଗ ଦେବି ବୋଲି ଆପଣ ଯଦି ନ ଚାହାନ୍ତି, ତେବେ ବନ୍ଧୁଙ୍କର ସାହାଯ୍ୟ ବିନା ମତେ ତଡ଼ି ପାରିବେ ନାହିଁ । କାଲିଠାରୁ ମୁଁ ଆପଣଙ୍କର ଚତୁର୍ଥ ମଜୁରିଆ ହେବାକୁ ଯାଉଛି ।"

ମୋର ଉତ୍ସାହ ଦେଖି ସେ ଆଶ୍ଚର୍ଯ୍ୟାନ୍ୱିତ ହେଲେ, କିନ୍ତୁ ସନ୍ଦୀହାନ ହେଲେନାହିଁ କି ବିରୋଧୀତା ପ୍ରକାଶ କଲେ ନାହିଁ । ବରଂ ନିଜକୁ ନ୍ୟୁନ କରିବାକୁ ଚେଷ୍ଟା କଲେ ।

ସଂଶୟ-ଜଡ଼ିତ ଭାବରେ ମୋ ଆଡ଼କୁ ଅନାଇ ସେ କହିଲେ, "କିନ୍ତୁ ଆପଣ କଣ ପ୍ରକୃତରେ ବିଶ୍ୱାସ କରନ୍ତି ଯେ—? ତା ଛଡ଼ା ଆପଣଙ୍କ ନାଟକ-ଲେଖା ! ସେ ବିଷୟରେ କଣ ହେବ ?"

ମୁଁ ଚିତ୍କାର କରି କହିଲି, "ମହାଶୟ, ନାଟକ ଫାଟକ ସବୁ ଗାଧୋଇ ଗଲାଣି । ଆପଣ ଯେ କଣ କରିବାକୁ ଯାଉଛନ୍ତି ତାହା ଦେଖି ପାରୁନାହାନ୍ତି କି ?"

ମୋର ଏହି ଉକ୍ତି କେବଳ ଗୋଟିଏ ଆଳଙ୍କାରିକ ଉଚ୍ଛ୍ୱାସ ଥିଲି । କିନ୍ତୁ ପ୍ରକୃତରେ ସେ ଦେଖିପାରି ନ ଥିଲେ । ମୁଁ ତ ପ୍ରଥମେ ଏହା ବିଶ୍ୱାସ

କରିପାରିଲା ନାହିଁ । ସେ ଯେ କି ବିରାଟ ବସ୍ତୁ ତିଆରି କରିବାକୁ ଯାଉଛି ସେ ବିଷୟରେ ତାର ଟିକିଏ ବି ଧାରଣା ନ ଥିଲା । ଏହି ଅଦ୍ଭୁତ ଲୋକଟା ସମସ୍ତ ସମସ୍ୟା କେବଳ ତତ୍ତ୍ୱଚିନ୍ତା ଉପରେ ହିଁ କାର୍ଯ୍ୟ କରି ଚାଲିଥିଲା । ସେ ଯେତେବେଳେ କହିଲା ଯେ ଏହା ଅଟେ ପୃଥିବୀର ସର୍ବଶ୍ରେଷ୍ଠ ଗବେଷଣା, ତାର ଅର୍ଥ ଥିଲା ଯେ ଏହା ଅନେକ ଗୁଡ଼ିଏ ତତ୍ତ୍ୱର ସମାଧାନ କରି ପାରିଛି, ଅନେକ ସନ୍ଦେହ ଦୂର କରିଛି । ଜିନିଷଟିର ବାସ୍ତବ ପ୍ରୟୋଗ ବିଷୟରେ ତାର ମୁଣ୍ଡବ୍ୟଥା ନ ଥିଲା, ଯେପରି କି ବନ୍ଧୁକ ତିଆରି କରିବା କଳର ବନ୍ଧୁକର ବ୍ୟବହାର ବିଷୟରେ ଚିନ୍ତା ନଥାଏ । ଏହି ପଦାର୍ଥଟି ସମ୍ଭବ ଏବଂ ସେ ଏହା ତିଆରି କରିବ, ଏହା ହିଁ ଥିଲା ତାର ମତ । ସେତିକି କରି ସେ ଖୁସି ।

ତା ପରେ କଣ ଘଟିବ ସେ ବିଷୟରେ ତାର ଧାରଣା ଥିଲା ନିହାତି ପିଲାଳିଆ । ସେ ଏହା ତିଆରି କଲେ କେଭରାଇଟ୍ ବା କେଭରାଇନ୍ ବୋଲି ଚିରକାଳ ଏହାର ନାମ ରହିଯିବ, ସେ ଏଫ୍. ଆର୍. ଏସ୍. ଉପାଧି ପାଇ ପାରିବ ଏବଂ ବଡ଼ ବୈଜ୍ଞାନିକ ବୋଲି ବୈଜ୍ଞାନିକ ପତ୍ରିକାମାନଙ୍କ ସହିତ ତାର ଛବି ମଧ୍ୟ ଉପହାର ଦିଆଯିବ, ଇତ୍ୟାଦି ଇତ୍ୟାଦି—ଏହା ଉପରକୁ ତାର ଦୃଷ୍ଟି ଆଉ ଯାଇ ନଥିଲା ! ମୁଁ ଯଦି ଏହି ବ୍ୟାପାରରେ ଯୋଗଦେଇ ନଥାନ୍ତି, ତାହାହେଲେ ବୋଧହୁଏ ସେ ପୃଥିବୀକୁ ଏହି ଅତ୍ୟାଶ୍ଚର୍ଯ୍ୟ ବସ୍ତୁ ଏପରି ଭାବରେ ଦାନ କରିଥାନ୍ତା, ଯେପରିକି ସେ ସାମାନ୍ୟ ପୋକର ଗୋଟିଏ ନୂଆ ବର୍ଗ ଆବିଷ୍କାର କରି ପାରିଛି । ବୈଜ୍ଞାନିକମାନେ ଆମକୁ ଦାନ କରିଥିବା ଅନ୍ୟାନ୍ୟ କେତେଗୋଟି ସାମାନ୍ୟ ଜିନିଷ ପରି ଏହା ମଧ୍ୟ ଫୁଟି ଅକାଳରେ ମଉଳି ଯାଇଥାନ୍ତା ।

ଯେତେବେଳେ ମୁଁ ଏ କଥା ଉପଲବ୍ଧି କରିପାରିଲି, ସେତେବେଳେ ବକିବାର ପାଳି ହେଲା ମୋର ଏବଂ "କହିଯାଅ, କହିଯାଅ" ବୋଲି କହିବାର ପାଳି ହେଲା କେଭରର । ହଠାତ୍ ଠିଆହୋଇଯାଇ, କୋଠରୀ-ଯାକ ଘୂରି ଘୂରି ମୁଁ କୋଡ଼ିଏ ବର୍ଷର ବାଳକ ପରି ହାତ ଛୁଣ୍ଟାଡ଼ି କହିବାକୁ

ଆରମ୍ଭ କଲା । ମୁଁ ତାକୁ ତାର କର୍ତ୍ତବ୍ୟ ଓ ଦାୟିତ୍ୱ —"ଆମର" କର୍ତ୍ତବ୍ୟ ଓ ଦାୟିତ୍ୱ ବିଷୟରେ ବୁଝାଇବାକୁ ଚେଷ୍ଟା କଲି । ମୁଁ ତାକୁ ଭରସା ଦେଲି ଯେ ଏହାଦ୍ୱାରା ଆମେ ଯେ କୌଣସି ରକମର ସମାଜିକ ବିପ୍ଳବ ସୃଷ୍ଟି କରିବା ପକ୍ଷରେ ଯଥେଷ୍ଟ ସମ୍ପତ୍ତି ରୋଜଗାର କରି ପାରିବୁ, ସମସ୍ତ ପୃଥିବୀର ମାଲିକ ହୋଇ ତାକୁ ଆମର ହୁକୁମ ଅନୁସାରେ ଚଳାଇ ପାରିବୁ । କୋମ୍ପାନୀ ଓ ସବସତ୍ୱାଧିକାର ଏବଂ ଗୁପ୍ତଧାରାର ଦାବୀ ସମ୍ବନ୍ଧରେ ମୁଁ ତାକୁ ବୁଝାଇବାକୁ ଲାଗିଲି ! ଏ ସବୁ ବିଷୟ ତା ପକ୍ଷରେ ଦୁର୍ବୋଧ ଥିଲା । ଯେପରି ତାର ଗଣିତ ଥିଲା ମୋ ପକ୍ଷରେ ଦୁର୍ବୋଧ । ତାର ନାଲିଚିଆ ମୁହଁରେ ବିସ୍ମୟର ଚିହ୍ନ ଫୁଟି ଉଠିଲା । ଧନ ପ୍ରତି ତାର ଅନାସକ୍ତି ବିଷୟରେ ସେ କିଛି କହିବାକୁ ଚେଷ୍ଟା କଲା, କିନ୍ତୁ ମୁଁ ସେଥିରେ କାନ ଦେଲି ନାହିଁ । ତାକୁ ଧନୀ ହେବାକୁ ପଡ଼ିବ, ଅତଏବ ତାର ପ୍ରତିବାଦ କରି କିଛି ଲାଭ ନାହିଁ । ମୋର କ୍ଷମତା ବିଷୟରେ, ବ୍ୟବସାୟର ବିରାଟ ଅଭିଜ୍ଞତା ବିଷୟରେ ମୁଁ ତାକୁ ବୁଝାଇ ଦେଲି । ଅବଶ୍ୟ ସେତେବେଳେ ତାକୁ କହିଲି ନାହିଁ ଯେ ମୁଁ ଜଣେ ଋଣଗ୍ରସ୍ତ ଦେଉଳିଆ, କାରଣ ସେଇଟା କେବଳ ଅସ୍ଥାୟୀ ଅବସ୍ଥା ଥିଲା । କିନ୍ତୁ ମୋର ସୁସ୍ପଷ୍ଟ ଦାରିଦ୍ର୍ୟ ସହିତ ଧନର ଅଭିଜ୍ଞତା ବିଷୟକ ଦାବୀ କିପରି ଖାପ ଖାଇଲା, ଏ କଥାଟାକୁ ମୁଁ କୌଣସିମତେ ବାଗେଇ ନେଲି । ଏବଂ କେଉରାଇଟ୍‌ର ଏକଚାଟିଆ ଅଧିକାର ବିଷୟରେ ଆମ ଭିତରେ ଗୋଟିଏ ବୁଝାଶୁଝା ମନକୁ ମନ ହୋଇଗଲା । ଏ ରକମ ଯୋଜନା ଏହିପରି ଭାବରେ ହିଁ ରୂପ ଗ୍ରହଣ କରିଥାଏ । କଥା ହେଲା ଯେ ସେ ଜିନଷଟି ତିଆରି କରିବ ଏବଂ ତାହା ବଜାରରେ କାଟତି ହେବାର ଉପାୟ ମୁଁ କରିବ ।

ଏ ସମ୍ପର୍କରେ ମୁଁ କେବଳ "ଆମେ" ଶବ୍ଦ ବ୍ୟବହାର କରିବାକୁ ଲାଗିଲି, "ତୁମେ" ଓ "ମୁଁ"ର ପୃଥକ ଅସ୍ତିତ୍ୱ ମୋ ପକ୍ଷରେ ଲୋପ ପାଇ ଯାଇଥିଲା ।

ତାର ଉଦ୍ଦେଶ୍ୟ ଥିଲା ଯେ ମୁଁ ଯେଉଁ ଅର୍ଥଲାଭର କଥା କହୁଥିଲି ସେହି ଅର୍ଥ ଗବେଷଣାର ଉନ୍ନତି କାର୍ଯ୍ୟରେ ଲଗାଯିବ । କିନ୍ତୁ ସେ ବିଷୟରେ ନିଷ୍ପତ୍ତି କରିବା କଥା ପରେ । ମୁଁ ବଡ଼ ପାଟିରେ କହିଲି, "ଠିକ କଥା,

ଠିକ କଥା ।” ଅସଲ୍ କଥା ଯେ ଜିନିଷଟି ତିଆରି କରିବା, ଏହା ଉପରେ ଜୋର ଦେଇ ମୁଁ କହିଥିଲି ।

ଉଚ୍ଚ ସ୍ୱରରେ ମୁଁ କହିଲି, “ଏହା ଏପରି ଗୋଟିଏ ଜିନିଷ ଯାହାକି କୌଣସି ଗୃହ, କାରଖାନା, ଦୁର୍ଗ କିମ୍ବା ତାହାକ ବ୍ୟବହାର ନକରି ରହିପାରିବ ନାହିଁ । ପ୍ରେଟେଣ୍ଟ ଔଷଧ ଅପେକ୍ଷା ଏହା ଆହୁରି ବସ୍ତୁତନ୍ତ୍ରବନ୍ତରେ ବ୍ୟବହୃତ ହେବ । ଏହାର ଯେ କୌଣସି ଗୋଟିଏ ଦରଜାରେ, ଏହାର ଦଶ ହଜାର ପ୍ରକାରର ବ୍ୟବହାରରୁ ଯେ କୌଣସି ଗୋଟିଏ ଦ୍ୱାରା ଆମେ ଆଶାତୀତ ଭାବରେ ବଡ଼ଲୋକ ହୋଇ ପାରିବା କେବଳ, ସ୍ୱପ୍ନାତୀତ ରକମର ବଡ଼ଲୋକ ହୋଇ ପାରିବା ।”

ସେ କହିଲା, “ଠିକ୍ ! ବର୍ତ୍ତମାନ ମୁଁ ବୁଝି ପାରୁଛି । ଆଶ୍ଚର୍ଯ୍ୟ କଥା ତ, ଆଲୋଚନା ଦ୍ୱାରା ମଣିଷ କିପରି ନୂତନ ଦୃଷ୍ଟିଭଙ୍ଗୀ ଲାଭ କରେ !”

“ତା ଉପରେ ପୁଣି ତୁମେ ବର୍ତ୍ତମାନ ଉପଯୁକ୍ତ ବ୍ୟକ୍ତି ସହିତ ଆଲୋଚନା କରୁଛ !”

ସେ କହିଲା, “ବୋଧହୁଏ କୌଣସି ଲୋକ ବିଶାଳ ଧନ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ହୋଇ ପାରିବ ନାହିଁ । ତେବେ, ଗୋଟିଏ କଥା—”

ସେ ଟିକିଏ ଅଟକିଗଲା । ମୁଁ ଉଦ୍‌ବିଗ୍ନ ଭାବରେ ଠିଆହୋଇ ପଡ଼ିଲି ।

“ସମ୍ଭବତଃ ଆମେ ମୂଳରୁ ଏହା ନିର୍ମାଣ ବି କରିପାରିବା ନାହିଁ ! ଏ ଧରଣର ଅନ୍ୟାନ୍ୟ ବିଷୟ ପରି ଏହା ମଧ୍ୟ ହୋଇପାରେ ଯେ ଏହି ଜିନିଷଟି ଅନୁମାନରେ ସମ୍ଭବ, ଅଥଚ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କଲାବେଳେ ଅସମ୍ଭବ କିମ୍ବା ଏହା ତିଆରି କଲାବେଳେ କୌଣସି ସାମାନ୍ୟ ବାଧା ଆସି ପହଞ୍ଚିପାରେ— !”

ମୁଁ କହିଲି, “ଯେତେବେଳେ ବାଧା ଆସିବ ସେତେବେଳେ ଦେଖାଯିବ ।”



# ୨

## କେଭର୍‌ଗଇଟ୍‌ର ପ୍ରଥମ ନିର୍ମାଣ

କିନ୍ତୁ କେଭର୍‌ଗଇଟର ବାସ୍ତବ ନିର୍ମାଣ ବିଷୟରେ କେଭରର ସନ୍ଦେହ ଅମୂଳକ ଥିଲା । ୧୮୯୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୪ ତାରିଖରେ ଏହି ଅବିଶ୍ୱାସ୍ୟ ପଦାର୍ଥଟି ନିର୍ମିତ ହେଲା ।

ଆଶ୍ଚର୍ଯ୍ୟର କଥା, କେଭର ଯେଉଁ ସମୟରେ ଏହା ହେବ ବୋଲି ପ୍ରତୀକ୍ଷା କରି ନ ଥିଲା ସେହି ସମୟରେ ଦୈବାତ୍ ଏହା ତିଆରି ହୋଇଗଲା । ସେ ଅନେକ ଗୁଡ଼ିଏ ଧାତୁ ଓ ଅନ୍ୟାନ୍ୟ କେତେକ ପଦାର୍ଥକୁ ଏକାଠି ତାପ ସାହାଯ୍ୟରେ ଦ୍ରବୀଭୂତ କରି ରଖିଥିଲା—ଆହା, ସେହି ପଦାର୍ଥଗୁଡ଼ିକର ସବିଶେଷ ବିବରଣ ମୁଁ ଯଦି ଜାଣି ପାରିଥାନ୍ତି । ତାର ଉଦ୍ଦେଶ୍ୟ ଥିଲା, ଏହି ମିଶ୍ରଣକୁ ସପ୍ତାହେ, କାଳ ହେଇପରି ଭାବରେ ରଖିଦେବ, ତାପରେ ଧୀରେ ଧୀରେ ତାହା ଶୀତଳ ହେବାକୁ ଛାଡ଼ିଦେବ । ଯଦି ଗଣନାରେ ଭୁଲ ନ ହୁଏ, ତାହାହେଲେ ଏହି ସଂଯୋଗର ଶେଷ ଅବସ୍ଥା ଆସି ପହଞ୍ଚିବ, ଯେତେବେଳେ ତାପମାତ୍ରା ୬୦° ଡିଗ୍ରୀ ଉତ୍ତାପକୁ ଖସି ଆସିବ । କିନ୍ତୁ ଘଟଣା ବଶତଃ, କେଭରର ଅଜ୍ଞାତ ସାରରେ ଅଗ୍ନିକୁଣ୍ଡର ଯତ୍ନ ନେବା ବିଷୟରେ ସହକାରୀମାନଙ୍କ ଭିତରେ ସ୍ୱାମୀ ମଧ୍ୟରେ ବିବାଦ ଜାତ ହୋଇଥିଲା । ଗିବସ୍ ଆଗେ ଏହାର ଯତ୍ନ ନେଉଥିଲା, କିନ୍ତୁ ଏ ମଧ୍ୟରେ ସେ ହଠାତ୍ କାମଟା ମାଳୀଥିବା ଲୋକ ଉପରେ ପକାଇ ଦେବାକୁ ଚାହିଁଲା, କାରଣ ସେ କହିଲା ମାଟିତଳୁ ଆସୁଥିବାରୁ କୋଇଲା ହେଉଛି ମାଟି, ତେଣୁ ଏ ସମ୍ପର୍କୀୟ କାର୍ଯ୍ୟ ହେଉଛି ମାଳୀର, ବଢ଼େଇର ନୁହେଁ । ଯେଉଁ ଲୋକଟା ଆଗେ ମାଳୀ ଥିଲା, ସେ କହିଲା ଯେ କୋଇଲା ହେଉଛି ଖଣିଜ ଦ୍ରବ୍ୟ ନା ଧାତୁ, ତେଣୁ ଏହା ତାର କାମ ନୁହେଁ—ତାର ବାଡ଼ୁଣିଆ କାର୍ଯ୍ୟ କଥା ବା ଛାଡ଼ି ଦିଆଗଲା । କିନ୍ତୁ ସ୍ପେରଗସ ଜିଦ ଧରିଲା ଯେ ଗିବସ କୋଇଲା ଯୋଗାଇବା କାମ କରିବା

ଉଚିତ, କାରଣ ସେ ଆଗେ ବଡ଼େଇ ଥିଲା ଏବଂ କୋଇଲା ହେଉଛି କାଠ । ଫଳତଃ ଗିବସ୍ ଆଉ ଚୁଲ୍ଲୀରେ କୋଇଲା ଦେଲା ନାହିଁ, ଅନ୍ୟ କେହି ମଧ୍ୟ ଦେଲେ ନାହିଁ । ଏବଂ କେଉଁର ସ୍ତୂପ ଭିତରେ କେଉଁଠି ଉତ୍ତାଜାହାଜ ଢ଼ଆଁର ଫମ୍ପା କୌଣସି ଚିତ୍ତାକର୍ଷକ ସମସ୍ୟା ଭିତରେ ଡୁବ ମାରିଥିଲା ( କିନ୍ତୁ ଏହି ସମ୍ପର୍କରେ ବାୟୁର ବାଧା ଓ ଅନ୍ୟାନ୍ୟ ଗୋଟିଏ ଦୁଇଟି ପ୍ରଶ୍ନ ପ୍ରତି ସେ ନଜର ଦେଇ ନ ଥିଲା) । ତେଣୁ କୌଣସି ଗୋଳମାଳ ଆସି ଯେ ପହଞ୍ଚୁଛି ଏହା ସେ ଲକ୍ଷ୍ୟ କରି ନ ଥିଲା । ଅତଏବ ସେ ଯେତେବେଳେ ଓପରଓଳି ଟିଲଖ୍ ଓ ଚା ପାନ କରିବା ସକାଶେ ପଡ଼ିଆବାଟେ ମୋର ବଙ୍ଗଳା ଆଡ଼କୁ ଆସୁଥିଲା, ଠିକ୍ ସେହି ସମୟରେ ଅକାଳରେ ହଠାତ୍ ତାର ଉଦ୍ଭାବନ ଜନ୍ମଗ୍ରହଣ କଲା ।

ଘଟଣାଟି ପରିଷ୍କାର ଭାବରେ ମୋର ମନେ ଅଛି, ପାଣି ଫୁଟୁଥିଲା, ଚା ପାଇଁ ସବୁ ଛୁରକଷ ପ୍ରସ୍ତୁତ ହୋଇ ରହିଥିଲା, ଏବଂ ତାର 'ଛୁ-ଛୁ' ଶବ୍ଦ ଶୁଣି ମୁଁ ବାରଣ୍ଡାକୁ ବାହାରି ଆସିଥିଲି । ଗାଢ଼ଧାସ୍ୟ ସୂର୍ଯ୍ୟାସ୍ତର ଦୃଶ୍ୟପଟରେ ତାର ଚଞ୍ଚଳ କ୍ଷୁଦ୍ର ମୂର୍ତ୍ତି ଦେଖାଯାଉଥିଲା କଳା ଏବଂ ତାହାଣପଟେ ସୁରକ୍ଷିତ ବୃକ୍ଷରାଜିର ଶୀର୍ଷଦେଶରେ ତାର ଘରର ଚିମିନି ବାରି ହେଉଥିଲା । ଆହୁରି ଦୂରକୁ ଝାପସା, ନୀଳ ଉଇଲ୍‌ଡେନ ପାହାଡ଼ ଛିଡ଼ା ହୋଇଥିଲା, ଏବଂ ବାମ ପଟରେ ବିସ୍ତୃତ ଓ ସ୍ଥିର ଭାବରେ ଅସ୍ପଷ୍ଟ ଜଳାଭୂମିର ରେଖା ଲମ୍ବିଯାଇ-ଥିଲା । ଠିକ୍ ଏହି ସମୟରେ—

ହଠାତ୍ ଚିମିନିଟି ଆକାଶ ଆଡ଼କୁ ନିକ୍ଷିପ୍ତ ହୋଇ ଇଷ୍ଟକ ମାଳା ଆକାରରେ ବିଧ୍ୱସ୍ତ ହେଲା ଏବଂ ଛାତ ଓ ନାନାପ୍ରକାର ଗୃହ ସରଞ୍ଜାମ ମଧ୍ୟ ତା ପଛେ ପଛେ ଉତ୍କ୍ଷିପ୍ତ ହେଲା । ତାପରେ ସମସ୍ତ ଅତିକ୍ରମ କରି ଉଠିଲା ବିରାଟ ଶୁଭ୍ର ଅଗ୍ନିଶିଖା । କୋଠାର ପୃଷ୍ଠପଟର ଗଛଗୁଡ଼ିକ ଆନ୍ଦୋଳିତ ଓ ଘୂର୍ଣ୍ଣିତ ହେବାକୁ ଲାଗିଲା ଏବଂ ଖଣ୍ଡ ବିଖଣ୍ଡ ହୋଇ ଅଗ୍ନିଶିଖାଆଡ଼କୁ ଧାବିତ ହେଲା । ମୋର କାନରେ ଗୋଟିଏ ପ୍ରଚଣ୍ଡ ବଜ୍ରଧ୍ୱନି ଆସି ବାଜିଲା, ଯାହାଦ୍ୱାରା ମୁଁ ଜୀବନଯାକ ଗୋଟିଏ କାନରେ କାଲା ହୋଇଗଲି ଏବଂ ମୋର ଚାରିଆଡ଼େ ଅବିଶ୍ୱାସ୍ୟ ଭାବରେ ଝରକାସବୁ ବାଡ଼େଇ ହେବାକୁ ଲାଗିଲା ।

ମୁଁ ବାରଣ୍ଡାରୁ କେଭ ରର ଦରଆଡ଼କୁ ତିନି ପାଦ ଅଗ୍ରସର ହେଲି ଏବଂ ଠିକ୍ ସେହି ସମୟରେ ଆସିଲା ଝଡ଼ ।

ତତ୍‌କ୍ଷଣାତ୍ ମୋର କୋଟ ମୁଣ୍ଡଆଡ଼କୁ ଉଡ଼ିଗଲା ଏବଂ ମୁଁ ମୋର ଅନିଚ୍ଛାସତ୍ତ୍ୱେ ବଡ଼ ବଡ଼ ପାଦ ପକାଇ, ଲମ୍ଫମାରି ତା ଆଡ଼କୁ ଓଟାରି ହୋଇଗଲି । ଠିକ୍ ସେହି ମୁହୂର୍ତ୍ତରେ ସେ ମଧ୍ୟ ଝଡ଼ର ଆଲିଙ୍ଗନରେ ଆବଦ୍ଧ ହୋଇ ବୁଲିଗଲା ଏବଂ ମୁଖରିତ ପବନରେ ଉଡ଼ି ଚାଲିଗଲା । ମୁଁ ଦେଖିଲି ମୋର ଗୋଟିଏ ଚମିନି-ପାଇ ମୋଠାରୁ ଛ ଗଜ ଦୂରରେ ମାଟି ଉପରେ କଚଡ଼ି ହୋଇ ପଡ଼ିଲା, ତା ପରେ କୋଡ଼ିଏ ଫୁଟ ଡିଆଁ ମାରି ବଡ଼ ବଡ଼ ଲମ୍ଫଦେଇ ବିପର୍ଯ୍ୟୟର କେନ୍ଦ୍ରସ୍ଥଳକୁ ଅଗ୍ରସର ହେଲା । କେଭିନର ଗୋଡ଼ ଛୁଆଡ଼ି ଫର ଫର କରି ପୁଣି ତଳକୁ ଉତୁରି ଆସିଲା, ମାଟିରେ କିଛିକ୍ଷଣ ପର୍ଯ୍ୟନ୍ତ ଗଡ଼ି ଗଡ଼ି ଚାଲି, ଅନେକ ଚେଷ୍ଟା କରି ଠିଆହେଲା, ତା ପରେ ଝଡ଼ ପୁଣି ତାକୁ ଟେକିଧରି ପ୍ରଚଣ୍ଡବେଗରେ ଆଗକୁ ଟାଣି ନେଇଗଲା । ଶେଷରେ ସେ ତାର ଘରର ପୃଷ୍ଠପଟେ ଆନ୍ଦୋଳିତ ହେଉଥିବା ବିକମ୍ପିତ, ବିଧ୍ୱସ୍ତ ବୃକ୍ଷରାଜି ମଧ୍ୟରେ କୁଆଡ଼େ ଅଦୃଶ୍ୟ ହୋଇଗଲା ।

ଧୂଆଁ ଓ ପାଉଁଶର ଗୋଟିଏ ବିରାଟ ସ୍ତର ଏବଂ ଚକ୍ ଚକ୍ କରୁଥିବା ମିଲଟିଙ୍କର କୌଣସି ଚତୁଷ୍କୋଣାକାର ପଦାର୍ଥ ବିଶେଷ ଶୂନ୍ୟଆଡ଼କୁ ଗତିକରି କୁଆଡ଼େ ବୁଲିଗଲା । ବାଡ଼ର ଗୋଟିଏ ବଡ଼ ଖଣ୍ଡ ମୋ ପାଖଦେଇ ଉଡ଼ି ଆସିଲା, କଡ଼ ଫଟିଆ ହୋଇ ତଳେ ପଡ଼ିଗଲା, ମାଟିରେ ଲୁଚି ସିଧାସଳଖ ଭାବରେ ଶୋଇ ପଡ଼ିଲା । ସେଇଠି ଦୁର୍ଯୋଗର ଶ୍ରେଷ୍ଠତମ ଅବସ୍ଥା ଶେଷ ହେଲା । ବାୟୁସ୍ତରର ବିପର୍ଯ୍ୟୟ ଶୀଘ୍ର କମି ଆସିଲା, କେବଳ ରହିଲା ଦ୍ରୁତ ବାୟୁପ୍ରବାହ । ମୁଁ ନିଃଶ୍ୱାସ ମାରିବାର ଓ ପାଦ ଉପରେ ଠିଆ ହେବାର କ୍ଷମତା ଫେରିପାଇଲି । ବାୟୁପ୍ରବାହର ବିପରୀତ ଦିଗରେ ଆଉଜି ମୁଁ ମୋର ଅନିଚ୍ଛାକୃତ ଗତିକୁ ବନ୍ଦ କରିଦେଲି ଏବଂ ମୋର ବୁଦ୍ଧିର ଯାହା ଅବଶିଷ୍ଟ ଥିଲା ତାହା ପୁନରୁଦ୍ଧାର କରିବାର ଅବକାଶ ପାଇଲି ।

ସେଇ ଗୋଟିଏ ମୁହୂର୍ତ୍ତରେ ଘରଆଡ଼ର ଚେହେରା ସମ୍ପୂର୍ଣ୍ଣ ବଦଳି ଯାଇଥିଲା । ଶାନ୍ତ ସୂର୍ଯ୍ୟାସ୍ତର ଦୃଶ୍ୟ ଉଭେଇ ଯାଇଥିଲା, ଆକାଶ ଥିଲା

ତମସାଚ୍ଛନ୍ନ ଓ ଦ୍ରୁତଗାମୀ ମେଘ ଦ୍ୱାରା ଆବୃତ, ସମସ୍ତ ଜନପଦ ତଳେ ଚେପା ହୋଇ ପଡ଼ି ଯାଇଥିଲା ଓ ବାୟୁପ୍ରବାହରେ ଥରୁଥିଲା । ମୋ ବଙ୍ଗଳା ତା ଜାଗାରେ ଠିକ୍ ଛିଡ଼ା ହୋଇଛି କି ନା ଦେଖିବାପାଇଁ ମୁଁ ଥରେ ପଛକୁ ଫେରି ଚାହିଁଲି, ତାପରେ ଯେଉଁ ବୃକ୍ଷରାଜି ମଧ୍ୟରେ କେଭର୍ ଅଦୃଶ୍ୟ ହୋଇ ଯାଇଥିଲା ସେ ଆଡ଼କୁ ସ୍ଖଳିତ ପଦରେ ଅଗ୍ରସର ହେଲି । ସେହି ବୃକ୍ଷ ରାଜିର ଦୀର୍ଘ ପତ୍ରବହୁଳ ଶାଖା ଫାଙ୍କରେ ତାର ଜ୍ୱଳନ୍ତ ଘରର ଶିଖା ଉଜ୍ଜ୍ୱଳ ଭାବରେ ଦେଖା ଯାଉଥିଲା ।

ମୁଁ ସେଇ ବୃକ୍ଷରାଜି ଭିତରେ ପ୍ରବେଶ କରି ଗୋଟିଏ ଗଛରୁ ଆଉ ଗୋଟିଏ ଗଛକୁ ଦଉଡ଼ି, ପ୍ରତ୍ୟେକ ଗଛରେ ଆଉଜି, ତାକୁ ଖୋଜିବାକୁ ଲାଗିଲି । କିଛି ସମୟ ପର୍ଯ୍ୟନ୍ତ ମୋର ଅନ୍ୱେଷଣ ବୃଥା ହେଲା । ତାପରେ ତାର ବଗିଚା ପାଚେରିର ଏକାଂଶରେ ଜମା ହୋଇଥିବା ଭଙ୍ଗାବାଡ଼ ଓ ଡାଳର ଗୋଟିଏ ସ୍ତୂପ ମଧ୍ୟରେ କୌଣସି ବସ୍ତୁକୁ ହଲୁଥିବାର ମୁଁ ଲକ୍ଷ୍ୟ କଲି । ମୁଁ ସେ ଆଡ଼କୁ ଦୌଡ଼ିଲି, କିନ୍ତୁ ସେଠାରେ ପହଞ୍ଚିବା ପୂର୍ବରୁ ଦେଖିଲି, କୌଣସି ମାଟିଆ ରଙ୍ଗର ବସ୍ତୁ ବିଶେଷ ଆବର୍ଜନାରୁ ନିଜକୁ ମୁକ୍ତ କରି ଦୁଇଟି କର୍ଦ୍ଦମାକ୍ତ ଗୋଡରେ ଠିଆହେଲା ଏବଂ ଦୁଇଟି ନିସ୍ତେଜ ରକ୍ତାକ୍ତ ହାତ ବାହାର କଲା । ତାର ମଝିଭାଗରୁ କେତେ ଖଣ୍ଡ ଛିନ୍ନ ବସ୍ତ୍ରାଂଶ ଝଡ଼ିପଡ଼ି ପବନରେ ଉଡ଼ିଗଲା ।

କିଛି ସମୟ ପର୍ଯ୍ୟନ୍ତ ଏହି କାଦୁଅମେଞ୍ଚାକୁ ମୁଁ ଚିହ୍ନିପାରିଲି ନାହିଁ, ତା ପରେ ଜାଣିଲି ଯେ ସେ କେଭର । ଯେଉଁ କାଦୁଅରେ ସେ ଗଡ଼ିଥିଲା ସେଥିରେ ବୋଳି ହୋଇ ସେ କାଦୁଅମୁଣ୍ଡାଏ ପାଲଟି ଯାଇଥିଲା । ପବନର ବିପରୀତ ଦିଗରେ ଆଉଜି ସେ ତାର ଆଖିରୁ ଓ ମୁହଁରୁ କାଦୁଅ ଛଡ଼ାଇବାକୁ ଲାଗିଲା ।

ସେ ଗୋଟିଏ କର୍ଦ୍ଦମାକ୍ତ ହାତ ବଢ଼ାଇ ଦେଇ ଟଳି ଟଳି ମୋ ଆଡ଼କୁ ପାଦେ ଅଗ୍ରସର ହେଲା । ତାର ମୁହଁ ଆବେଗରେ ଆକୁଞ୍ଚିତ ହୋଇ ସେଥିରୁ ଖଣ୍ଡ ଖଣ୍ଡ କାଦୁଅ ଝଡ଼ିବାକୁ ଲାଗିଲା । ତାର କରୁଣ ଓ ବିପର୍ଯ୍ୟସ୍ତ

ମୃତ୍ତିପରି କୌଣସି ଜୀବନ୍ତ ବସ୍ତୁ ମୁଁ କ୍ୱଚିତ୍ ଦେଖିଛି । ତେଣୁ ତା ମୁହଁରୁ ସେ ସମୟରେ ଯେଉଁ ବାକ୍ୟ ବାହାରିଲା ସେଥିରେ ମୋର ବିସ୍ମୟର ସୀମା ରହିଲା ନାହିଁ ।

ଅନୋଃଶ୍ୱସ ହୋଇ ସେ କହିଲା, "ଅ-ଅଭିନନ୍ଦିତ କର, ମତେ ଅଭିନନ୍ଦିତ କର !"

ମୁଁ କହିଲି, "ଅଭିନନ୍ଦିତ କରିବି ! ଆଶ୍ଚର୍ଯ୍ୟ ! ଅଭିନନ୍ଦିତ କରିବି କାହିଁକି ?"

"ମୁଁ ସଫଳ ହୋଇ ପାରିଛି ।"

"ବେଶ୍ ସଫଳ ହୋଇଛ ତମେ । ଏହି ବିସ୍ଫୋରଣ ଘଟିଲା କାହିଁକି କହ ତ ?"

ତାର ଉତ୍ତରକୁ ଦମକାଏ ପବନ ଉଡ଼େଇ ନେଲା । ସେଥିରୁ ଯାହା ମୁଁ ବୁଝିଲି, ତାହା ହେଉଛି ଯେ ସେଟା ମୋଟେ ବିସ୍ଫୋରଣ ନୁହଁଲା । ପବନର ଧକ୍କା ଖାଇ ଆମେ ଦୁହେଁ ପରସ୍ପରକୁ ଜାବୁଡ଼ି ଧରିଲୁଁ ।

ମୁଁ ତାର କାନରେ ପାଟି କରି କହିଲି, "ମୋ ବଙ୍ଗଳାକୁ ଫେରି-ଯିବାକୁ ଚେଷ୍ଟା କର ।" ସେ ମୋ କଥା ଶୁଣି ପାରିଲା ନାହିଁ ଏବଂ "ଛଅଜଣ ସହାଦ—ବଞ୍ଚନ" ଓ "କିଛି ଲଭ ନାହିଁ" ଏଇ ରକମ ଗୁଡ଼ିଏ କଣ ଚିତ୍କାର କରି କହିଲା । ତାର ସହକାରୀ ଛଅଜଣ ଯେ ସେହି ଘୂର୍ଣ୍ଣିବାୟୁରେ ମରି ଯାଇଛନ୍ତି, ସେ ସମୟରେ ସେ ଏହି ଧାରଣାର ବଶବର୍ତ୍ତୀ ଥିଲା । କିନ୍ତୁ ସୁଖର ବିଷୟ କଥାଟା ସତ ନ ଥିଲା । ସେ ମୋର ବଙ୍ଗଳାକୁ ବାହାରିଲେ କ୍ଷଣି ସେମାନେ ଲମ୍ବେନେର ହୋଟେଲକୁ ଚାଲିଯାଇଥିଲେ । ସେମାନଙ୍କର ଉଦ୍ଦେଶ୍ୟ ଥିଲା, ସେଠାରେ କିଞ୍ଚିତ୍ ଜଳଖିଆ ଖାଇଁ ଖାଇଁ ସେମାନେ ତାଙ୍କର ଚୁଲ୍ଲୀ ସଫାନ୍ତ ବିବାଦର ଆଲୋଚନା କରିବେ ।

ବଙ୍ଗଳାକୁ ଫେରିଯିବା ପାଇଁ ମୁଁ ପୁଣି ଥରେ ତାକୁ କହିଲି—ଏଥର ସେ ମୋ କଥା ବୁଝି ପାରିଲା । ହାତ ଧରାଧରି ହୋଇ ଆମେ ଦୁହେଁ

ଗ୍ଭଲ୍ଲୁ ଏବଂ ମୋ ଘରର ଯାହା ଅବଶିଷ୍ଟ ଥିଲା ସେଇ ଆଶ୍ରୟରେ ଶେଷରେ ପହଞ୍ଚିବାକୁ ସମର୍ଥ ହେଲୁଁ । କିଛି ସମୟ ପର୍ଯ୍ୟନ୍ତ ଆମେ ଆରାମ ଚଉକିରେ ବସି ଦମ ନେବାକୁ ଲଗିଲୁଁ । ସବୁ ଯାକ ଝରକା ଭାଙ୍ଗିଯାଇଥିଲା ଏବଂ ହଣ୍ଡାହ ଆସବାବ ପତ୍ର ଗୁଡ଼ିକ ଚାରିଆଡ଼େ ବିଞ୍ଚିହୋଇ ପଡ଼ିଥିଲା । କିନ୍ତୁ ଏପରି କୌଣସି କ୍ଷତି ହୋଇ ନଥିଲା ଯାହାକି ମରାମତି କରାଯାଇ ପାରିବ ନାହିଁ । ଭାଗ୍ୟବଶତଃ ବୈଷେଇ ଘରର ଦୁଆର ସେ ଧକ୍କା ସମ୍ଭାଳି ପାରିଥିଲା, ତେଣୁ ମୋର ଚିନା ମାଟି ବାସନ ଆଉ ବୈଷେଇ ସର-ଞ୍ଜାମ ଗୁଡ଼ିକ ରକ୍ଷା ପାଇଯାଇଥିଲା । ଷ୍ଟୋଭଟି ସେ ପର୍ଯ୍ୟନ୍ତ ଜଳୁ ଥିଲା, ଏବଂ ଚା ପାଇଁ ମୁଁ ପୁଣି ସେଥିରେ ପାଣି ଚଢ଼େଇଲି । ସେତିକି କରି ସାରି କେଭର୍‌ର ଉତ୍ତର ଶୁଣିବା ପାଇଁ ମୁଁ ତା ଆଡ଼େ ଗ୍ଭହିଁଲି ।

ସେ ଜିଦ୍ ଧରି କହିଲା, "କଥାଟା ସତ । ସମ୍ପୂର୍ଣ୍ଣ ସତ । ମୁଁ ଏହା କରିଛି ଏବଂ ଏହା ଏକଦମ୍ ଠିକ୍ ହୋଇଛି ।"

ମୁଁ ପ୍ରତିବାଦ କରି କହିଲି, "ଠିକ୍ ହୋଇଛି ! କିନ୍ତୁ, ବୋଧହୁଏ କୋଡ଼ିଏ ମାଇଲ ପ୍ରସାରରେ ଗୋଟିଏ ବି ନଡ଼ାଗଦା, କି ବାଡ଼, କି ଗ୍ଭଳ-ଛୁଡ଼ ଅକ୍ଷତ ହୋଇ ଆଉ ନାହିଁ......"

"ଏହା ଏକଦମ୍ ଠିକ୍ ଅଛି—ମତରେ । ଅବଶ୍ୟ ଏଇ ଗୋଳମାଳ ଟିକିକ କଥା ମୁଁ ଆଗରୁ ଅନୁମାନ କରି ନ ଥିଲି । ମୋର ମନ ଅନ୍ୟ ଗୋଟିଏ ପ୍ରଶ୍ନ ନେଇ ବ୍ୟସ୍ତ ଥିଲା, ଓ ଏଇ ସାମାନ୍ୟ ପରିଣତି ଗୁଡ଼ିକ ଅବ-ହେଳା କରିବାଟା ମୋ ପକ୍ଷରେ ସ୍ୱାଭାବିକ । କିନ୍ତୁ ଏହା ବିଲ୍‌କୁଲ୍ ଠିକ୍ ଅଛି—"

ମୁଁ ପାଟି କରି କହିଲି, "ଆରେ ବାବୁ, ତୁମେ କଣ ବୁଝିପାରୁ ନାହଁ ଯେ ତୁମେ ହଜାର ହଜାର ଟଙ୍କାର କ୍ଷତି କରିଛ ?"

"ସେ ବିଷୟରେ ତୁମ ବୁଦ୍ଧି ଉପରେ ମତେ ନିର୍ଭର କରିବାକୁ ପଡ଼ିବ । ମୁଁ ତ ବାସ୍ତବବାଦୀ ଲୋକ ନୁହେଁ ; କିନ୍ତୁ ସ୍ପଷ୍ଟ ବି ତ ହୋଇପାରେ ଯେ ଲୋକେ ଏହା ଗୋଟିଏ ଝଡ଼ ବୋଲି ଭାବିବେ ।"

"କିନ୍ତୁ ସେଇ ବିସ୍ଫୋରଣ—"

"ସେଟା ଆଦୌ ବିସ୍ଫୋରଣ ନୁହେଁ । ବ୍ୟାପାରଟା ଅତି ସରଳ । କେବଳ ମୁଁ ଯାହା କହିଲି, ଏହି ସାମାନ୍ୟ କଥା ଗୁଡ଼ିକ ପ୍ରତି ନଜର ନ ଦେବାଟା ମୋ ପକ୍ଷରେ ସ୍ୱାଭାବିକ । ସେଇ "ଫ୍ଲୁ-ଫ୍ଲୁ" କରିବାର ଅବସ୍ଥା ପରି ଇଏ ଗୋଟେ ଅବସ୍ଥା । ଅଜ୍ଞାତସାରରେ ମୁଁ ମୋର ଏହି ପଦାର୍ଥଟିକୁ ଏଇ କେଭରାଇଟ୍‌କୁ ଗୋଟିଏ ଚଉଡ଼ା, ପାତଳା ସ୍ୱଦର ରୂପେ ତିଆରି କରି ଥିଲି ..."

ଟିକିଏ ଅଟକି ଯାଇ ସେ ପୁଣି କହିଲେ, "ତୁମେ ବେଶ ଜାଣ ଜିନିଷଟି ମାଧ୍ୟାକର୍ଷଣ ଶକ୍ତି ପ୍ରତି 'ଅସ୍ୱଚ୍ଛ' । ଏହା ଜିନିଷ ଗୁଡ଼ିକ ପରସ୍ପର ପ୍ରତି ଆକର୍ଷିତ ହେବାରେ ବାଧାଦିଏ । ବୁଝିପାରୁଛ ତ ?"

ମୁଁ କହିଲି, "ହଁ, ହଁ,"

"ବେଶ, ଏହା ୬୦ ଡିଗ୍ରୀ ଉତ୍ତାପରେ ପହଞ୍ଚିଲାକ୍ଷଣି ଏହାର ନିର୍ମାଣ ଅବସ୍ଥା ଶେଷ ହେଲା; ତତ୍‌କ୍ଷଣାତ୍ ଏହାର ଉପରର ବାୟୁ ଏବଂ ଏହାର ଉପରେ ଥିବା ଛାତ, ଚାଳ ଓ ଚଟାଣ ସମ୍ପୂର୍ଣ୍ଣ ଓଜନ-ହୀନ ହୋଇଗଲା । ତୁମେ ବୋଧହୁଏ ଜାଣ—ଆଜିକାଲି ସମସ୍ତେ ଜାଣନ୍ତି ଯେ ସବୁ ଜିନିଷ ପରି ପବନର ମଧ୍ୟ ଓଜନ ଅଛି ଏବଂ ଏହା ପୃଥିବୀର ସମସ୍ତ ବସ୍ତୁ ଉପରେ, ସବୁ ଆଡ଼େ ବର୍ଗଇଞ୍ଚ ପ୍ରତି ସାଢ଼େ ଚଉଦ ପାଉଣ୍ଡ ହାରରେ ଚାପ ଦିଏ ।"

ମୁଁ କହିଲି, "ହଁ, ମୁଁ ଜାଣେ—କହିଯାଅ ।"

ସେ କହିଲେ, "ମୁଁ ବି ଜାଣେ, କିନ୍ତୁ ଏଥିଦ୍ୱାରା ତୁମେ ବୁଝିପାରୁଥିବ ଯେ ଜ୍ଞାନକୁ କାର୍ଯ୍ୟକ୍ଷେତ୍ରରେ ନ ଲଗାଇଲେ ତାହା କେତେ ଅନାବଶ୍ୟକ । ହଁ, ଆମର କେଭରାଇଟ୍ ଉପରେ ବାୟୁର ଚାପ ଆଉ ରହିଲା ନାହିଁ । କେଭରାଇଟ୍ ଉପରର ବାୟୁ ବଦଳରେ ତାର ଚତୁର୍ଦ୍ଦିଗର ବାୟୁ ବର୍ଗଇଞ୍ଚ ପ୍ରତି ସାଢ଼େ ଚଉଦ ପାଉଣ୍ଡ ହାରରେ ଏହି ସହସା ଓଜନ ହୀନ ବାୟୁ ଉପରେ ଚାପ ଦେବାକୁ ଆରମ୍ଭ କଲା । ବର୍ତ୍ତମାନ ତୁମେ ଘଟଣାଟା ଉପଲବ୍ଧି କରି ପାରୁଛ ! କେଭରାଇଟ୍‌ର ଚାରିପାଖର ବାୟୁ ତାର ଉପରର ବାୟୁ ଉପରେ ଖୁବ୍ ଜୋରରେ

ଜୋରରେ ଦାବ ହୋଇଗଲା, କେଭରାଟ୍‌ର ଉପରର ବାୟୁ ଊର୍ଦ୍ଧ୍ୱକୁ ପ୍ରଚଣ୍ଡ ରୂପେ ନିକ୍ଷିପ୍ତ ହେଲା ଏବଂ ଯେଉଁ ବାୟୁ ତାର ସ୍ଥାନ ପୂରଣ କରିବାକୁ ମାଡ଼ି ଆସିଲା ତାହା ମଧ୍ୟ ତତ୍‌କ୍ଷଣାତ୍ ଓଜନଶୂନ ହୋଇଗଲା; ତେଣୁ ତାହା ଆଉ କୌଣସି ଚାପ ପ୍ରଦାନ କରି ପାରିଲା ନାହିଁ । ଅତଏବ ତାହା ମଧ୍ୟ ପୂର୍ବ ବାୟୁ ପରି ଊର୍ଦ୍ଧ୍ୱକୁ ନିକ୍ଷିପ୍ତ ହେଲା ଏବଂ ଘରର ଛାତ ଓ ଗଛକୁ ଉଡ଼େଇ ନେଲା.....।"

ସେ କହି ଚାଲିଲା, "ତୁମେ ବୁଝିପାରୁଥିବ, ଏହା ଏକ ପ୍ରକାର ବାୟୁମଣ୍ଡଳୀୟ ଉତ୍‌ସ୍ରବଣରେ ପରିଣତ ହେଲା, ବାୟୁମଣ୍ଡଳରେ ଏକପ୍ରକାର ଚିମିନି । ଯଦି ସ୍ୱୟଂ କେଭରାଟ୍‌ଟା ବି ବନ୍ଧନ ମୁକ୍ତ ହୋଇ ଚିମିନି ମଧ୍ୟ ଦେଇ ଛାଟିହୋଇ ଉଡ଼ିଯାଇନଥାନ୍ତା, ତାହାହେଲେ ଯେ କଣ ଘଟିଥାନ୍ତା ତାହା ଅନୁମାନ କରିପାରୁଛ କି ?"

ମୁଁ ଖାଲି ଦେଖିଲି । କହିଲି, "ବୋଧହୁଏ, ପୃଥିବୀର ସମସ୍ତ ବାୟୁ ଏ ପର୍ଯ୍ୟନ୍ତ ସେଇ ନାରକୀୟ କେଭରାଟ୍ ଉପର ଦେଇ କେବଳ ଉପରକୁ ଓଟାରି ହେଇ ଯାଉଥାନ୍ତା ।"

ସେ କହିଲା, "ଠିକ୍ । ଗୋଟିଏ ବିରାଟ ଉତ୍‌ସ୍ରବଣ—"

"ମହାଶୂନ୍ୟକୁ ଉତ୍‌କ୍ଷିପ୍ତ ହୋଇଯାଉଥାନ୍ତା ! ଭଗବାନ ! ତାହାହେଲେ ପୃଥିବୀର ସମସ୍ତ ବାୟୁମଣ୍ଡଳ ପିଚକାରି ମାରିଲାପରି ଉପରକୁ ଫୋପାଡ଼ି ହୋଇ ଯାଇଥାନ୍ତା ! ପୃଥିବୀର ସମସ୍ତ ବାୟୁ ନିଃଶେଷିତ ହୋଇ ଯାଇଥାନ୍ତା ! ତାର ଅର୍ଥ, ସମଗ୍ର ମନୁଷ୍ୟଜାତିର ମୃତ୍ୟୁ ଘଟିଥାନ୍ତା ! ଆଉ ତା ମୂଳରେ ଥିଲା କ୍ଷୁଦ୍ର ଜିନିଷ ଖଣ୍ଡକ !"

କେଭରାଟ୍ କହିଲା, "ନା, ଠିକ୍ ମହାଶୂନ୍ୟକୁ ଚାଲିଯାଇ ନ ଥାନ୍ତା, କିନ୍ତୁ ବାସ୍ତବ କ୍ଷେତ୍ରରେ ଦୁର୍ଯୋଗଟା ପ୍ରାୟ, ସେଇ ରକମ ହୋଇଥାନ୍ତା । କଦଳୀରୁ ଚୋପା ଛଡ଼ାଇଲା ପରି ଏହା ପୃଥିବୀରୁ ବାୟୁକୁ ଛଡ଼େଇ ନେଇ ଯାଇଥାନ୍ତା, ତା ପରେ ହଜାର ହଜାର ମାଇଲ ଦୂରକୁ ତାହା ଫୋପାଡ଼ି

ଦେଇଥାନ୍ତା । ଅବଶ୍ୟ ତାହା ପୁଣି ପୃଥିବୀ ଉପରକୁ ଖସି ପଡ଼ିଥାନ୍ତା—କିନ୍ତୁ ଶ୍ମଶାନରୁକ୍ଷ ମୃତ ପୃଥିବୀ ଉପରକୁ! ଆମର ନିଜର ସ୍ୱାର୍ଥ ଦୃଷ୍ଟିରୁ ଦେଖିଲେ ତାହା କେବେ ଫେରି ନ ଆସିଲେ ପରହିଁ ହୋଇଥାନ୍ତା !"

ମୁଁ ଅବାକ୍ ହୋଇ ଚାହିଁ ରହିଲି । ମୁଁ ଏତେଦୂର ବିସ୍ମିତ ହୋଇ ପଡ଼ିଥିଲି ଯେ ମୋର ଆଶାସବୁ କିପରି ନିର୍ମୂଳ ହୋଇଯାଇଛି ତାହା ଏ ପର୍ଯ୍ୟନ୍ତ ଉପଲବ୍‌ଧି କରି ପାରି ନ ଥିଲି । ପଚାରିଲି, "ତୁମେ ବର୍ତ୍ତମାନ କଣ କରିବାକୁ ବିଚାରୁଛ ?"

"ପ୍ରଥମତଃ ବଗିଚାର କଳଟି ଫେଣ୍ଟେ ପିଇଲେ ମୋ ଦେହରେ ଲାଗିଥିବା କାଦୁଅରୁ କିଛି ଛାଡ଼ିଯିବ । ତା ପରେ, ତମ ଘରର ଯଦି ସୁବିଧା କରେଇ ଦେବ ତାହାହେଲେ ସ୍ନାନ କରିବି । ଏତିକି କରି ସାରିଲେ ଅବସର ମତେ ଆମେ ପୁଣି କଥାବାର୍ତ୍ତା ହେବା ।"—ମୋ କାନ୍ଧରେ ଗୋଟିଏ କାଦୁଅ ମୁକ୍ତ ହାତ ଥୋଇ ସେ କହିଲା—"ମୁଁ ଭାବୁଛି ଏ ବିଷୟରେ ଆମଛଡ଼ା ଆଉ କାହାକୁ କିଛି ନ କହିବା ବୋଧହୁଏ ଠିକ୍ ହେବ । ମୁଁ ଜାଣେ, ମୁଁ ଅନେକ କ୍ଷତିର କାରଣ ହୋଇଛି—ଗାଁର ଏଠି ସେଠି ବୋଧହୁଏ ବାସନ୍ଦହି ଗୁଡ଼ାଏ ମଧ୍ୟ ଭାଙ୍ଗିଯାଇଛି । କିନ୍ତୁ ଅପର ପକ୍ଷରେ, ବୋଧହୁଏ ଯାହା କ୍ଷତି ମୁଁ କରିଛି ତାର କ୍ଷତି ପୂରଣ ଦେବାକୁ ସକ୍ଷମ ହେବ ନାହିଁ । ଯଦି ଏହି କ୍ଷତିର ପ୍ରକୃତ କାରଣ ଜଣାପଡ଼େ, ଏହା କେବଳ ବିଦ୍ୱେଷ ସୃଷ୍ଟି କରିବ ଏବଂ ମୋର କାମରେ ବାଧା ଦେବ । ତୁମେ ଜାଣ, କେହି 'ସବୁକଥା' ଆଗରୁ ଅନୁମାନ କରିପାରିବ ନାହିଁ ଏବଂ ମୁଁ କ୍ଷଣକ ପାଇଁ ମଧ୍ୟ ମୋର ତତ୍ତ୍ୱ ଅନୁସନ୍ଧାନ ଉପରେ ବାସ୍ତବ ଚମତ୍କାର ବୋର୍ଡ଼ ଲାଗିବାକୁ ରାଜି ହେବି ନାହିଁ । ପରେ ଯେତେବେଳେ ତୁମେ ତୁମର ବାସ୍ତବ ବୁଦ୍ଧି ନେଇ ଆସିବ ଏବଂ କେଉଁରଟ୍ ବଜାରରେ ଚାଲୁହେବ ଏବଂ ଏହା ତୁମର ସମସ୍ତ ଆଶା ପୂରଣ କରିବ, ସେତେବେଳେ ଆମେ ବୋଧହୁଏ ଏହି ଲୋକମାନଙ୍କ ସହିତ ସବୁ ଗୋଳମାଳ ମେଣ୍ଟାଇ ପାରିବା । କିନ୍ତୁ ବର୍ତ୍ତମାନ ନୁହେଁ—ବର୍ତ୍ତମାନ ନୁହେଁ । ଯଦି ଅନ୍ୟ କୌଣସି କାରଣ ଦର୍ଶାଇ ନ ହଉଥାଏ ତେବେ ଲୋକମାନେ ଆଜିକାଲି

ଯାଗ ବିଜ୍ଞାନର ଅସନ୍ତୋଷଜନକ ଅବସ୍ଥାରେ ଏ ସବୁ ଝଡ଼ ହୋଇଗୁଁ ଘଟିଛି ବୋଲି ଭାବିବେ । ଏହା ବି ହୋଇପାରେ ଯେ ଏଥିପାଇଁ ସର୍ବସାଧାରଣଙ୍କର ଶ୍ରଦ୍ଧା ତୁଟିବ ଏବଂ ମୋ ଘର ଭାଙ୍ଗି ଯାଇଥିବାରୁ ଓ ପୋଡ଼ି ଯାଇଥିବାରୁ ମୁଁ କ୍ଷତିପୂରଣର ଗୋଟିଏ ବଡ଼ ଅଂଶ ପାଇବି । ଏହା ଆମର ଗବେଷଣା ଚଳାଇବାରେ ସବୁ ସାହାଯ୍ୟ କରିବ । କିନ୍ତୁ ଯଦି ଜଣାପଡ଼େ ଯେ ମୁଁ ଏହି କ୍ଷତିର କାରଣ, ତାହାହେଲେ ଶ୍ରଦ୍ଧା ତୁଟିବ ନାହିଁ ଏବଂ ସମସ୍ତେ ବିରକ୍ତ ହେବେ । ବାସ୍ତବ କ୍ଷେତ୍ରରେ ଏପରି ଘଟିବ ଯେ ମୁଁ ଆଉ କେବେ ଶାନ୍ତିରେ କାମ କରିବାର ସୁବିଧା ପାଇବି ନାହିଁ । ମୋର ତିନିଜଣ ସହକାରୀ ମରିଯାଇ ପାରିଥାଆନ୍ତି କିମ୍ବା ଜୀବିତ ଥାଇ ପାରନ୍ତି । ତାହା କେବଳ ଗୋଟିଏ କ୍ଷୁଦ୍ର ବିବରଣ । ଯଦି ସେମାନେ ମରିଯାଇଛନ୍ତି, ଏହା ବଡ଼ କ୍ଷତି ନୁହେଁ; କାରଣ ସେମାନେ ଯେତେ ପାରଗ ନ ଥିଲେ ତାଠାରୁ ବେଶୀ ଥିଲେ ଆଗ୍ରହାନ୍ୱିତ । ଏହି ଅକାଳ ଘଟଣା ଅଧିକାଂଶରେ ସେମାନେ ଚୁଲ୍ଲୀର ଯତ୍ନ ନ ନେବା କାରଣରୁ ହୋଇଥିବା ସମ୍ଭବ । ସେମାନେ ଯଦି ମରି ନ ଥାନ୍ତି ତାହାହେଲେ ଘଟଣାର କାରଣ ନିର୍ଣ୍ଣୟ କରିବାପାଇଁ ଯଥେଷ୍ଟ ବୁଦ୍ଧି ସେମାନଙ୍କର ଅଛି କି ନା ସନ୍ଦେହ । ସେମାନେ ଝଡ଼ କଥାଟାହିଁ ବିଶ୍ୱାସ କରିବେ ଏବଂ ଯଦି ମୋର ଘର ସାମୟିକ ଭାବରେ ବାସର ଅନୁପଯୋଗୀ ହୋଇଥିବା ଅବସ୍ଥା ଭିତରେ ମୁଁ ତୁମର ବଙ୍ଗଳାର କୌଣସି ଖାଲି କୋଠରୀରେ ରହିପାରେ—”

ସେ ଅଟକି ଯାଇ ମୋତେ ନିରୀକ୍ଷଣ କଲା ।

ମୁଁ ଭାବି ଦେଖିଲି, ଏପରି କ୍ଷମତାଶାଳୀ ଲୋକକୁ ଅତିଥି ଭାବରେ ଅଭ୍ୟର୍ଥନା କରିବା ସାଧାରଣ କଥା ନୁହେଁ ।

ମୁଁ ଉଠି ଛିଡ଼ା ହେଲି, “ବର୍ତ୍ତମାନ ଆମେମାନେ ବୋଧହୁଏ ଆଗ କର୍ଣ୍ଣିଟା ଖୋଜି ଦେଖିବା ଉଚିତ” ଏହା କହି ମୁଁ ତାକୁ ଗବେଷଣାଗାରର ଧ୍ୱଂସାବଶେଷ ଆଡ଼କୁ ବାଟ କଢ଼ାଇଲି ।

ତା ପରେ ସେ ସ୍ନାନ କରୁଥିବା ସମୟ ଭିତରେ ମୁଁ ସମସ୍ତ ବିଷୟଟିକୁ ଏକୁଟିଆ ଚିନ୍ତା କରି ଦେଖିଲି । କେଭର୍ ହଠାତ ସହଯୋଗ କରିବାରେ ଯେ କେତେଗୁଡ଼ିଏ କ୍ଷତି ଅଛି, ଏ କଥା ମୁଁ ଆଗରୁ ଭାବି ଦେଖି ନ ଥିଲି ।

ତାହା ବର୍ତ୍ତମାନ ବୁଝିପାରିଲି। ଯେଉଁ ଅନ୍ୟମନସ୍କତା ଦ୍ୱାରା ସମସ୍ତ ପୃଥିବୀ ଜନଶୂନ୍ୟ ହେବା ଉପରେ ବସିଥିଲା, ତାହାଦ୍ୱାରା ଅନ୍ୟ ଯେ କୌଣସି ସାଙ୍ଘାତିକ ଅସୁବିଧା ଘଟିପାରେ। ଅପର ପକ୍ଷରେ, ମୁଁ ଥିଲି ତରୁଣ, ମୋର ଆର୍ଥିକ ଅବସ୍ଥା ଥିଲା ଶୋଚନୀୟ ଏବଂ ମୋର ମନର ଅବସ୍ଥା ଥିଲା କୌଣସି ଦୁଃସାହସିକ ଘଟଣାରେ ଝାମ୍ପ ଦେବା ଭଳିଆ—ଅବଶ୍ୟ ଯାହାର ଶେଷରେ କୌଣସି ଲାଭର ଆଶା ରହିଛି। ମୁଁ ମନେ ମନେ ଠିକ୍ କରି ସାରିଥିଲି ଯେ ମୁଁ ଅଳ୍ପ କମରେ ସେ ଲାଭରୁ ଅଧାଭାଗ ନେବି। ଭାଗ୍ୟତଃ ମୋର ବଙ୍ଗଳା ହାତରେ ଥିଲି ଏବଂ ଆଗରୁ ମୁଁ କହି ସାରିଛି ଯେ ତାହା ତିନି ବର୍ଷର ଚୁକ୍ତିରେ ମିଳିଥିଲା ଓ ତାର ମରାମତି ବିଷୟରେ ମୋର କୌଣସି ଦାୟିତ୍ୱ ନ ଥିଲା; ଏବଂ ମୋର ଯାହା କିଛି ଆସବାବ ପତ୍ର ଥିଲା ସେ ସବୁ ତର-ବରରେ କିଣା ଯାଇଥିଲା। ତାର ଦାମ ଦିଆଯାଇ ନଥିଲା, ସେ ସବୁ ବୀମା କରାଯାଇଥିଲା ଓ ସେଥିରେ କାହାର କୌଣସି ସମ୍ପର୍କ ନଥିଲା। ଶେଷରେ ମୁଁ ଠିକ୍ କଲି, କେଭର୍ ସହିତ ମୋର ସମ୍ବନ୍ଧ ରଖି ଚାଲିବି ଏବଂ ବ୍ୟାପାରଟି ଶେଷ ପର୍ଯ୍ୟନ୍ତ ଦେଖିବି।

ଅବଶ୍ୟ ଅବସ୍ଥାର ରୂପ ଅନେକ ବଦଳି ଯାଇଥିଲା। ପଦାର୍ଥଟିର ବିରାଟ ସମ୍ଭାବନା ବିଷୟରେ ମୁଁ ଆଉ ସନ୍ଦେହ କରୁ ନଥିଲି। କିନ୍ତୁ ମୋର କଳ୍ପିତ ପେଟେଣ୍ଟ ଘୋଡା ଓ ତୋପବାହୀ ଶକଟ ବିଷୟରେ ମୋ ମନରେ ସନ୍ଦେହ ଜାତ ହେବାକୁ ଲାଗିଲା।

କେଭର୍ କହିଲା, "ଅବଶ୍ୟ ଆମେ ପୁଣି ଏହା ତିଆରି କରିବା"— କଥାଟା ସେ ଏପରି ଆନନ୍ଦ ସହିତ କହିଲା ଯେ ମୁଁ ଏତେଦୂର ଭାବୁ ଆଶା କରି ନଥିଲି—"ଆମେ ବୋଧହୁଏ ଆମର ଶକ୍ତିର ଅତିରିକ୍ତ କାର୍ଯ୍ୟରେ ହାତ ଦେବାକୁ ଯାଉଛୁଁ; କିନ୍ତୁ ଏଥର ଆଉ ତତ୍ତ୍ୱଚିନ୍ତା ନୁହେଁ, ଏଥର ଆମେ ବାସ୍ତବତାର ମୁହାଁମୁହିଁ ହେବା। ଆମର ଏଇ କ୍ଷୁଦ୍ର ପୃଥିବୀଟି ଯେପରି ଧ୍ୱଂସ ହୋଇ ନ ଯାଏ ସେ ଚେଷ୍ଟା ଅବଶ୍ୟ ଆମେ କରିବା। କିନ୍ତୁ—ଆମକୁ ବିପଦ ଆପଦର ସମ୍ଭାବନା ବରଣ କରି ନେବାକୁ ହିଁ ହେବ—ନ କରି

ଉପାୟ ନାହିଁ । ଯେ କୌଣସି ପରୀକ୍ଷା କାର୍ଯ୍ୟରେ ଏପରି କରିବାକୁ ହିଁ ପଡ଼ିଥାଏ । ମୋ ପକ୍ଷରୁ କହିବାକୁ ଗଲେ, ଆମକୁ ଏଇ ପଦାର୍ଥଟି ବୋଧହୁଏ ଧାରୁ ସବୁ ସାମନାକୁ ରଖି ଏବଂ ଖୁବ୍ ପାତଳା କରି ତିଆରି କରିବାକୁ ହେବ । ତଥାପି ମୁଁ ଏ ବିଷୟରେ ନିଶ୍ଚିତ ଭାବରେ କହି ପାରିବି ନାହିଁ । ଏହା ଅନ୍ୟ କୌଣସି ଉପାୟରେ ତିଆରି ହୋଇପାରିବା ବିଷୟରେ ମଧ୍ୟ ମୋର ଗୋଟିଏ ଅସ୍ପଷ୍ଟ ଧାରଣା ଅଛି । ସେ କଥା ମୁଁ ଠିକ୍ ଭାବରେ ବର୍ତ୍ତମାନ ବୁଝାଇ ପାରିବି ନାହିଁ । କିନ୍ତୁ ମଜାର କଥା ଏହି ଯେ, ମୁଁ ପବନର ଧକ୍କାରେ କାଦୁଅ ଉପରେ ଗଡ଼ୁଥିଲି ଏବଂ ଏହି ଘଟଣା କିପରି ଭାବରେ ଶେଷ ହେବ ସେ ବିଷୟରେ ଅତି ସନ୍ଦିହାନ ହୋଇ ପଡ଼ିଥିଲି । ସେତିକିବେଳେ ହିଁ ଏହି ଧାରଣା ମୋ ମୁଣ୍ଡକୁ ଆସିଲା ଏବଂ ଏହାହିଁ ଏକମାତ୍ର ଉପାୟ ବୋଲି ସେତେବେଳେ ମୁଁ ଭାବିଲି ।"

ମୋର ସାହାଯ୍ୟ ସତ୍ତ୍ୱେ ଆମେ କେତେଗୋଟି ସାମାନ୍ୟ ଅସୁବିଧାର ସମ୍ମୁଖୀନ ହେଲୁ ଏବଂ ଇତିମଧ୍ୟରେ ଆମେ ଗବେଷଣାଗାରର ମରାମତି କାର୍ଯ୍ୟରେ ଲାଗିପଡ଼ିଥିଲୁଁ । ଆମର ଦ୍ୱିତୀୟ ଚେଷ୍ଟାର ପ୍ରକୃତ ଆକାର ଓ ଉପାୟ ବିଷୟରେ କୌଣସି ସମାଧାନ କରିବାର ସମ୍ପୂର୍ଣ୍ଣ ଆବଶ୍ୟକତା ଆସିବା ପୂର୍ବରୁ ଆମର ଅନେକ କାମ ବାକି ରହିଥିଲା । ଆମର ଏକମାତ୍ର ଅଡ଼ୁଆ ଥିଲା ଆମର ତିନିଜଣ ଶ୍ରମିକଙ୍କର ଧର୍ମଘଟ । ସେମାନେ ମୋର ପ୍ରଧାନ ଶ୍ରମିକର ଆସନଟାକୁ ପସନ୍ଦ କଲେ ନାହିଁ । କିନ୍ତୁ ଦୁଇଦିନର ତେଉଶ ପରେ ସେ ବିଷୟରେ ଆମେ ନିଜ ମଧ୍ୟରେ ସାଲିସ କରିଦେଲୁଁ ।



# ଗୋଲକର ନିର୍ମାଣ

ଗୋଲକ ବିଷୟରେ ତାର ଧାରଣା କିଭଳି ମତେ ଯେଉଁ ସମୟରେ ଜଣାଇଲା ସେଇ ସମୟଟି ମୋର ପରିଷ୍କାର ଭାବରେ ମନେ ଅଛି । ଏହି ବିଷୟରେ ଆଗରୁ ଅବଶ୍ୟ ତାର ଟିକିଏ ଟିକିଏ ଧାରଣା ହୋଇଥିଲା, କିନ୍ତୁ ସେହି ମୁହୂର୍ତ୍ତରେ ଧାରଣାଟି ସମ୍ପୂର୍ଣ୍ଣ ଭାବରେ ତା ମୁଣ୍ଡରେ ଖେଳିଗଲା । ଆମେ ଦୁହେଁ ବଙ୍ଗଳାକୁ ଘି ଖାଇବା ପାଇଁ ଫେରୁଥିଲୁଁ, ଏବଂ ବାଟରେ ସେ ଗୁଣୁ ଗୁଣୁ କରିବାକୁ ଆରମ୍ଭ କରି ଦେଇଥିଲା । ହଠାତ୍ ସେ ଚିତ୍କାର କରି ଉଠିଲା, "ଠିକ୍ କଥା ! ତାହାହିଁ ଶେଷ କଥା ! ଏକପ୍ରକାର ଗୁଡ଼େଇ ହୋଇ ପାରୁଥିବା ପର୍ଦ୍ଦା !"

ମୁଁ ପଚାରିଲି, "କଣ ଶେଷ କଥା ?"

"ମହାଶୂନ୍ୟ—ଯେ କୌଣସି ଜାଗା ! ଚନ୍ଦ୍ର !"

"ମାନେ ?"

"ମାନେ ? ଆରେ ବାବୁ—ଏହା ଗୋଟିଏ ଗୋଲକ ରୂପେହିଁ ତିଆରି କରିବାକୁ ହେବ ! ତାହାହିଁ ମୋର କଥାର ଅର୍ଥ !"

ମୁଁ ଦେଖିଲି, ତାର କଥାର ଅର୍ଥ ମୁଁ ଠିକ୍ ଧରି ପାରୁନାହିଁ, ତେଣୁ କିଛି ସମୟ ପର୍ଯ୍ୟନ୍ତ ତାକୁ ତା ଇଚ୍ଛା ଅନୁସାରେ ଗପିବାକୁ ଦେଲି । ତାର କଥାର ଧାରା କୁଆଡ଼େ ଯାଉଛି, ସେ ବିଷୟରେ ମୋର ଟିକିଏ ବି ଧାରଣା ନ ଥିଲା । କିନ୍ତୁ ଘି ଖାଇ ସାରିଲା ପରେ ସେ ମତେ କଥାଟା ପରିଷ୍କାର ଭାବରେ ବୁଝେଇଦେଲା ।

ସେ କହିଲା, "କଥାଟା ହେଉଛି ଏଇ । ଚଲାଥର ମୁଁ ଏହି ମାଧ୍ୟାକର୍ଷଣ ଶକ୍ତିକୁ ପ୍ରତିହତ କରିବା ପଦାର୍ଥଟି ଏପରିଭାବରେ ତିଆରି କରିଥିଲି ଯେ ତାହା ଗୋଟିଏ ସମତଳ କୁଣ୍ଡ ପରି ହୋଇଥିଲା ଏବଂ ତାକୁ ଦବାଇ

ରଖିବା ପାଇଁ ଗୋଟିଏ ଚାଙ୍କୁଣି ଥିଲା ଏବଂ ଏହା ଅଣ୍ଡା ହୋଇ ନିର୍ମାଣ ଅବସ୍ଥା ଶେଷ ହେଲାକ୍ଷଣି ଦେହର ସମସ୍ତ କାଣ୍ଡ ଘଟି ଥିଲା—ଏହା ଉପରେ ଥିବା କୌଣସି ଜିନିଷର ଓଜନ ଆଉ ରହିଲା ନାହିଁ, ଏହାର ଉପରର ବାୟୁ ପିଚକାରୀ ମାରିଲା ପରି ଊର୍ଦ୍ଧ୍ୱକୁ ଫୋପାଡ଼ି ହୋଇଗଲା, ଘରଟି ଫୋପାଡ଼ି ହୋଇ ଗଲା, ଏବଂ ଯଦି ସ୍ୱୟଂ ପଦାର୍ଥଟି ମଧ୍ୟ ଉପରକୁ ଫୋପାଡ଼ି ହୋଇ ଯାଇ ନ ଥାନ୍ତା, ତାହାହେଲେ କଣ ଯେ ଘଟିଥାନ୍ତା ମୁଁ ଚିନ୍ତା କରି ପାରୁ ନାହିଁ ! କିନ୍ତୁ ଧର, ପଦାର୍ଥଟି ଚିଲା ହୋଇ ରହିଲା, ଏବଂ ଉପରକୁ ଉଠିବା ପାଇଁ କୌଣସି ବାଧା ରହିଲା ନାହିଁ—ତାହାହେଲେ ?"

"ଏହା ସାଙ୍ଗେ ସାଙ୍ଗେ ଉପରକୁ ଉଠିବ !"

"ଠିକ୍ ଗୋଟିଏ ବଡ଼ ବନ୍ଧୁକ ଫୁଟାଇଲେ ଯେଉଁକି ଗୋଳମାଳ ହେବ ତା ଠାରୁ ବେଶି ଗୋଳମାଳ ନ ହୋଇ ଏହା ଉପରକୁ ଉଠିବ ।"

ତା ଦ୍ୱାରା କିନ୍ତୁ ଲାଭଟା ହେବ କ'ଣ ?

ମୁଁ ମଧ୍ୟ ଏହା ସହିତ ଉପରକୁ ଯିବ ?

ମୁଁ ମୋର ଚା ପିଆଲାଟା ଥୋଇ ଦେଇ ତା ଆଡ଼କୁ ବିସ୍ମୟ ବିସ୍ଫାରିତ ଅଖିରେ ଅନାଇ ରହିଲି ସେ ବୁଝାଇ ଦେଲା, "ଦୁଇଜଣ ଲୋକ ଓ ସେମାନଙ୍କର ମାଲମତା ଧରିବା ପାଇଁ ଯଥେଷ୍ଟ ବଡ଼ ଗୋଟିଏ ଗୋଲକର କଳ୍ପନା କର । ଏହା ଇସ୍ପାତ ଦ୍ୱାରା ତିଆରି ହେବ ଏବଂ ଭିତର ପଟ ମୋଟା କାଚ ଦ୍ୱାରା ଆଚ୍ଛାଦିତ ହେବ; ଏହା ଭିତରେ ଯଥେଷ୍ଟ ଘନୀଭୂତ ବାୟୁ, ଅଳ୍ପୀକୃତ ଖାଦ୍ୟ, ପାଣି ପରିଷ୍କାର କରିବାର ଯନ୍ତ୍ର ଇତ୍ୟାଦି ରହିବ । ଏବଂ ଏହାର ବାହାର ପଟର ଇସ୍ପାତରେ ପ୍ରଲେପ ଦିଆଯାଇ ଥିବ—"

"କେଭରାଇଟ୍ ଦ୍ୱାରା ?"

"ହଁ ।"

"କିନ୍ତୁ ତୁମେ ଏହା ଭିତରକୁ ପଶିବ କିପରି ?"

"ମଣ୍ଡା ଭିତରକୁ ପୁର କେମିତି ପଶିଲା ବୋଲି ଥରେ ଏଇ ରକମ ଗୋଟିଏ ପ୍ରଶ୍ନ ଉଠିଥିଲା ।"

"ହଁ, ମୁଁ ଜାଣେ । କିନ୍ତୁ ତାପରେ—?"

"ଅତି ସହଜ । କେବଳ ଗୋଟିଏ ବାୟୁବଦ୍ଧ ଗର୍ତ୍ତି ଆବଶ୍ୟକ । ତାହା ଅବଶ୍ୟ ଟିକିଏ ଜଟିଳ ଭାବରେ ତିଆରି କରିବାକୁ ହେବ; ବେଶି ବାୟୁ ଅପଚୟ ନ ହୋଇ ଜିନିଷ ସବୁ ଦରକାର ହେଲେ ଯେପରି ବାହାରକୁ ଫୋପଡ଼ା ହୋଇ ପାରିବ, ସେଥିପାଇଁ ବ୍ୟବସ୍ଥା କରିବାକୁ ହେବ—ଗୋଟିଏ ବାୟୁ-ଗମନ-ନିୟନ୍ତ୍ରକ ନଳୀ ସାହାଯ୍ୟରେ ।"

"ଜୁଲସ୍ ଭର୍ଣ୍ଣଙ୍କର ଉପନ୍ୟାସ 'ଚନ୍ଦ୍ର ଉଦ୍ଦେଶ୍ୟରେ ଯାତ୍ରା' ରେ ଥିବା ଜିନିଷଟି ପରି ?"

କିନ୍ତୁ ବିଚରା କେଭର ଉପନ୍ୟାସର ଧାର ବି ଧାରେ ନା ।

ମୁଁ ଧୀରେ ଧୀରେ କହିଲି, "ମୁଁ ବୁଝିବାକୁ ଆରମ୍ଭ କରୁଛି । କେଭରଟ୍ ଯେତେବେଳେ ଉଷୁମ ଥିବ ତୁମେ ଭିତରକୁ ପଶି ସ୍କ୍ରୁଗୁଡ଼ାକ ପେଚ ଲଗେଇ ବନ୍ଦ କରିଦେବ, ଏବଂ ତାହା ଥଣ୍ଡା ହେଲାକ୍ଷଣି ମାଧ୍ୟାକର୍ଷଣରୁ ମୁକ୍ତ ହେବ, ଓ ତୁମେ ହିଁ କରି ଉପରକୁ ଉଡ଼ିଯିବ—"

"ସ୍ପର୍ଶ ରେଖାରେ ।"

"ଏହା ଗୋଟିଏ ସରଳ ରେଖାରେ ଗତି କରିବ—" ମୁଁ ହଠାତ୍ ଅଟକି ଗଲି । "କିନ୍ତୁ ଏହା ତ ଚିରକାଳ ପର୍ଯ୍ୟନ୍ତ ମହାଶୂନ୍ୟକୁ ସରଳ-ରେଖାରେ ଗତି କରୁଥିବ । ତୁମେ ତାହା ହେଲେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନକୁ ଯିବାକୁ ସକ୍ଷମ ହେବ ନାହିଁ, ଏବଂ ଯଦବା ଯାଇ ପାରିଲ— ଫେରିବ କିପରି ?"

କେଭର କହିଲା, "ମୁଁ ସେ କଥା, ଏଇକ୍ଷଣି ଭାବି ଦେଖିଲି । ସମସ୍ୟାର ଶେଷ ହେଲା ବୋଲି ମୁଁ ଯେତେବେଳେ କହିଲି, ଏହାହିଁ ମୋର ଅର୍ଥ ଥିଲା । ଭିତରର କାଚଂଗୋଲକଟି ବାୟୁବଦ୍ଧ ହେବ, ଏବଂ ଗର୍ତ୍ତ ଛଡ଼ା ତାହାର ବାକି ସ୍ଥାନରେ କୌଣସି ଯୋଡ଼ା ରହିବ ନାହିଁ । ବାହାର ଇସ୍ପାତ ଗୋଲକଟି ଭାଗ ଭାଗ ଯୋଡ଼ା ହୋଇ ତିଆରି ହେବ ଏବଂ ପ୍ରତ୍ୟେକ ଭାଗ ଠିକ୍ ମୋଡ଼ା-ପର୍ଦ୍ଦା ପରି ଗୁଡ଼େଇ ହୋଇ ପାରୁଥିବ । ଏ ସବୁ ସ୍ପ୍ରିଙ୍ଗ୍ ଦ୍ୱାରା ସହଜରେ ଚାଳିତ ହେବ ଏବଂ ବିଦ୍ୟୁତ ସାହାଯ୍ୟରେ ଖୋଲି ଓ ବନ୍ଦ

କରାଯାଇ ପାରିବ । ଏହି ବିଦ୍ୟୁତ କାଚ ଦେହରେ ଲଗାଯାଇ ଥିବା ପ୍ଲାଟିନମ୍ ତାର ଦ୍ୱାରା ଗୀତ ହେବ । ଏସବୁ କେବଳ ବିଶେଷ ବିବରଣ କଥା । ଅତଏବ ପର୍ଦା ବାହାର ସ୍ଥୂଳତା କଥା ଛାଡ଼ି ଦେଲେ, କେଭରାଇଟ୍ ବୋଳା ହୋଇଥିବା ସମସ୍ତ ବାହାର ଖୋଳ କେବଳ କେତେଗୁଡ଼ାଏ ଝିଡ଼କ ବା ପର୍ଦା ସମନ୍ୱିତ ହେବ । ଯେତେବେଳେ ଏହି ସବୁ ଝିଡ଼କ ବା ପର୍ଦା ବନ୍ଦ କରି ଦିଆଯିବ, କୌଣସି ଆଲୋକ, ଉତ୍ତାପ, ମାଧ୍ୟାକର୍ଷଣ ଶକ୍ତି କିମ୍ବା କୌଣସି ପ୍ରକାର ବିକୀରଣଶୀଳ ଶକ୍ତି ଏହି ଗୋଲକର ଅଭ୍ୟନ୍ତରକୁ ପ୍ରବେଶ କରି ପାରିବ ନାହିଁ । ଏହା, ତୁମେ ଯେପରି କହିଲ, ମହାଶୂନ୍ୟ ଭିତରକୁ ସରଳରେଖାରେ ଉଡ଼ିଯିବ । କିନ୍ତୁ ଗୋଟିଏ ଝିଡ଼କ ଖୋଲି ଦିଅ, ଅନୁମାନ କରି ଦେଖ ଗୋଟିଏ ଝିଡ଼କ ଖୋଲିଗଲା । ତତ୍‌କ୍ଷଣାତ୍ ଯେ କୌଣସି ସ୍ଥୂଳ ପଦାର୍ଥ ସେହି ଦିଗରେ ଥିବ ତାହା ଆମକୁ ଆକର୍ଷଣ କରିବ—"

ମୁଁ ନିଶ୍ଚଳ ଭାବରେ ବସି କଥାଟା ବୁଝିବାକୁ ଚେଷ୍ଟା କଲି ।

ସେ କହିଲା, "ବୁଝି ପାରୁଛ ?"

"ପାରୁଛି"

"ମହାଶୂନ୍ୟରେ ଆମେ ଯୁଆଡ଼େ ଇଚ୍ଛା ସିଆଡ଼େ ବୁଲି ପାରିବା । ଯେ କୌଣସି ଗ୍ରହ ଦ୍ୱାରା ଆକର୍ଷିତ ହୋଇ ପାରିବା ।"

"ଅବଶ୍ୟ । ସେ କଥା ଠିକ୍ ବୁଝା ଯାଉଛି । କିନ୍ତୁ—"

"କହ ।"

"କିନ୍ତୁ ଆମେ ଏପରି କରିବା କଣ ଦରକାର, ମୁଁ ବୁଝିପାରୁ ନାହିଁ ! ଏହା କେବଳ ପୃଥିବୀରୁ ଡିଆଁ ମାରି ପୁଣି ପୃଥିବୀକୁ ଫେରି ଆସିବା କଥା ।"

"ନିଶ୍ଚୟ, ଉଦାହରଣ ସ୍ୱରୂପ, ଆମେ ଚନ୍ଦ୍ରକୁ ଯାଇ ପାରିବା ।"

"କିନ୍ତୁ ସେଠାକୁ ଗଲାପରେ କଣ ଦେଖିବା ?"

"ଆମେ ଦେଖିବା—ଓଃ ! କେତେ ନୂତନ ଜ୍ଞାନ ଲାଭର କଥା ଭାବି ଦେଖ ।"

"ସେଠାରେ ବାୟୁ ଅଛି ତ ?"

"ଥାଇ ପାରେ ।"

ମୁଁ କହିଲି, "ମତଲବଟା ଚମତ୍କାର । କିନ୍ତୁ ମୋତେ ଲାଗୁଛି, ଏହା ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବା କଥା । ଚନ୍ଦ୍ର ! ମୁଁ ବରଂ ତା ଅପେକ୍ଷା ସାମାନ୍ୟ ଜିନିଷ ଆଗେ ଚେଷ୍ଟା କରି ଦେଖିବି ।"

"ତାହା ଅସମ୍ଭବ । କାରଣ ବାୟୁର ଅସୁବିଧା ରହିଛି ।"

ବୋଝ ଉଠାଇବା ପାଇଁ ସ୍ପ୍ରିଙ୍ଗ୍ ପର୍ଦ୍ଦାର ଉପାୟ କ'ଣଟାଉ ନାହିଁ କାହିଁକି ? ମଜଭୁତ ଇସ୍ପାତ ଲୁହା ବାକ୍ସରେ କେଭରଟ୍ ପର୍ଦ୍ଦା ଲଗାଇ ତ ବୋଝ ଉଠାଯାଇ ପାରନ୍ତା ।"

ସେ କିଛି ଧରି କହିଲେ, "ତାହା ସମ୍ଭବ ନୁହେଁ । ବରଂ ମହାଶୂନ୍ୟକୁ ଯିବାଟା ତ ମେରୁଯାତ୍ରା ଅପେକ୍ଷା ବେଶୀ କିଛି କଠିନ ନୁହେଁ । ଲୋକେ ତ ପୁଣି ମେରୁ ପର୍ଯ୍ୟନ୍ତ ଯାଆନ୍ତି ।"

ବ୍ୟବସାୟୀ ଲୋକେ ଯାଆନ୍ତି ନାହିଁ । ତା ଛଡ଼ା, ମେରୁଯାତ୍ରା କରିବା ପାଇଁ ସେମାନଙ୍କୁ ଟଙ୍କା ଦିଆଯାଏ ଏବଂ ଯଦି କୌଣସି ବିପଦ ଘଟେ, ତାହା ହେଲେ ସାହାଯ୍ୟ ଦଳ ସବୁବେଳେ ପ୍ରସ୍ତୁତ ଥାନ୍ତି କିନ୍ତୁ ଏହା—ଏହା କେବଳ ମହାକାଶରେ ପୃଥିବୀରୁ ଆମକୁ ନିକ୍ଷିପ୍ତ କରିବା କଥା ।"

"ଏହାକୁ ଅନ୍ୱେଷଣ ବୋଲି ଧର ।"

ମୁଁ କହିଲି, "ହଁ ତା ତ ଧରିବାକୁ ହେବ.....ଏଥିରୁ ଜଣେ ଖଣ୍ଡେ ବହି ବୋଧହୁଏ ଲେଖି ପାରିବ ।"

କେଭର କହିଲା, "ସେଠି ନିଶ୍ଚୟ ଖଣିଜ ସମ୍ପଦ ଅଛି ।"

"ଉଦାହରଣ ସ୍ୱରୂପ ?"

"ଏଇ—ଗନ୍ଧକ, ଧାତୁ, ବୋଧହୁଏ ସୁନା, ଆଉ କୌଣସି ମୌଳିକ ଦ୍ରବ୍ୟ ମଧ୍ୟ ଥାଇ ପାରେ ।"

ମୁଁ କହିଲି, "ବହନ ଖର୍ଚ୍ଚ ? ତୁମେ ଜାଣ, ତୁମେ ଆଦୌ ବାସ୍ତବଙ୍କ ନୁହ । ଚନ୍ଦ୍ର ଯେ ଏଠାରୁ ଦୁଇଲକ୍ଷ ପଚିଶ ହଜାର ମାଇଲ ଦୂର ।"

"ମୋର ମନେ ହୁଏ, କୌଣସି ଜିନିସକୁ ଯଦି କେଭରାଇଟ୍ ଆଧାରରେ ରଖାଯାଏ, ତାହାହେଲେ ତାହା ଯେତେ ଭାରି ହୋଇଥାଉ ନା କାହିଁକି, ତାକୁ ଯେ କୌଣସି ସ୍ଥାନକୁ ନେବା ପାଇଁ ବିଶେଷ ଖର୍ଚ୍ଚ ହେବ ନାହିଁ" ।

ମୁଁ ଏ କଥା ଭାବି ଦେଖି ନଥିଲି । କହିଲି, "ମୁଣ୍ଡପିଛା ବିନା ଖର୍ଚ୍ଚରେ ମାଲ ଯୋଗାଇ ଦିଆଯାଇ ପାରିବ, ନା ?"

"ଆମେ ଯେ ଖାଲି ଚନ୍ଦ୍ରକୁ ଯାଇ ପାରିବା ତା ନୁହେଁ ।"

"ଅର୍ଥାତ୍—?"

"ମଙ୍ଗଳ ଗ୍ରହ ଅଛି—ପରିଷ୍କାର ବାୟୁ ମଣ୍ଡଳ, ସମ୍ପୂର୍ଣ୍ଣ ନୂତନ ପରିବେଷ୍ଟନୀ, ଆଉ ଓଜନରେ ଲଘୁ ହେବାରୁ ଅପୂର୍ବ ଉଲ୍ଲାସ । ସେଠାକୁ ଯିବାଟା ଖୁବ୍ ଆନନ୍ଦଜନକ ହୋଇପାରେ ।"

"ମଙ୍ଗଳ ଗ୍ରହରେ ବାୟୁ ଅଛି ?"

"ନିଶ୍ଚୟ !"

"ମନେହୁଏ, ତାହାକୁ ଗୋଟିଏ ସ୍ୱାସ୍ଥ୍ୟକେନ୍ଦ୍ର ରୂପେ ବ୍ୟବହାର କଲେ ମନ୍ଦ ହୁଅନ୍ତା ନାହିଁ । ଆଚ୍ଛା, ମଙ୍ଗଳଗ୍ରହ ଏଠୁ କେତେ ବାଟ ?"

କେଭର ନିଶ୍ଚିନ୍ତ ଭାବରେ କହିଲା, "ଏଇ, କୋଡ଼ିଏ କୋଟି ମାଇଲ —ଏବଂ ସୂର୍ଯ୍ୟର ଅଡ଼ ପାଖ ଦେଇ ଯିବାକୁ ହୁଏ ।"

ମୋର କଳ୍ପନାଶକ୍ତି ପୁଣି ଦ୍ରୁତ ଗତିରେ କାର୍ଯ୍ୟ କରିବାକୁ ଆରମ୍ଭ କଲା । ମୁଁ କହିଲି, "ଯାହାହେଉ, ଏ ସବୁରେ କିଛି ମଜା ଅଛି । ଯଥା, ଭ୍ରମଣ—"

ଗୋଟିଏ ଅସାମାନ୍ୟ ସମ୍ଭାବନା ମୋ ମୁଣ୍ଡରେ ଖେଳିଗଲା । ହଠାତ୍ ମୁଁ ମାନସ-ପଟରେ ଦେଖିବାକୁ ପାଇଲି ସମସ୍ତ ସୌର ଜଗତ୍ କେଭରାଇଟ୍-

ଯାନ ଏବଂ ଆଶ୍ଚର୍ଯ୍ୟପ୍ରଦ ଗୋଲକମାନଙ୍କ ଦ୍ୱାରା ସଂଯୁକ୍ତ ହୋଇଛୁ । "ପ୍ରଥମ ନିମ୍ନାଧିକାର"ର କଳ୍ପନା—ଗ୍ରହଜଗତ୍‌ରେ "ପ୍ରଥମ ନିମ୍ନାଧିକାର"—ମୋ ମସ୍ତିଷ୍କରେ ଖେଳି ବୁଲିଲା । ଅତୀତରେ ଆମେରିକାରେ ସ୍ପେନୀୟମାନଙ୍କର ସୁନା କାରବାରରେ ଏକଚାଟିଆ ଅଧିକାର କଥା ମୋର ମନେ ପଡ଼ିଲା । କେବଳ ଗୋଟିଏ ଦୁଇଟି ଗ୍ରହରେ ନୁହେଁ, ସମସ୍ତ ଗ୍ରହଜଗତ୍‌ରେ ଏହି ଅଧିକାର । ମୁଁ କେଭରର ନାଲିଆ ମୁହଁ ଆଡ଼େ ଅନାଇଲି—ଏବଂ ସହସା ମୋର କଳ୍ପନା ମହାନୃତ୍ୟ ଆରମ୍ଭ କରିଦେଲା । ମୁଁ ଠିଆହୋଇ ପଡ଼ିଲି, ଘରଯାକ ଘୂରିବାକୁ ଲାଗିଲି; ଏବଂ ମୋର ଜିହ୍ୱା ସମ୍ପୂର୍ଣ୍ଣ ବନ୍ଧନ ମୁକ୍ତ ହେଲା ।

ମୁଁ କହି ଚାଲିଲି, "ମୁଁ ବୁଝିବାକୁ ଆରମ୍ଭ କରୁଛି—ଉପଲବ୍ଧି କରିବାକୁ ଆରମ୍ଭ କରୁଛି ।" ସନ୍ଦେହରୁ ଉତ୍ସାହକୁ ପରିବର୍ତ୍ତିତ ହେବାପାଇଁ ମୋତେ ଯେପରି କମା ସମୟ ଲାଗିଲା ନାହିଁ । ମୁଁ ଚିତ୍କାର କରି କହିଲି, "ଓଃ, ଏହା ବିରାଟ ! ଏହା ପ୍ରକାଣ୍ଡ ! ମୁଁ ଏହା ସ୍ୱପ୍ନରେ ସୁଦ୍ଧା ଭାବି ପାରି ନ ଥିଲି ।"

ମୋର ବିରୋଧର ଶୀତଳତା ଦୂର ହେବାକ୍ଷଣି ତାର ରୁଦ୍ଧ ଉତ୍ସାହ ପୁଣି ଉନ୍ମୁକ୍ତ ହେଲା । ସେ ମଧ୍ୟ ଠିଆ ହୋଇ ପଡ଼ି ଘରଯାକ ବୁଲିବାକୁ ଲାଗିଲା । ସେ ମଧ୍ୟ ଅଙ୍ଗଭଙ୍ଗୀ କରି ଚିତ୍କାର କରିବାକୁ ଲାଗିଲା । ଆମେ ଦୁହେଁ ଅଲୌକିକ-ଆବେଗଗ୍ରସ୍ତ ଲୋକପରି ବ୍ୟବହାର କରିବାକୁ ଲାଗିଲୁ । ଆମେ ପ୍ରକୃତରେ ଅଲୌକିକ-ଆବେଗଗ୍ରସ୍ତ ହୋଇଥିଲୁ ।

ଦୈବାତ୍ କୌଣସି ଅସୁବିଧା କଥା ମନେ ପଡ଼ି ମୋର ଉତ୍ସାହ ଟିକେ ଦବିଯିବାରୁ, ସେ ତାର ଉତ୍ତରରେ କହିଲା, "ଠିକ୍ ହୋଇଯିବ । ସବୁ ଠିକ୍ ହୋଇଯିବ । ଆଜି ରାତିରେ ହିଁ ଆମେ ଗ୍ରୁଅ ପାଇଁ ନକ୍‌ସା ଅଙ୍କନ ଆରମ୍ଭ କରିଦେବା ।"

ମୁଁ ପ୍ରତ୍ୟୁତ୍ତର ଦେଲି, "ଏହିକ୍ଷଣି ତାହା ଆରମ୍ଭ କରାଯିବ ।" ଏହି କାର୍ଯ୍ୟ ସାଙ୍ଗେ ସାଙ୍ଗେ ଆରମ୍ଭ କରିବା ପାଇଁ ଆମେ ଗବେଷଣାଗାରକୁ ଗଲୁ ।

ସମସ୍ତ ରାତି ମୁଁ ଅଜବ ଦେଶର ଶ୍ରେଷ୍ଠ ଶିଳ୍ପପର୍ଣ୍ଣ ବ୍ୟବହାର କରିବାକୁ ଲାଗିଲି । ରାତି ପ୍ରଭାତ ହେବା ପର୍ଯ୍ୟନ୍ତ ଆମେ କାମରେ ଲାଗି ରହିଲୁଁ ଏବଂ ଅବସର ଆଲୋକ ସତ୍ତ୍ୱେ ଆମେ ଆଲୁଅ ଲିଭାଇବାକୁ ଭୁଲିଗଲୁଁ । ସେହି ନକ୍ସ ଗୁଡିକ କିପରି ଦିଶୁଥିଲା, ମୋ ର ବର୍ତ୍ତମାନ ବେଶ୍ ମନେ ଅଛି । କେଭଡ୍ ଅଙ୍କନ କଲା ଏବଂ ମୁଁ ରଙ୍ଗ ଦେଲି । ସେ ଗୁଡିକ ତରବରିଆ ଓ ମଇଳା ଭାବରେ ଅଙ୍କା ହୋଇଥିଲେ ମଧ୍ୟ ନିର୍ଭୁଲ ଥିଲା । ସେଇ ରାତିକର କାମ ଦ୍ୱାରା ଆମର ଯନ୍ତ୍ରା ଇଷ୍ଟାଜ-ପର୍ଦ୍ଦା ଓ ଫ୍ରେମ୍ ଆଦି ଦରକାରୁ ତାହା ଠିକ୍ କରି ସେଗୁଡିକ ଯୋଗାଇବା ପାଇଁ ଲେଖି ପଠାଇଲୁ; ଏବଂ କାଚ ଗୋଲକର ନକ୍ସା ସପ୍ତାହକ ଭିତରେ ତିଆରି ହୋଇଗଲା । ଆମେ ଆମର ପୂର୍ବର ଦୈନନ୍ଦିନ କାର୍ଯ୍ୟ ପ୍ରଣାଳୀ ଓ ଓପରଓଳାର ଗଳ୍ପ ସମ୍ପୂର୍ଣ୍ଣ ତ୍ୟାଗ କଲୁ । ଆମେ ସମସ୍ତ ସମୟ କେବଳ କାମ କରିବାକୁ ଲାଗିଲୁ, ଏବଂ ଯେତେବେଳେ କ୍ଲାନ୍ତ ଓ କ୍ଷୁଧା ଯୋଗୁଁ ଆଉ କାମ କରି ନ ନ ହେଲା, ସେତେବେଳେ ଯାଇଁ ନିଦ୍ରା ଓ ଖାଦ୍ୟ ଗ୍ରହଣ କଲୁ । ଆମର ସହକାରୀ ତିନିଜଣ ଏହି ଗୋଲକର ଆବଶ୍ୟକତା କଣ, ତାହା ନ ଜାଣିଥିଲେ ମଧ୍ୟ ଆମର ଉତ୍ସାହ ସେମାନଙ୍କୁ ମଧ୍ୟ ଆକ୍ରାନ୍ତ କଲା । ଗୋଲକ ତିଆରି ହେବା ଦିନଗୁଡିକ ଭିତରେ ଗିବସ୍ ବୁଲିଯିବା ଛାଡିଦେଲା ଏବଂ ସବୁଠାକୁ, ଏପରିକି କୋଠରୀ ସେ ପଟକୁ ଯିବାକୁ ହେଲେ ମଧ୍ୟ ବ୍ୟସ୍ତ ଭାବରେ ଦୌଡିକରି ଯିବାକୁ ଲାଗିଲା ।

ଗୋଲକ ତିଆରି ହେବାକୁ ଲାଗିଲା । ଡିସେମ୍ବର ମାସ ଶେଷ ହେଲା, ତାପରେ ଜାନୁଆରୀ—ଦିନଟାଏ ମୁଁ ବଙ୍ଗଳାରୁ ଗବେଷଣାଗାର ପର୍ଯ୍ୟନ୍ତ ଝାଡୁ ସାହାଯ୍ୟରେ ବରଫର ବରଫ ସଫାକରିବା କାମରେ ଲଗେଇଲି —ତାପରେ ଫେବୃୟାରୀ, ମାର୍ଚ୍ଚ । ମାର୍ଚ୍ଚ ଶେଷ ବେଳକୁ ତିଆରି କାମ ସମ୍ପୂର୍ଣ୍ଣ ହେବା ଦିନ ପାଖେଇ ଆସିଲା । ଜାନୁଆରୀ ମାସରେ ଦୁଇଟି ଘୋଡା ଦ୍ୱାରା ଟଣାହୋଇ ଗୋଟିଏ ବୃହତ୍ କାଠ ବାକ୍ସ ଅସି ଯାଇଥିଲା । ସେ ସମୟକୁ ଆମର ମୋଟା କାଚ ଗୋଲକ ପ୍ରସ୍ତୁତ ହୋଇ କେନ୍ ତଳେ ବସା ହୋଇ

ଯାଉଥିଲୁ । ତାଙ୍କୁ ହଠାତ୍ ଇସ୍ପାତ୍ ଖୋଳ ଭିତରେ ଖଞ୍ଜିବା ପାଇଁ ଜେନ୍‌ରେ ଦଉଡ଼ି ଯେ ତାହା ହୋଇ ରଖା ଯାଇଥିଲା । ଇସ୍ପାତ୍ ଖୋଳର ସମସ୍ତ ପର୍ଦ୍ଦା ଓ ଛାତ ଫେବୃଆରି ମାସରେ ପହଞ୍ଚିଲା ଏବଂ ତାର ନିମ୍ନାଙ୍ଗ ଏକାଠି ଯୋଡ଼ି ଦିଆଗଲା । ଇସ୍ପାତ୍ ଖୋଳଟା ଠିକ୍ ଗୋଲାକାର ନଥିଲା, ଏହା ଥିଲା ବହୁ-ଭୁଜାକାର ଏବଂ ପ୍ରତ୍ୟେକ ଭୁଜରେ ଗୋଟିଏ କରି ଗୁଡ଼େଇ ହୋଇ ପାରୁଥିବା ପର୍ଦ୍ଦା ଲାଗିଥିଲା । ମାର୍ଚ୍ଚମାସ ବେଳକୁ କେଭରଟ୍ ଅଧାଅଧି ତିଆରି ସରିଥିଲା । ନିର୍ମାଣ କ୍ରିୟାର ଦୁଇଟି ସ୍ତର ଭିତର ଦେଇ ଧାତବଲେପ ଯାଇ ସାରିଥିଲା, ଏବଂ ଆମେ ସେଥିରୁ ଅଧାଅଧି ଇସ୍ପାତ୍ ପର୍ଦ୍ଦା ଓ ଗରଡ଼ ଦଢ଼ିରେ ବୋଳି ସାରିଥିଲୁଁ । ଏହି ନିର୍ମାଣ କାର୍ଯ୍ୟ ବିଷୟରେ କେଭରର ପ୍ରଥମ କଳ୍ପନା ନିହିତ ଥାନର ତ୍ରୁଟି କାର୍ଯ୍ୟ କିପରି ପ୍ରାୟ ସମ୍ପୂର୍ଣ୍ଣରୂପେ ମେଳ ଖାଇଗଲା, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଯେତେବେଳେ ଗୋଲକ ଏକାଠି ଯୋଡ଼ା ହେବା କାମ ଶେଷ ହେଲା, କେଭର କହିଲା ଯେ, ଯେଉଁ କୋଠରୀରେ ନିର୍ମାଣ କାର୍ଯ୍ୟ ଚାଲିଥିଲା ସେହି ଅସ୍ଥାୟୀ ଗବେଷଣାଗାରର ଆବଦ୍ଧ ଛାଦଟା ତୁରନ୍ତ ଉଠେଇ ଦେବାକୁ ହେବ, ଏବଂ ତାର ସ୍ଥଳପଟେ ଗୋଟିଏ ଅଗ୍ନିକୁଣ୍ଡ ତିଆରି କରିବାକୁ ହେବ । ଅତଏବ କେଭରଟ୍ ନିର୍ମାଣ କ୍ରିୟାର ଶେଷ ଅବସ୍ଥା—ଅର୍ଥାତ୍ ପ୍ରଲେପକୁ ହେଲିୟମ ସ୍ରୋତରେ ଅନୁକୂଳ ଚନ୍ଦ୍ରମା ଲାଭ କରିବା ପର୍ଯ୍ୟନ୍ତ ଉତ୍ତପ୍ତ କରିବା—ସମ୍ପାଦନ କରାଯିବ, ତାହା ଗୋଲକ ଉପରେ ବୋଳା ହୋଇ ସାରିଲା ପରେ ।

ତା ପରେ, ଆମ୍ଭେମାନେ କଣ କଣ ସାମଗ୍ରୀ ସାଙ୍ଗରେ ନେବୁଁ ତାହା ସ୍ଥିର କରି ଠିକ୍ କଲୁଁ—ସଙ୍କୁଚିତ ଖାଦ୍ୟ, ଅଲ୍ପୀକୃତ ନିର୍ଯ୍ୟାସ, ସଞ୍ଚିତ ଅମ୍ଳଜାନ ବାଷ୍ପ ଭର୍ତ୍ତି କରାହୋଇଥିବା ନଳୀ, ବାୟୁରୁ ସୋଡ଼ିୟମ୍ ପେରୋ-କ୍ସାଇଡ୍ ସାହାଯ୍ୟରେ କାର୍ବୋନିକ ଏସିଡ୍ ଓ ମଇଳା ଦୂର କରି ଅମ୍ଳଜାନ ପୁନରୁଦ୍ଧାର କରିବାପାଇଁ ଯନ୍ତ୍ର, ଜଳ ଘନୀଭୂତ କରିବାର ଯନ୍ତ୍ର ଇତ୍ୟାଦି, ଇତ୍ୟାଦି । ସେ ସବୁ ଜିନିଷ—ଟିଫିନ, ପୋଟଲା, ବାକ୍ସ ଇତ୍ୟାଦି—ଘର କୋଣରେ ଜମାହୋଇ କାର୍ଯ୍ୟର ବାସ୍ତବତା ବିଷୟରେ ଯେପରି ସୂଚନା ଦେଉଥିଲା, ତାହା ମୋର ଠିକ୍ ମନେ ଅଛି ।

ହଠାତ୍ ମୁଁ କହିଲି, "କିନ୍ତୁ, ଦେଖ କେଭର୍, ପ୍ରକୃତରେ ଏ ସମସ୍ତ ଆୟୋଜନର ଉଦ୍ଦେଶ୍ୟ କଣ ?"

ସେ ଟିକେ ହସିଲା । କହିଲା, "ବର୍ତ୍ତମାନ କେବଳ ଯାତ୍ରା କରିବା କଥା ।"

ମୁଁ ଚିନ୍ତାମଗ୍ନ ଭାବରେ କହିଲି, "ଚନ୍ଦ୍ରକୁ ! କିନ୍ତୁ ସେଠାରେ କଣ ଦେଖିବାକୁ ତୁମେ ଆଶା କର ? ମୁଁ ଭାବିଥିଲି ଚନ୍ଦ୍ର ଗୋଟିଏ ମୃତ ଜଗତ ।"

ସେ ବିରକ୍ତଭାବରେ କାନ୍ଧ ଝୁଣ୍ଟାଇଲା ।

ମୁଁ ପୁଣି ପଚାରିଲି, "ତୁମେ କଣ ଦେଖିବାକୁ ଆଶାକର ?"

"ଆମେ ସେ କଥା ଜାଣିବାକୁ ଯାଉଛୁଁ ।"

"ଯାଉଛୁ ନା କଣ ?" ଏହା କହି ସ୍ଥିର ଦୃଷ୍ଟିରେ ମୁଁ ତା ଆଡ଼େ ଅନାଇ ରହିଲି ।

ସେ ମନ୍ତବ୍ୟ କଲା, "ଦେଖ, ତୁମେ ବେଶୀ କ୍ଳାନ୍ତ ହୋଇପଡ଼ିଛ । ଆଜି ବରଂ ଓପରଓଳି ଟିକେ ବୁଲିଆସ ।"

ମୁଁ କିନ୍ତୁ ଅବୁଝାପରି କହିଲି, "ନା, ଅଳ୍ପ ଭିତରେ ଏଇ ଇଟାବସା କାମ ମୁଁ ଶେଷ କରିବି ।" ପ୍ରକୃତରେ ମୁଁ ତା କଲି ଏବଂ ଫଳତଃ ରାତିକ ଲାଗି ଅନିଦ୍ରା ଡାକି ଆଣିଲି ।

ଏପରି ରାତି ବୋଧହୁଏ ମୋ ଜୀବନରେ ଆଉ କେବେ ଆସି ନଥିଲା । ମୋର ବ୍ୟବସାୟ ଫେଲ୍ ମାରିବାର ପୂର୍ବାବସ୍ଥାରେ ମୁଁ ଅନେକ ଯାତନା ଭୋଗ କରିଥିଲି, କିନ୍ତୁ ଏହି ପୀଡ଼ାଦାୟକ ଶେଷସ୍ପନ୍ନ ଜାଗରଣର ତୁଳନାରେ ତାହା ଥିଲା ମଧୁର ନିଦ୍ରା । ଆମେ ଯାତ୍ରା କରିବାକୁ ଯାଉଥିଲୁ ସେ ବିଷୟରେ ହଠାତ୍ ମୋର ଭୀଷଣ ଭୟ ଜାତ ହେଲା ।

ସେଇ ରାତି ପୂର୍ବରୁ ମୁଁ ବୋଧହୁଏ ଆଉ କେବେ ଭାବି ଦେଖି ନ ଥିଲି ଯେ ଆମେ କେତେ ବଡ଼ ବିପଦ-ଆପଦର ସମ୍ଭାବନାକୁ ବରଣ କରି

ନେଉଛୁ । ଯେଉଁ ପ୍ରେତ ଶ୍ରେଣୀ ଅଦୃଷ୍ଟ ପ୍ରେତ୍ ନଗରୀକୁ ଆକ୍ରମଣ କରିଥିଲେ, ଠିକ୍ ତାହାଙ୍କ ପରି ଏହି ବିପଦର ଚିନ୍ତା ମୋତେ ଆକ୍ରମଣ କଲା । ଆମ୍ଭେ ଯାହା କରିବାକୁ ଯାଉଥିଲୁଁ ତାର ଅଦ୍ଭୁତତା, ତାର ଅପାର୍ଥିବତା ମୋତେ ବିପର୍ଯ୍ୟସ୍ତ କରି ପକାଇଲା । ମୋର ଅବସ୍ଥା ଥିଲା କୌଣସି ମଧୁର ସ୍ୱପ୍ନରୁ ଭୀଷଣ ଆବେଷ୍ଟନୀ ମଧ୍ୟରେ ଚେଇଁ ଉଠିଲା ପରି । ମୁଁ ଆଖି ମେଲିକରି ପଡ଼ି ରହିଲି ଏବଂ ଗୋଲକଟି ମୋ. ସମ୍ମୁଖରେ କ୍ରମେ କ୍ରମେ ଅଧିକତର ଝାପସା ଓ କ୍ଷୀଣ ରୂପ ଗ୍ରହଣ କରିବାକୁ ଲାଗିଲା; ଏବଂ କେଭର୍ ଅଧିକରୁ ଅଧିକ ଅବାସ୍ତବ ଓ ଅପ୍ରକୃତ ବୋଧହେଲା ଏବଂ ସମସ୍ତ ଉଦ୍ୟମଟି ପ୍ରତିକ୍ଷଣରେ ଅଧିକରୁ ଅଧିକ ପାଗଳାମୀ ବୋଲି ମନେ ହେଲା ।

ମୁଁ ଖଟରୁ ଉଠି ଘରଆଡ଼େ ବୁଲିବାକୁ ଲାଗିଲି । ଝରକା ନିକଟରେ ବସି ବିରାଟ ମହାଶୂନ୍ୟ ଆଡ଼କୁ ଚାହିଁଲି । ତାରାଗୁଡ଼ିକର ମଝିରେ ଥିଲା ନିବିଡ଼ ଶୂନ୍ୟତା, ନକ୍ଷତ୍ରସ୍ୱାତୀତ ଅନ୍ଧକାର ! ଜ୍ୟୋତିଃଶାସ୍ତ୍ର ବିଷୟରେ ମୋର ଅନିୟମିତ ପାଠ ଦ୍ୱାରା ଯାହା ଆଂଶିକ ଜ୍ଞାନ ଅର୍ଜନ କରିଥିଲି ତାହା ମନେ ପକାଇ-ବାକୁ ଚେଷ୍ଟା କଲି, କିନ୍ତୁ ତାହା ଏଡ଼େ ଅସ୍ପଷ୍ଟ ଥିଲା ଯେ ତାହାଦ୍ୱାରା ଆମେ ଯାହା ଯାହା ଦେଖିବା ସମ୍ଭବ ସେ ସମ୍ବନ୍ଧରେ କୌଣସି ଧାରଣା ଲାଭ କରି ପାରିଲି ନାହିଁ । ପରିଶେଷରେ ମୁଁ ବିଛଣାକୁ ଫେରିଗଲି ଏବଂ କେତେକ ମୁହୂର୍ତ୍ତିପାଇଁ ନିଦ୍ରାଲାଭ କରିବାକୁ ସକ୍ଷମ ହେଲି । ତାକୁ ବରଂ କେତେକ ମୁହୂର୍ତ୍ତିର ଦୁଃସ୍ୱପ୍ନ ବୋଲି କହିପାରି ! ସେହି ଦୁଃସ୍ୱପ୍ନରେ ମୁଁ ଆକାଶର ଅତଳ ଗହ୍ୱରର ଭିତରେ ଆହୁରି ଭିତରକୁ ଭିତରକୁ ଖସିବାକୁ ଲାଗିଲି ।

ପ୍ରାତଃଭୋଜନ ସମୟରେ ମୁଁ କେଭରକୁ ଆଶ୍ଚର୍ଯ୍ୟ କରିଦେଲି । ଅଳ୍ପ କଥାରେ ମୁଁ ତାକୁ ବୁଝାଇ ଦେଲି, "ମୁଁ ଏହି ଗୋଲକରେ ତୁମ ସହିତ ଯିବି ନାହିଁ ।"

ସେ ମତେ ଯେତେ ବୁଝାଇଲେ ବି ମୁଁ ମୁହଁଟା ପିଡ଼ା କରି ସେଇ ଏକା ଜିଦ୍ ଧରି ବସି ରହିଲି । କହିଲି, "ବ୍ୟାପାରଟି ତୁଚ୍ଛା ପାଗଳାମୀ, ମୁଁ କେଭେ ଯିବି ନାହିଁ । ଏହା ନିହାତି ପାଗଳାମୀ ।"

ସେଦିନ ତା ସହିତ ଗୃବେଷଣାଗାରକୁ ମୁଁ ଆଉ ଚାଲିନାହିଁ । କିଛି ସମୟ ପର୍ଯ୍ୟନ୍ତ ବାଙ୍ଗଲା ଗୃହପଟେ ଅସ୍ଥିର ଭାବେ ବୁଲିବାକୁ ଲାଗିଲି, ତାପରେ ଟୋପି ଆଉ ବାଡ଼ି ଧରି ଏକୁଟିଆ ମୁହାଁଡେ ଆଖି ଟାଲି ଗୃଲିଲି । ଯୋଗକୁ ସକାଳଟା ଥିଲା ଖୁବ୍ ସୁନ୍ଦର, ବାୟୁ ନିର୍ମଳ ଆଉ ଆକାଶ ଗାଢ ନୀଳ ଥିଲା, ଗୃହଆଡେ଼ ବସନ୍ତର ପ୍ରଥମ ଶ୍ୟାମଳିମା ଆଉ ଅଗଣିତ ପକ୍ଷୀର ସଙ୍ଗୀତ ଜାଗି ଉଠିଥିଲା । ଏଲ୍‌ହାମ୍ ନିକଟସ୍ଥ ଗୋଟିଏ ଗ୍ରେଟ ହୋଟେଲରେ ମୁଁ ମାଂସ ଓ ବିସ୍କୁଟ ମଦ୍ୟ ଖାଇଲି ଏବଂ ପାଗ ବିଷୟରେ ମୋର ଗ୍ରେକ୍‌-ଠୋକ୍ ମନ୍ତବ୍ୟ ଦ୍ଵାରା ହୋଟେଲର ମାଲିକକୁ ଚମକେଇ ଦେଲି । କହିଲି, "ଯେଉଁ ଲୋକ ଏପରି ସୁନ୍ଦର ଦିନରେ ପୃଥିବୀ ଛାଡ଼ି ଗୃଲିଯାଏ, ସେ ଗୋଟିଏ ଗର୍ଦ୍ଦଭ !"

ହୋଟେଲବାଲା କହିଲା, "ମୁଁ ଯେତେବେଳେ ଏହି ଘଟଣା ଶୁଣିଲି, ଠିକ୍ ଏହି କଥାହିଁ କହିଥିଲି ।" ତାର ଘଟଣା ଥିଲା ଏହି ଯେ, ଜଣେ କିଏ ନିଜ ବେକ କାଟି ଆତ୍ମହତ୍ୟା କରିଥିଲା । ମୁଁ ଦେଖିଲି ଅନ୍ତତଃ ଜଣେ ଦୁର୍ଭାଗା ପାଇଁ ଏହି ପୃଥିବୀ ଦୁର୍ବହ ହୋଇ ପଡ଼ିଥିଲା । ମୋର ଚିନ୍ତାଧାରାର ଗତିରେ ଗୋଟିଏ ନୂତନ ପରିବର୍ତ୍ତନ ନେଇ ମୁଁ ପୁଣି ଗୃଲିବାକୁ ଲାଗିଲି !"

ଓପରଓଳି ଗୋଟିଏ ରୌଦ୍ରସ୍ନିଗ୍ଧ ସ୍ଥାନରେ ମୁଁ କିଛି ସମୟ ଆରାମରେ ଶୋଇଲି । ତା ପରେ ତାଜା ହୋଇ ପୁଣି ଆପଣା ବାଟେ ଗୃଲିଲି ।

କେଣ୍ଟରବରୀ ନିକଟସ୍ଥ ଗୋଟିଏ ସରେଇଘର ଅଗ୍ରାମ ଯୋଗାଇ ପାରିଲା ଭଳି ଦିଶୁଥିଲା । ମୁଁ ସେଠାକୁ ଗଲି । ଘରଟି ସୁନ୍ଦର ଲତାଦ୍ଵାରା ମଣ୍ଡିତ ହୋଇଥିଲା ଏବଂ ଘର ମାଲିକାଣୀ ବୁଢୀ ବେଶ୍ ପରିଷ୍କାର ପରିଚ୍ଛନ୍ନ ଥିଲା, ତେଣୁ ମୋର ପସନ୍ଦ ହେଲା । ମୁଁ ଦେଖିଲି ଯେ ସେଠାରେ ରହିବାର ଖର୍ଚ୍ଚ ପାଇଁ ମୋ ପାଖରେ ଠିକ୍ ପରିମାଣରେ ପଇସା ଅଛି । ତେଣୁ ରାତିଟା ସେଠି କଟାଇବାର ସ୍ଥିର କଲି । ବୁଢୀଟା ଥିଲା ବଡ଼ ଗପୁଡ଼ି । ଅନ୍ୟ କଥା

ଭିତରେ ମୁଁ ତାଠାରୁ ଶୁଣିଲି ଯେ ସେ କେବେହେଲେ ଲଣ୍ଡନ ଯାଇ ନାହିଁ । ସେ କହିଲା, "ଅତି ବେଶୀ ହେଲେ କେଣ୍ଟରବରି ଯାଏ ମୁଁ ଯାଇଛି । ଏଠିକି ସେଠିକି ଧାଁ ଧପଡ଼ କରିବା ମୋ ଜାତକରେ ନାହିଁ ।"

ମୁଁ ହଠାତ୍ କହି ପକାଇଲି, "ଆଚ୍ଛା, ଚନ୍ଦ୍ରକୁ ବୁଲିଯିବାଟା ତୁମକୁ କେମିତି ଲାଗିବ ?"

ସେ କହିଲା, "ସେସବୁ ବେଲୁନ୍ ଫେଲୁନ୍ ମୁଁ ପସନ୍ଦ କରେ ନାହିଁ । ସେଥିରୁ ଗୋଟାକରେ ମୁଁ କେବେ ଯିବାକୁ ରାଜି ହେବି ନାହିଁ—ଖୋସାମତ କଲେ ବି ନୁହେଁ ।" ତାର ଧାରଣା ଥିଲା ଯେ ଏଇଟା ବେଲୁନରେ ଯିବା ଭଳିଆ ନିତାନ୍ତ ସାଧାରଣ ଗୋଟିଏ ଯାତ୍ରା ।

କଥାଟା ଶୁଣି ମୋର ବଡ଼ ମଜା ବୋଧ ହେଲା । ଖିଆପିଆ ଶେଷକରି ମୁଁ ସବରଇଦରର ଦୁଆର ପାଖରେ ଖଣ୍ଡେ ବେଞ୍ଚରେ ବସି ଦୁଇଜଣ ମଜୁରିଆଙ୍କ ସାଥିରେ ଇଟାଗୁଡ଼ିକ, ମଟରଗାଡ଼ି, ଆଉ ଗତ ବର୍ଷର କ୍ରିକେଟ୍ ଖେଳ ବିଷୟରେ ଖୁସିଗପ ଯୋଡ଼ି ଦେଲି ଏବଂ ଆକାଶରେ ଦୂର ଆଲ୍ପସ୍ ପର୍ବତ ପରି ନୀଳ ଓ ଅସ୍ପଷ୍ଟ ଶୀର୍ଣ୍ଣ ପ୍ରତିପଦା ଚନ୍ଦ୍ର ସୂର୍ଯ୍ୟର ପଛେପଛେ ପଶ୍ଚିମ ଆଡ଼କୁ ଚାଲି ପଡ଼ିଲା ।

ତା ପରଦିନ ମୁଁ କେଭର ପାଖକୁ ଫେରିଗଲି । କହିଲି, "ମୁଁ ତୁମ ସାଙ୍ଗରେ ଯିବି । କେବଳ ମୋର ଶରୀର ଟିକେ ଗୋଳମାଳ ହୋଇ-ଯାଇଥିଲା, ଆଉ କିଛି ନୁହେଁ ।"

ସେଇ ଥରକ ଛଡ଼ା ଆମର ଅଭିଯାନ ବିଷୟରେ ଆଉ କେବେହେଲେ ମୋର ଏତେ ବିଷମ ସନ୍ଦେହ ଜାତ ହୋଇ ନ ଥିଲା । ତୁଚ୍ଛା ସ୍ନାୟବିକ ଉତ୍ତେଜନା ! ସେହି ସମୟଠାରୁ ମୁଁ ଆଗ ଅପେକ୍ଷା ସାବଧାନତା ସହିତ କାମ କଲି ଏବଂ ପ୍ରତିଦିନ ଘଣ୍ଟାଏ ବୁଲିଯିବାଟା ବାଦ ଦେଲି ନାହିଁ । ପରିଶେଷରେ, କେବଳ ଅଗ୍ନି କୁଣ୍ଡରେ ଜାଳି ଦେବା ଛଡ଼ା ଆମର ବାକି ସବୁ କାମ ଶେଷ ହେଲା ।



# ୪

## ଗୋଲକର ଅଭ୍ୟନ୍ତରରେ

ମୁ ଗାଡ଼ିର କଡ଼ରେ ବସି ଗୋଲକର ଅନ୍ଧକାରମୟ ଅଭ୍ୟନ୍ତରକୁ ଅନାଇଲି । କେଭର କହିଲା, "ଯାଅ, ଭିତରକୁ ଯାଅ ।" ଆମେ ଦୁହେଁ ସେଠି ଏକା ଥିଲୁ । ସନ୍ଧ୍ୟା ହୋଇ ଯାଇଥିଲା ଏବଂ ଗୋଧୂଳିର ଅନ୍ତର୍ଦ୍ଧାନତା ଦ୍ୱାରା ସମସ୍ତ ଆଚ୍ଛନ୍ନ ଥିଲା ।

ମୁଁ ମୋର ଆର ଗୋଡ଼ଟି ଭିତରକୁ ଟାଣିନେଲି ଏବଂ ଚକ୍‌କଣ କାଚ ଦେଇ କସି ଗୋଲକର ନିମ୍ନତମ ପ୍ରଦେଶକୁ ଖସିପଲି । ତା ପରେ କେଭର ପ ଖକୁ ଖାଦ୍ୟର ଟିଣ ଓ ଅନ୍ୟାନ୍ୟ ଜିନିଷ ସବୁ ନେବାପାଇଁ ବୁଲି ପଡ଼ିଲି । ଭିତରଟା ବେଶ ଉଷ୍ଣମ ଥିଲା । ପ୍ରାୟ ୮୦ ଡିଗ୍ରୀ ଉତ୍ତାପ ଥିଲା । ପରେ ବିକୀରଣ ଦ୍ୱାରା ଏହି ଉତ୍ତାପ କମିବାର ପ୍ରାୟ ସମ୍ଭାବନା ନ ଥିବାରୁ ଆମେ ଯୋଡ଼ା ଓ ପାତଳା ଗରମବସ୍ତ୍ର ପିନ୍ଧିଥିଲୁ । କିନ୍ତୁ କାଳେ କିଛି ଅଘଟଣ ଘଟିପାରେ ବୋଲି ଗୋଟିଏ ମୋଟା ଗରମ ପୋଷାକର ଚଣ୍ଡିଗ୍ ଏବଂ ଅନେକଗୁଡ଼ିଏ ମୋଟା କମ୍ବଳ ମଧ ସାଙ୍ଗରେ ନେଇଥିଲୁ । କେଭରର କଥା ଅନୁସାରେ ମୁଁ ବୋକଗୁପଣ, ଅମ୍ଳଜାନ ନଳୀ ଇତ୍ୟାଦି ଗୋଡ଼ ପାଖରେ ବାଛିଇ ରଖିଦେଲି । ଶୀଘ୍ର ସମସ୍ତ ଜିନିଷ ଭିତରେ ରଖା ହୋଇଗଲା । ଆମେ କାଳେ କୌଣସି ଜିନିଷ ଆଣିବାକୁ ଭୁଲିଯାଇଥିବୁ, ତାହା ଦେଖିବା ପାଇଁ କିଛି ସମୟ ପର୍ଯ୍ୟନ୍ତ ସେ ଗୃହହୀନ କୋଠାରେ ଖୋଜି ବୁଲିଲା, ତା ପରେ ମୋ ପଛେ ପଛେ ଭିତରକୁ ଗୁରୁଣ୍ଡି ଆସିଲା । ସେ ହାତରେ କଣ ଗୋଟାଏ ଧରିଛି ଦେଖି, ମୁଁ ପଚାରିଲି, "ସେଇଟା କଣ ?"

ସେ କହିଲା, "ତୁମେ ପଢ଼ିବା ପାଇଁ କିଛି ଆଣି ନାହିଁ କି ?"

"ଆରେ, ନା ତ !"

ମୁଁ ତୁମକୁ କହିବାକୁ ଭୁଲି ଯାଇଥିଲି । ଅନେକ ଅନିଶ୍ଚିୟତା ରହିଛି —। ଆମର ଯାତ୍ରା—ଅନେକ ସପ୍ତାହ ଲାଗିପାରେ !"

"କିନ୍ତୁ—"

"ଅକର୍ମା ହୋଇ ବସି ଆମେ ଏଇ ଗୋଲକରେ ଭସି ବୁଲୁଥିବା ।"

"ମୁଁ ଯଦି ଜାଣିଥାନ୍ତି—"

ସେ ଗର୍ତ୍ତିବାଟେ ବାହାରକୁ ଚକ୍କିମାରି ଦେଖିଲା । କହିଲା, "ଏଇ ଦେଖ ! ସେଠି ଖାଦ୍ୟାହେବ କିଛି ଅଛି !"

"ସମସ୍ତ ଅଣ୍ଟିବ ତ ?"

"ଆମର ଆହୁ ଘଣ୍ଟାଏ ଡେରି ଅଛି ।"

ମୁଁ ଚାହିଁ ଦେଖିଲି । "ଏଠୁ ସେଠୁ" ନାମକ ଖବର କାଗଜର ଖଣ୍ଡେ ପୁରୁଣା ସଂଖ୍ୟା ପଡ଼ିଥିଲା । ଓ୍ୱାଧହୁଏ ଆମ ମଜୁରିଆମାନଙ୍କ ମଧ୍ୟରୁ ଜଣେ ତାକୁ ଆଣିଥିଲା । ଅଥିଗ ଦୂରକୁ, ଗୋଟିଏ କଣରେ ମୁଁ ଖଣ୍ଡେ ଛୁଣ୍ଡା "ଲଣ୍ଡନ୍‌ର ଖବର" ଦେଖିବାକୁ ପାଇଲି, ଏ ସବୁ ଗୋଟେଇ ମୁଁ ଗୋଲକ ଭିତରକୁ ଫେରି ଆସିଲି ।

ତା ହାତରୁ ବହି ଖଣ୍ଡିକ ନେଇ ପଢ଼ି ଦେଖିଲି, "ଓଇଲିୟମ୍ ସେକ୍‌ସପିଅର ଚନ୍ଥାବଳୀ ।"

ସେ ଟିକେ ଲଜ୍ଜିତ ହୋଇ ତ୍ରୁଟି ସ୍ୱୀକାର କଲାପରି କହିଲା, "ମୋର ବିଦ୍ୟାଳୟ କେବଳ ବିଜ୍ଞାନରେ ହିଁ ଶେଷ ହୋଇଛି, ଯେ—"

"ସେକ୍‌ସପିଅରଙ୍କ ଲେଖା କେବେ ପଢ଼ି ନାହିଁ ?"

"କେବେ ବି ନୁହେଁ ।"

"ଲୋକଟା କିଛି କିଛି ଜାଣିଥିଲା, ବୁଝିଲ—ଏଇ, ଏଣୁ ତେଣୁ ଟିକେ ।"

ସେ କହିଲା, "ହଁ, ସେଇ ପରି ତ ମୁଁ ଶୁଣିଛି ।"

ଗର୍ତ୍ତିର କାଚ ଢାଙ୍କୁଣି ପେଞ୍ଚ ଲଗେଇ ବନ୍ଦ କରିବାରେ ମୁଁ ତାକୁ ସାହାଯ୍ୟ କଲି । ତା ପରେ ସେ ବାହାର ଖୋଲରେ ଥିବା ଗର୍ତ୍ତି ସମ୍ମୁଖସ୍ଥ ତଦନୁରୂପ ଇସ୍ପାତ୍ ପର୍ଦ୍ଦାକୁ ଗୋଟିଏ ବୋତାମ ଟିପି ବନ୍ଦ କରିଦେଲା ।

ଗୋଧୂଳିର ଚତୁଷ୍କୋଣାକାର ଆଖି ଲିଭିଗଲା । ଆମେ ଅନ୍ଧାରରେ ବସି ରହିଲୁ ।

କିଛି ସମୟ ପର୍ଯ୍ୟନ୍ତ ଚୁପ୍‌ଚାପ୍ ବସି ରହିଲୁ । ଆମର ଖୋଲଟି ଶବ୍ଦରୋଧକ ନ ହେଲେ ମଧ୍ୟ ବାହାରଟା ଥିଲା ନୀରବ । ମୁଁ ଦେଖିଲି ଯେ ଆମେ ଯେତେବେଳେ ହଠାତ୍ ଉଠିବାକୁ ଆରମ୍ଭ କରିବୁ, ସେ ସମୟର ଧକ୍କା ସମ୍ଭାଳିବା ପାଇଁ ଧରିବାକୁ କୌଣସି ଜିନିଷ ନାହିଁ । ଖଣ୍ଡେ ତକିଆ ନ ଥିବାରୁ ମଧ୍ୟ ମୋର ଅସୁବିଧା ହେବ ବୋଲି ବୁଝି ପାରିଲି ।

କେଭରକୁ ପଚାରିଲି, "ତକିଆ କାହିଁକି ଆଣି ଯାଇ ନାହିଁ ?"

ସେ କହିଲେ, "ମୁଁ ସବୁକଥା ବିଚାର କରି ଦେଖିଛି । ତକିଆ ଆମର ଦରକାର ହେବ ନାହିଁ ।"

"କାହିଁକି ହେବନି ନାହିଁ ?"

"ପରେ ଜାଣି ପାରିବ ।" କଥାଟା ସେ ଏପରି ଭାବରେ କହିଲେ ଯେପରି ଏ ବିଷୟରେ ଆଲୋଚନା କରିବା ପାଇଁ ତାର ଇଚ୍ଛା ନାହିଁ ।

ମୁଁ ଚୁପ କରି ଗଲି । ହଠାତ୍ ଅତି ତୀବ୍ର ଭାବରେ ମୋର ଧାରଣା ଜନ୍ମିଲା ଯେ ସେହି ଗୋଲକ ଭିତରକୁ ଆସିବାଟା ମୋ ପକ୍ଷରେ ଅତି ବୋକାମୀର କାର୍ଯ୍ୟ ହୋଇଛି । ମୁଁ ନିଜ ମନକୁ ପଚାରିଲି, ବର୍ତ୍ତମାନ ବି କଣ ଆଉ ଫେରିଯିବା ପାଇଁ ସମୟ ନାହିଁ ? ମୁଁ ଜାଣିଥିଲି ଯେ, ଗୋଲକର ବାହାରେ ଥିବା ଦୁନିଆ ମୋ ପ୍ରତି ଆତ୍ମୀୟତା ପ୍ରକାଶ କରିବ ନାହିଁ କି ଦୟା ଦେଖାଇବ ନାହିଁ—ଅନେକ ସପ୍ତାହ ଧରି କେଭରର ଅର୍ଥ ସାହାଯ୍ୟ ଉପରେ ନିର୍ଭର କରି ହିଁ ମୁଁ ଚଳୁଥିଲି—କିନ୍ତୁ ତଥାପି, ତାହା କଣ ଅନନ୍ତ ଶୂନ୍ୟତା ପରି ଅଦରଦୀ ହେବ, ଅସୀମ ମହାକାଶ ପରି ଅନାତ୍ମୀୟ ହେବ ? ମୁଁ ବୋଧହୁଏ ସେହି ଶେଷ ମୁହୂର୍ତ୍ତରେ ମଧ୍ୟ ମତେ ବାହାରକୁ ଛାଡ଼ି ଦେବା ପାଇଁ ତାକୁ ବାଧ୍ୟ କରିଥାନ୍ତି, ଯଦି ଏହା ଭୀରୁତାର ନିଦର୍ଶନ ହୋଇ ନ ଥାଆନ୍ତା । କିନ୍ତୁ ଠିକ୍ ସେଇ କାରଣରୁ ମୁଁ ଦୋଦୋ ପାଞ୍ଚ କରିବାକୁ ଲାଗିଲି ଏବଂ ଅସ୍ଥିର ଓ ବିରକ୍ତ ହେବାକୁ ଲାଗିଲି, ଆଉ ସମୟ ବି ଚାଲିଯିବାକୁ ଲାଗିଲା ।

ଗୋଲିକରେ ଗୋଟିଏ ଗ୍ରେଟ ଧକ୍କା ମୁଁ ଅନୁଭବ କଲି, ଅନ୍ୟ କୋଠରୀରେ ମଦ ବୋତଲରୁ ଠିପି ଖୋଲିଲେ ଯେପରି ଶବ୍ଦ ହୁଏ ସେପରି ଗୋଟିଏ ଶବ୍ଦ ଶୁଣାଗଲା, ତା ପରେ ଗୋଟିଏ କ୍ଷୀଣ ହୁଇସିଲ ମାରିଲା ପରି ଶବ୍ଦ । ଗୋଟିଏ ମୁହୂର୍ତ୍ତ ପାଇଁ ତୀବ୍ର ଅସ୍ୱସ୍ତି ବୋଧହେଲା । ଅଗଣିତ ମହ୍ୱରେ ବ୍ରେକ୍ ଯେପରି ମତେ ତଳକୁ ଦାବି ଦେଉଥିଲା, ସେହିପରି ଗୋଟିଏ ଅସ୍ଥାୟୀ ଭାବ । ତାହା କେବଳ ମୁହୂର୍ତ୍ତାଂଶ ପାଇଁ ।

କିନ୍ତୁ ତାହା ମତେ ଚେତେଇଦେଲା । ଅନ୍ଧକାର ଭିତରକୁ ଲକ୍ଷ୍ୟକରି ମୁଁ କହିଲି, "କେଭର ! ମତେ ବଡ ଛଟପଟ ଲାଗୁଛି···ମୁଁ ବୋଧହୁଏ—"

ସେତିକି କହି ମୁଁ ଅଟକି ଗଲି । ସେ କୌଣସି ଉତ୍ତର ଦେଲା ନାହିଁ ।

ମୁଁ ପାଟିକରି ଉଠିଲି, ଚୁଲିକି ଯାଉ ସବୁ ! ମୁଁ ଗୋଟେ ଗର୍ଦ୍ଦଭ ! ଏହା ଭିତରକୁ କାହିଁକି ଆସିଲି ? କେଭର, ମୁଁ ତୁମ ସହିତ ଯିବି ନାହିଁ । ଏଥିରେ ଅତି ବେଶୀ ବିପଦ । ମୁଁ ବାହାରକୁ ଚାଲି ଯାଉଛି ।"

ସେ କହିଲା, "ଯାଇ ପାରିବ ନାହିଁ ।"

"ପାରିବ ନାହିଁ ! ଆଚ୍ଛା ଦେଖିବା !"

ଦଶ ସେକେଣ୍ଡ ପର୍ଯ୍ୟନ୍ତ ସେ କୌଣସି ଉତ୍ତର ଦେଲାନାହିଁ । ତା ପରେ କହିଲା, "ଆଉ କଳି କରି କୌଣସି ଲାଭ ନାହିଁ, ବେଡ଼୍‌ଫୋର୍ଡ଼ ! ସେଇ ଠକ୍‌କାଟାହିଁ ଗୋଲକ୍‌ର ଉଡ଼ିବାକୁ ଆରମ୍ଭ କରିବାର ସୂଚନା ଥିଲା । ବର୍ତ୍ତମାନ ଆମେ ଗୁଳିପରି ଦ୍ରୁତ ଗତିରେ ମହାଶୂନ୍ୟ ଭିତରକୁ ଉଡ଼ି ଯାଉଛୁ ।"

ମୁଁ କହିବାକୁ ଆରମ୍ଭ କଲି, "ମୁଁ—" । ତା ପରେ ବୁଝିଲି, ଯାହା ଘଟୁ, ଆଉ କିଛି ଯାଏ ଆସେ ନାହିଁ । କିଛି ସମୟ ପର୍ଯ୍ୟନ୍ତ ମୁଁ ଏକଦମ ଜଡ଼ ପାଲଟି ଗଲି; ମୋର ଆଉ କହିବାକୁ କିଛି ନ ଥିଲା । ଯେପରି କି, ପୃଥିବୀ ଯେ ତ୍ୟାଗ କରି ଯିବାକୁ ହେବ ଏ କଥା ମୁଁ ଆଗରୁ କେବେ ଶୁଣି ନ ଥିଲି । ତା ପରେ, ମୋର ଦୈହିକ ଇନ୍ଦ୍ରିୟ-ବୋଧରେ କୌଣସି ଅନଭିଧେୟ ପରିବର୍ତ୍ତନ ମୁଁ ଲକ୍ଷ୍ୟ କଲି । ଲଘୁତା, ଅପ୍ରାକୃତବୋଧ । ତା ସଙ୍ଗେ ସଙ୍ଗେ

ମୁଣ୍ଡ ଭିତରଟା କିପରି ଅଦ୍ଭୁତ ରକମ ଜଣାଗଲା; ପ୍ରାୟ ମୂର୍ଚ୍ଛା ରୋଗର ଲକ୍ଷଣ ପରି, ଏବଂ କାନ ପାଖର ଧମନୀଗୁଡ଼ିକ ଧପ୍‌ଧପ୍ କରିବାକୁ ଲାଗିଲା। ସ୍ନାୟୁର ଗତି ସହିତ, ଏସବୁ ଅବସ୍ଥା ହ୍ରାସ ପାଇଲା ନାହିଁ. କିନ୍ତୁ ଶେଷରେ ମୁଁ ଏପରି ଅଭ୍ୟସ୍ତ ହୋଇଗଲି ଯେ ମୋତେ ଆଉ କୌଣସି ଅସୁବିଧା ବୋଧ ହେଲା ନାହିଁ।

'ଖଟ୍' କରି ଗୋଟିଏ ଶବ୍ଦ ହେଲା, ଏବଂ ଗୋଟିଏ ଗ୍ରୀନ୍ ଗ୍ଲୋ-ଲ୍ୟାମ୍ପ ଜଳି ଉଠିଲା।

କେଭରର ମୁହଁ ସାଦା ଦେଖା ଯାଉଥିଲା। ମୋର ମୁହଁ ମଧ୍ୟ ସେପରି ଦିଶୁଥିବ ବୋଲି ମୁଁ ବୋଧ କଲି। ଉଭୟ ଉଭୟଙ୍କୁ ନୀରବରେ ଚାହିଁ ରହିଲୁଁ। ତା ପଛପଟରେ ଥିବା କାଚର ସ୍ୱଚ୍ଛ କାଳିମା ଯୋଗୁଁ ସେ ଦେଖା ଯାଉଥିଲା ଯେପରି ଶୂନ୍ୟରେ ଭାସୁଛି।

ଶେଷରେ ମୁଁ କହିଲି. "ଏଥର ଆମ ହାତଗୋଡ଼ ଛଡ଼ା ହେଲା।"

ସେ କହିଲା, "ହଁ ଛଡ଼ା ହେଲା।"

ମୁଁ ଟିକେ ହଲଚଲ ହେବାକୁ ଚେଷ୍ଟା କରିବାରୁ, ସେ କହିଲା, "ହଲ-ଚଲ ହୁଅନା। ତୁମର ମାଂସପେଶୀକୁ ସମ୍ପୂର୍ଣ୍ଣ ଢିଲା କରି ରଖିଥାଅ, ଯେପରି କି ଖଟରେ ଶୋଇଛ। ଆମେ ଆମ ନିଜର ଗୋଟିଏ କ୍ଷୁଦ୍ର ବିଶ୍ୱ ଭିତରେ ବର୍ତ୍ତମାନ ଅଛୁ। ସେଇ ଜିନିଷଗୁଡ଼ିକୁ ଅନାଅ!"

ଯେଉଁ ଢିଲା ବାକସ ଆଦି ଗଣ୍ଠିଲି ଗୁଡ଼ିକ ଗୋଲକର ନିମ୍ନତମ ପ୍ରଦେଶରେ କମ୍ବଳ ଉପରେ ଗଦା ହୋଇଥିଲା, ସେଗୁଡ଼ିକ ଆଡ଼କୁ ସେ ଆଙ୍ଗୁଠି ଦେଖେଇଲା। ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି ଯେ ସେଗୁଡ଼ିକ ବର୍ତ୍ତମାନ ଗୋଲକ ଦେହରୁ ପ୍ରାୟ ଫୁଟେ ଉପରକୁ ଭାସୁଥିଲେ। ତା ପରେ କେଭରଙ୍କ ଛାଇକୁ ଦେଖି ମୁଁ ଲକ୍ଷ୍ୟ କଲି ଯେ ସେ ଆଉ କାଚ ଉପରେ ଆଉଜି ରହି ନ ଥିଲା। ମୁଁ ମୋ ପଛ ପଟକୁ ହାତ ବଢ଼ାଇଲି ଏବଂ ଜାଣି ପାରିଲି ଯେ ମୁଁ ମଧ୍ୟ କାଚକୁ ଛାଡ଼ି ଶୂନ୍ୟରେ ଝୁଲୁଛି।

ମୁଁ ଅବଶ୍ୟ ଚତ୍କାର କରି ଉଠିଲି ନାହିଁ କମ୍ବା ହାତ ଗୋଡ଼ ଛାଟିଲି ନାହିଁ, କିନ୍ତୁ ମୋ ମନରେ ଭୟ ମାଡ଼ି ଆସିଲା । ଏହା ଯେପରି କୌଣସି ଜିନିଷ ତୁମକୁ ଧରି ଉପରକୁ ଫୋପାଡ଼ି ଦେଉଛି—କି ଜିନିଷ ତୁମେ ଜାଣ ନାହିଁ । ମୁଁ କାଚକୁ ଟିକେ ଛୁଇଁଲି ମାତ୍ରକେ ଜୋରରେ ଠେଲି ହୋଇ ଯାଉଥିଲି । ଘଟଣା କଣ ମୁଁ ବୁଝି ପାରିଥିଲି, କିନ୍ତୁ ତାହା ସତ୍ତ୍ୱେ ମୋର ଭୟ ଟିକେ ବି କମିଲା ନାହିଁ । ସମସ୍ତ ବାହ୍ୟିକ ମାଧ୍ୟାକର୍ଷଣ ପ୍ରଭାବରୁ ଆମେ ବିଚ୍ଛିନ୍ନ ଥିଲୁଁ, କେବଳ ଗୋଲକ ମଧ୍ୟରେହିଁ ଜିନିଷ ସବୁକୁ ଆକର୍ଷଣ କରିବାର କ୍ଷମତା କାର୍ଯ୍ୟକାରୀ ହେଉଥିଲା । ତେଣୁ ଯେଉଁ ସମସ୍ତ ଜିନିଷ ଗୋଲକର କାଚରେ ଯୋଡ଼ା ଯାଇ ନ ଥିଲା, ତାହା ସବୁ ଆମରି ସେଇ କ୍ଷୁଦ୍ର ଦୁନିଆର କେନ୍ଦ୍ରାଭିମୁଖକୁ ଖସି ପଡ଼ୁଥିଲା । ଆମର ଗୁରୁତ୍ୱର ଅଳ୍ପତା ଯୋଗୁଁ ସେସବୁ ଆସ୍ତେ ଆସ୍ତେ ଖସୁଥିଲା । ଏହି ଆକର୍ଷଣର କେନ୍ଦ୍ର ଗୋଲକର ପ୍ରାୟ ମଧ୍ୟ-ଭାଗରେ ଥିଲା, କିନ୍ତୁ ମୋର ଓଜନର ଆଧିକ୍ୟ ଯୋଗୁଁ ତାହା କେଭରର ଅପେକ୍ଷା ମୋର ନିକଟତର ଥିଲା ।

କେଭର କହିଲା, "ଆମେ ବୁଲିପଡ଼ି ଉଭୟଙ୍କୁ ଉଭୟେ ପିଠି କରି ଭାସିବା, ଆଉ ଜିନିଷଗୁଡ଼ିକ ଆମ ଦୁହିଁଙ୍କର ମଝିରେ ରହିବ ।"

ଶୂନ୍ୟରେ ଏପରି ଭାସି ବୁଲିବାଟା ଅତି ଅଦ୍ଭୁତ ଅନୁଭବ ଥିଲା । ପ୍ରଥମେ ଅବଶ୍ୟ ଏହି ଅଦ୍ଭୁତତା ଅତି ଭୟାନକ ଲାଗୁଥିଲା । କିନ୍ତୁ ଯେତେ-ବେଳେ ଭୟ ଭାଙ୍ଗିଗଲା, ଏହା ଆଉ ଅପ୍ରିୟ ବୋଧ ହେଲା ନାହିଁ, ଖୁବ୍ ଆରାମଦାୟକ ଲାଗିଲା । କେବଳ ଖୁବ୍ ମୋଟା ଗଦିଦିଆ ନରମ ବିଛଣାରେ ଶୋଇବା ଛଡ଼ା ମୋର ଅନ୍ୟ କୌଣସି ପାର୍ଥିବ ଅଭିଜ୍ଞତାରେ ଏପରି ଆରାମ ମୁଁ ପାଇନାହିଁ । କିନ୍ତୁ ଏଥିରେ ଯେପରି ସମ୍ପୂର୍ଣ୍ଣ ବିଚ୍ଛିନ୍ନତା ଓ ନିର୍ମୁକ୍ତତା ଥିଲା ସେପରି କୌଣସି ଅନୁଭବ ମୁଁ ଆଶା କରି ନ ଥିଲି । ମୁଁ ଭାବିଥିଲି ଯେ ଉଠିବାକୁ ଆରମ୍ଭ କରିବା ସମୟରେ ଖୁବ୍ ଧକ୍କା ପାଇବୁ, ଗତିର ପ୍ରଚଣ୍ଡତା ଯୋଗୁ ମୁଣ୍ଡ ଘୂରି ଉଠିବ । କିନ୍ତୁ ତା ପରିବର୍ତ୍ତରେ ବୋଧହେଲା ଯେପରି ମୁଁ ଦେହଶୂନ୍ୟ ହୋଇ ଯାଇଛି । ଏହା ଗୋଟିଏ ଯାତ୍ରାର ଆରମ୍ଭ ପରି ନ ଥିଲା ; ବରଂ କୌଣସି ସ୍ୱପ୍ନର ଆରମ୍ଭ ପରି ଥିଲା ।

---

## ୫

# ଚନ୍ଦ୍ରକୁ ଯାତ୍ରା

କିଛି ସମୟ ପରେ କେଭର ଆଲୁଅଟି ଲିଭାଇ ଦେଲା । ସେ କହିଲା ଯେ ଆମ ପାଖରେ ବେଶୀ ଆଲୋକ-ଶକ୍ତି ଜମା ନାହିଁ, ଯାହା ଅଛି ତାହା ପଢ଼ିବା ପାଇଁ ସାଇତି ରଖିବାକୁ ହେବ । କିଛି ସମୟ ପର୍ଯ୍ୟନ୍ତ—ଅନେକ ସମୟ କି ଅଳ୍ପ ସମୟ ମୁଁ ଜାଣେନା—ଚାରିଆଡ଼େ କେବଳ ନିଶୂନ ଅନ୍ଧାର ଛଡ଼ା ଆଉ କିଛି ନ ଥିଲା ।

ସେଇ ନିଶୂନ ଅନ୍ଧାର ଭିତରେ ମୋ ମନରେ ଗୋଟିଏ ପ୍ରଶ୍ନ ଜାଗି ଉଠିଲା । ମୁଁ ପଚାରିଲି, "ଆମର ଗତି କୁଆଡ଼େ ? କେଉଁ ଦିଗକୁ ଆମେ ଯାଉଛୁଁ ?"

"ଆମେ ପୃଥିବୀରୁ ସ୍ପର୍ଶରେଖାରେ ଉଡ଼ି ଚାଲି ଯାଉଛୁଁ ଏବଂ ଚନ୍ଦ୍ର ପ୍ରାୟ ତାର ତୃତୀୟାଂଶରେ ଥିବାରୁ ଆମେ ତାରି ଆଡ଼କୁ ଗତି କରୁଛୁ । ମୁଁ ଗୋଟିଏ ପର୍ଦ୍ଦା ଖୋଲି ଦେବି—"

'ଖଟ' କରି ଗୋଟିଏ ଶବ୍ଦ ହେଲା ଏବଂ ବାହାରପଟ ଖୋଲରେ ଗୋଟିଏ ଝିରକା ମେଲା ହୋଇଗଲା । ଗୋଲକ ଭିତରର ଅନ୍ଧକାର ପରି ବାହାରର ଆକାଶ ଥିଲା କାଳିମାମୟ, କିନ୍ତୁ ଅସଂଖ୍ୟ ନକ୍ଷତ୍ର-ଖଚିତ ।

ଯେଉଁମାନେ ଆମର ପୃଥିବୀ ଉପରେ ଥିବା ବାୟୁସ୍ତରର ଝାପ୍‌ସା ଅର୍ଦ୍ଧୋଜ୍ଜ୍ୱଳ ପରଦା ଭିତର ଦେଇ ତାରକାଖଚିତ ଆକାଶ ଦେଖିଛନ୍ତି, ଏହି ପରଦା ଅପସାରିତ ହେଲେ ସେ ଆକାଶର ଦୃଶ୍ୟ କିପରି ଦେଖାଯାନ୍ତା ସେମାନେ କଳ୍ପନା କରି ପାରିବେ ନାହିଁ । ଆମର କୁହେଳିକାଚ୍ଛନ୍ନ ବାୟୁ-ମଣ୍ଡଳକୁ ଯେଉଁ କେତେଗୋଟି ତାରା ଭେଦ କରିପାରନ୍ତି କେବଳ ସେମାନଙ୍କୁହିଁ

ଆମେ ପୃଥିବୀ ଉପରୁ ଦେଖିପାରୁ । କିନ୍ତୁ ବର୍ତ୍ତମାନ ମୁଁ ବୁଝି ପାରିଲି ଆକାଶରେ କଳ୍ପନାତୀତ କେତେ କୋଟି କୋଟି ତାରା ଅଛନ୍ତି ।

ଆହୁରି ଅଦ୍ଭୁତ ଜିନିଷସବୁ ସ୍ୱାଧୀନରେ ଆମେ ଦେଖିବୁ, କିନ୍ତୁ ତଥାପି ସେହି ବାୟୁଶୂନ୍ୟ, କଳନାତୀତ ତାରକାମଣ୍ଡିତ ଆକାଶ ଚିରଦିନ ପର୍ଯ୍ୟନ୍ତ ମୋ ମନରେ ଆଙ୍କିହୋଇ ରହିଲା !

ସେହି ଛୋଟ ଖିଡ଼କୀଟି 'ଖଟ୍' ଶବ୍ଦ କରି ବନ୍ଦ ହୋଇଗଲା, ତା ପାଖର ଆଉ ଗୋଟିଏ ଖିଡ଼କୀ ମେଲା ହେଲା ଓ ସେହିକ୍ଷଣି ପୁଣି ବନ୍ଦ ହୋଇଗଲା; ତା ପରେ ତୃତୀୟ ଖିଡ଼କୀଟି ଖୋଲିଲା—ଏବଂ ପଞ୍ଚମୀ ଚନ୍ଦ୍ରର ଅତ୍ୟୁଜ୍ଜ୍ୱଳ ଆଲୋକ ଆସି ମୋ ଆଖି ଝଲସେଇ ଦେବାରୁ ମୁହୂର୍ତ୍ତେ ଲାଗି ମୋତେ ଆଖି ବୁଜି ଦେବାକୁ ପଡ଼ିଲା ।

କିଛିକ୍ଷଣ ପାଇଁ ମୁଁ କେଉଁର ଆଡ଼କୁ ଓ ମୋ ପୃଷ୍ଠପଟେ ଥିବା ଶୁଭ୍ର ଆଲୋକମଣ୍ଡିତ ଜିନିଷଗୁଡ଼ିକ ଆଡ଼କୁ ଚାହିଁ ରହିଲି, ତା ପରେ ମୋର ଆଖି ଆଲୋକ ପ୍ରତି ଅଭ୍ୟସ୍ତ ହୋଇଯିବାରୁ ପୁଣି ସେହି 'ରଜତ ଜ୍ୟୋତି ଆଡ଼କୁ ଆଖି ଫେରାଇ ପାରିଲି ।

ଗୋଲକ ଭିତରେ ଥିବା ସବୁ ଜିନିଷ ପ୍ରତି ଯେପରି ଚନ୍ଦ୍ରର ମାଧ୍ୟାକର୍ଷଣ ଶକ୍ତି କାର୍ଯ୍ୟକାରୀ ହୋଇପାରିବ, ସେଥିପାଇଁ ଚାରିଗୋଟି ଖିଡ଼କୀ ଖୋଲି ଦିଆଗଲା । ମୁଁ ଦେଖିଲି ଯେ ମୁଁ ଗୋଲକ ଭିତରେ ଆଉ ମୁକ୍ତ ଭାବରେ ଭାସୁନାହିଁ, ବରଂ ଚନ୍ଦ୍ରର ସମ୍ମୁଖବର୍ତ୍ତୀ କାଚ ଉପରେ ମୋର ଗୋଡ଼ ଲାଗି ରହିଛି । କମ୍ବଳ ଓ ଅନ୍ୟାନ୍ୟ ସାମଗ୍ରୀଗୁଡ଼ିକ ମଧ୍ୟ କାଚ ଉପରେ ଖସି ଖସି ଠିକ୍ ଚନ୍ଦ୍ର ସାମନାରେ ଆସି ରହିଗଲେ ଏବଂ ଆମ ଆଖି ଆଗରୁ ବାହାରର ଦୃଶ୍ୟକୁ କେତେକାଂଶରେ ଆଢୁଆଳ କରି ରଖିଲେ । ଚନ୍ଦ୍ର ଆଡ଼କୁ ଚାହିଁଲା ବେଳେ ଅବଶ୍ୟ ମୋତେ ଜଣା ପଡୁଥିଲା ଯେ ମୁଁ "ତଳ"କୁ ଚାହୁଁଛି । ପୃଥିବୀ ଉପରେ "ତଳ" ଅର୍ଥ ହେଉଛି, ପୃଥିବୀ ଆଡ଼କୁ ଅର୍ଥାତ୍ ଯେଉଁ ଆଡ଼କୁ ଜିନିଷସବୁ ଖସିପଡ଼େ, ଏବଂ "ଉପର" ହେଉଛି ତାର ଠିକ୍

ଓଲଟା ଦିଗ । କିନ୍ତୁ ବର୍ତ୍ତମାନ ଚନ୍ଦ୍ର ଆଡ଼କୁ ଆମେ ଆକର୍ଷିତ ହେଉଥିଲୁଁ । ତେଣୁ ମନ ହେଉଥିଲା ପୃଥିବୀ ଆମ ମୁଣ୍ଡ ଉପରେ ରହିଛି । ଅବଶ୍ୟ ଯେତେ-ବେଳେ କେଭରିଟ୍ ପର୍ଦ୍ଦାଗୁଡ଼ିକ ବନ୍ଦ କରି ଦିଆଯାଉଥିଲା, ସେତେବେଳେ "ତଳ" ଥିଲା ଗୋଲକର କେନ୍ଦ୍ର ଅଭିମୁଖରେ, ଏବଂ "ଉପର" ଥିଲା ଗୋଲକର ବାହାରପଟ କାନ୍ଥ ଆଡ଼କୁ ।

ଆଲୋକ ଉପରୁ ନ ଆସି ତଳୁ ଆସିବା ଅବସ୍ଥାଟା ମଧ୍ୟ ଆମର ପାର୍ଥିବ ଅନୁଭୂତିର ବାହାରେ ଥିଲା । ପୃଥିବୀ ଉପରେ ଆଲୋକ ହୁଏତ ଉପରୁ ଆସେ ନ ହେଲେ ତିର୍ଯ୍ୟକ୍ ଭାବରେ କଡ଼ପଟୁ ଆସେ, କିନ୍ତୁ ଗୋଲକ ଭିତରେ ତା ଆସୁଥିଲା ଆମର ପାଦ ଆଡ଼ୁ, ଏବଂ ଆମର ଛାଇ ଦେଖିବାକୁ ହେଲେ ଆମକୁ ଉପରକୁ ଚାହିଁବାକୁ ହେଉଥିଲା ।

କେବଳ ମୋଟା କାଚ ଉପରେ ଛିଡ଼ା ହୋଇ ଲକ୍ଷ ଲକ୍ଷ ମାଇଲର ଶୂନ୍ୟତା ଭିତର ଦେଇ ଚନ୍ଦ୍ର ଆଡ଼କୁ ଚାହିଁବାଦ୍ୱାରା ପ୍ରଥମେ ପ୍ରଥମେ ମୋର ମୁଣ୍ଡ ବୁଲେଇବାକୁ ଲାଗିଲା; କିନ୍ତୁ ଏହି ଅସୁବିଧା ଶୀଘ୍ର ଚାଲିଗଲା ଏବଂ ତା ପରେ—ସେହି ଅପୂର୍ବ ଦୃଶ୍ୟ !

ପାଠକ ଏହି ଦୃଶ୍ୟଟି କଳ୍ପନା କରି ପାରିବେ, ଯଦି ସେ କୌଣସି ଗ୍ରୀଷ୍ମ ଦିନର ରାତିରେ ତଳେ ଶୋଇ ପାଦ ଦୁଇଟି ଟେକି ତାରି ଫାଙ୍କରେ ଚନ୍ଦ୍ର ଆଡ଼କୁ ଚାହାଁନ୍ତି । କିନ୍ତୁ କୌଣସି କାରଣରୁ—ବୋଧହୁଏ ବାୟୁ ଅପସାରିତ ହେବାରୁ ଚନ୍ଦ୍ର ଏତେ ଉଜ୍ଜ୍ୱଳ ଦେଖା ଯାଉଥିବା ଯୋଗୁଁ—ପୃଥିବୀରୁ ଚନ୍ଦ୍ର ଯେତେ ବଡ଼ ଦେଖାଯାଏ ତା ଅପେକ୍ଷା ଅନେକ ବେଶୀ ବଡ଼ ଦେଖା ଯାଉଥିଲା । ତାହାର ଶରୀରର ସୂକ୍ଷ୍ମାତିସୂକ୍ଷ୍ମ ବିବରଣ ଗୁଡ଼ିକ ମଧ୍ୟ ପରିଷ୍କାର ଭାବରେ ବାରି ହେଉଥିଲା ଏବଂ ବାୟୁ ମଧ୍ୟଦେଇ ଆମେ ତା ଆଡ଼କୁ ନ ଦେଖୁଥିବା ଯୋଗୁଁ, ତାହାର ଆକୃତି ସ୍ପଷ୍ଟ ଓ ଉଜ୍ଜ୍ୱଳ ଭାବରେ ଦେଖାଯାଉଥିଲା । ତାହା ଚାରିପଟେ କୌଣସି ଜ୍ୟୋତିର୍ମଣ୍ଡଳୀ ଦ୍ୱାରା ପରିବେଷ୍ଟିତ ହୋଇ ନ ଥିଲା ଏବଂ ଆକାଶଯାକ ଧୂଳିପରି ବିଞ୍ଚା ହୋଇଥିବା ତାରାଗୁଡ଼ିକ ଏକାବେଳକେ ତାର ଧାରକୁ ଲାଗି ରହି ତାର ଅନୁଜ୍ଜ୍ୱଳ

ଅଂଶକୁ ଆବୃତ କରି ରଖିଥିଲେ । ମୁଁ ଯେତେବେଳେ ମୋର ପାଦ ଦୁଇଟିରେ ଫାଙ୍କ ଦେଇ ଚନ୍ଦ୍ର ଅଡ଼କୁ ଅନାଇ ଛିଡ଼ା ହୋଇଥିଲି ସେତେବେଳେ ଯେଉଁ ଅସମ୍ଭବବୋଧ ଦ୍ୱାରା ମୋର ମନ ଆମର ଯାତ୍ରାର ଆରମ୍ଭରୁ ମଝିରେ ମଝିରେ ଆଲୋଡ଼ିତ ହେଉଥିଲା, ତାହା ପୁଣି ଦଶଗୁଣ ପ୍ରବଳ ହୋଇ ମତେ ଗ୍ରାସ କଲା ।

ମୁଁ କହିଲି, "କେଭର, ଏହା ମୋତେ ବଡ଼ ଅଦ୍ଭୁତ ଲାଗୁଛି । ଆମେ ଯେଉଁ କୋମ୍ପାନୀ ଚଳାଇବା କଥା ବିଷୟରେ ଥିଲୁଁ, ଆଉ ସେ ସବୁ ଖଣି ?"

"ହଁ, କଣ ହେଲା ?"

"ମୁଁ ସେସବୁ ଏଠି ଦେଖୁନି ତ ।"

କେଭର କହିଲା, "ନା, କିନ୍ତୁ ଏ ସବୁ କଥା ତୁମେ ଶୀଘ୍ର ଭୁଲିଯିବ ।"

"ବୋଧହୁଏ ମୁଁ ପୁଣି ଠିକ୍ ଅବସ୍ଥାକୁ ଫେରି ଆସିବି । ତଥାପି, ଏହା—ବେଳେବେଳେ ମୋର ମନେ ହେଉଛି ଯେମିତି, ପୃଥିବୀ ବୋଲି କୌଣସି ଜିନିଷ କେବେ ନ ଥିଲା ।"

"ତୁମର ଏ ଅବସ୍ଥାରେ ବୋଧହୁଏ 'ଲଏଡ଼ଙ୍କର ଖବର' ଟିକେ କାମକୁ ଆସିବ ।"

ମୁଁ କ୍ଷଣକ ପାଇଁ ସେହି କାଗଜଟା ଆଡ଼େ ଅନେଇଲି । ତା'ପରେ ତାକୁ ମୁହଁ ଉପରକୁ ଟେକି ଧରି ଦେଖିଲି ସହଜରେ ପଢ଼ି ହେଉଛି । ନିହାତି ବାଜେ ବିଜ୍ଞାପନ ସବୁ ମୋ ଆଖିରେ ପଡ଼ିଲା । ପଢ଼ିଲି, "ବ୍ୟକ୍ତିଗତ ସମ୍ପତ୍ତିର ଅଧିକାରୀ ଜଣେ ଭଦ୍ରଲୋକ ଟଙ୍କା ଧାର ଦେବାକୁ ରାଜି ଅଛନ୍ତି ।" ସେ ଭଦ୍ରଲୋକଙ୍କୁ ମୁଁ ଚହ୍ନିଥିଲି । ତାପରେ କିଏ ଜଣେ ଅଦ୍ଭୁତ ଖିଆଲୀ ଲୋକ ଗୋଟିଏ କଣ୍ଟ୍ରାପ୍‌ଶନ୍ ସାଇକେଲ ବିକିବାକୁ ଚାହୁଁଥିଲା, ଯାହା "ସମ୍ପୂର୍ଣ୍ଣ ନୂତନ ଓ ପ୍ରକୃତ ମୂଲ୍ୟ ପନ୍ଦର ପାଉଣ୍ଡ," କିନ୍ତୁ ସେ ପାଞ୍ଚ ପାଉଣ୍ଡରେ ବିକିବାକୁ ପ୍ରସ୍ତୁତ ଥିଲା । ଆଉ, ଅସ୍ୱଚ୍ଛଳ ଅବସ୍ଥାରେ ପଡ଼ିଥିବା ଜଣେ କିଏ ଭଦ୍ରମହିଳା କେତେଗୁଡ଼ିଏ କଣ୍ଟା ଚାମଚ ଓ ଛୁରୀ ବିକିବାକୁ ଚାହୁଁଥିଲେ, ନିହାତି ଅନିଚ୍ଛାସତ୍ତ୍ୱେ, କାରଣ ସେଗୁଡ଼ିକ "ବିବାହର ଉପହାର"

ଥିଲି । ସମ୍ଭବତଃ. ଯେଉଁ ମୁହୂର୍ତ୍ତରେ ମୁଁ ସେସବୁ ପଢୁଥିଲି ଠିକ୍ ସେହି ମୁହୂର୍ତ୍ତରେ କୌଣସି ସରଳ ଲୋକ ଖୁବ୍ ବୁଦ୍ଧିଆ ପରି ଠାଣି କରି ସେହି କଣ୍ଟାଗୁମର ଆଉ ଥରେ ପରୀକ୍ଷା କରି ଦେଖୁଥିଲେ । ଅନ୍ୟ କେହି ବଜେଟ୍ ପରି ଭଙ୍ଗୀରେ ସେହି ସାଇଜଲଟି କିଣି ଚାଲିଯାଉଥିଲେ । ଅନ୍ୟ କେହି ବା ସେହି ସଙ୍ଗୀତ-ସମ୍ପନ୍ନ ହୃଦାକାଙ୍କ୍ଷୀ ଭଦ୍ରଲୋକଙ୍କ ସାଙ୍ଗରେ ନିର୍ଭରତା ସହିତ ପରାମର୍ଶ କରୁଥିଲେ । ମୁଁ ହସି ହସି କାଗଜ ଖଣ୍ଡକ ତଳେ ପକେଇ ଦେଲି ।

ମୁଁ ପଚାରିଲି, "ଅଚ୍ଛା', ପୃଥିବୀର ଲୋକେ ଆମକୁ ଦେଖି ପାରୁଥିବେ ?"
"କାହିଁକି ?"

"ମୋର କେତେଣ ପରିଚିତ ଲୋକ ଜ୍ୟୋତିଃଶାସ୍ତ୍ରର ଚର୍ଚ୍ଚା କରନ୍ତି । ମୁଁ ଭାବୁଛି, ମୋର ସେଇ ବନ୍ଧୁଟି ଯଦି ଦୂରବୀକ୍ଷଣ ଯନ୍ତ୍ରରେ ବର୍ତ୍ତମାନ ଦେଖୁଥିବେ ତାହାହେଲେ ଭାରି ଅଦ୍ଭୁତ ହେବ ।"

"ବର୍ତ୍ତମାନ ବି ଆମକୁ ଅତି କ୍ଷୁଦ୍ର ବିନ୍ଦୁରୂପେ ଦେଖିବାପାଇଁ ପୃଥିବୀର ସବୁଠାରୁ ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ଆବଶ୍ୟକ ହେବ ।"

କିଛିସମୟ ପର୍ଯ୍ୟନ୍ତ ମୁଁ ନୀରବରେ ଚନ୍ଦ୍ର ଆଡ଼କୁ ଅନାଇ ରହିଲି ।

ମୁଁ କହିଲି, "ଏହା ଗୋଟିଏ ସଂସାର; ଏକଥା ଆମେ ପୃଥିବୀରେ ଯେଉଁ ପରିମାଣରେ ଅନୁଭବ କରୁଁ ବର୍ତ୍ତମାନ ତାଠୁ ଅନେକ ଅନେକ ବେଶୀ ଅନୁଭବ କରିପାରୁଛୁ । ବୋଧହୁଏ ଚନ୍ଦ୍ରରେ ଲୋକ—"

କେଭର୍ କହିଲା, "ଲୋକ ! ନା ! ସେସବୁ ଆଶା ଛାଡ଼ିଦିଅ ! ନିଜକୁ କୌଣସି ମହା ମେରୁସଂସାରର ଯାତ୍ରୀ ବୋଲି ମନେ କର, ମହା-ଶୂନ୍ୟର ନିର୍ଜନସ୍ଥାନ ଗୁଡ଼ିକ ଅନ୍ୱେଷଣ କରିବାକୁ ତୁମେ ବାହାରିଛ ବୋଲି ଭାବ । ଏଇ ଦେଖ !"

ତଳେ ଦେଖାଯାଉଥିବା ଉଜ୍ଜ୍ୱଳ ଶୁଭ୍ର ଚନ୍ଦ୍ର ଆଡ଼େ ହାତ ହଲାଇ ସେ କହିଲା, "ଏହା ମୃତ—ମୃତ ! ସୁପ୍ତହିତ୍ ନିଃଶେଷିତ ଆଗ୍ନେୟ ଗିରି, ଲାଭାର

ମରୁ ପ୍ରାନ୍ତର, ତୁଷାରର ଭଗ୍ନସ୍ତୂପ, ଜମାଟବନ୍ଧା କାର୍ବୋନିକ ଏସିଡ୍ କିମ୍ବା ଜମାଟବନ୍ଧା ବାୟୁ ଏବଂ ଚତୁର୍ଦ୍ଦିଗରେ ଅକାଡ଼ି ହୋଇ ପଡ଼ିଥିବା ପାହାଡ଼ର ସ୍ତୂପ ବିଖଣ୍ଡିତ ଜମି, ଫାଟି ଯାଇଥିବା ଜମି ଓ ଗହ୍ୱର । ସେଠାରେ ବର୍ତ୍ତମାନ କିଛୁ ଘଟେ ନାହିଁ । ଦୁଇଶତାଧିକ ବର୍ଷ ଧରି ପୃଥିବୀର ଲୋକେ ଦୂରବୀକ୍ଷଣ-ଯନ୍ତ୍ର ସାହାଯ୍ୟରେ ଏହି ଗ୍ରହଟିକୁ ବରାବର ଲକ୍ଷ୍ୟ କରି ଆସୁଛନ୍ତି । କି ପରିବର୍ତ୍ତନ ସେମାନେ ଦେଖିଛନ୍ତି ବୋଲି ତୁମେ ଭାବୁଛ ?"

"କିଛି ବି ନୁହେଁ ।"

ସେମାନେ ଦେଖିଛନ୍ତି, ଦୁଇଥର ଜମି ଖସି ପଡ଼ିଛି, ଥରେ ଜମି ଫାଟି ଯାଇଛି କି ନା ଠିକ୍ ଜଣା ପଡ଼ିନାହିଁ ଏବଂ ଥରେ ବର୍ଣ୍ଣର ସ୍ୱଳ୍ପ ସାମୟିକ ପରିବର୍ତ୍ତନ । ସେତିକି ।"

ସେତିକି ଯେ ସେମାନେ ଦେଖିଛନ୍ତି ତାହା ମଧ୍ୟ ମୁଁ ଜାଣି ନ ଥିଲି ।

"ହଁ, ଦେଖିଛନ୍ତି । କିନ୍ତୁ ଲୋକ !"

ମୁଁ ପଚାରିଲି, "ଅଚ୍ଛା, ସବୁଠାରୁ ବଡ଼ ଦୂରବୀକ୍ଷଣ ଯନ୍ତ୍ରରେ ଚନ୍ଦ୍ରର କେତେ ଶ୍ରେଷ୍ଠ ଜିନିଷ ଦେଖା ଯାଇ ପାରିବ ?"

କୌଣସି ସାଧାରଣ ଆୟତନର ଗୀର୍ଜା ଦେଖାଯାଇ ପାରିବ । କୌଣସି ସହରର କିମ୍ବା କୋଠାବାଡ଼ି ନିଶ୍ଚେ ଦେଖାଯିବ । ମଣିଷ ହାତରେ ଗଢ଼ା ହୋଇଥିବା କୌଣସି ବଡ଼ ଆକାରର ଜିନିଷ ଥିଲେ ତାହା ନିଶ୍ଚେ ଜଣା ପଡ଼ିଯିବ । ସେଠି ପୋକ ଜୋକ ଥାଇ ପାରନ୍ତି, ଧରି ନିଅ୍ମନ୍ତୁ ପରି କୌଣସି କ୍ଷୁଦ୍ର ଜୀବ । ସେମାନେ ସୂର୍ଯ୍ୟ ତାପରୁ ରକ୍ଷା ପାଇବା ପାଇଁ ମାଟିତଳେ ସୁଡ଼ଙ୍ଗ ଖୋଳି ରହୁଥିବେ । କିମ୍ବା କୌଣସି ନୂତନ ଜୀବ ଥାଇ ପାରନ୍ତି, ଯେଉଁମାନଙ୍କ ସହିତ ତୁଳନୀୟ କୌଣସି ଜୀବ ପୃଥିବୀରେ ନାହାନ୍ତି । ଆମେ ଯଦି ସେଠି ଆଦୌ ଜୀବନର ସନ୍ଧାନ ଦେଖୁଁ ତ ଏଇ ପରି ଜୀବହିଁ ଦେଖିବା । ସେଠାକାର ଅବସ୍ଥା ସହିତ ଆମର ପୃଥିବୀର ଅବସ୍ଥାର ପାର୍ଥକ୍ୟ ଭାବି ଦେଖ ! ପୃଥିବୀର ଚଉଦ ଦିନ ମିଶି ଯେତେ ସମୟ ହେବ, ସେଠି ଗୋଟିଏ ଦିନର ଦୀର୍ଘତା ସେତିକି, ଚଉଦ ଦିନ ପର୍ଯ୍ୟନ୍ତ

ମେଘଗ୍ରାନ ଜ୍ୱଳନ୍ତ ସୂର୍ଯ୍ୟାଲୋକ, ତାପରେ ପୁଣି ଚଉଦ ଦିନ ଲମ୍ବା ରାତି, ସେହି ରାତି ଏହି ଶୀତଳ ଗ୍ରହଟିର ତାଙ୍କୁ ଗୁଡ଼ିକ ତଳେ ଦିନକୁ ଦିନ ଆହୁରି ଆହୁରି ଥଣ୍ଡା ହୋଇଯାଉଥିବ । ଏପରି ଅବସ୍ଥା ଭିତରେ ଜୀବନକୁ ଖାପ୍ ଖୁଆଇବାକୁ ହେବ । ସେହି ଦୀର୍ଘ ରାତି ହେଉଥିବ ଅତ୍ୟନ୍ତ ଶୀତଳ, ଚରମ ଶୀତଳ, ସମ୍ପୂର୍ଣ୍ଣ ଶୂନ୍ୟ, ପୃଥିବୀର ହିମାଙ୍କ ଅପେକ୍ଷା ୨୭୩ ଡିଗ୍ରୀ ଆହୁରି ତଳକୁ । ସେଠାରେ ଯେ କୌଣସି ଜୀବ ଥିବେ, ସେମାନେ ଏହି ଥଣ୍ଡା ସମୟରେ ମାଟିତଳେ ଜୀବନ କାଟୁଥିବେ ଏବଂ ରାତି ଶେଷ ହେଲେ ପୁଣି ଉପରକୁ ବାହାରୁଥିବେ ।”

ସେ ସ୍ୱଗତଃ ଭାବରେ କହିବାକୁ ଲାଗିଲା, “କଳ୍ପନା କରାଯାଇ ପାରେ, ସେଠି କୃମୀ ପରି କୌଣସି ଜୀବ ଅଛନ୍ତି । କିଆ ମାଟି ଗିଳିଲାପରି ସେମାନେ ଘନୀଭୂତ ବାୟୁ ଗିଳୁଥିବେ । କମ୍ବା ମୋଟା ଚମଡାବାଲା କୌଣସି ଅଦ୍ଭୁତ ଜନ୍ତୁ—”

ମୁଁ କହିଲି, “ଅଚ୍ଛା, ଆମେ ବନ୍ଧୁକ ଆଣିଲୁଁ ନାହିଁ କାହିଁକି ?”

ସେ ମୋର ପ୍ରଶ୍ନର କୌଣସି ଉତ୍ତର ଦେଲା ନାହିଁ । ତା ନିଜର କଥା ଶେଷ କରି କହିଲା, “ନା, ଆମକୁ ଯିବାକୁ ହିଁ ହେବ । ସେଠି ପହଞ୍ଚି ପାରିଲେ ଆମେ ସବୁ ଜାଣି ପାରିବା ।”

ଗୋଟିଏ କଥା ମୋର ମନେ ପଡ଼ିଗଲା । ମୁଁ କହିଲି, “ସେଠିକାର ଅବସ୍ଥା ଯାହା ହେଉଥାଉ, ମୋର ଖଣିଜ ସମ୍ପଦ ସେଠି ଅଛି ନିଶ୍ଚୟ ।”

କିଛି ସମୟ ପରେ ସେ କହିଲା ଯେ ଆମର ଗତିର ଦିଗରେ ସାମାନ୍ୟ ପରିବର୍ତ୍ତନ କରିବା ଲାଗି ପୃଥିବୀକୁ ଆମକୁ କ୍ଷଣକ ପାଇଁ ଟାଣିବାକୁ ଛାଡ଼ି ଦିଆଯିବ । ପୃଥିବୀ ଆଡ଼କୁ ମୁହାଁ କରିଥିବା ଗୋଟିଏ ପର୍ଦ୍ଦାକୁ ତିରିଶସେକେଣ୍ଡ ପାଇଁ ଖୋଲି ଦେବାକୁ ସେ କହିଲା । ସେ କହିଲା ଯେ ଏହାଦ୍ୱାରା ମୋର ମୁଣ୍ଡ ବୁଲେଇ ଯିବ ଏବଂ ମୋର ପତନକୁ ସମ୍ଭାଳିବା ପାଇଁ କାଚ ଆଡକୁ ହାତ ବଢାଇବା ପାଇଁ ସେ ମୋତେ ଉପଦେଶ ଦେଲା । ସେ ଯେପରି ବତେଇଲା ମୁଁ ସେପରି କଲି, ଏବଂ ଗଣ୍ଠିଙ୍କ, ଖାଦ୍ୟ ବାକ୍ସ ଆଉ ବାୟୁନଳୀ

ଗୁଡ଼ିକ ଯେପରି ମୋ ଉପରେ ଆସି ନ ପଡ଼େ, ସେଥିପାଇଁ ସେଗୁଡ଼ିକ ମୁଁ ଗୋଡ଼ରେ ଦବାଇ ରଖିଲି । ତା ପରେ, 'ଖଟ୍' ଶବ୍ଦ କରି ଝରକାଟି ଖୋଲିଗଲା । ମୁଁ ମୋର ହାତ ଆଉ ମୁହଁ ଉପରେ ମାଡ଼ି ହୋଇ ପଡ଼ିଗଲି ଏବଂ ମୋର କଳାପଡ଼ିଯାଇଥିବା ଆଙ୍ଗୁଠି ଗୁଡ଼ିକ ଫାଙ୍କରେ ଆମର ପୃଥିବୀ-ମାତାକୁ କ୍ଷଣେକ ପାଇଁ ଦେଖିବାକୁ ପାଇଲି । ପୃଥିବୀ ବର୍ତ୍ତମାନ ଥିଲା ଅଧଃସ୍ଥଳର ଆକାଶରେ ।

ସେ ପର୍ଯ୍ୟନ୍ତ ଆମେ ପୃଥିବୀର ଖୁବ୍ ନିକଟରେ ଥିଲୁଁ । କେଭର୍ କହିଲା ପୃଥିବୀ ପ୍ରାୟ ଆଠଶହ ମାଇଲ ଦୂରରେ ରହିଛି । ପୃଥିବୀର ବୃହତ୍ ଚକତି ସମସ୍ତ ଆକାଶ ଆଚ୍ଛାଦିତ କରି ରଖିଥିଲା । ତଥାପି ସେଠୁ ସଫା ଜଣା ପଡ଼ୁଥିଲା ଯେ ପୃଥିବୀ ଗୋଟିଏ ଗୋଲକ । ଆମ ତଳେ ଥିବା ଭୂମି ଗୋଧୂଳିଦ୍ୱାରା ଆଚ୍ଛନ୍ନ ଓ ଅସ୍ପଷ୍ଟ ଦିଶୁଥିଲା କିନ୍ତୁ ପଶ୍ଚିମ ଦିଗରେ ଆଟଲାଣ୍ଟିକ ମହାସାଗରର ବିସ୍ତୀର୍ଣ୍ଣ ପାଣ୍ଡୁର ଆସ୍ତରଣ ଅପସୃୟମାନ ଦିବସ ତଳେ ତରଳ ରୌପ୍ୟ ପରି ଜଳୁଥିଲା । ଫ୍ରାନ୍ସ ଓ ସ୍ପେନର ଉପକୂଳରେଖାକୁ ମୁଁ ମେଘର ଫାଙ୍କରେ ବାରି ପାରିଲି, ଏବଂ ଇଂଲଣ୍ଡର ଦକ୍ଷିଣାଂଶକୁ ମଧ୍ୟ ଚିହ୍ନି ପାରିଲି । ତାପରେ 'ଖଟ' ଶବ୍ଦକରି ଝିରକାଟି ପୁଣି ବନ୍ଦ ହୋଇଗଲା ଏବଂ ଅଦ୍ଭୁତ ଗୋଳମାଳିଆ ଅବସ୍ଥାରେ ମୁଁ ଚକ୍‌କଣ କାଚ ଉପରେ ଧୀରେ ଧୀରେ ଖସି ପଡ଼ିବାକୁ ଲାଗିଲି ।

ଯେତେବେଳେ ମୁଁ ପୁଣି ସ୍ୱାଭାବିକ ଅବସ୍ଥା ଫେରି ପାଇଲି, ସେତେବେଳେ ମୋର ନିଃସଂଶୟ ଭାବରେ ମନେ ହେଲା ଯେ ଚନ୍ଦ୍ର "ତଳେ" ମୋର ପାଦ ତଳକୁ ରହିଛି ଏବଂ ପୃଥିବୀ ଦିଗ୍‌ବଳୟର ସମାନ୍ତରାଳରେ ରହିଛି—ସେଇ ପୃଥିବୀ ଯାହାକି ଚିରକାଳ ମୋ ପକ୍ଷରେ ଏବଂ ସମସ୍ତ ମାନବ ଜାତି ପକ୍ଷରେ "ତଳ" ହୋଇ ରହିଥିଲା ।

ଆମକୁ ଏତେ କମ ପରିଶ୍ରମ କରିବାକୁ ହେଉଥିଲା, ଏବଂ ଆମର ଦେହଭାରର ଲଘୁତା ଯୋଗୁ ଆମେ ଯାହା କିଛି କରିବାକୁ ଚାହୁଁଥିଲୁ ତାହା ଏତେ ସହଜରେ ହୋଇ ଯାଉଥିଲା ଯେ ଯାତ୍ରା ଆରମ୍ଭର ଛ ଘଣ୍ଟା

ପର୍ଯ୍ୟାଏ (କେଭରର ଦିଗ ଓ କାଳ ନିରୂପକ ଯନ୍ତ୍ର ଅନୁସାରେ) ଆମଙ୍କୁ ଭୋକ ଲାଗି ନଥିଲା । ଏହା ମତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ତାପରେ ଅଳ୍ପ କିଛି ଖାଇ ମୋର ଭୋକର ନିବୃତ୍ତି ହୋଇଗଲା । କେଭର୍ କାର୍ବୋନିକ ଏସିଡ୍ ଓ ଜଳ ଶୋଷଣ କରିବାର ଯନ୍ତ୍ରଟି ପରୀକ୍ଷା କରି ତାହା ଠିକ୍ ଅବସ୍ଥାରେ ଅଛି ବୋଲି କହିଲା । ଆମର ଅମ୍ଳଜାନବାଷ୍ପ ଗ୍ରହଣର ପରିମାଣ ଆଶ୍ଚର୍ଯ୍ୟ ରକମ ଅଳ୍ପ ହୋଇଥିଲା । ଆଉ ଗପ କରିବାକୁ କୌଣସି କଥା ନ ପାଉଥିବାରୁ ଏବଂ ଆଉ କୌଣସି କାମ କରିବାକୁ ନ ଥିବାରୁ, ଆମେ ଢୁଳେଇବାକୁ ଲାଗିଲୁ । ଗୋଟିଏ ଅଦ୍ଭୁତ ରକମର ତନ୍ଦ୍ରାବେଶ ଆମ ଆଖିରେ ମାଡ଼ି ଆସିଥିଲା । ଚନ୍ଦ୍ରର ଆଲୋକକୁ ଢାଙ୍କିବା ପାଇଁ ଗୋଲକର ନିମ୍ନତମ ପ୍ରଦେଶରେ କମ୍ବଳଗୁଡ଼ିକ ବିଛେଇ ଦେଲୁଁ, ଏବଂ ପରସ୍ପରକୁ ଶୁଭରାତ୍ରି ଜଣେଇ ପ୍ରାୟ ତତ୍‌କ୍ଷଣାତ୍ ନିଦ୍ରାଭିଭୂତ ହୋଇ ପଡ଼ିଲୁ ।

ଏହିପରି ଭାବରେ କେତେବେଳେ ଶୋଇ, କେତେବେଳେ ଗଳ୍ପ କରି, କେତେବେଳେ ବା କିଛି ପଢ଼ି, ଏବଂ ମଝିରେ ବେଶି ଭୋକ ନ ଲାଗୁଥିଲେ ମଧ୍ୟ କିଛି ଖାଇ (ଆଶ୍ଚର୍ଯ୍ୟ କଥା ଯେ, ଯେତେ ସମୟ ପର୍ଯ୍ୟନ୍ତ ଆମେ ଗୋଲକ ଭିତରେ ଥିଲୁ ସେତକ ସମୟ ଭିତରେ ଆମର ଖାଇବାକୁ ମୋଟେ ଇଚ୍ଛା ହେଉ ନଥିଲା କି ନ ଖାଇଲେ ମଧ୍ୟ କୌଣସି ଅସୁବିଧା ବୋଧ ହେଉ ନଥିଲା । ପ୍ରଥମେ ପ୍ରଥମେ ଭୋକ ନ କରୁଥିଲେ ବି ଆମେ ଖାଉଥିଲୁଁ, କିନ୍ତୁ ପରେ ସମ୍ପୂର୍ଣ୍ଣ ଅନାହାରରେ ରହିଲୁ । ଆମ ସହିତ ଯେଉଁ ସଙ୍କୁଚିତ ସାମଗ୍ରୀ ଆମେ ଆଣିଥିଲୁ ସବୁମୋଟରେ ତାର ଶହେଭାଗର ଭାଗେ ବି ଆମକୁ ଖରଚ କରିବାକୁ ହୋଇ ନଥିଲା । ଆମେ ନିଶ୍ୱାସରେ ନେଉଥିବା କାର୍ବୋନିକ ଏସିଡ୍‌ର ପରିମାଣ ମଧ୍ୟ ଅତ୍ୟନ୍ତ ଅପ୍ରାକୃତିକ ଭାବରେ କମ୍ ଥିଲା । କିନ୍ତୁ ଏପରି କାହିଁକି ହେଉଥିଲା ତାର କାରଣ ଦର୍ଶାଇବାକୁ ମୁଁ ସମ୍ପୂର୍ଣ୍ଣ ଅସମର୍ଥ ।) କିନ୍ତୁ ଅଧିକାଂଶ ସମୟ ନ-ନିଦ୍ରା ନ-ଜାଗରଣ ଏହିପରି ଏକପ୍ରକାର ବିଶ୍ରାମରେ ରହି, ଦିବସ—ରଜନୀବିହୀନ ସମୟ ଭିତର ଦେଇ ଆମେ ଚନ୍ଦ୍ର ଉପରକୁ ନିଃଶବ୍ଦରେ, ମୃଦୁଳ ଭାବରେ, ବେଗ ଗତିରେ ଖସିପଡ଼ିବାକୁ ଲାଗିଲୁ ।

---

# ୭

# ଚନ୍ଦ୍ର ପୃଷ୍ଠରେ ଅବତରଣ

ସେଦିନ କଥା ମୋର ଠିକ୍ ମନେ ଅଛି, ଯେଉଁଦିନ କେଭର୍ ହଠାତ୍ ଗୋଲକର ଛଅଟି ଝିରକା ଖୋଲିଦେଇ ମୋର ଆଖି ଝଲସାଇ ଦେବାରୁ ମୁଁ ଚିତ୍କାର କରି ଉଠିଲି । ଚତୁର୍ଦ୍ଦିଗ ଆଚ୍ଛାଦିତ କରି ରହିଥିଲା, ଚନ୍ଦ୍ର—ବିରାଟ ବକ୍ର ତରବାରୀ ପରି ଶୁଭ୍ର ପ୍ରଭାତ । ସେହି ତରବାରୀ ଧାର ଅନ୍ଧକାର ଦ୍ୱାରା ଚିହ୍ନିତ ହୋଇ ଛିଦ୍ରଯୁକ୍ତ ହେଲପରି ଜଣା ପଡୁଥିଲା । ଅନ୍ଧକାରର ଜୁଆର କ୍ରମେ କ୍ରମେ ଭଟ୍ଟା ପଡିଯାଇ ଚନ୍ଦ୍ରର ବେଳାଭୂମି ପରିବର୍ତ୍ତିତ ହେଉଥିଲା ଏବଂ ସେହି ବେଳା ଭୂମି ମଧ୍ୟରୁ ସୂର୍ଯ୍ୟର ଆଲୋକରେ ପର୍ବତର ଶିଖର ଦେଶ ଓ ଶୃଙ୍ଗଗୁଡିକ ମୁଣ୍ଡ ଟେକୁଥିଲେ । ପାଠକ ସମ୍ଭବତଃ ଚନ୍ଦ୍ରର ଛବି କିମ୍ବା ଫୋଟୋ ଦେଖିଛନ୍ତି । ତେଣୁ ସେହି ଦୃଶ୍ୟର ସ୍ଥୂଳ ବିବରଣ ଗୁଡିକ ଉଲ୍ଲେଖ କରିବାର ଆବଶ୍ୟକତା ନାହିଁ । ପୃଥିବୀର ଯେ କୌଣସି ପର୍ବତ ଅପେକ୍ଷା ବୃହତ୍ ସୁବିସ୍ତୃତ କଙ୍କଣ ସଦୃଶ ଚନ୍ଦ୍ରର ପର୍ବତ ଶ୍ରେଣୀ, ସେମାନଙ୍କର ଶିଖର ଦେଶ ଦିବସରେ ଉଦ୍ଭାସିତ ଓ ଗୁମ୍ଫା କର୍କଶ ଓ ଗାଢ଼; ଅବିନ୍ୟସ୍ତ ଧୂସର ସମତଳ ଭୂମି, ଶୈଳଶିରା, ପାହାଡ଼ ଏବଂ ଆଗ୍ନେୟପର୍ବତର କ୍ଷୁଦ୍ର ମୁଖଗହ୍ୱର—ସମସ୍ତ ପ୍ରଜ୍ୱଳିତ ଆଲୋକରୁ କାଳିମାର ସାଧାରଣ ରହସ୍ୟରେ ପରିଣତ ହୋଇଯାନ୍ତି । ଏହି ଜଗତ ଉପର ଦେଇ ତାହାର ଶୃଙ୍ଗ ଓ ଶିଖରଗୁଡିକର ପ୍ରାୟ ଶହେ ମାଇଲ ଊର୍ଦ୍ଧ୍ୱରେ ଆମେ ଉଡୁଥିଲୁ । ବର୍ତ୍ତମାନ ଆମେ ଯେଉଁ ଦୃଶ୍ୟ ଦେଖିପାରିଲୁ ତାହା ପୃଥିବୀର କୌଣସି ଚକ୍ଷୁ କେବେ ଦେଖିପାରିବ ନାହିଁ—ପ୍ରଜ୍ୱଳିତ ଦିବସ ତଳେ ସମତଳ ଭୂମିର ଶିଳା ଓ ଗହ୍ୱର ଗୁଡିକର ଏବଂ ଆଗ୍ନେୟଗିରି ମୁଖରୁ ଚଟାଣଗୁଡିକର ବାହ୍ୟରେଖା ଘନାୟମାନ କୁହୁଡିରେ ଧୂସର ଓ ଅସ୍ପଷ୍ଟ ହୋଇଯିବାକୁ ଲାଗିଲା; ଏବଂ ସେମାନଙ୍କର ଆଲୋକିତ ପୃଷ୍ଠର ଧବଳତା

କ୍ରମେ ଖଣ୍ଡ ଖଣ୍ଡ ହୋଇ ଫାଟିଗଲା, ତାପରେ ଆହୁରି ଅନେକ ଖଣ୍ଡରେ ବିଭକ୍ତ ଓ ସଙ୍କୁଚିତ ହୋଇ ଶେଷରେ ସମ୍ପୂର୍ଣ୍ଣ ଲୁଭିଗଲା ଏବଂ ଏଠି ସେଠି ବାଦାମୀ ଓ ପୀତ ରଙ୍ଗର ଅଦ୍ଭୁତ ବର୍ଣ୍ଣ ବୈଚିତ୍ର୍ୟ କ୍ରମେ କ୍ରମେ ରୂପାନ୍ତର କରି ପରିବର୍ତ୍ତିତ ହେବାକୁ ଲାଗିଲା ।

କିନ୍ତୁ ସେ ସବୁ ଦେଖିବାପାଇଁ ଆମକୁ ଅତି ଅଳ୍ପ ସମୟ ମିଳିଥିଲା । କାରଣ ବର୍ତ୍ତମାନ ଆମେ ଆମର ଯାତ୍ରାର ପ୍ରକୃତ ବିପଦର ମୁହାଁମୁହିଁ ହେଲୁ । ଆମେ ଚନ୍ଦ୍ର ଉପରେ ଘୂରି ଘୂରି ତାର ଅତ୍ୟନ୍ତ ନିକଟକୁ ଖସି ପଡ଼ୁଥିଲୁ ଏବଂ ତାହାର ପୃଷ୍ଠରେ ଅବତରଣ କରିବାକୁ ସାହସ କରିବା ପୂର୍ବରୁ ଆମର ଗତିବେଗ କମାଇ ସୁଯୋଗର ପ୍ରତୀକ୍ଷା କରୁଥିଲୁ ।

ସେହି ସମୟଟି ଥିଲା କେଭରଙ୍କ ପାଇଁ ଅତ୍ୟନ୍ତ ବ୍ୟସ୍ତତାର ସମୟ ଏବଂ ମୋ ପାଇଁ ଉତ୍କଣ୍ଠାପୂର୍ଣ୍ଣ କର୍ମହୀନତାର ସମୟ । କେଭରର ବାଟରୁ ଆଡ଼େଇ ହୋଇଯିବାହିଁ କେବଳ ମୋର କାମ ଥିଲା । ସେ ଗୋଲକ ଭିତରେ ଭିତରେ ଏକଡ଼ରୁ ସେକଡ଼କୁ ଦ୍ରୁତ ଗତିରେ ଦୌଡ଼ୁଥାଏ—ଯେପରି ଦ୍ରୁତ ପୃଥିବୀ ପୃଷ୍ଠରେ ସମ୍ଭବ ନୁହେଁ । ସେ ସର୍ବକ୍ଷଣ କେଭରିଟ୍ ଝିଡ଼କା ଗୁଡ଼ିକ ଖୋଲୁଥାଏ ଓ ବନ୍ଦ କରୁଥାଏ, ଗଣନା କରୁଥାଏ ଏବଂ ଗ୍ଲୋ-ଲ୍ୟାମ୍ପ ସାହାଯ୍ୟରେ ତାହାର ଦିଗ-କାଳ ନିରୂପକ ଯନ୍ତ୍ରଟି ପରୀକ୍ଷା କରି ଦେଖୁଥାଏ । ସେଇ ଘଟଣାପୂର୍ଣ୍ଣ ଶେଷ କେଇ ଘଣ୍ଟା ଏଭଳି କଟିଲା । ଅନେକ ସମୟ ପର୍ଯ୍ୟନ୍ତ ଆମେ ସମସ୍ତ ଝିଡ଼କା ବନ୍ଦ କରି ରଖିଥିଲୁ ଏବଂ ଅନ୍ଧକାରରେ ନିଃଶବ୍ଦରେ ଭାସି ଭାସି ମହାଶୂନ୍ୟ ମଧ୍ୟରେ ଖସିପଡ଼ିବାକୁ ଲାଗିଲୁ ।

ତା ପରେ, ସେ ଝିଡ଼କାର ବୋତାମଗୁଡ଼ିକ ଅଣ୍ଟାଳିବାକୁ ଲାଗିଲା ଏବଂ ହଠାତ୍ ଗୋଟିଏ ଝିଡ଼କା ଖୋଲିଗଲା । ମୋର ପାଦ ତଳୁ ସୂର୍ଯ୍ୟର ଅତ୍ୟୁଗ୍ର ଆଲୋକ ଆସି ମୋତେ ଚମକିତ, ଅଭିଭୂତ ଓ ଅନ୍ଧୀଭୂତ କରିଦେବାରୁ ମୁଁ ଦୁଇହାତରେ ଆଖି ଢାଙ୍କି ପଛକୁ ଘୁଞ୍ଚିଗଲି ତାପରେ ଝିଡ଼କା ଗୁଡ଼ିକ ପୁଣି ବନ୍ଦ ହୋଇଗଲା ଏବଂ ମୋର ମୁଣ୍ଡ ଭିତରଟା ଅନ୍ଧାରରେ ଝିମ୍ ଝିମ୍

କରିବାକୁ ଲାଗିଲି । ସେ ଅନ୍ଧାର ମନେ ହେଉଥିଲା ଯେପରି ଆଖି ଉପରେ ମାଡ଼ି ହୋଇ ପଡ଼ୁଛି । ପୁଣି ଆଜି ଗୋଟିଏ ବିରାଟ କାଳିମାମୟ ନିସ୍ତବ୍ଧତା ଭିତରେ ମୁଁ ଭାସିବାକୁ ଲାଗିଲି ।

ତା ପରେ କେଭର ଆଲୁଅଟି ଜଳାଇ ଦେଲା ଏବଂ କହିଲା ଯେ ଅମିର ଅବତରଣର ଧକ୍କା ସମ୍ଭାଳିବାପାଇଁ ଆମର ସବୁ ଜିନିଷପତ୍ର ଏକାଠି କମ୍ବଳ ଦେଇ ବାନ୍ଧିଦେବାକୁ ହେବ । ସବୁ ଝିଡ଼କା ବନ୍ଦକରି ଆମେ ଏପରି କଲୁ । କାରଣ ଏହି ଉପାୟରେ ଆମର ଜିନିଷଗୁଡ଼ିକ ଗୋଲକର ମଧ୍ୟ-ସ୍ଥଳରେ ତା ମନକୁ ଆସି ଜମା ହୋଇଗଲା । ଏହା ମଧ୍ୟ ଗୋଟିଏ ଅଦ୍ଭୁତ ବ୍ୟାପାର ଥିଲା—ଆମେ ଦୁହେଁ ଗୋଲକର ଶୂନ୍ୟରେ ମୁକ୍ତଭାବରେ ଭାସି ଭାସି ବନ୍ଧାଛନ୍ଦା କରିବାକୁ ଲାଗିଲୁ । ଏହା ଅନୁମାନ କରି ପାରୁଛ ? ବେଶି ଇଆଡ଼େ ସିଆଡ଼େ ଯିବାର ଆବଶ୍ୟକତା ନାହିଁ, ଟିକିଏ ଚେଷ୍ଟାଦ୍ୱାରା ଅଭାବିତ ଭାବରେ ଘୁଞ୍ଚି ଯାଉଥିଲୁଁ । କେତେବେଳେ ବା କେଭରର ଟେଲ୍ରେ କାଚ ଉପରେ ଜାକି ହୋଇ ଯାଉଥିଲି । ଅନ୍ୟ ସମୟରେ ଶୂନ୍ୟ ମଝିରେ ଅସହାୟ ଭାବରେ ହାତଗୋଡ଼ ଛାଟିଆଡ଼ୁଥିଲି । କେତେବେଳେ ବିଦ୍ୟୁତ୍ ଆଲୋକର ତାରକା ମୁଣ୍ଡ ଉପରେ ରହୁଥିଲା, ଅନ୍ୟ କେତେବେଳେ ବା ତାହା ପାଦ ତଳକୁ ରହୁଥିଲା । କେତେବେଳେ କେଭରର ପାଦ ମୋର ଆଖି ସାମନାରେ ଭାସି ଉଠୁଥିଲା, ଅନ୍ୟ କେତେବେଳେ ବା ଆମେ ପରସ୍ପରର ଛକାଛକି ହୋଇ ରହୁଥିଲୁ । ଶେଷରେ ଆମର ସବୁ ଜିନିସ ଗୋଟିଏ ବଡ଼ ନରମ ଗଣ୍ଠିଲିରେ ବନ୍ଧା ହୋଇଗଲା, ଖାଲି ମଝିରେ କଣା କରା ହୋଇ ଦୁଇଟି କମ୍ବଳ ବାହାରେ ରହିଲା । ତାହା ଘୋଡ଼େଇ ହେବା ପାଇଁ ରଖାଗଲା ।

କ୍ଷଣିକଲାଗି କେଭର ଚନ୍ଦ୍ର ଦିଗସ୍ଥ ଗୋଟିଏ ଝିଡ଼କା ଖୋଲିଦେଲା ଏବଂ ଆମେ ଦେଖିଲୁ ଯେ ଆମେ ଗୋଟିଏ ବୃହତ୍ ଆଗ୍ନେୟଗିରିଗହ୍ୱରର ଆଡ଼କୁ ଖସିପଡ଼ୁଛୁଁ । ସେହି ଗହ୍ୱରର ଘେରପଟେ ଗୋଟିଏ ଛକ ଚକ୍ରପରି ଅନେକ ଗୁଡ଼ିଏ ଛୋଟ ଛୋଟ ଆଗ୍ନେୟଗିରିଗହ୍ୱର ମଧ୍ୟ ରହିଥିଲା; ତାପରେ କେଭର ପୁଣି ପ୍ରଖର ଜ୍ୱଳନ୍ତ ସୂର୍ଯ୍ୟ ଦିଗସ୍ଥ ଗୋଟିଏ ଝିଡ଼କା ଖୋଲିଦେଲା । ସେ

ବୋଧହୁଏ ସୂର୍ଯ୍ୟର ଆକର୍ଷଣକୁ 'ବ୍ରେକ୍'ରୂପେ ବ୍ୟବହାର କରୁଥିଲା । ହଠାତ୍ ମୋ ପାଖରୁ ଆଗକୁ ଘୁଞ୍ଚିଯାଇ ସେ କହିଲା, "ଗୋଟିଏ କମ୍ବଳ ଘୋଡ଼ାଇ ହୋଇଯିବ ।" ମୁଁ ପ୍ରଥମେ ତା କଥା ବୁଝି ପାରିଲି ନାହିଁ ।

ତା ପରେ ମୁଁ କମ୍ବଳ ଖଣ୍ଡିକ ଗୋଡ଼ ପାଖରୁ ଉଠାଇଆଣି ତାହାଦ୍ୱାରା ମୋର ଦେହ ମୁଣ୍ଡ ଓ ଆଖି ଘୋଡ଼େଇ ପକେଇଲି । ସେ ଅକସ୍ମାତ୍ ଝିଟିକ୍ସି ଗୁଡ଼ିକ ପୁଣି ବନ୍ଦ କରିଦେଲା । ତା ପରେ ପୁଣି ଗୋଟିଏ ଝିଙ୍କି ଖୋଲି ବନ୍ଦ କରିଦେଲା ଏବଂ ତାହା ପରେ ସବୁ ଝିଟକା ଗୁଡ଼ିକ ଖୋଲି ପକେଇ ସେମାନଙ୍କର ଇସ୍ପାତ୍ ବ୍ଲାଇଣ୍ଡ ଦେହରେ ଅଟକେଇ ଦେଲା । ଗୋଟିଏ ଧକ୍କା ଆମେ ଅନୁଭବ କଲୁଁ, ତା ପରେ ହଠାତ୍ ଗୋଲକ ଭିତରେ ଗଡ଼ି ପଡ଼ିଲୁ ଏବଂ କାଚ ଉପରେ ଓ ମାଲମତାର ଗଣ୍ଠିଗୁଡ଼ିକ ଉପରେ ଆମର ଦେହ ବାଡ଼େଇ ହୋଇଯିବାକୁ ଲାଗିଲା । ଆମେ ଦୁହେଁ ପରସ୍ପରକୁ ଧରି ରହିଲୁ ଏବଂ ବାହାରେ କୌଣସି ଧଳା ପଦାର୍ଥ ଛିଟିକି ପଡ଼ିବାକୁ ଲାଗିଲା । ଯେପରିକି ଆମର ଗୋଲକ ଢାଲୁ ବରଫାବୃତ ଭୂମି ଉପରେ ଗଡ଼ି ଯାଉଥିଲା.........

ସର୍ ର୍ ର୍ ର୍ ର୍ ର୍.................

ଧଡ଼୍କିନା ଗୋଟିଏ ଶବ୍ଦ ହେଲା ଏବଂ ଗଣ୍ଠିଗୁଡ଼ା ତଳେ ଅଧା ପୋତି ହୋଇଗଲି—କିଛିକ୍ଷଣ ପର୍ଯ୍ୟନ୍ତ ସବୁ ଚୁପ୍ ଚାପ୍ । ତା ପରେ ମୁଁ କେଭରର ଦୀର୍ଘନିଶ୍ୱାସ ଓ କଣ୍ଠର ଅସ୍ଫୁଟ ଶବ୍ଦ ଶୁଣିବାକୁ ପାଇଲି ଏବଂ ଗୋଟିଏ ଝିଙ୍କି ଖଟ୍ କରି ବନ୍ଦ ହୋଇଗଲା । ମୁଁ ମାଲମତା ସବୁ ଠେଲି ଝାଡ଼ିଝୁଡ଼ି ହୋଇ ତା ତଳୁ ବାହାରିଲି । ଆମର ଖୋଲା ଝରକାଗୁଡ଼ିକ କଳା ଦିଶୁଥିଲା । ଏବଂ ତାହା ଭିତରେ ଦେଇ ତାରାଗୁଡ଼ିକ ଜୁଳୁ ଜୁଳୁ କରୁଥିଲା ।

ଆମେ ସେ ପର୍ଯ୍ୟନ୍ତ ବଞ୍ଚିଥିଲୁ ଏବଂ ଯେଉଁ ପ୍ରକାଣ୍ଡ ଆଗ୍ନେୟଗିରିଗହ୍ୱର ଭିତରେ ଖସି ପଡ଼ିଥିଲୁ ତାର କାନ୍ଥର ଗାଢ଼ ଅନ୍ଧକାର ଭିତରେ ଆମେ ପଡ଼ିରହିଥିଲୁ ।

ଆମେ ବସି ଦମ ନେବାକୁ ଲାଗିଲୁ ଏବଂ ଆମ ଦେହର ଆଞ୍ଚୁଡ଼ା ଦାଗ ଗୁଡ଼ିକ ଆଉଁସିବାକୁ ଲାଗିଲୁ । ଆମ ଦୁହିଙ୍କ ଭିତରୁ କେହି ବୋଧହୁଏ

ଏପରି ଅଗ୍ଧାଡ଼ୁଆ ଧକ୍କା ପାଇବୁ ବୋଲି ଆଶଙ୍କା କରି ନଥିଲୁ । ମୁଁ ଅତି କଷ୍ଟରେ ଛୁଡ଼ାହେଲି । କହିଲି, "ବର୍ତ୍ତମାନ ଚନ୍ଦ୍ରର ଦୃଶ୍ୟ ଦେଖିବା କଥା । କିନ୍ତୁ— ! କେଉଁଠି, ଘୁରିଆଡ଼ୁ ତ ଖାଲି ଅନ୍ଧାର ହୋଇଛି !"

ଗୋଲକର କାଚ ଝାକରରେ ଭିଜାଯାଇଥିଲା ଏବଂ ମୁଁ କଥା କହୁ କହୁ ତାହା କମ୍ବଳରେ ପୋଛିବାକୁ ଲାଗିଲି । କେଭର କହିଲା, "ଉଦୟ ହେବାକୁ ଆହୁରି ଅଠଘଣ୍ଟା ଖଣ୍ଡେ ବାକି ଅଛି । ଆମକୁ ଅପେକ୍ଷା କରିବାକୁ ପଡ଼ିବ ।"

ବାହାରର କୌଣସି ଜିନିଷ ଆଦୌ ବାରି ହେଉ ନ ଥିଲା । ଆମେ ସମ୍ପୂର୍ଣ୍ଣ ଜମାଟ ଆବୃତ ଗୋଲକ ଭିତରେ ରହିଥିଲେ ଯେତିକି ଦେଖି ପାରି ଥାନ୍ତୁ, ସେତିକି ଦେଖି ପାରିଲୁ । ମୁଁ କମ୍ବଳରେ ଘଷିବାଦ୍ୱାରା କାଚରେ କେବଳ ଦାଗ ପଡ଼ୁଥିଲା ଏବଂ ମୁଁ ପୋଛିବା ସଙ୍ଗେ ସଙ୍ଗେ ସେହିକ୍ଷଣି ଜମା-ବାନ୍ଧିଯାଇଥିବା ଜଳବିନ୍ଦୁ ସହିତ ବେଶି ବେଶି କମ୍ବଳବାଳ ମିଶି ତାହା ପୁଣି ଅସ୍ୱଚ୍ଛ ହୋଇ ଯାଉଥିଲା । କାଚ ସଫା କରିବାକୁ ଯାଇ ଶେଷରେ ଓଦା କାଚରେ ମୋର ଗୋଡ଼ ଖସିଗଲା ଏବଂ ଗଣ୍ଡିଖି ଭିତରୁ ବାହାରକୁ ବାହାରି-ପଡ଼ିଥିବା ଗୋଟିଏ ଅମ୍ଳଜାନ ନଳୀରେ ବାଜି ମୋର ପାଦ ଆଞ୍ଚୁଡ଼ି ହୋଇ-ଗଲା ।

ବ୍ୟାପାରଟା ବଡ଼ ବିରକ୍ତିଜନକ ଥିଲା-ଅତି ଅଦ୍ଭୁତ ଥିଲା ମଧ୍ୟ । ଆମେ ଚନ୍ଦ୍ର ଉପରେ ଓହ୍ଲାଇଲୁ, କେଉଁ ଅଜଣା ବସ୍ତୁସ୍ତୂପ ଭିତରେ, ଅଥଚ ଆମେ ଦେଖିଲୁ କେବଳ ଯେଉଁ ଗୋଲକରେ ଆସିଥିଲୁ ତାର ଧୂସର ଓ ଶିଶିରାଚ୍ଛନ୍ନ କାନ୍ଥ ।

ମୁଁ କହିଲି, "ଚୁଲିକି ଯାଉ ସବୁ ! ଏପରି କଥା ହେଲେ ତ ବରଂ ଆମର ଘରେ ରହିଯିବା ଉଚିତ ଥିଲା ।" ଗଣ୍ଡିଖି ଉପରେ ବସି ମୁଁ ଶୀତରେ ଥରିବାକୁ ଲାଗିଲି ଏବଂ କମ୍ବଳଟିକୁ ଆହୁରି ଭଲଭାବରେ ଦେହଉପରେ ଟାଣି ଧରିଲି ।

ଜଳବିନ୍ଦୁ ସବୁ ହଠାତ୍ ବରଫ ହୋଇ ଜରିତାର ଓ ତାଳପତ୍ରର ଆକାର ଧାରଣ କଲା କେଭର କହିଲା, "ବୈଦ୍ୟୁତିକ ଉତ୍ତାପଯନ୍ତ୍ରକୁ ତମ

ହ ତ ପାଉଛୁ ? ହଁ—ସେଇ କଳା ବୋତାମଟା ନ ହେଲେ ଆମେ ବରଫ ପାଲଟି ଯିବୁଁ ।"

ମତେ ସେ କଥା ଦ୍ୱିଥର ବୁଝାଇବାକୁ ପଡ଼ି ନ ଥିଲା । ମୁଁ କହିଲି, "ଏଥର ଆମେ କଣ କରିବା ।"

ସେ କହିଲା, "ଅପେକ୍ଷା କରିବା ।"

"ଅପେକ୍ଷା କରିବା ?"

"ଅବଶ୍ୟ । ଆମର ବାୟୁ ଗରମ ହେବା ଯାଏ ଆମକୁ ଅପେକ୍ଷା କରିବାକୁ ପଡ଼ିବ । ତା ପରେ ଏଇ କାଚ ସଫା ହୋଇଯିବ । ସେ ପର୍ଯ୍ୟନ୍ତ ଆମେ ଆଉ କିଛି କରି ପାରିବା ନାହିଁ । ଏଠି ବର୍ତ୍ତମାନ ସୃଷ୍ଟି ରାତି ରହିଛି; ଦିନ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ । ଆଚ୍ଛା, ତୁମଙ୍କୁ ଶୀତ କରୁନ ?"

କିଛିକ୍ଷଣ ଯାଏ ମୁଁ ତାର କଥାର ଜବାବ ନ ଦେଇ ବିରକ୍ତଚିତ୍ତରେ ବସି ରହିଲି । ଅଦ୍ଭୁତ ଭାବରେ ଚିତ୍ରିତ କାଚ ଉପରୁ ଅନିଚ୍ଛାସତ୍ତ୍ୱେ ଆଖି ଫେରାଇ ମୁଁ ତା ଆଡେ ଚାହିଁଲି । କହିଲି, "ହଁ ଶୀତ କରୁଛି । କୌଣସି କାରଣରୁ ମୁଁ ଅତ୍ୟନ୍ତ ନିରାଶ ହୋଇ ପଡ଼ିଛି । ମୁଁ ଠିକ୍ କଣ ଆଶା କରୁଥିଲି ତା ଜାଣେ ନାହିଁ; ତେବେ ଏ ସବୁ କଥା କେବେ ଆଶା କରୁନଥିଲି ।"

ମୁଁ ମନରେ ଦାର୍ଶନିକସୁଲଭ ନିଶ୍ଚିନ୍ତଭାବ ଆଣିବାକୁ ଚେଷ୍ଟା କଲି । କମ୍ବଳଟା ମୋ ଦେହ ଉପରେ ଭଲଭାବରେ ସଜାଡ଼ି, ଗଣ୍ଡିଆ ଉପରେ ବସି ମୁଁ ଚନ୍ଦ୍ରରେ ମୋର ପ୍ରଥମ ଖାଦ୍ୟ ଗ୍ରହଣ କଲି । ବୋଧହୁଏ ସବୁତକ ଖାଦ୍ୟ ମୁଁ ଶେଷ କଲି ନାହିଁ । ଅଳ୍ପ ସମୟ ପରେ, ପ୍ରଥମେ ମେଞ୍ଚା ମେଞ୍ଚା ହୋଇ, ତାପରେ ଶୀଘ୍ର ଶୀଘ୍ର ଆହୁରି ବିସ୍ତୃତ ଭାବରେ କାଚ ପରିଷ୍କୃତ ହେବାକୁ ହେବାକୁ ଆରମ୍ଭ କଲା । ଚନ୍ଦ୍ର ଜଗତକୁ ଯେଉଁ କୁହୁଡ଼ିର ପର୍ଦ୍ଦା ଆମ ଆଖିରୁ ଘୋଡାଇ ରଖିଥିଲା ତାହା ଅପସାରିତ ହେଲା ।

ଆମେ ଝିଡ଼କି ବାଟେ ଚନ୍ଦ୍ରର ଦୃଶ୍ୟ ଦେଖିବାକୁ ଲାଗିଲୁ ।



୨

# ଚନ୍ଦ୍ରରେ ସୂର୍ଯ୍ୟୋଦୟ

ଆମେ ପ୍ରଥମେ ଯେତେବେଳେ ତାହା ଦେଖିଲୁ, ସେଇ ଦୃଶ୍ୟ ଅତି କର୍କଶ ଓ ଭୟାନକ ଦିଶୁଥିଲା । ଆମେ ଗୋଟିଏ ପ୍ରକାଣ୍ଡ ବୃତ୍ତାକାର ନାଟ୍ୟ-ମଞ୍ଚ ସଦୃଶ ସ୍ଥାନରେ ରହିଥିଲୁ, ଗୋଟିଏ ସୁବିସ୍ତୃତ ଗୋଲାକାର ସମତଳ ଭୂମି, ଗୋଟିଏ ବିରାଟ ଅଗ୍ନେୟଗିରି ଗହ୍ୱରର ତଳଦେଶ । ତାହାର ପାହାଡ ସଦୃଶ କାନ୍ଥ ସବୁ ଆମର ଚାରିଆଡେ ଘେରିରହିଥିଲା । ପଶ୍ଚିମଦିଗରୁ ଅଦୃଶ୍ୟ ସୂର୍ଯ୍ୟଙ୍କ ଆଲୋକ ତା ଉପରେ ନିପତିତ ହେଉଥିଲା । ସେ ଆଲୋକ ପାହାଡର ପାଦଦେଶ ପର୍ଯ୍ୟନ୍ତ ପହଞ୍ଚିଥିଲା, ଏବଂ ଇତସ୍ତତଃ ବିମନନ୍ମଭାବରେ ପ୍ରସାରିତ ହୋଇଥିବା ଫିକା ଧୂସରବର୍ଣ୍ଣର ଶିଳାଗୁଡିକ ଉପରେ ଆସି ପଡୁଥିଲା । ସେହି ଶିଳା ଠାଏ ଠାଏ ବରଫର ସ୍ତର ଓ ଫାଟ ଦ୍ୱାରା ଚିହ୍ନିତ ହୋଇଥିଲା । ଏ ସମସ୍ତ ଆମଠାରୁ ପ୍ରାୟ ବାର ମାଇଲ ଦୂରରେ ରହିଥିଲା, କିନ୍ତୁ ପ୍ରଥମେ ସେ ଦୃଶ୍ୟ ଓ ଆମ ମଝିରେ କୌଣସି ବାୟୁମଣ୍ଡଳର ବାଧା ନ ରହିଥିବାରୁ ସେହି ଉଜ୍ଜ୍ୱଳଭାବରେ ଆଲୋକିତ ଜିନିଷ ଗୁଡିକର ପୁଙ୍ଖାନୁପୁଙ୍ଖ ବିବରଣ ଆମେ ସ୍ପଷ୍ଟ ଭାବରେ ଦେଖିପାରୁଥିଲୁ । ତ ରକିତ କାଳିମାର ପୃଷ୍ଠଭୂମିରେ ସେ ସବୁ ସୁସ୍ପଷ୍ଟ ଓ ଜ୍ୱଳନ୍ତ ଭାବରେ ଦେଖାଯାଉଥିଲା । ସେହି କାଳିମା ଆମର ପାର୍ଥିବ ଚକ୍ଷୁରେ ଆକାଶର ବିସ୍ତୃତ ପଟ୍ଟ ନ ଦିଶି, ବରଂ ଜରି ଟୋପ ଦ୍ୱାରା ସୁଶୋଭିତ ମଖମଲର କୌଣସି ପର୍ଦ୍ଦାପରି ଦିଶୁଥିଲା ।

ପୂର୍ବ ଦିଗର ପାହାଡ଼ ପ୍ରଥମେ ତାରକାଖଚିତ ଶମ୍ଭୁକର ତାରକାହୀନ ଧାଡ଼ି ପରି ଦେଖାଯାଉଥିଲା । ଦିବସର ସୂଚନା ଦେବାପାଇଁ ସେ ଦିଗରେ ଗୋଲାପୀ ଆଭା କିମ୍ବା ଫିକାବର୍ଣ୍ଣ ଫୁଟି ଉଠି ନ ଥିଲା । କେବଳ ଶଶିଚକ୍ରର ମୁକୁଟ ସଦୃଶ ଆଲୋକ, ଗୋଟିଏ ଶଙ୍କୁଆକୃତି ବୃହତ୍ ଉଜ୍ଜ୍ୱଳ କୁଜ୍ଝଟିକା,

ପାହାଡ଼ ତାର ଆଡ଼େ ଊର୍ଦ୍ଧ୍ୱକୁ ପ୍ରସାରିତ ହୋଇ ଆଗାମୀ ସୂର୍ଯ୍ୟର ସନ୍ଦେଶ ବହନ କରି ଆଣିଥିଲା ।

ଆମର ଗୃହଆଡ଼େ ଯାହା ଆଲୋକ ଥିଲା ତାହା କେବଳ ପଶ୍ଚିମଦିଗର ପାହାଡ଼ଦ୍ୱାରା ପ୍ରତିଫଳିତ ହେଉଥିଲା । ତାହାଦ୍ୱାରା ଦେଖାଯାଉଥିଲା ଗୋଟିଏ ବିଶାଳ ତରଙ୍ଗାୟିତ ସମତଳଭୂମି—ଶୀତଳ ଏବଂ ଧୂସର । ସେହି ଧୂସରତା ପୂର୍ବଦିଗକୁ କ୍ରମେ କ୍ରମେ ଗାଢ଼ତର ହୋଇ ପାହାଡ଼ର ତୁଷାର ଗାଢ଼ତମ କାଳିମାରେ ମିଶି ଯାଇଥିଲା । ଅସଂଖ୍ୟ ଗୋଲାକୃତି ଧୂସର ଶିଖର ଦେଶ, ପ୍ରେତ ସଦୃଶ ଉଚ୍ଚଭୂମି, ତରଙ୍ଗବତ୍ ତୁଷାରଜାତ ପଦାର୍ଥ, ଚୂଡ଼ା ପରେ ଚୂଡ଼ା ପ୍ରସାରିତ ହୋଇ ଦୂରର ଘନ ଅନ୍ଧକାରରେ ଲୁପ୍ତ ହୋଇଯାଇଥିଲା । ଏସବୁ ଦେଖି ଆଗ୍ନେୟଗିରିଗହ୍ୱରର କାନ୍ଥର ଦୂରତା ବିଷୟରେ ଆମେ ପ୍ରଥମେ ଧାରଣା ଲାଭ କରିପାରିଲୁ । ସେହି ଉଚ୍ଚ ଭୂମି ଗୁଡ଼ିକ ପ୍ରଥମେ ବରଫ ପରି ଦିଶୁଥିଲା । ସେ ସମୟରେ ମୁଁ ଭାବିଥିଲି ଯେ ତାହା ବରଫ ଜାତ ପ୍ରକୃତରେ ତାହା ବରଫ ନ ଥିଲା—ତାହା ଥିଲା ଜମାଟବନ୍ଧା ବାୟୁର ସ୍ତୂପ !

ପ୍ରଥମେ ଦୃଶ୍ୟଟି ଏହିପରି ଥିଲା—ତାପରେ ହଠାତ୍, ଶୀଘ୍ରଗତିରେ, ଆଶ୍ଚର୍ଯ୍ୟଭାବରେ ଆସିଲା ଚନ୍ଦ୍ର ଦିବସ ।

ସୂର୍ଯ୍ୟର ଆଲୋକ ପାହାଡ଼ତଳକୁ ଗଡ଼ି ଆସିଥିଲା, ତାହା ପାହାଡ଼ର ପାଦ ଦେଶରେ ଥିବା ଭାସମାନ ସ୍ତୂପ ଗୁଡ଼ିକୁ ସ୍ପର୍ଶକଲା, ତା ପରେ ବ୍ୟଗ୍ର ଭାବରେ ଲମ୍ବ ଲମ୍ବ ପାଦ ପକାଇ ଆମ ଆଡ଼କୁ ମାଡ଼ି ଆସିଲା । ଦୂରର ପାହାଡ଼ ଅଶାନ୍ତ ପରି ମନେ ହେଲା ଏବଂ ସୂର୍ଯ୍ୟର ସ୍ପର୍ଶରେ ଧୂସରବର୍ଣ୍ଣ ଜଳୀୟ ବାଷ୍ପର ଗୋଟିଏ କୁଣ୍ଡଳୀ ଆଗ୍ନେୟଗିରିଗହ୍ୱରର ଚଟାଣରୁ ଊର୍ଦ୍ଧ୍ୱକୁ ଉଠିଲା । ଧୂସର ବର୍ଣ୍ଣର ପ୍ରେତବତ୍ କୁଣ୍ଡଳୀ, ଫୁତ୍କାର ପରି, ଧୂଳି ଧୂଳି ଭାସିଭାସି କ୍ରମେ କ୍ରମେ ଅଧିକ ସ୍ଥୂଳ, ପ୍ରସାରିତ ଓ ନିବିଡ଼ ହୋଇ ଉଠିବାକୁ ଲାଗିଲା—ପରିଶେଷରେ ପଶ୍ଚିମଦିଗର ସମସ୍ତ ସମତଳ ଭୂମି ଅଗ୍ନି ସମ୍ମୁଖରେ ଓଦା ରୁମାଲପରି ବାମ୍ଫ ଛାଡ଼ିବାକୁ ଲାଗିଲା ଏବଂ ପଶ୍ଚିମ ଦିଗର ଭୃଗୁଶୈଳ-ସମୂହ କେବଳ ଅତି ଦୂରର ପ୍ରତିସୃତ ଆଲୋକ ପରି ଦିଶୁଥିଲା ।

କେଭର୍ଣ୍ଣ କହିଲା, "ଏହା ବାୟୁ ! ଏହା ନିସ୍ତବ୍ଧ ବାୟୁ—ନ ହେଲେ ଏହା ସୂର୍ଯ୍ୟକିରଣର ସ୍ପର୍ଶ ମାତ୍ରକେ ଏପରି ଭାବରେ ଉଠନ୍ତା ନାହିଁ ଏବଂ ଏହିପରି ଭାବରେ ଗୁଳିଲେ...... ....."

ସେ ଉପର ଆଡ଼କୁ ଚାହିଁଲା, କହିଲା, "ଦେଖ !"

ମୁଁ ପଚାରିଲି, "କଣ ?"

"ଆକାଶରେ ! ଆରମ୍ଭ ହୋଇସାରିଛି । କଳା ଉପରେ—ନେଳିଆର ଗୋଟିଏ ଶ୍ରେଷ୍ଠ ଚିହ୍ନ । ଦେଖୁଛ ! କେବଳ ବଡ଼ ତାରାଗୁଡ଼ିକ ଅଛନ୍ତି । ଏବଂ ଯେଉଁ ଶ୍ରେଷ୍ଠ ତାରାଗୁଡ଼ିକ ଏବଂ ଛାୟାପଥ ମହାଶୂନ୍ୟରେ ଆମେ ଆଗେ ଦେଖିପାରୁଥିଲୁ—ସେମାନେ ସମସ୍ତେ ଲୁଚି ଗଲେଣି !"

ଶୀଘ୍ରଗତିରେ, ଦୃଢ଼ଭାବରେ ଘନ ମାଡ଼ିଆସିଲା । ଧୂସର ଶିଖର ପରେ ଶିଖର ଆଲୋକ ଦ୍ୱାରା ଉଦ୍ଭାସିତ ହେଲା ଏବଂ ଧୂମାଚ୍ଛାଦିତ ତୀକ୍ଷ୍ଣ ଧବଳତାରେ ପରିଣତ ହେଲା । ପରିଶେଷରେ ଆମର ପଶ୍ଚିମକୁ ଉଦ୍‌ବେଳିତ କୁହୁଡ଼ି ଛଡ଼ା ଆଉ କିଛି ରହିଲା ନାହିଁ । ମେଘ ପରି କୁହୁଡ଼ି ମାଡ଼ିପଡ଼ି ଉପରକୁ ଉଠିବାକୁ ଲାଗିଲା । ଦୂରର ପାହାଡ଼ ଆଦିର ପଛକୁ ପଛକୁ ଘୁଞ୍ଚିବାକୁ ଲାଗିଲା ଏବଂ ଘୂର୍ଣ୍ଣିରେ ଅସ୍ପଷ୍ଟ ହୋଇ ରୂପ ପରିବର୍ତ୍ତନ କରି, ଶେଷରେ ଖଣ୍ଡ ଖଣ୍ଡ ହୋଇ ବିଶୃଙ୍ଖଳିତ ଭାବରେ ଲୋପ ପାଇଗଲା ।

ସେହି ବାମ୍ପ ଆମର ନିକଟକୁ ନିକଟକୁ ମାଡ଼ି ଆସିଲା, ଦକ୍ଷିଣ-ପଶ୍ଚିମ ପବନରେ ଭାସି ଆସୁଥିବା ମେଘର ସ୍ତୂପ ଶୀଘ୍ରଗତିରେ ମାଡ଼ିଆସିଲା । ଆମର ଚାରିଆଡ଼େ ଗୋଟିଏ କ୍ଷୀଣ ଆଲୋକିତ କୁହେଳିକା ଉତ୍ଥିତ ହେଲା ।

କେଭର ମୋର ହାତକୁ ଭିଡ଼ିଧରିଲା ।

ମୁଁ କହିଲି, "କଣ ?"

"ଦେଖ ! ସୂର୍ଯ୍ୟୋଦୟ ! ସୂର୍ଯ୍ୟ !"

ସେ ମତେ ଘୂରେଇ ଦେଇ ପୂର୍ବଦିଗସ୍ଥ ପାହାଡ଼ର ଲଲାଟକୁ ଆଙ୍ଗୁଳି ନିର୍ଦ୍ଦେଶ କଲା । ସେହି ପାହାଡ଼ ଆମର ଚାରିପଟେ ଘେରି ରହିଥିବା କୁହୁଡ଼ି

ଉପରେ ମୁଣ୍ଡ ଟେକିଥିଲା ଏବଂ ତାହାର ବର୍ଣ୍ଣ ପ୍ରାୟ ଆକାଶର କାଳିମାପରି ଗାଢ଼ ଥିଲା । କିନ୍ତୁ ବର୍ତ୍ତମାନ ତାର ବହିଃରେଖା ଅଦ୍ଭୁତ ନାଲିଆ ଆକୃତି ବୁଡ଼ିକଦ୍ୱାରା ଚିହ୍ନିତ ହୋଇଥିଲା; ଲୋହିତ ବହ୍ନି ଶିଖାର ଜିହ୍ୱା ବଙ୍କେଇ ବଙ୍କେଇ ନୃତ୍ୟ କରୁଥିଲା । ମୁଁ ଭାବିଲି ଏହା ବୋଧହୁଏ ଜଳୀୟବାଷ୍ପର କୁଣ୍ଡଳୀ—ତାହା ଉପରେ ଆଲୋକ ପ୍ରତିଫଳିତ ହୋଇ ଆକାଶରେ ଏପରି ଜ୍ୱଳନ୍ତ ଜିହ୍ୱାର ଛବି ସୃଷ୍ଟି କରିଛି । କିନ୍ତୁ ପ୍ରକୃତରେ ଏହା ଥିଲା ସୂର୍ଯ୍ୟର ବହ୍ନିମଣ୍ଡଳୀ—ସୂର୍ଯ୍ୟର ଚତୁଃପଟେ ଏହି ବହ୍ନି ମୁକୁଟ ରହିଥାଏ, କିନ୍ତୁ ଆମର ବାୟୁମଣ୍ଡଳର ପରଦା ଯୋଗୁଁ ଏହା ଚିରକାଳ ଆମର ପାର୍ଥିବ ଚକ୍ଷୁ ପ୍ରତି ଅଦୃଶ୍ୟ ହୋଇ ରହେ ।

ଏବଂ ତା ପରେ—ସୂର୍ଯ୍ୟ !

ପରିହାର୍ଯ୍ୟ ଦ୍ରୁତତା ସହିତ ଗୋଟିଏ ଉଜ୍ଜ୍ୱଳ ରେଖା ଅଗ୍ରସର ହେଲା, ଅସହ୍ୟ ଜ୍ୟୋତିର ଗୋଟିଏ ତୀକ୍ଷ୍ଣ ଧାର ଅଗ୍ରସର ହୋଇ ବୃତ୍ତର ଆକାର ଗ୍ରହଣ କଲା । ତା ପରେ ଧନୁର ଆକାରରେ ପରିବର୍ତ୍ତିତ ହେଲା ଏବଂ ଶେଷରେ ଗୋଟିଏ ଜ୍ୱଳନ୍ତ ଦଣ୍ଡରେ ପରିବର୍ତ୍ତିତ ହୋଇ ଆମ ଆଡ଼କୁ ଗୋଟିଏ ଉତ୍ତପ୍ତ ଶଳାକା ନିକ୍ଷେପ କଲା, ସତେ ଯେପରି ତାହା ଗୋଟିଏ ବର୍ଚ୍ଛା ।

ତାହା ମୋ ଆଖିରେ ସତକୁ ସତ ବାଜ ହେଲାପରି ଲାଗିଲା ! ମୁଁ ଉଚ୍ଚ ସ୍ୱରରେ ଚିତ୍କାର କରି ଉଠିଲି । ଏବଂ ଅନ୍ଧ ଭାବରେ ଗଣ୍ଠିଘ ତଳେ ଥିବା ମୋର କମ୍ବଳ ଅଣ୍ଡାଳିବାକୁ ଲାଗିଲି ।

ଏବଂ ସେହି ତୀବ୍ର ଦୀପ୍ତି ସଙ୍ଗେ ସଙ୍ଗେ ଆସିଲା ଗୋଟିଏ ଶବ୍ଦ, ଆମେ ପୃଥିବୀ ତ୍ୟାଗ କରିବା ସମୟଠାରୁ ତାହା ଥିଲା ବାହାରୁ ଆସିଥିବା ପ୍ରଥମ ଶବ୍ଦ । ହିଁ ହିଁ ଶବ୍ଦ କରି, ଆସନ୍ନ ବିବରର ବାୟୁ-ପରିଧେୟର ଝଡ଼ ରୂପକ ଘର୍ଷଣ ଜନିତ ଖସ୍ ଖସ୍ ଶବ୍ଦ କରି ତାହା ଆସିଲା ଏବଂ ସେହି ଆଲୋକ ଓ ଶବ୍ଦ ଆସିବା ସଙ୍ଗେ ସଙ୍ଗେ ଗୋଲକଟି ଗୋଟିଏ ପାଖକୁ ଢଳି

ପଡ଼ଲି ଏବଂ ଆମେ ସେଇ ଆଲୋକରେ ଅନ୍ଧ ହୋଇ ଅସହାୟ ଭାବରେ ପରସ୍ପର ଉପରକୁ ଗଡ଼ି ପଡ଼ିଲୁ । ଗୋଲକଟି ପୁଣି ଓଲଟି ପଡ଼ିଲା, ଏବଂ ସେଁ ସେଁ ଶବ୍ଦ ବଢ଼ିବାକୁ ଲାଗିଲା । ମୁଁ ମୋର ଆଖି ଜୋରରେ ବନ୍ଦ କରି ଦେଇଥିଲି, ଏବଂ କମ୍ବଳରେ ମୋର ମୁଣ୍ଡ ଘୋଡ଼ାଇବାକୁ ଅବାଗିଆ ପରି ଚେଷ୍ଟା କରୁଥିଲି । ତେଣୁ ଏହି ଦ୍ୱିତୀୟ ଓଲଟା ଦ୍ୱାରା ମୁଁ ନିତାନ୍ତ ଅସହାୟ ଭାବରେ ଗୋଡ଼ ଖସି ପଡ଼ିଗଲି । ମୁଁ ଗଣ୍ଠିଘା ଉପରେ କଗୁନ୍ଧ ହୋଇ ପଡ଼ିଲି ଏବଂ ମୋର ଆଖି ଖୋଲି କାଚ ବାହାରେ ଥିବା ବାୟୁକୁ କ୍ଷଣକ ଲାଗି ଦେଖି ପାରିଲି । ସେହି ବାୟୁ ତରଳି ଯାଉଥିଲା, ଟବ ଟବ ହୋଇ ଫୁଟୁଥିଲା—ଯେପରିକି ବରଫ ଭିତରେ ଗୋଟିଏ ଉତ୍ତପ୍ତ ଲୁହା ସେମିତି ଦାଗ ହୋଇଛି । ଯାହା ଘନୀଭୂତ ବାୟୁ ଥିଲା ତାହା ସୂର୍ଯ୍ୟର ସ୍ପର୍ଶ ମାତ୍ରକେ ହଠାତ୍ ମେଞ୍ଚା ମେଞ୍ଚା କାଦୁଅରେ, ତାପରେ ଜଳୀୟ ପଦାର୍ଥରେ, ଏବଂ ପରିଶେଷରେ ସେଁ ସେଁ କରୁଥିବା ଓ ଟବଟବ ଫୁଟୁଥିବା ବାଷ୍ପରେ ପରିଣତ ହେଲା ।

ତାପରେ ଗୋଲକଟି ଆହୁରି ଜୋରରେ ଘୂର୍ଣ୍ଣିତ ହେଲା ଏବଂ ଆମେ ଦୁହେଁ ପରସ୍ପରକୁ କୁଣ୍ଢେଇ ଧରିଲୁ । ପର ମୁହୂର୍ତ୍ତରେ ପୁଣି ଆମେ ଚକ୍ରାକାରରେ ଘୂରିବାକୁ ଲାଗିଲୁ । ଘୂରି ଘୂରି ଉପରକୁ ଫିଙ୍ଗି ହୋଇ ମୁଁ ପୁଣି କଗୁନ୍ଧ ହୋଇ ପଡ଼ିଲି । ଚନ୍ଦ୍ର ପ୍ରତ୍ୟକ୍ଷ ଆମକୁ ବାଗରେ ପାଇ ଯାଇଥିଲା । କ୍ଷୁଦ୍ର ମଣିଷକୁ ଚନ୍ଦ୍ର କଣ କରିପାରେ, ତାହା ଦେଖାଇବା ଥିଲା ତାର ଉଦ୍ଦେଶ୍ୟ ।

ମୁଁ ଆଉଥରେ ବାହାରର ଅବସ୍ଥା କ୍ଷଣକ ଲାଗି ଦେଖିବାକୁ ପାଇଲି । ଜଳୀୟ ବାଷ୍ପର ଫୁତ୍କାର ଅର୍ଦ୍ଧ ଜଳୀୟ କାଦୁଅ ତଳୁ ଠାଡ଼ ହୋଇ ଝରି ପଡ଼ିବାକୁ ଲାଗିଲା, ଗଡ଼ି ଯିବାକୁ ଲାଗିଲା । ଆମେ ଅନ୍ଧକାରରେ ଆବୃତ ହେଲୁ । ମୁଁ ତଳେ ଚିତ୍ ହୋଇ ପଡ଼ିଗଲି ଏବଂ କେଭରର ଆଣ୍ଠୁ ମୋର ଗ୍ରୀବା ଉପରେ ମାଡ଼ି ବସିଲା । ତା ପରେ ସେ ପୁଣି ଉପରକୁ ଫିଙ୍ଗି ହୋଇଗଲା ଏବଂ କ୍ଷଣକ ଲାଗି ମୁଁ ଅଣନିଶ୍ୱାସୀ ହୋଇ ପଡ଼ିରହି ଉପରକୁ ଚାହିଁରହିଲି । ତରଳି ଯାଉଥିବା ସେହି ପଦାର୍ଥରୁ ଟିକିଏ ଛୁଟି ପଡ଼ି ଆମର

ଗୋଲକ ଉପରେ ଅଜାଡ଼ି ହୋଇ ପଡ଼ିଲା ଓ ତାକୁ ପୋଡ଼ି ପକାଇଲା । ବର୍ତ୍ତମାନ ତାହା ପାତଳା ହୋଇ ଉବ ଉବ କରି ଫୁଟିବାକୁ ଆରମ୍ଭ କଲା । କାଚ ଉପରେ ତାର ଫୋଟକା ସବୁ ନୃତ୍ୟ କରୁଥିବାର ମୁଁ ଦେଖି ପାରିଲି । କେଭଁର ଅସ୍ଫୁଟ କଣ୍ଠରେ କଣ କହିବାକୁ ଲାଗିଲା ।

ତାପରେ ଗୋଲକ ତଳେ ଥିବା ଜମାଟବନ୍ଧା ବାମ୍ଫର ଗୋଟିଏ ପ୍ରକାଣ୍ଡ ସ୍ତର ଖସି ଗଲା ଏବଂ ଆମର ଶତ ଚିତ୍କାରକୁ ଭ୍ରୂକ୍ଷେପ ନକରି ଗୋଲକଟି ଗଡ଼ାଣିଆ ଭୂମି ଉପରେ ଗଡ଼ି ଯିବାକୁ ଲାଗିଲା । ତାହା ବରଫର ଫଟା ଗର୍ତ୍ତକୁ ଡେଇଁ, ଢିହରୁ ଢିହକୁ ଫିଙ୍ଗି ହୋଇ ଆହୁରି ଆହୁରି ଶୀଘ୍ର ଗତିରେ ପଶ୍ଚିମ ଦିଗର ରୁଦ୍ର ଦବସର ଜ୍ୱଳନ୍ତ, ଅତୃପ୍ତ ବିପର୍ଯ୍ୟସ୍ତ ଭିତରକୁ ଗଡ଼ିଯିବାକୁ ଲାଗିଲା ।

ଆମେ ପରସ୍ପରକୁ କୁଣ୍ଢେଇ ଧରି ଚକ୍ରାକାରରେ ଘୂରି ଘୂରି ଏଦିଗକୁ ସେଦିଗକୁ ଫୋପାଡ଼ି ହୋଇ ଯିବାକୁ ଲାଗିଲୁ, ଏବଂ ଆମର ଜିନିଷ ଡେଇଁ ଡେଇଁ ଆମ ଉପରେ ଛେଚି ହେବାକୁ ଲାଗିଲା । ଆମେ ଦୁହେଁ ପରସ୍ପର ଦେହରେ ପିଟି ହୋଇ, ପରସ୍ପରକୁ ଜାବୁଡ଼ି ଧରି, ପୁଣି ଅଲଗା ଭାବରେ ଫିଙ୍ଗି ହୋଇ, ମୁଣ୍ଡରେ ମୁଣ୍ଡ ବାଡ଼େଇ ହୋଇ ଗଡ଼ିଯିବାକୁ ଲାଗିଲୁ—ମନେ ହେଉଥିଲା ଆମର ମୁଣ୍ଡ ଭିତରେ ଜ୍ୱଳନ୍ତ ଅଗ୍ନି କଣା ଓ ତାରକା ଝଟକି ଉଠୁଛି । ପୃଥିବୀ ଉପର ହୋଇଥିଲେ ଆମେ ପରସ୍ପରକୁ ବୋଧହୁଏ ଦଶ ବାର ଥର ଛେଚି ପକେଇଥାନ୍ତୁ, କିନ୍ତୁ ଭାଗ୍ୟବଶତଃ ଚନ୍ଦ୍ର ଉପରେ ଆମର ଓଜନ ସ୍ୱାଭାବିକ ଓଜନର ଛ ଭାଗର ଭାଗେ ହୋଇଯାଇ ଥିବାରୁ ଆମେ ଖୁବ ଉଶ୍ୱାସରେ ବାଡ଼େଇ ହେଉଥିଲୁ । ମୁଁ ହଠାତ ବଡ ଅସୁସ୍ଥ ଅନୁଭବ କଲି, ଯେପରିକି ମୁଣ୍ଡ ଭିତରେ ମୋର ମସ୍ତିଷ୍କ ଓଲଟି ପଡ଼ୁଛି, ଏବଂ ତାପରେ—

ମୋର ମୁହଁ ଉପରେ କଣ ଗୋଟିଏ ଗୁଲୁଛି ବୋଲି ମନେ ହେଲା, କାନ ଉପରେ ଯେପରି କଣ ଗୋଟିଏ ଘସି ହେଉଛି । ତାପରେ ମୁଁ ଦେଖି ପାରିଲି ଯେ ମୋର ଚାରିଆଡ଼େ ଥିବା ସୂର୍ଯ୍ୟର ତେଜ ନେଳିଆ ଚନ୍ଦ୍ରମା

ହ୍ରାସ୍ କମି ଯାଇଛି । କେଭର ମୋ ଉପରେ ଝୁଙ୍କି ପଡ଼ିଲା, ଏବଂ ତାର ମୁହଁ ମୁଁ ଓଲଟା ଭାବରେ ଦେଖି ପାରିଲି । ସେ ମଧ୍ଯ ସୂର୍ଯ୍ୟର ତେଜରୁ ଆଖିକୁ ରକ୍ଷା କରିବା ପାଇଁ ରଙ୍ଗୀନ ଚକ୍ଷମା ପିନ୍ଧି ଥିଲା । ସେ ଅନେକଃଶ୍ୱାସ ହୋଇ ପଡ଼ିଥିଲା ଏବଂ ତାର ଓଠ କଟି ଯାଇ ରକ୍ତ ପଡ଼ୁଥିଲା । ହାତ ପଛ ପଟେ ରକ୍ତ ପୋଛି ସେ ପଚାରିଲା, "ଆଗ ଅପେକ୍ଷା ସୁସ୍ଥ ବୋଧ କରୁଛ ?"

ମନେ ହେଉଥିଲା ଯେପରି ସବୁ ଜିନିଷ ଝଲମଲ ହେଉଛି, କିନ୍ତୁ ମୋର ମୁଣ୍ଡ ବୁଲାଉଥିବା ଯୋଗୁଁ ଏପରି ବୋଧ ହେଉଥିଲା କି ? ମୁଁ ଦେଖିଲି ଯେ ମଣ୍ଡିତ ସୂର୍ଯ୍ୟର ତେଜରୁ ରକ୍ଷା କରିବା ପାଇଁ ସେ ଗୋଲକର ବାହାର ପଟ ଖୋଲରେ ଥିବା କେତେ ଗୋଟି ଝରକା ବନ୍ଦ କରି ଦେଇ-ଥିଲା । ମୁଁ ବୁଝିପାରିଲି ଯେ ଆମ ଚାରିଆଡେ଼ ଥିବା ଜିନିଷ ସବୁ ଅତ୍ୟନ୍ତ ଆଲୋକଦୀପ୍ତ ହୋଇଛି ।

ମୁଁ ଅଶାନ୍ତିଶ୍ୱାସୀ ହୋଇ କହିଲି, "ଭଗବାନ ! କିନ୍ତୁ ଏହା—!"

ଦେଖିବା ପାଇଁ ମୁଁ ମୁହଁ ବଢ଼ାଇଲି । ଦେଖିଲି ଯେ ବାହାରର ଆଲୋକ ଏତେ ତୀବ୍ର ଥିଲା ଯେ ସେଥିରେ ଆଖି ଝଲସି ଯିବ । ଆମେ ପ୍ରଥମେ ଦେଖିଥିବା ନିବିଡ଼ ଅନ୍ଧକାରର ତାହା ସମ୍ପୂର୍ଣ୍ଣ ବିପରୀତ ଥିଲା । ମୁଁ ପଚାରିଲି, "ମୁଁ କଣ ଅନେକ ବେଳଯାଏ ଅଚେତ ହୋଇ ଯାଇଥିଲି ?"

"ମୁଁ ଠିକ୍ ଜାଣେନା—ଦିଗ-କାଳ ନିରୂପକ ଯନ୍ତ୍ରଟି ଭାଙ୍ଗିଯାଇଛି । କିଛି ସମୟ…ଭଲ ! ମୋର ଯାହା ଭୟ ହୋଇଥିଲା…"

ମୁଁ କିଛି ସମୟ ପଡ଼ିରହି କଥାଟା ଭାବି ଦେଖିଲି । ଦେଖିଲି ଯେ ତା ମୁହଁରେ ଆବେଗର ଚିହ୍ନ ସେ ପର୍ଯ୍ୟନ୍ତ ଥିଲା । ମୁଁ ମୋର ଆଣ୍ଠୁ ତା ଭାଗ ଉପରେ ହାତ ବୁଲାଇ ପରୀକ୍ଷା କରି ଦେଖିଲି, ଏବଂ ସେହିପରି ଆଘାତ ତା ମୁହଁରେ ହୋଇଛି କି ନା ଦେଖିବା ପାଇଁ ତା ଆଡେ଼ ଚାହିଁଲି । ମୋର ଡାହାଣ ହାତର ଉପର ପଟରେ ସବୁଠାରୁ ବେଶୀ ଆଘାତ ହୋଇଥିଲା—ସେଥିରୁ ସମ୍ପୂର୍ଣ୍ଣ ଚମଡ଼ା ଛିଡ଼ି ଯାଇ ମାଂସ ବାହାରକୁ ଦିଶୁଥିଲା । ମୋର କପାଳ ଛେଚି ହୋଇ ସେଥିରୁ ରକ୍ତ ପଡ଼ୁଥିଲା । ଆମେ ସାଙ୍ଗରେ ଆଣିଥିବା

ଗୋଟିଏ ଔଷଧକୁ ପାନେ ସେ ମତେ ଦେଲା—ଔଷଧଟିର ନାମ ମୋର ମନେ ପଡ଼ୁନାହିଁ । କିଛି ସମୟ ପରେ ମୁଁ ଆଗ ଅପେକ୍ଷା କିଞ୍ଚିତ୍ ସୁସ୍ଥ ବୋଧ କଲି । ଅତି ସାବଧାନରେ ମୁଁ ହାତ ଗୋଡ଼ ସିଧା କଲି । ତାପରେ କଥାବାର୍ତ୍ତା କରିପାରିଲି ।

ମନିରେ ଯେପରି କଥା ବନ୍ଦ ହୋଇ ଯାଇ ନଥିଲା, ସେପରି ଭାବରେ ମୁଁ କହିଲି, "ନା, ତାହା ହେଲେ ଚଳି ନଥାନ୍ତା ।"

"ନା ! ଆଦୌ ଚଳି ନଥାନ୍ତା ।"

ତାର ହାତ ଦୁଇଟି ଆଣ୍ଠୁ ଉପରେ ଓହଳାଇ ସେ ଭାବିବାକୁ ଲାଗିଲା । କାଚ ଭିତର ଦେଇ ବାହାରକୁ ଅନାଇଲା, ତାପରେ ସ୍ଥିର ଦୃଷ୍ଟିରେ ମୋ ଆଡ଼େ ଗୃହିଁଲା । କହିଲା, "ଭଗବାନ ! ନା !"

କିଛିକ୍ଷଣ ପରେ ମୁଁ ପଚାରିଲି, "କଣ ଘଟିଛି ? ଆମେ କଣ ହଠାତ୍ ଗ୍ରୀଷ୍ମ ମଣ୍ଡଳକୁ ଡେଇଁ ପଡ଼ିଲୁ ?"

"ମୁଁ ଯାହା ଭାବିଥିଲି, ତାହା ଘଟିଛି । ଏହି ବାୟୁ ବାଷ୍ପ ହୋଇ ଉଡ଼ି ଯାଇଛି—ଅବଶ୍ୟ ଏହା ଯଦି ବାୟୁ ହୋଇଥାଏ । ଯାହା ହେଉ, ସେହା ଉଡ଼ିଯାଇଛି ଏବଂ ଚନ୍ଦ୍ରର ଉପରିଭାଗ ବର୍ତ୍ତମାନ ଦେଖାଯାଉଛି । ଆମେ ମୃତ୍ତିକା-ଶିଳାର ଗୋଟିଏ ହିଡ଼ ଉପରେ ବର୍ତ୍ତମାନ ପଡ଼ିରହିଛୁ । ଏଠି ସେଠି ନଗ୍ନ ମାଟି ବାହାରକୁ ଦେଖାଯାଉଛି । ଅଦ୍ଭୁତ ପ୍ରକାରର ମାଟି !"

ସେ ବୁଝିପାରିଲା ଯେ ଏ କଥା ବର୍ଣ୍ଣନା କରିବାର ଆବଶ୍ୟକତା ନାହିଁ । ସେ ମତେ ବସିବାକୁ ସାହାଯ୍ୟ କଲା ଏବଂ ମୁଁ ନିଜ ଆଖିରେ ସବୁ ଦେଖି ପାରିଲି ।



# ୮

## ଚନ୍ଦ୍ର ପ୍ରଭାତ

ଦୃଶ୍ୟର କର୍କଶତା, ଆଲୁଅ ଆଉ ଅନ୍ଧକାରର ତୀକ୍ଷ୍ଣତା ସମ୍ପୂର୍ଣ୍ଣରୂପେ ଅପସାରିତ ହୋଇଥିଲା । ସୂର୍ଯ୍ୟର ପ୍ରଖର ଉଜ୍ଜ୍ୱଳତା ଦେହରେ ହରିଦ୍ରାର କ୍ଷୀଣ ବର୍ଣ୍ଣ ମିଶିଯାଇଥିଲା; ଆଗ୍ନେୟଗିରିଗହ୍ୱରର କାନ୍ଥ ଉପରେ ପଡ଼ିଥିବା ଛାଇ ଦେଖାଯାଉଥିଲା ଗାଢ଼ ବାଇଗଣୀ ବର୍ଣ୍ଣ । ପୂର୍ବଦିଗରେ କୁହୁଡ଼ିର ଗୋଟିଏ କୃଷ୍ଣ ସ୍ତରଦା ସେ ପର୍ଯ୍ୟନ୍ତ ସୂର୍ଯ୍ୟକିରଣରୁ ଆତ୍ମରକ୍ଷା କରି ସ୍ଥିର ରହିଥିଲା, କିନ୍ତୁ ପଶ୍ଚିମ ଦିଗର ଆକାଶ ଥିଲା ନୀଳ ଓ ପରିଷ୍କାର । ମୁଁ କେତେ ସମୟ ପର୍ଯ୍ୟନ୍ତ ଅଚେତ ହୋଇ ପଡ଼ି ରହିଥିଲି ତାହା ବୁଝି ପାରିଲି ।

ଆମ୍ଭ ଚାରିପଟେ ଆଉ ଶୂନ୍ୟତା ନ ଥିଲା; ଗୋଟିଏ ବାୟୁ ମଣ୍ଡଳ ସୃଷ୍ଟି ହୋଇ ଯାଇଥିଲା । ଜିନିଷ ଗୁଡ଼ିକର ବହିଃରେଖା ବାରି ହେଉଥିଲା । ସ୍ପଷ୍ଟ ଓ ବିଭିନ୍ନ ଆକାଶ ବଶିଷ୍ଟ ହୋଇ ଉଠିଥିଲା; ଏଠି ସେଠି ଧବଳ ବର୍ଣ୍ଣର ତୁଷାରାବୃତ ପଦାର୍ଥ ଗୁଡ଼ିକ ଛଡ଼ା ସେଇ ଧବଳ ବର୍ଣ୍ଣର ପଦାର୍ଥ କିନ୍ତୁ ବାୟୁ ନୁହଁ । ତାହାଥିଲା ବରଫ—ଉତ୍ତରମେରୁ ସୁଲଭ ଦୃଶ୍ୟ ଘଟେଇ ଯାଇ ଥିଲା । ଚତୁର୍ଦ୍ଦିଗରେ ସୂର୍ଯ୍ୟର ପ୍ରଖର ଆଲୋକ ତଳେ ଅନାବୃତ ଏବଂ ସ୍ତୂପୀକୃତ କଳଙ୍କି ରଙ୍ଗର ମାଟି ବିସ୍ତୃତ ଭାବରେ ପଡ଼ି ରହିଥିଲା । ଏଠି ସେଠି ବରଫ ସ୍ତୂପ ଧାରରେ କ୍ଷୀଣସ୍ଥାୟୀ କ୍ଷୁଦ୍ର ଗଡ଼ିଆ ସବୁ ରଚିତ ହୋଇଥିଲା । ସେହି ସୁବିସ୍ତୀର୍ଣ୍ଣ ଅନୁର୍ବର ଭୂମି ଉପରେ କେବଳ ସେହି ଗଡ଼ିଆ ଗୁଡ଼ିକହିଁ ହଲଚଲ ହେଉଥିଲା । ଗୋଲକର ଉପର ଦୁଇଟି ଝିଡ଼କୀକୁ ସୂର୍ଯ୍ୟକିରଣ ପ୍ଲାବିତ କରି ତା ଭିତରେ ପ୍ରଖର ଗ୍ରୀଷ୍ମ କାଳ ସୃଷ୍ଟି କରିଥିଲା, କିନ୍ତୁ ଆମର ପାଦ ସେ ପର୍ଯ୍ୟନ୍ତ ତୁଷାରାବୃତ ହୋଇ ରହିଥିଲା ଏବଂ ଗୋଲକଟି ବାୟୁ ତାଡ଼ିତ ଗୋଟିଏ ବରଫ ସ୍ତୂପ ଉପରେ ରହି ଥିଲା ।

ଏବଂ ଗଡ଼ାଣିଆ ଭୂମିର ଏଠି ସେଠି ବାଙ୍କୁଡ଼ା ହୋଇ, ଅଡ଼ରଳ ବରଫର ଧଳା ରେଖା ଦ୍ୱାରା ସେମାନଙ୍କର ଅନ୍ଧାର ପଟେ ଥିବା ପାଖ ଗୁଡ଼ିକ ସ୍ପଷ୍ଟ ଭାବରେ ଚିହ୍ନିତ ହୋଇଥିବା କାଠି ପରି କେତେ ଗୁଡ଼ିଏ ବସ୍ତୁ ମୁଁ ଦେଖିପାରିଲି—ଯେଉଁ ଶିଳା ଉପରେ ସେମାନେ ପଡ଼ି ରହିଥିଲେ ତାହାର ପରି କଳଙ୍କି-ରଙ୍ଗର ଶୁଖିଲା ବଙ୍କା କାଠି । ଏହା ମୋର ଚନ୍ଦ୍ରାଧାରକୁ ଚମକିତ କଲା । କାଠି ! ପ୍ରାଣହୀନ ଜଗତ୍‌ରେ କାଠି ? ତାପରେ ଯେତେବେଳେ ମୋର ଆଖି ଏହି ଜିନିଷ ଗୁଡ଼ିକର ଚେହେରା ପ୍ରତି ଆହୁରି ଅଭ୍ୟସ୍ତ ହୋଇଗଲା, ମୁଁ ଦେଖିପାରିଲି ଯେ ସେହି ଗଡ଼ାଣିଆ ଭୂମିର ପ୍ରାୟ ସମସ୍ତ ଅଂଶ ସୂକ୍ଷ୍ମ ଲୋମ ଦ୍ୱାରା ଆଚ୍ଛାଦିତ ହେଲା ପରି ଦେଖାଯାଉଛି । ଝାଉଁ ଗଛ ତଳେ ମାଟିଆରଙ୍ଗ କୁଆଁରି ଗାଲରୁ ଯେପରି ଦେଖାଯାଏ, ସେହି ସ୍ଥାନ ମଧ୍ୟ ଠିକ୍ ସେପରି ଦେଖା ଯାଉଥିଲା ।

ମୁଁ କହିଲି, "କେଭର !"

"କଣ ?"

"ବର୍ତ୍ତମାନ୍ ଏହା ଗୋଟିଏ ମୃତ ଜଗତ୍ ହୋଇ ପାରେ—କିନ୍ତୁ ଆଗେ—"

ଗୋଟିଏ ଜିନିଷ ଉପରେ ମୋର ଆଖି ପଡ଼ିଗଲା । ଏହି କୁଆଁ ଗୁଡ଼ିକ ମଧ୍ୟରେ ମୁଁ ଅନେକ ଗୁଡ଼ିଏ ଗ୍ଲୋବ ବୋଲିକାର ବସ୍ତୁ ଲକ୍ଷ୍ୟ କଲି ଏବଂ ମୋର ମନେ ହେଲା ଯେ ସେଥିରୁ ଗୋଟିଏ ହଲିଲା ।

ମୁଁ ଆସ୍ତେ ଆସ୍ତେ କହିଲି, "କେଭର୍ !"

"କଣ ?"

କିନ୍ତୁ ମୁଁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲି ନାହିଁ । ବିସ୍ମିତ ଭାବରେ ମୁଁ ଚାହିଁ ରହିଲି । କ୍ଷଣକ ପାଇଁ ମୁଁ ମୋର ଆଖିକୁ ସୁଦ୍ଧା ବିଶ୍ୱାସ କରି ପାରିଲି ନାହିଁ । ଗୋଟିଏ ଅସ୍ଫୁଟ ଶବ୍ଦ କରି ତାର ହାତକୁ ଭିଡ଼ି ଧରିଲି । ଅଙ୍ଗୁଳି ସଙ୍କେତ କରି ତାକୁ ଦେଖାଇଲି । ତା ପରେ କଥା କହିବାକୁ ସକ୍ଷମ ହୋଇ ମୁଁ ପାଟି କରି କହିଲି, "ଦେଖ ! ସେଇଠି ! ହଁ ! ପୁଣି ସେଇଠି !"

ମୋର ଆଙ୍ଗୁଳୀର ନିର୍ଦ୍ଦିଷ୍ଟ ବସ୍ତୁଆଡ଼େ ସେ ଆଖି ଫେରାଇଲା । କହିଲା, "ଏଁ ?"

ମୁଁ ଯେଉଁ ଜିନିଷ ଦେଖିଲି, ତାହା କିପରି ବର୍ଣ୍ଣନା କରିବି ? ଏହା ଉଲ୍ଲେଖ କରିବା ପାଇଁ ଅତି ତୁଚ୍ଛ ବସ୍ତୁ । କିନ୍ତୁ ତଥାପି ଏହା ଏପରି ଆଶ୍ଚର୍ଯ୍ୟଜନକ ମନେ ହେଲା, ମତେ ଏପରି ଅଭିଭୂତ କରିଥିଲା ! ମୁଁ କହୁଛି ଯେ ସେହି କାଠି ସଦୃଶ ପଦାର୍ଥଗୁଡ଼ିକ ମଝିରେ ସ୍ଥାନେ ସ୍ଥାନେ ସେହି ଗୋଲକୃତ ବସ୍ତୁଗୁଡ଼ିକ, ସେହି ଡିମ୍ବାକାର ବସ୍ତୁଗୁଡ଼ିକ ପଡ଼ି ରହିଥିଲେ । ତାହା ପ୍ରଥମେ ମନେହେଉଥିଲା ଗୋଡ଼ି ପରି । କିନ୍ତୁ ବର୍ତ୍ତମାନ ପ୍ରଥମେ ଗୋଟିଏ ତା ପରେ ଆଉ ଗୋଟିଏ ହଲଚଲ ହେଲା, ଗଡ଼ିଗଡ଼ି ଗଲା, ଫାଟିଗଲା, ଏବଂ ପ୍ରତ୍ୟେକ ଫାଟ ଭିତରୁ ପୀତ ସବୁଜ ବର୍ଣ୍ଣର ଗୋଟିଏ ସୂକ୍ଷ୍ମ ରେଖା ଦେଖାଗଲା । ତାହା ନବୋଦିତ ସୂର୍ଯ୍ୟର ଉତ୍ତପ୍ତ ଆହ୍ୱାନ ଗ୍ରହଣ କରିବାକୁ ବାହାରକୁ ଠେଲି ହୋଇ ବାହାରୁ ଥିଲା । କ୍ଷଣକ ଲାଗି ଆଉ କିଛି ଘଟିଲା ନାହିଁ । କିନ୍ତୁ ତା ପରେ ତୃତୀୟଟି ହଲଚଲ ହୋଇ ବିଦାରିତ ହେଲା ।

କେଭର କହିଲା, "ଏହା ମଞ୍ଜି ।" ତା ପରେ ସେ ଅତି ମୃଦୁ କଣ୍ଠରେ ଅନୁଚ୍ଚ ଭାବରେ କହିଲା, "ଜୀବନ !!!"

"ଜୀବନ !" ତତ୍‌କ୍ଷଣାତ୍ ଆମର ଚେତନା ହେଲା ଯେ ଆମର ବିରାଟ ଯାତ୍ରା ବୃଥା ହୋଇ ନାହିଁ, ଆମେ ଶୁଷ୍କ ପ୍ରାଣହୀନ ଖଣିରେ ଆସି ପହଞ୍ଚି ନାହୁଁ, ଆସିଛୁଁ ଜୀବନ୍ତ ଗତିଶୀଳ ଜଗତକୁ ! ଆମେ ନିବିଷ୍ଟ ଭାବରେ ଲକ୍ଷ୍ୟ କରିବାକୁ ଲାଗିଲୁ । ମୁଁ ମୋର କୋଟ ହାତଦ୍ୱାରା ସାମନାର କାଚକୁ ଘଷିବାକୁ ଲାଗିଲି, କାରଣ ଟିକିଏ ବି ଅସ୍ପଷ୍ଟତା ସହ୍ୟ କରିବା ମୋ ପକ୍ଷରେ ଥିଲା ଅସମ୍ଭବ ।

ସେହି ଦୃଶ୍ୟ ପ୍ରାନ୍ତରର ମଧ୍ୟ ଭାଗରେହିଁ ସ୍ପଷ୍ଟ ଓ ପରିଷ୍କାର ଥିଲା । ତାର ଚାରିପଟର ଶୁଖିଲା ବୁଦା ଓ ମଞ୍ଜିଗୁଡ଼ିକ କାଚର ବକ୍ରତା ଯୋଗୁଁ ବୃହତ୍‌କାୟ ଓ ବିରୂପ ଦିଶୁଥିଲେ, ତଥାପି ଆମେ ଯଥେଷ୍ଟ ଦେଖି ପାରୁଥିଲୁଁ । ସେହି ସୂର୍ଯ୍ୟାଲୋକିତ ଅବନତ ଭୂମି ଉପରେ ଏହି ଅଦ୍ଭୁତ କ୍ଷୁଦ୍ର ମାଟିଆ

ରଙ୍ଗର ବସ୍ତୁଗୁଡ଼ିକ ଗୋଟିକ ପରେ ଗୋଟିଏ ବିଦୀର୍ଣ୍ଣ ହେବାକୁ ଲାଗିଲେ, ଏବଂ ବୀଜକୋଷ ପରି, ଫଳର ତ୍ୱେଗ୍ରା ପରି ଦ୍ୱିଖଣ୍ଡିତ ହେବାକୁ ଲାଗିଲେ । ବ୍ୟଗ୍ର ମୁଖ ଖୋଲି ସେମାନେ ନବୋଦିତ ସୂର୍ଯ୍ୟ ଦେହରୁ ସ୍ୱର୍ଣ୍ଣ ପରି ଅଜାଡ଼ି ହୋଇ ପଡୁଥିବା ଉତ୍ତାପ ଓ ଆଲୋକ ପାନ କରିବାକୁ ଲାଗିଲେ ।

ପ୍ରତି ମୁହୂର୍ତ୍ତରେ ଅଧିକରୁ ଅଧିକ ମଞ୍ଜି ବିଦୀର୍ଣ୍ଣ ହେବାକୁ ଲାଗିଲେ ଏବଂ ସେଥି ସଙ୍ଗେ ସଙ୍ଗେ ପୂର୍ବରୁ ଫାଟି ଯାଇଥିବା ମଞ୍ଜିଗୁଡ଼ିକ ସେମାନଙ୍କର ଖୋଳପା ଭିତରୁ ବାହାରକୁ ମୁହଁ ବଢ଼ାଇବାକୁ ଲାଗିଲେ ଏବଂ ଉଦ୍ଭିଦ ଜୀବନର ଦ୍ୱିତୀୟ ସ୍ତରକୁ ପ୍ରବେଶ କଲେ । ଦୃଢ଼ ନିର୍ଭରତା ସହିତ ତ୍ୱରିତ ବିବେଚନା ସହିତ ମାଟି ଭିତରକୁ ଗୋଟିଏ ମୂଳତ୍ରାଣ ବାହାରକରି, ଉପରକୁ ଆଡ଼କୁ ଗୋଟିଏ ବିଚିତ୍ର କ୍ଷୁଦ୍ର ପୋଟଳା ପରି ଅଙ୍କୁର ପ୍ରସାରିତ କଲେ । ଅଳ୍ପ ସମୟ ଭିତରେ ସମସ୍ତ ଗଡ଼ାଣିଆ ଭୂମି ସୂର୍ଯ୍ୟାଲୋକରେ ସଜାଗ ଭାବରେ ଛିଡ଼ା ହୋଇଥିବା କ୍ଷୁଦ୍ର ଉଦ୍ଭିଦ ଗୁଡ଼ିକ ଦ୍ୱାରା ଅଙ୍କିତ ହୋଇଗଲା ।

ସେମାନେ ବେଶି ବେଳଯାଏ ସେପରି ଛିଡ଼ା ହୋଇ ରହିଲେ ନାହିଁ । ପୋଟଳା ଆକାରର ଅଙ୍କୁର ଗୁଡ଼ିକ ଫୁଲିବାକୁ ଲାଗିଲେ, ଗଣି ହେବାକୁ ଲାଗିଲେ ଏବଂ ହଠାତ୍ ମେଲା ହୋଇଗଲେ । ସେଥି ଭିତରୁ କ୍ଷୁଦ୍ର ମୁନିଆ ଅଗ୍ରଭାଗ ଗୁଡ଼ିକ ମୁକ୍ତ ପରି ବାହାରକୁ ବାହାରି ପଡ଼ିଲେ ଏବଂ ସୂକ୍ଷ୍ମ ତୀକ୍ଷ୍ଣ ମାଟିଆ ରଙ୍ଗର ପତ୍ରଗୁଚ୍ଛ ଗୁଡ଼ିକ ଫିଟିପଡ଼ି ଆମ ଆଖି ଆଗରେ ଦେଖୁ ଦେଖୁ ବେଗ ଖଣ୍ଡରେ ଲମ୍ବିଯିବାକୁ ଲାଗିଲେ । ସେହି ଗତି କୌଣସି ଜନ୍ତୁର ଗତି ଅପେକ୍ଷା ମନ୍ଥର ଥିଲା ଜନ୍ତୁ ମୁଁ ଦେଖିଥିବ, ନଯ କୌଣସି ଉଦ୍ଭିଦର ଗତି ଅପେକ୍ଷା ବେଗତର ଥିଲା । ମୁଁ ତୁମକୁ କପରି ବୁଝାଇବି—ତାହା କ ଭାବରେ ବଢୁଥିଲା ? ଆମେ ଦେଖୁ ଦେଖୁ ପତ୍ରର ଅଗଗୁଡ଼ିକ ଲମ୍ବି ଯାଉଥିଲେ । ମାଟିଆ ରଙ୍ଗର ବୀଜକୋଷଗୁଡ଼ିକ ଆକୁଞ୍ଚିତ ହୋଇ ତତ୍କ୍ଷଣାତ୍ ଲୋପ ପାଇ ଯାଉଥିଲେ । ତୁମେ କୌଣସି ଅଣ୍ଡାଦନରେ ତୁମର ଉଷ୍ମ ହାତରେ ଗୋଟିଏ ଥର୍ମୋମିଟରର ଧରି ପାରଦ ସରୁ ରେଖାଟି ଯୁହୁଁ ଯୁହୁଁ ଲମ୍ବିଯିବାର ଲକ୍ଷ୍ୟ କରିଛ କି ? ଏହି ଚନ୍ଦ୍ରର ଉଦ୍ଭିଦଗୁଡ଼ିକ ସେହିପରି ଭାବରେ ବଢୁଥିଲେ ।

ମନେହେଲା, ଅଳ୍ପ କେତେକ ମିନଟ ଭିତରେ ସବୁଠାରୁ ବେଶି ଅଗ୍ରଗାମୀ ଉଦ୍ଭିଦ ଗୁଡ଼ିକର ମୁକୁଳଗୁଡ଼ିକ ଗୋଟିଏ ଗୋଟିଏ କ୍ରମରେ ପରିଣତ ହେଲେ ଏବଂ ଦ୍ୱିଖଣ୍ଡ ପତ୍ରଗୁଚ୍ଛ ପ୍ରସାରିତ କରିବାକୁ ଲାଗିଲେ । ସମସ୍ତ ଗଡ଼ାଣିଆ ଭୂମି, ଯାହାକି କିଛି ସମୟ ପୂର୍ବରୁ ପ୍ରାଣହୀନ ମରୁପ୍ରାନ୍ତର ଥିଲା, ତାହା ବର୍ତ୍ତମାନ କଣ୍ଟକ ସଦୃଶ ଲୋମଯୁକ୍ତ ପୀତ-ସବୁଜ କ୍ଷୁଦ୍ର ଉଦ୍ଭିଦ ମାନଙ୍କ ଦ୍ୱାରା ଭର୍ତ୍ତି ହୋଇଗଲା । ସେମାନଙ୍କର ବୃଦ୍ଧିର ଉତ୍ତେଜନାରେ ସେମାନେ ଦୋହଲିବାକୁ ଲାଗିଲେ ।

ମୁଁ ପଛକୁ ଫେରି ଚାହିଁଲି । ବାଃ, ପୂର୍ବଦିଗରୁ ଗୋଟିଏ ପାହାଡ଼ର ଉପର କଡ଼ ସେହି ରକମର ଉଦ୍ଭିଦ ଶ୍ରେଣୀଦ୍ୱାରା ମଣ୍ଡିତ ହୋଇଥିଲା, ଯଦିଓ ସେମାନେ ଏତେ ଶୀଘ୍ର ଶୀଘ୍ର ବଢ଼ୁ ନ ଥିଲେ । ଜ୍ୱଳନ୍ତ ସୂର୍ଯ୍ୟକିରଣ ସମ୍ମୁଖରେ ସେମାନଙ୍କର କାଳିମାଚ୍ଛନ୍ନ ଶରୀର ନଇଁ ନଇଁ ଦୋହଲୁଥିଲା । ସେମାନଙ୍କଠାରୁ କିଛି ଦୂରରେ ଆଉ କେତେକ ଉଦ୍ଭିଦର ସ୍ତୁପାକୃତି ଦେଖା ଯାଉଥିଲା । ସେମାନେ ସପ୍ତଫେଣୀ ଗଛପରି ଅସମ ଶାଖା ବିସ୍ତାର କରି ବଢ଼ୁଥିଲେ ଏବଂ ଗୁହୁଁ ଗୁହୁଁ ଫୁଲି ଉଠୁଥିଲେ; ଠିକ୍ ଯେମିତି ପବନ ଭର୍ତ୍ତି କଲେ ବେଲୁନ ଫୁଲିଉଠେ ।

ତା ପରେ ମୁଁ ଦେଖିଲି ପଶ୍ଚିମ ଦିଗରେ ମଧ୍ୟ ସେହିପରି ଫୁଲିଉଠୁଥିବା ଗୋଟିଏ ଉଦ୍ଭିଦ ବୁଦା ପଛ ପଟୁ ଆତ୍ମପ୍ରକାଶ କରୁଛି । କିନ୍ତୁ ଏ ସ୍ଥଳରେ ଆଲୋକ ତାର ମସୃଣ ପାଖରେ ପଡ଼ୁ ଥିବାରୁ ମୁଁ ଦେଖି ପାରିଲି ଯେ ତାର ବର୍ଣ୍ଣ ଥିଲା ଉଜ୍ଜ୍ୱଳ ନାରଙ୍ଗୀ ରଙ୍ଗ । ତାକୁ ଲକ୍ଷ୍ୟ କରୁ କରୁ ତାହା ବଢି ଯାଉଥିଲା । ମୁଁ ଯଦି ମିନଟକ ଲାଗି ତାଆଡ଼ୁ ଆଖି ଫେରାଇ ତା ପରେ ପୁଣି ତାହା ଲକ୍ଷ୍ୟ କରୁଥିଲି ତେବେ ସେହି ମିନଟକ ଭିତରେ ତାର ବହିଃରେଖା ସମ୍ପୂର୍ଣ୍ଣ ବଦଳି ଯାଉଥିଲା; ତାହା ଲଗାଲଗି ହୋଇଥିବା ମୋଟା ଶାଖା ପ୍ରଶାଖା ବିସ୍ତାର କରୁଥିଲା ଏବଂ ଅଳ୍ପସମୟ ଭିତରେ ସେଥିରୁ ଅନେକ ଫୁଟ ଉଚ୍ଚର ପ୍ରବାଳ ଆକୃତିର ଶାଖାଗୁଡ଼ିକ ଜାତ ହେଲେ । ଏପରି ବୃଦ୍ଧି ସହିତ ତୁଳନା କରି ଦେଖିଲେ ପୃଥିବୀର ପଫ୍-ବଲ୍ ନାମକ ଛତୁକୁ ନିହାତି ଧୀରପନ୍ଥୀ ବୋଲି କୁହାଯିବ ଯଦିଓ ତାହା ବେଳେବେଳେ ଗୋଟିଏ ରାତିରେ

ଏକଫୁଟ ବ୍ୟାସରେ ଫୁଲ୍‌ ଫୁଟେ । କିନ୍ତୁ ଫଙ୍‌-ବଲ୍ ଯେଉଁ ମାଧ୍ୟାକର୍ଷଣ ଶକ୍ତି ଦ୍ୱାରା ବାଧା ପାଉଥିବା ଅବସ୍ଥାରେ ବଢେ, ତାହା ଚନ୍ଦ୍ରର ମାଧ୍ୟାକର୍ଷଣ ଶକ୍ତି ଅପେକ୍ଷା ଛଅଗୁଣ ବେଶୀ ଦୂରରେ। ଯେଉଁ ନାଲି ଓ ପକ୍ଷୀଆଗୁଡ଼ିକ ଆମ ଆଖି ଆଗରୁ ପୂର୍ବେ ଲୁଚି ରହିଥିଲେ, କିନ୍ତୁ ବେଗବାନ ସୂର୍ଯ୍ୟଠାରୁ ଲୁଚି ପାରି ନ ଥିଲେ, ସେଠାରେ ଏବଂ ଘେରା ପାହାଡ଼ ଓ ଉଜ୍ଜ୍ୱଳ ପଥର ହୁଡ଼ ଉପରେ କଣ୍ଟକିତ ସ୍ଥୂଳ ଉଦ୍ଭିଦଗୁଡ଼ିକ ଗଜା ଦାଢ଼ି ପରି ଆତ୍ମପ୍ରକାଶ କରିବାକୁ ଚେଷ୍ଟା କରୁଥିଲେ। ଯେଉଁ କ୍ଷୀଣସ୍ଥାୟୀ ଦିବସ ଭିତରେହିଁ ସେମାନଙ୍କୁ ଫୁଲ ଫୁଟେଇ ଫଳଧରି, ମଞ୍ଜି ଜାତ, କରି ପୁଣି ମରିଯିବାକୁ ପଡ଼ିବ, ସେହି ଦିବସକୁ ପୂର୍ଣ୍ଣଭାବରେ ଭୋଗ କରିବା ପାଇଁ ସେମାନେ ତରବରିଆ ହୋଇ ବଢ଼ୁଥିଲେ। ସେହି ବୃଦ୍ଧି ଥିଲା ଅତି ଅଲୌକିକ। ଅନୁମାନ କରାଯାଇ ପାରେ, ସୃଷ୍ଟିର ପ୍ରାରମ୍ଭରେ ବୃକ୍ଷ ଓ ଉଦ୍ଭିଦମାନେ ଏହିପରି ଭାବରେହିଁ ଜାତ ହୋଇ ନବ ନିର୍ମିତ ମରୁ ପୃଥିବୀକୁ ଆଚ୍ଛାଦିତ କରିଥିଲେ।

କଳ୍ପନା କର ! ସେହି ପ୍ରଭାତ କଳ୍ପନା କର ! ଘନୀଭୂତ ବାୟୁର ପୁନର୍ଜୀବନ, ମାଟିର ସଞ୍ଚାର ଓ ଚଞ୍ଚଳତା ଏବଂ ତା ପରେ ଉଦ୍ଭିଦର ଏହି ନୀରବ ଉତ୍ଥାନ; ଶୀଂଷା ଓ ପତ୍ରର ଏହି ଅପାର୍ଥିବ ଆରୋହଣ। ଏଥି ସଙ୍ଗେ କଳ୍ପନା କର, ସେ ସବୁ ଏପରି ଗୋଟିଏ ଦୀପ୍ତି ଦ୍ୱାରା ଉଦ୍ଭାସିତ ହୋଇଥିଲେ ଯାହାର ତୁଳନାରେ ପୃଥିବୀର ପ୍ରଖରତମ ସୂର୍ଯ୍ୟକିରଣ କ୍ଷୀଣ ଓ ଜୀର୍ଣ୍ଣ ମନେ ହେବ ଏବଂ ତଥାପି ଏହି ସଞ୍ଜାତ ଅରଣ୍ୟର ଗୃହପଟେ ଯେଉଁଠି ଛାଇ ରହିଥିଲା ସେଠି ନୀଳବର୍ଣ୍ଣ ବରଫର ହିଡ଼ଗୁଡ଼ିକ ତିଷ୍ଠି ରହିଥିଲେ, ଏବଂ ଆମେ ଯାହା ଦେଖିଲୁ ତାକୁ ସମ୍ପୂର୍ଣ୍ଣ ରୂପେ କଳ୍ପନା କରିବା ପାଇଁ ତୁମକୁ ମନେ ରଖିବାକୁ ହେବ ଯେ ଆମେ ଏ ସମସ୍ତ ଗୋଟିଏ ମୋଟା ବଙ୍କ କାଚ ଭିତର ଦେଇ ଦେଖୁଥିଲୁ ।' ତାହାଦ୍ୱାରା ସମସ୍ତ ଜିନିଷ ବିରୂପ ଦେଖା ଯାଉଥିଲା। ଯେପରି ଲେନ୍‌ସ ଦ୍ୱାରା ଜିନିଷ ସବୁ ବିରୂପ ଦେଖାଯାଏ। କେବଳ ଛବିଟିର ମଧ୍ୟ ଭାଗଟିହିଁ ସ୍ପଷ୍ଟ ଓ ଉଜ୍ଜ୍ୱଳ ଦିଶୁଥିଲା, କିନ୍ତୁ କଡ଼ ଗୁଡ଼ିକ ବୃହଦାକାର ଓ ଅପ୍ରାକୃତ ଦିଶୁଥିଲା।

---

# ୯

## "ରନ୍ଧ୍ର ଅନ୍ୱେଷଣ" ଆରମ୍ଭ ହେଲା

ଆମେ ସେଆଡ଼ୁ ଆଖି ଫେରାଇ ପରସ୍ପର ମୁହଁକୁ ଚାହିଁ ରହିଲୁ । ଆମ ଉଭୟଙ୍କ ମନରେ ଥିଲା ଏକ ଭାବନା, ଆଖିରେ ଏକ ପ୍ରଶ୍ନ । ଏହି ସମସ୍ତ ଛିଦ୍ରକୁ ବନ୍ଦ କରିବା ପାଇଁ ସାହାଯ୍ୟ କରିବାକୁ ନିଶ୍ଚୟ ବାୟୁ ଥିବ, ତାହା ଯେତେ ପତଳା ହୋଇ ଥାଉନା କାହିଁକି, ସେ ବାୟୁଦ୍ୱାରା ଆମେ ମଧ୍ୟ ନିଶ୍ୱାସ ପ୍ରଶ୍ୱାସ ନେଇ ପାରିବୁଁ ।

ମୁଁ କହିଲି, "ଗର୍ତ୍ତର ଢାଙ୍କୁଣି ଖୋଲିବା ?"

କେଭର କହିଲା, "ହଁ ! ଯଦି ଏହା ବାୟୁ ହୋଇଥାଏ ."

ମୁଁ କହିଲି, "ଅଳ୍ପ ସମୟ ମଧ୍ୟରେ ଏହି ଛିଦ୍ର ଗୁଡ଼ିକ ଆମ ଏଠିକି ଖୋଲା ହୋଇଯିବେ । ଯଦି—ଯଦି ମନେକର—ଏହା କଣ ନିଶ୍ଚିତ ? ଏହି ଜିନିସ ଯେ ବାୟୁ ତାହା ତୁମେ କପରି ଜାଣିଲ ? ଏହା ଯବକ୍ଷାରଜାନ ହୋଇ ପାରେ—ଏପରି କି ଅଙ୍ଗାରକାମ୍ଳ ହୋଇପାରେ !"

ସେ କହିଲା, "ଏହା ଅତି ସହଜ" ଏବଂ ତାର କଥା ପ୍ରମାଣ କରିବାକୁ ବାହାରିଲା । ସେ ଗଣ୍ଠିଆ ଭିତରୁ ଗୋଟିଏ ବଡ଼ 'ଲେଖାକୋଥି' କାଗଜ ବାହାର କଲା ଏବଂ ସେଥିରେ ନିଆଁ ଲଗେଇ ଚଞ୍ଚଳ ଗର୍ତ୍ତିବାଟେ ବାହାରକୁ ଫୋପାଡ଼ି ଦେଲା । ମୁଁ ଆଗକୁ ଝୁଙ୍କି ମୋଟା କାଚ ବାଟେ ତାହା ଦେଖିବାକୁ ଲାଗିଲି । ସେହି କ୍ଷୁଦ୍ର ଅଗ୍ନିଶିଖାର ସାକ୍ଷ୍ୟ ଉପରେହିଁ ସବୁ ନିର୍ଭର କରୁଥିଲା ।

ମୁଁ ଦେଖିଲି କାଗଜ ଖଣ୍ଡିକ ଧୀରେ ବରଫ ଉପରେ ପଡ଼ିଲା । ତାହାର ଗୋଲାପୀ ରଙ୍ଗର ଶିଖା ଲିଭେଇ ଗଲା । କ୍ଷଣକ ଲାଗି ମନେ ହେଲା ତାହା ଲିଭି ଗଲାଣି ଏବଂ ତା ପରେ ମୁଁ ଦେଖିଲି ତାର ଧାରରେ ଗୋଟିଏ କ୍ଷୁଦ୍ର ନୀଳ ଜିହ୍ୱା କମ୍ପିତ ହେଲା, ଅଗ୍ରସର ହେଲା ଏବଂ ବଢ଼ିବାକୁ ଲାଗିଲା ।

ସେହି କାଗଜ ଖଣ୍ଡକର ଯେଉଁ ଅଂଶ ବରଫକୁ ସମ୍ପୂର୍ଣ୍ଣ ସ୍ପର୍ଶ କରିଥିଲା ସେହି ଅଂଶ ଛଡ଼ା ବାକି ସମସ୍ତ କାଗଜ ଧୀରେ ଧୀରେ ଆକୁଞ୍ଚିତ ହୋଇ ପୋଡ଼ି ଯିବାକୁ ଲାଗିଲା ଏବଂ ଗୋଟିଏ କମ୍ପିତ ଧୂମ୍ରରେଖା ଉପରକୁ ଉଠିଲା । ମୋ ର ଆଉ ସନ୍ଦେହ ରହିଲା ନାହିଁ, ଚନ୍ଦ୍ରର ବାୟୁମଣ୍ଡଳ ନିଶ୍ଚୟ ସମ୍ପୂର୍ଣ୍ଣ ଅମ୍ଳଜାନ କିମ୍ବା ବାୟୁ ଏବଂ ଯଦି ଏହା ଅତି କ୍ଷୀଣ ନ ହୋଇଥାଏ ତାହା ହେଲେ ନିଶ୍ଚୟ ଅପରର ଜୀବନ ରକ୍ଷା କରିପାରିବ । ଆମେ ବାହାରକୁ ବାହାରି ପାରିବୁ—ଓ ବଞ୍ଚି ପାରିବୁ !

ମୁଁ ଗର୍ଭିର ଢ଼ୁଙ୍କିପାଖେ ଗୋଡ଼ ଦେଇ ବସି ତାହାର ପେଞ୍ଚ ଖୋଲିବାକୁ ବାହାରିଲି, କିନ୍ତୁ କେଭର ମତେ ବାଧା ଦେଲା । ସେ କହିଲା, "ପ୍ରଥମେ ଗୋଟିଏ ସତର୍କତା ଅବଲମ୍ବନ କରିବାକୁ ପଡ଼ିବ ।" ସେ ବୁଝେଇ ଦେଲା ଯେ, ଯଦିଓ ଏହା ନିଶ୍ଚୟ ଅମ୍ଳଜାନଯୁକ୍ତ ବାୟୁମଣ୍ଡଳ, ତଥାପି ଏହା ଏତେ ପାତଳା ହୋଇପାରେ ଯେ ସେଥିଦ୍ୱାରା ଆମର ଶ୍ୱାସ କ୍ଷତି ଘଟି-ପାରେ । ପର୍ବତାରୋହୀଙ୍କର ଅସୁସ୍ଥତା କଥା ଏବଂ ଯେଉଁ ଉଡ଼ାଜାହାଜର ଚାଳକମାନେ ଅତି ଚଞ୍ଚଳ ଉପରକୁ ଉଠନ୍ତି ସେମାନଙ୍କର ସମୟ ସମୟରେ କିପରି ରକ୍ତସ୍ରାବ ହୁଏ ସେ କଥା କେଭର ମୋର ମନେ ପକେଇ ଦେଲା । କିଛି ସମୟ ପର୍ଯ୍ୟନ୍ତ ସେ ଗୋଟିଏ ବିସ୍ୱାଦ ପାନୀୟ ତିଆରି କରିବାରେ ଲାଗି ରହିଲା ଏବଂ ତାହା ନିଜେ ପାନ କରି ମତେ ମଧ୍ୟ ପାନ କରିବାକୁ ବାଧ୍ୟ କଲା । ତାହା ପାନ କରି ମୋର ଟିକେ ଶୈଥିଲ୍ୟ ବୋଧ ହେଲା, କିନ୍ତୁ ତାହା ଛଡ଼ା ଅନ୍ୟ କୌଣସି ପ୍ରତିକ୍ରିୟା ହେଲା ନାହିଁ । ତା ପରେ ସେ ମତେ ପେଞ୍ଚ ଖୋଲିବାକୁ ଅନୁମତି ଦେଲା ।

କିଛିକ୍ଷଣ ପରେ ଗର୍ଭିର କାଚ ଢାଙ୍କୁଣି କିଅଳ୍ପ ପରିମାଣରେ ଫିଟି ଯିବାରୁ ଗୋଲକ ମଧ୍ୟସ୍ଥ ଘନ ବାୟୁ ପେଞ୍ଚର ଛିଦ୍ର ଦେଇ କେଟଲିର ପାଣି ଫୁଟିବା ପୂର୍ବରୁ ଯେପରି ଶବ୍ଦ ହୁଏ ସେହିପରି ଶବ୍ଦ କରି ବାହାରକୁ ବାହାରି ଗଲା । ତା ପରେ ସେ ମତେ ଆଉ ଫିଟେଇବାକୁ ମନା କଲା । ଏହା ଶୀଘ୍ର ଜଣାପଡ଼ିଲା ଯେ ବାହାରର ଚାପ ଭିତରର ଚାପ ଅପେକ୍ଷା ଅନେକ କମ୍ ଅଛି । କିନ୍ତୁ ତାହା କେତେ କମ ତାହା ଅନୁମାନ କରିବା ସମ୍ଭବ ନ ଥିଲା ।

ମୁଁ ଦୁଇ ହାତରେ ଟାଙ୍କୁଣିଟିକୁ ଧରି ରହିଲି ଏବଂ ଯଦି ଆମର ସମସ୍ତ ଆଶା ସତ୍ତ୍ୱେ ଜଣାପଡ଼େ ଯେ ଚନ୍ଦ୍ର ବାୟୁମଣ୍ଡଳ ଆମ ପକ୍ଷରେ ଅତି ସ୍ୱଳ୍ପ, ତାହାହେଲେ ତାହା ବନ୍ଦ କରିଦେବାକୁ ପ୍ରସ୍ତୁତ ହୋଇ ରହିଲି । ଆମର ଭିତରର ଗ୍ୟାସ ପୁନରୁଦ୍ଧାର କରିବା ପାଇଁ କେଭର ଗୋଟିଏ ଘନୀଭୂତ ଅମ୍ଳଜାନ ବାଷ୍ପର ନଳୀ ଧରି ବସି ରହିଲା । ଆମେ ପରସ୍ପର ପ୍ରତି ନୀରବରେ ଚାହିଁ ରହିଲୁଁ, ତା ପରେ ବାହାରେ ଯେଉଁ ଅଦ୍ଭୁତ ଉଦ୍ଭିଦ ଦୋହଲୁଥିଲା ଏବଂ ଆମ ଆଖି ସାମନାରେ ବଢ଼ି ଯାଉଥିଲା ସେଆଡ଼େ ଅନାଇଲୁ ଏବଂ ସେହି ତୀକ୍ଷ୍ଣ ଶବ୍ଦ ଅବିରତ ଭାବରେ ଲାଗି ରହିଲା ।

ମୋର କାନ ଭିତରେ ଧମନୀଗୁଡ଼ିକ ଧପ୍‌ଧପ୍ କରିବାକୁ ଲାଗିଲା ଏବଂ କେଭରର ଗଡ଼ଜନିତ ଶବ୍ଦ କମି ଯିବାକୁ ଲାଗିଲା । ବାୟୁର କ୍ଷୀଣତା ଯୋଗୁଁ ଚତୁର୍ଦ୍ଦିଗ କିପରି ନିସ୍ତବ୍ଧ ହୋଇଯାଉଛି ତାହା ମୁଁ ଲକ୍ଷ୍ୟ କଲି ।

ଫେଣ୍ଟର ଛିଦ୍ରବାଟେ ଆମର ବାୟୁ ବାହାରକୁ ବାହାରିଯିବା ସମୟରେ ତାର ଜଳୀୟାଂଶ ମୁଣ୍ଡାମୁଣ୍ଡା ହୋଇ ଘନୀଭୂତ ହୋଇ ଯିବାକୁ ଲାଗିଲା ।

ଅଳ୍ପ ସମୟ ମଧ୍ୟରେ ମୁଁ ଗୋଟିଏ ଅଦ୍ଭୁତ ରକମର ନିଃଶ୍ୱାସ-ପ୍ରଶ୍ୱାସର ସ୍ୱଳ୍ପତା ଅନୁଭବ କଲି—ଆମେ ଯେତେ ସମୟ ପର୍ଯ୍ୟନ୍ତ ଚନ୍ଦ୍ରର ବାହ୍ୟ ବାୟୁମଣ୍ଡଳରେ ରହିଥିଲୁ ଏହି ଅନୁଭବ ବରାବର ରହିଥିଲା—ଏବଂ କାନ ନାକ ଓ ତଣ୍ଟିରେ ପଛପଟେ ଗୋଟିଏ ଅସ୍ୱାଚ୍ଛନ୍ଦ୍ୟ ବୋଧ ମୁଁ ଲକ୍ଷ୍ୟ କଲି, କିନ୍ତୁ ତାହା ଅଳ୍ପ ସମୟ ପରେ ଚାଲିଗଲା ।

କିନ୍ତୁ ତା ପରେ ଆସିଲା ମୁଣ୍ଡବୁଲା ଓ ବମନ-ଭାବ ଏବଂ ଏହାଦ୍ୱାରା ମୋର ସାହସ ହଠାତ୍ କମିଗଲା । ମୁଁ ଗର୍ତ୍ତର ଟାଙ୍କୁଣି ଅଧେ ବୁଲେଇ ଦେଇ, କେଭରକୁ ଏକାଥରକେ ଚଞ୍ଚଳ ବୁଝେଇ ଦେଲି; କିନ୍ତୁ ବର୍ତ୍ତମାନ ଆମ ଦୁହିଁଙ୍କ ମଧ୍ୟରେ ସେ ଥିଲା ବେଶୀ ଆଶାବ୍ୟାଦୀ । ସେ ମତେ ଯାହା ଉତ୍ତର ଦେଲା ତାହା ବାୟୁର କ୍ଷୀଣତା ଯୋଗୁଁ ଅତି ଅସ୍ପଷ୍ଟ ଶୁଭିଲା ଏବଂ ମନେ ହେଉଥିଲା ତାହା ଯେପରି ଅନେକ ଦୂରରୁ ଆସୁଛି । ସେ ମତେ ଟିକେ ବ୍ରାଣ୍ଡି ପାନ କରିବାକୁ ଉପଦେଶ ଦେଲା ଏବଂ ନିଜେ ମଧ୍ୟ ପାନ କଲା ।

କିଛିକ୍ଷଣ ପରେ ମୁଁ ଆଗ ଅପେକ୍ଷା ଆରାମ ବୋଧ କଲି । ଗର୍ତ୍ତର ଢାଙ୍କୁଣୀଟିକୁ ମୁଁ ପୁଣି ଖୋଲିଲି । ମୋର କାନରେ ଧପ୍ ଧପ୍ ଶବ୍ଦ ବଢ଼ିବାକୁ ଲାଗିଲା । ଏବଂ ତା ପରେ ମୁଁ ଲକ୍ଷ୍ୟ କଲି ବାହାରକୁ ଚାଲି ଯାଉଥିବା ବାୟୁର ତୀକ୍ଷ୍ଣ ଚିତ୍କାର ବନ୍ଦ ହୋଇ ଯାଉଛି । କିଛି ସମୟ ଯାଏ ମୁଁ ନିଶ୍ଚିତ ହୋଇ ପାରିଲି ନାହିଁ ଯେ ତାହା ପ୍ରକୃତରେ ବନ୍ଦ ହୋଇ ଯାଇଛି ।

କେଭରର ଧୀର ଅସ୍ପଷ୍ଟ କଣ୍ଠ ଶୁଭିଲା; "ତା ପରେ ?"

ମୁଁ କହିଲି, "ତା ପରେ ?"

"ଆମେ ଯିବା କି ?"

ମୁଁ ଭାବି ଦେଖିଲି । କହିଲି, "ଏତିକି ତ ?"

"ଯଦି ତମେ ଏହା ସମ୍ଭାଳି ପାରିବ ।"

ଉତ୍ତର ସ୍ୱରୂପ ମୁଁ ପେଞ୍ଚ ଖୋଲିବାକୁ ଲାଗିଲି । ମୁଁ ଗୋଲାକାର ଢାଙ୍କୁଣିଟି ଫିଟାଇ ତାକୁ ଯତ୍ନରେ ଗଣ୍ଠିଏ ଉପରେ ରଖିଲି । ସେହି ପାତଳା ଅପରିଚିତ ବାୟୁ ଆମର ଗୋଲକକୁ ଦଖଲ କରିବା ମାତ୍ରକେ ଖଣ୍ଡେ ଦୁଇଖଣ୍ଡ ବରଫ ଘୂରି ଘୂରି ଉଡ଼ି ଚାଲିଗଲା । ମୁଁ ଆଣ୍ଠୁମାଡ଼ି ଗର୍ତ୍ତ କଡ଼ରେ ବସିଲି ଏବଂ ବାହାରକୁ ଅନେଇଲି । ତଳେ ମୋ ଠାରୁ ପ୍ରାୟ ଏକ ଗଜ ଦୂରରେ, ଚନ୍ଦ୍ରର ପଦଚିହ୍ନ ବିହୀନ ବରଫ ବିସ୍ତୃତ ହୋଇ ରହିଥିଲା ।

କିଛି ସମୟ ଚୁପ୍ ଚାପ୍ କଟିଲା । ଆମର ଦୃଷ୍ଟି ମିଳିତ ହେଲା ।

କେଭର କହିଲା, "ଏହା ତୁମର ଶ୍ୱାସ ଯନ୍ତ୍ରକୁ ବେଶୀ ପୀଡ଼ା ଦେଉ ନାହିଁ ତ ?"

ମୁଁ କହିଲି, "ନା । ମୁଁ ଏହା ସମ୍ଭାଳି ପାରିବି ।"

ସେ ତାର କମ୍ବଳ ଆଡ଼େ ହାତ ବଢ଼ାଇଲା, ତାର ମଝିରେ ଥିବା ଛିଦ୍ରରେ ମୁଣ୍ଡ ଗଳାଇଲା ଏବଂ ତାହାଦ୍ୱାରା ନିଜକୁ ଆବୃତ କଲା । ସେ ଗର୍ତ୍ତର କଡ଼ରେ ବସିଲା । ତା ପରେ ଚନ୍ଦ୍ର, ଭୂମିର ପ୍ରାୟ ଛ ଇଞ୍ଚ ଉପରକୁ ଗୋଡ଼ ବଢ଼ାଇ ଦେଲା । ମୁହୂର୍ତ୍ତିକ ଲାଗି ଇତସ୍ତତଃ ହୋଇ ସେ ଆଗକୁ ନୁଇଁକି ପଡ଼ିଲା ଏବଂ ତାପରେ ଡେଇଁପଡ଼ି ଚନ୍ଦ୍ରର ପଦଚିହ୍ନ ବିହୀନ ଭୂମି ଉପରେ ଛିଡ଼ାହେଲା ।

ସେ ଯେତେବେଳେ ଆଗକୁ ଯିବାପାଇଁ ଗୋଡ଼ ବଢ଼ାଇଲା କାଚର ଧାରରୁ ତାର ମୂର୍ତ୍ତି ଅଦ୍ଭୁତ ଭାବରେ ବିକୃତ ଦିଶୁଥିଲା । କ୍ଷଣକାଳଗି ଛିଡ଼ା ହୋଇ ସେ ଇଆଡେ ସିଆଡ଼େ ଗୃହିଁଲା । ତା ପରେ ନିଜକୁ ପ୍ରସ୍ତୁତ କରି ସେ ଲମ୍ଫ ଦେଲା ।

କାଚଦ୍ୱାରା ସବୁ ବିରୂପ ଦେଖା ଯାଉଥିଲା, କିନ୍ତୁ ତଥାପି ମୋର ମନେ ହେଲା, ସେହି ଲମ୍ଫ ଅତି ବିରାଟ ଲମ୍ଫ । ଗୋଟିଏ ଡିଆଁରେ ସେ ବହୁଦୂରକୁ ଗୃଲିଗଲା—ପ୍ରାୟ କୋଡ଼ିଏ କି ତିରିଶ ଫୁଟ ଦୂରକୁ । ସେ ଗୋଟିଏ ଉଚ୍ଚ ପଥର ଉପରେ ଛିଡ଼ା ହୋଇ ମୋ ଆଡ଼କୁ ସଙ୍କେତ କରିବାକୁ ଲାଗିଲା । ବୋଧହୁଏ ସେ ବଡ଼ ପାଟିରେ କଣ କହୁଥିଲା—କିନ୍ତୁ ସେହି ଶବ୍ଦ ମୋ ନିକଟରେ ପହଞ୍ଚିଲା ନାହିଁ । କିନ୍ତୁ ସେ କିପରି ଏହା କଲା ? ମୋର ମନେ ହେଲା ମୁଁ ଗୋଟିଏ ନୂତନ ଖେଳବାଜି ଦେଖୁଛି ।

ବିସ୍ମୟାଚ୍ଛନ୍ନ ଚିତ୍ତରେ ମୁଁ ମଧ୍ୟ ଗର୍ତ୍ତବାଟେ ବାହାରକୁ ବାହାରିଲି । ତା ପରେ ଛିଡ଼ା ହୋଇ ଦେଖିଲି ଠିକ୍ ମୋ ସାମନାରେ ବାଯୁତାଡ଼ିତ ବରଫ ତରଳି ଯାଇ ଗୋଟିଏ ଗ୍ଲେଟ ଗାଡ଼ିଆ ସୃଷ୍ଟି କରିଛି । ପାଦେ ଆଗକୁ ଝୁଙ୍କି ମୁଁ ଲମ୍ଫ ଦେଲି ।

ମୁଁ ବାୟୁ ଭିତରେ ଉଡ଼ିଗଲି, ଦେଖିଲି ଯେ ସେ ଯେଉଁ ପଥର ଉପରେ ଛିଡ଼ା ହୋଇଥିଲା ତାହା ମତେ ଭେଟିବାକୁ ନିକଟତର ହେଉଛି, ତା ପରେ ତାକୁ ଜାକିଧରି ମୁଁ ବିସ୍ମୟାଚ୍ଛନ୍ନ ଚିତ୍ତରେ ଛିଡ଼ା ହୋଇଗଲି ।

ମୁଁ ଅଣନିଃଶ୍ୱାସୀ ହୋଇ ପୀଡ଼ାଦାୟକ ହସ ହସିଲି । ମୋ ମୁଣ୍ଡ ଭିତରେ ସବୁ ଗୋଳମାଳିଆ ହୋଇ ଯାଇଥିଲା । କେଭର ନିଗ୍ଧିପନ୍ତ ଚେଁ ଚେଁ ସ୍ୱରରେ ମତେ ସାବଧାନ ହେବାକୁ କହିଲା ।

ମୁଁ ଭୁଲି ଯାଇଥିଲି ଯେ ଚନ୍ଦ୍ରରେ, ତାହାର ଗୁରୁତ୍ୱ ପୃଥିବୀର ଆଠ ଭାଗର ଭାଗେ ହୋଇଥିବାରୁ ଏବଂ ତାର ବ୍ୟାସ ପୃଥିବୀର ଚରିଭାଗର ଭାଗେ ହୋଇଥିବାରୁ, ମୋର ଓଜନ ପୃଥିବୀରେ ଯାହା ଥିଲା ତାର ଛ ଭାଗର

ଆଗେ ହୋଇଗଲା । କିନ୍ତୁ ବର୍ତ୍ତମାନ ଏ ବିଷୟଟି ମନେ ରଖିବାକୁ ମୁଁ ବାଧ୍ୟ ହେଲି ।

ସେ କହିଲେ, "ଆମର ଯନ୍ତ୍ର ନେବାକୁ ବର୍ତ୍ତମାନ ଆଉ ପୃଥିବୀମାତା ନାହିଁ ।"

ଅତି ସାବଧାନତା ସହିତ ମୁଁ ପଥର ଉପରକୁ ଉଠିଲି ଏବଂ ବାଡ ଶ୍ରେଣୀ ପରି ଧୀରେ ଧୀରେ ଚାଲି ଜ୍ୱଳନ୍ତ ସୂର୍ଯ୍ୟତଳେ ତା ପାଖରେ ଛିଡ଼ା ହେଲି । ତିରିଶ ଫୁଟ ଦୂରରେ ଆମର ପଶ୍ଚାତ୍ ଭାଗରେ ଗୋଲକଟି କ୍ରମେ କ୍ରମେ ମିଳେଇ ଯାଉଥିବା ବରଫ ଉପରେ ପଡ଼ି ରହିଲା ।

ଯେତେଦୂର ପର୍ଯ୍ୟନ୍ତ ଦୃଷ୍ଟି ଯାଉଥିଲା ଆଗ୍ନେୟଗିରିଗହ୍ୱରର ତଳାଂଶର ବିପର୍ଯ୍ୟସ୍ତ ଶିଳାଗୁଡ଼ିକ ଉପରେ ଲୋମ ପରି ସେହି ଉଦ୍ଭିଦ ଗୁଡ଼ିକ ବଢ଼ୁଥିବାର ଦେଖାଗଲା । ଏଠି ସେଠି ସପ୍ତଫେଣୀ ସଦୃଶ ରୂପ ଦ୍ୱାରା ଏବଂ ରକ୍ତବର୍ଣ୍ଣ ଓ ବାଇଗଣୀ ବର୍ଣ୍ଣର ଶିଳାବାକ ଉଦ୍ଭିଦ ଦ୍ୱାରା ବିଭିନ୍ନତା ପ୍ରକାଶ ପାଉଥିଲା । ସେ ସବୁ ଏତେ ଶୀଘ୍ର ଶୀଘ୍ର ବଢ଼ୁଥିଲେ ଯେ ମନେ ହେଉଥିଲା ସେମାନେ ଯେପରି ପଥର ଉପରେ ଗୁରୁଣ୍ଡି ଯାଉଛନ୍ତି । ମୋର ସେତେବେଳେ ମନେହେଲା ଯେ ସମସ୍ତ ଗିରିଗହ୍ୱରଟି ଚାରି ପାଖେ ଥିବା ପାହାଡ଼ର ପାଦଦେଶ ପର୍ଯ୍ୟନ୍ତ ଏକ ରକମର ରୂପ ଲାଭ କରିଛି ।

ପ୍ରକୃତରେ ସେହି ପାହାଡ଼ର କେବଳ ପାଦଦେଶ ଛଡ଼ା ଅନ୍ୟ ସ୍ଥାନ ଉଦ୍ଭିଦଶୂନ୍ୟ ଥିଲା । ତାହାର ଦେହରେ କେଉଁଠାରେ ସ୍ତମ୍ଭ ପରି ହୋଇଥିଲା, କେଉଁଠାରେ ଗୁମ୍ବଜ ପରି ହୋଇଥିଲା, କେଉଁଠାରେ ବା ମଞ୍ଚ ପରି ହୋଇଥିଲା । ସେଗୁଡ଼ିକ ଉପରେ ପ୍ରଥମେ ଆମର ଦୃଷ୍ଟି ପଡ଼ି ନ ଥିଲା । ସେହି ପାହାଡ଼ ସବୁଦିଗରେ ଆମଠାରୁ ଅନେକ ଦୂରରେ ରହିଥିଲା । ଆମେ ଆଗ୍ନେୟଗିରି ଗହ୍ୱରର ପ୍ରାୟ କେନ୍ଦ୍ରସ୍ଥଳରେ ପହଞ୍ଚିଲୁ । ଆମେ ସେସବୁ ଦେଖୁଥିଲୁ ପବନରେ ଭାସି ଯାଉଥିବା ଗୋଟିଏ କୁହୁଡ଼ି ଭିତର ଦେଇ । ସେହି ପାତଳା ବାୟୁ ମଣ୍ଡଳରେ ବର୍ତ୍ତମାନ ପବନର ସ୍ରୋତ ବି ବହୁଥିଲା । ଏହି ପବନ ଦୁର୍ବଳ ଥିଲେ ମଧ୍ୟ ବେଗବାନ ଥିଲା

ଏବଂ ଅତି ଅଣ୍ଡା ଥିଲା, କିନ୍ତୁ ପ୍ରାଯ୍ତୁ କୌଣସି ଗ୍ଧୁପ ପ୍ରଦାନ କରି ପାରୁ ନ ଥିଲା । ମନେ ହେଉଥିଲା ଏହା ସୂର୍ଯ୍ୟ ହୁଗଷ୍ଟ ପ୍ରାଚୀର ତଳର କୁହେଳିକା-ଚ୍ଛନ୍ନ ଅନ୍ଧକାର ଆଡ୍ରୁ ତପ୍ତ ହଜ୍ଜ୍ୱଳ ପ୍ରାଚୀର ଆଡ଼କୁ ଆଗ୍ନେୟ ଗିରିଗହ୍ୱରରି ଚତୁର୍ଦ୍ଦିଗରେ ପ୍ରବାହିତ ହେଉଛୁ । ସେହି ପୂର୍ବଦଗଷ୍ଟ କୁହୁଡ଼ି ଭିତରକୁ ଗୃହିଁବା ଦୁଷ୍କର ଥିଲା; ଆଖିକୁ ହାତରେ ଆଡୁଆଳ କରି ଅର୍ଦ୍ଧ ମୁଦ୍ରିତ ଆଖିରେ ଆମେ ସେ ଆଡ଼କୁ ଗ୍ଧହୁଁ ଥିଲୁ, କାରଣ ନିଷ୍ଟଳ ସୂର୍ଯ୍ୟର ହଭ୍ତାପ ଅତ୍ୟନ୍ତ ପ୍ରଖର ଥିଲା ।

କେଭର କହିଲା, "ଏହି ସ୍ଥାନ ସମ୍ପୂର୍ଣ୍ଣ ନିର୍ଜନ କାନ୍ତାର ପରି ମନେ ହେଉଛୁ ।"

ମୁଁ ପୁଣି ମୋର ଗ୍ଧରିଆଡ଼େ ଅନେଇଲି । ସେ ପର୍ଯ୍ୟନ୍ତ ମୋର ମନରେ ଆଶା ରହିଥିଲା ଯେ ମୁଁ ଏପରି କୌଣସି ଜିନିଷ ଦେଖିବି ଯାହାକି ମନୁଷ୍ୟ ତୁଲ୍ୟ କୌଣସି ଜୀବର ଅସ୍ତିତ୍ୱର ସୂଚନା ଦେବ, ଯଥା କୌଣସି ଅଟ୍ଟାଳିକାର ଚୂଡ଼ା, କୌଣସି ବାସଗୃହ କିମ୍ବା କଳକାରଖାନା ଇତ୍ୟାଦି । କିନ୍ତୁ ଚତୁର୍ଦ୍ଦିଗରେ ମୁଁ ଦେଖିଲି ବିଧ୍ୱସ୍ତ ପାହାଡ଼ର ଶୃଙ୍ଗ ଓ ଚୂଡ଼ା ପ୍ରସାରିତ ହୋଇଛୁ, କଣ୍ଟାବୁଦା ବଢ଼ି ବଢ଼ି ଯାଉଛୁ ଏବଂ ଫୋଟକା ପରି ସପ୍ତଫେଣୀ ଗଛ ଫୁଲିଫୁଲି ଉଠୁଛୁ । ଏ ସମସ୍ତ ମୋର ଆଶାକୁ ସମ୍ପୂର୍ଣ୍ଣ ନିର୍ମୂଳ କଲା ।

ମୁଁ କହିଲି, "ମନେ ହେଉଛୁ, ଏହି ଉଦ୍ଭିଦମାନେ ଏଠି ଏକଚ୍ଛତ୍ରିଆ ଅଧିକାର ପାଇଛନ୍ତି । ଅନ୍ୟ କୌଣସି ପ୍ରାଣୀର ଚିହ୍ନ ମୁଁ ଏଠି ଦେଖୁ-ନାହିଁ ତ !"

"କୀଟପତଙ୍ଗ ନାହାନ୍ତି—ପକ୍ଷୀ ନାହାନ୍ତି—ନା ! କୌଣସି ଜନ୍ତୁର ଅସ୍ତିତ୍ୱର ସାକ୍ଷ୍ୟ ଦେବା ପାଇଁ କୌଣସି ଚିହ୍ନ ନାହିଁ । ଯଦି ଥାଆନ୍ତା—ତେବେ ସେମାନେ ଗ୍ଧତରେ କିପରି ରକ୍ଷା ପାଆନ୍ତେ ?···ନା; ଏଠି କେବଳ ଏହି ଉଦ୍ଭିଦମାନଙ୍କ ଛଡ଼ା ଆଉ କେହି ନାହିଁ ।"

ମୁଁ ଆଖି ଉପରେ ହାତ ଗ୍ଧଇ କରି ଗୃହିଁଲି । କହିଲି, "ଏହା କୌଣସି ସ୍ୱପ୍ନର ଦୃଶ୍ୟ ପରି । ଏହି ଉଦ୍ଭିଦଗୁଡ଼ିକର ପୃଥିବୀର ମାଟି ଉପରର

ଉଦ୍ଭିଦ ସହିତ କୌଣସି ସାଦୃଶ୍ୟ ନାହିଁ । ସମୁଦ୍ରର ଗଭୀରତା ତଳେ ଥିବା ପାହାଡ଼ ଭିତରେ ଯେଉଁ ଉଦ୍ଭିଦ ସବୁ ଅଛନ୍ତି ବୋଲି ଆମେ କଳ୍ପନା କରୁଁ ଏହି ଉଦ୍ଭିଦଗୁଡ଼ିକ ପ୍ରାୟ ସେଇ ରକମର । ସେଇ ଉଦ୍ଭିଦଟିକୁ ଦେଖି ମନେ ହେଉଛି ତାହା ଯେମିତି ଗୋଟିଏ ଚିଟିପିଟି ଉଦ୍ଭିଦରେ ପରିଣତ ହୋଇ ଯାଇଛି । ଆଉ, ଏଇ ପ୍ରଖର ଦୀପ୍ତି !"

କେଭର କହିଲା, "ଅଥଚ ଏହା କେବଳ ଭୋରର ସକାଳ ।"

ସେ ଦୀର୍ଘ ନିଶ୍ୱାସ ତ୍ୟାଗ କରି ଗୃହଆଡ଼େ ଅଡେଇଲା । କହିଲା, "ଏହା ମନୀଷୀମାନଙ୍କର ଉପଯୋଗୀ ଦୁନିଆ ନୁହେଁ । ତଥାପି—ଏହା ଏକରକମ ହୃଦୟ ମୁଗ୍ଧକାରୀ ।"

ସେ କିଛି ସମୟ ପର୍ଯ୍ୟନ୍ତ ଚୁପ୍ ହୋଇଗଲା, ତା ପରେ ତାର ଚନ୍ଦ୍ରା-ଜନିତ ଗୁଣ୍ଗୁଣ୍ ଶବ୍ଦ ଆରମ୍ଭ କରିଦେଲା ।

ଗୋଟିଏ କୋମଳ ସ୍ପର୍ଶରେ ମୁଁ ଚମକି ପଡ଼ିଲି । ଦେଖିଲି କଳାଶିଙ୍ଗା ପରି ଗୋଟିଏ ସରୁ ଶିଳାବାକ ଉଦ୍ଭିଦ ମୋର ଯୋତା ଉପରକୁ ମାଡ଼ି ଆସୁଛି । ମୁଁ ତାକୁ ଗୋଡ଼ରେ ଆଡ଼େଇ ଦେବାରୁ ତାହା ଗୁଣ୍ଡ ହୋଇ ଝଡ଼ି ପଡ଼ିଲା ଏବଂ ପ୍ରତ୍ୟେକ କଣିକା ପୁଣି ବଢ଼ିବାକୁ ଆରମ୍ଭ କଲା ।

କେଭରର ତୀକ୍ଷ୍ଣ ଚିତ୍କାର ଶୁଣି ମୁଁ ବୁଲି ଦେଖିଲି ଉଦ୍ଭିଦର ଉଦ୍ୟତ-ସଙ୍ଗୀନ ପରି ମୁନ ତା ଦେହରେ ଫୋଡ଼ି ହୋଇଯାଇଛି ।

ସେ କିଛି ସମୟ ଇତସ୍ତତଃ କରିବାକୁ ଲାଗିଲା, ତାର ଆଖି ଆମ ଗୃହପଛର ପାହାଡ଼ରେ କଣ ଖୋଜିବାକୁ ଲାଗିଲା । ଗୋଟିଏ ଗୋଲାପୀ ଝାପ୍ସା ସହସା ଖଣ୍ଡିଏ ଆବଡ଼ା ଖାବଡ଼ା ପ୍ରସ୍ତର ସ୍ତମ୍ଭ ଉପରେ ଖେଳି ଯାଇଥିଲା । ଏହି ଆଭା ଅତି ଅସାମାନ୍ୟ ଥିଲା, ତାହା ଅତି ଉଜ୍ଜ୍ୱଳ ନୀଳ ଲୋହିତ ।

ମୁଁ ପଛକୁ ଫେରି କହିଲି, "ଦେଖ !" କିନ୍ତୁ କେଭର ଉଭେଇ ଯାଇଥିଲା ।

ମୁହୂର୍ତ୍ତିକ ପାଇଁ ମୁଁ ଜଡ଼ ପରି ଛିଡ଼ା ହୋଇରହିଲି । ତାପରେ ପଥରର କିନାରରେ ତାକୁ ଖୋଜିବା ପାଇଁ ଝୁଙ୍କି ପଡ଼ିଲି । କିନ୍ତୁ ସେ ହଠାତ୍

ହେଉଛି ଯାଉଥିବାରୁ ମୁଁ ଏତେ ଆଶ୍ଚର୍ଯ୍ୟ ହୋଇ ପଡ଼ିଥିଲି ଯେ, ଆମେ ଚନ୍ଦ୍ର ଉପରେ ରହିଛୁ ବୋଲି ମୁଁ ଭୁଲି ଯାଇଥିଲି । ଝୁଙ୍କି ପଡ଼ିବାଦ୍ୱାରା ମୋର ପାଦ ଯେତେଦୂର ପ୍ରସାରିତ ହେଲା ତାହାଦ୍ୱାରା, ପୃଥିବୀ ଉପରେ ମୁଁ ଏକଗଜ ଆଗକୁ ଘୁଞ୍ଚିଯାଇଥାନ୍ତି; କିନ୍ତୁ ଚନ୍ଦ୍ର ଉପରେ ତାହାଦ୍ୱାରା ମୁଁ ଛ ଗଜ ଘୁଞ୍ଚି ଗଲି-ଅର୍ଥାତ୍ ପଥରର କନାର ପାରହୋଇ ଆହୁରି ପାଞ୍ଚଗଜ ଆଗକୁ । ମୁହୂର୍ତ୍ତକ ଲାଗି ମୋର ଯେଉଁ ଅନୁଭୂତ ହେଲା ତାହା ଠିକ୍ ଦୁଃସ୍ୱପ୍ନରେ କ୍ରମାଗତ ତଳକୁ ତଳକୁ ଖସି ପଡ଼ିଲା ପରିଲାଗିଲା । କାରଣ ପୃଥିବୀ ଉପରେ ଜଣେ ପଡ଼ିଲା ବେଳେ ପ୍ରଥମ ସେକେଣ୍ଡରେ ଷୋହଳ ଫୁଟ ପଡ଼େ, କିନ୍ତୁ ଚନ୍ଦ୍ର ଉପରେ ସେହି ସମୟ ଭିତରେ ପଡ଼େ ଦୁଇଫୁଟ ଏବଂ ନିଜର ପାର୍ଥିବ ଓଜନର ଛଭାଗର ଭାଗେ ନେଇ ପଡ଼େ; ମୁଁ ପ୍ରାୟ ଦଶଗଜ ପଡ଼ିଲି-ବରଂ ତେଇଁପଡ଼ିଲି ବୋଲି କହିପାରେ । କିନ୍ତୁ ସେତିକି ପଡ଼ିବା ପାଇଁ ଅନେକ ସମୟ ଲାଗିଲା ବୋଲି ମନେ ହେଲା, ପ୍ରାୟ ପାଞ୍ଚ କି ଛ ସେକେଣ୍ଡ ବୋଧହୁଏ ଲାଗିଥିଲା । ମୁଁ ବାୟୁଭିତରେ ଭାସି ଭାସି ଗୋଟିଏ ପରି ଖସି ପଡ଼ିଲା ପରି ପଡ଼ିଲି । ନୀଳ-ଧୂସର, ଶ୍ୱେତାଙ୍କିତ ପଥରର ନାଳରେ ପଡ଼ି ମୋର ଆଣ୍ଠୁ ଯାଏ ବରଫରେ ପୋତି ହୋଇଗଲି ।

ମୁଁ ଚାରିପଟେ ଚାହିଁଲି, ପାଟିକରି ଡାକିଲି, "କେଭର !" କିନ୍ତୁ କେଭରର ଚିହ୍ନବର୍ତ୍ତି ସୁଦ୍ଧା ମିଳୁ ନ ଥିଲା ।

ଆହୁରି ଜୋରରେ ଚିତ୍କାର କରି ମୁଁ ଡାକିଲି "କେଭର" । ମୋର ଚିତ୍କାର ପାହାଡ଼ରେ ପ୍ରତିଧ୍ୱନିତ ହୋଇ ଫେରି ଆସିଲା ।

ମୁଁ କ୍ରୋଧରେ ପାହାଡ଼ ଶୃଙ୍ଗକ ଆଡ଼େ ଚାହିଁଲି ଏବଂ ତାପରେ ଉପରକୁ ଚଢ଼ିଲି । ପୁଣି ଡାକିଲି, "କେଭର !" ମୋର ସ୍ୱର ମନେ ହେଉଥିଲା କୌଣସି ହଜିଯାଇଥିବା ମେଣ୍ଢା ଛୁଆର ସ୍ୱରପରି ।

ଗୋଲକଟି ମଧ୍ୟ ଦେଖାଯାଉ ନ ଥିଲା ଏବଂ ମୁହୂର୍ତ୍ତକ ଲାଗି ସେହି ନିଃସଙ୍ଗ ନିରାଶ୍ରୟ ଅବସ୍ଥାରେ ମୋର ହୃଦୟ ଶୁଖିଗଲା ।

ତା'ପରେ କେଭରର ଉପରେ ମୋର ଆଖି ପଡ଼ିଲା । ସେ ହସି ହସି ମୋର ଦୃଷ୍ଟି ଆକର୍ଷଣ କରିବା ପାଇଁ ହାତ ଠାରୁ ଥିଲା । କୋଡ଼ିଏ କି ତିରିଶ ଗଜ ଦୂରରେ ଗୋଟିଏ ଟାଙ୍ଗରା ପଥର ଉପରେ ସେ ଛିଡ଼ା ହୋଇଥିଲା । ମୁଁ ତାର ସ୍ୱର ଶୁଣିପାରୁ ନ ଥିଲି, କିନ୍ତୁ ତାର ଅଙ୍ଗଭଙ୍ଗୀ କହୁଥିଲା, "ଡିଆଁ ମାର" । ମୁଁ ଦ୍ୱିଧା ବୋଧକଲି । ତା ଠାରୁ ମୋର ଦୂରତ୍ୱ ଖୁବ୍ ବେଶୀ ବୋଲି ମନେହେଲା । ତଥାପି, ମୁଁ ଭାବିଲି ଯେ ମୁଁ ନିଶ୍ଚୟ କେଭର ଅପେକ୍ଷା ବେଶୀଦୂର ଡେଇଁ ପାରିବାକୁ ସକ୍ଷମ ହେବି ।

ମୁଁ ପଛକୁ ପାଦେ ଘୁଞ୍ଚିଗଲି, ନିଜକୁ ପ୍ରସ୍ତୁତ କଲି, ଏବଂ ମୋର ସମସ୍ତ ଶକ୍ତି ପ୍ରୟୋଗ କରି ଲମ୍ଫଦେଲି । ମନେହେଲା ମୁଁ ଆକାଶ ଭିତରକୁ ଫିଙ୍ଗିହୋଇ ଯାଉଛି, ତଳେ ଆଉ ପଡ଼ିବି ନାହିଁ ........

ଏହିପରି ଭାବରେ ଉଡ଼ିଯିବାଟା ଯେପରି ଭୟଙ୍କର ଥିଲା ସେପରି ଆନନ୍ଦଦାୟକ ମଧ୍ୟ ଥିଲା । ଏହା ଥିଲା ଦୁଃସ୍ୱପ୍ନ ପରି ଲକ୍ଷଣ । ମୁଁ ବୁଝି ପାରିଲି ଯେ ମୋର ଲମ୍ଫ ଅତି ବେଶୀ ପ୍ରବଳ ହୋଇଯାଇଛି । ମୁଁ କେଭରର ମୁଣ୍ଡ ଉପର ଦେଇ ଉଡ଼ିଗଲି ଏବଂ ଦେଖିଲି ଯେ ଗୋଟିଏ ନାଳରେ ଥିବା ଶିଂଷାଯୁକ୍ତ କୌଣସି ଉଦ୍ଭିଦ ମେଞ୍ଚା ଉପରେ ମୁଁ ପଡ଼ିବାକୁ ଯାଉଛି । ଭୀତ ଭାବରେ ମୁଁ ପାଟିକରି ଉଠିଲି । ମୁଁ ଆଗକୁ ହାତ ବଢ଼େଇଲି ଓ ଗୋଡ଼ ଦୁଇଟି ସିଧା କରିବାକୁ ଚେଷ୍ଟା କଲି ।

ତାପରେ ଗୋଟିଏ ବିରାଟ ଛତୁମେଞ୍ଚା ଉପରେ ମୁଁ କଚ୍ଛଡ଼ି ହୋଇ ପଡ଼ିଲି । ତାହା ମୋର ଶରୀରପଟେ ବିଚ୍ଛୁରିତ ହୋଇଗଲା ଏବଂ ତାର ନାରଙ୍ଗୀ କଣିକା ଗୁଡ଼ିକ ସବୁଦିଗରେ ଖେଳେଇ ହୋଇଗଲା । ସେହି ନାରଙ୍ଗୀ ରେଣୁରେ ମୁଁ ବୋଳି ହୋଇଗଲି । ଅଷ୍ଟାଟ ଚିତ୍କାରକରି ମୁଁ ଗଡ଼ିଗଲି, ଏବଂ ଶେଷରେ ହସରେ ବେଦମ ହୋଇ ଗୋଟିଏ ସ୍ଥାନରେ ଅଟକି ଗଲି ।

କେଭରର କ୍ଷୁଦ୍ର ଗୋଲାକାର ମୁହଁ ଗୋଟିଏ କଣ୍ଟାକିତ ବୁଦା ପଛପଟୁ ଭୁଙ୍କିମାରୁ ଥିବାର ମୁଁ ଦେଖିଲି । ସେ କଣ ପଚାରିଲା, କିନ୍ତୁ ମୁଁ ତାହା ଶୁଣି

ପାରିଲି ନାହିଁ । "ଏଁ ?" ବୋଲି କହିବାକୁ ମୁଁ ଚେଷ୍ଟାକଲି କିନ୍ତୁ ଦମ ଅଭାବରୁ କହିପାରିଲି ନାହିଁ । ସେ ମୋ ଆଡ଼କୁ ବୁଦା ଭିତର ଦେଇ ସାବଧାନତା ସହିତ ଆସିବାକୁ ଲାଗିଲା ।

ସେ କହିଲା, "ଆମକୁ ସାବଧାନ ହେବାକୁ ପଡ଼ିବ । ଏହି ଚନ୍ଦ୍ରରେ ଆଦୌ ଶୃଙ୍ଖଳା ନାହିଁ । ଏହା ଆମକୁ କଣ୍ଢେଇ ଛତୁ କରି ଦେଇପାରେ ।" ସେ ମୋତେ ଛିଡ଼ା ହେବାକୁ ସାହାଯ୍ୟ କଲା । କହିଲା, "ତୁମେ ଅତି ବେଶୀ ପରିଶ୍ରମ କରିବାକୁ ଗଲ ।" ଏହା କହି ମୋର ପୋଷାକରେ ଲାଗିଥିବା ଧୂଳିଧୂଆଁ ଗୁଣ୍ଡ ଗୁଣ୍ଡିକ ଝାଡ଼ିବାକୁ ଲାଗିଲା ।

ମୁଁ ଚୁପ ଚାପ ଛିଡ଼ା ହୋଇ ଦମ୍ ନେବାକୁ ଲାଗିଲି । କେଭର ମୋର ଆଣ୍ଠୁ ଓ କହୁଣୀରେ ଲାଗିଥିବା ରସ ଛଡ଼େଇବାକୁ ଲାଗିଲା ଏବଂ ମୋର ଦୁର୍ଭାଗ୍ୟ ବିଷୟରେ ମତେ ଲମ୍ବା ବକ୍ତୃତା ଶୁଣାଇବାକୁ ଲାଗିଲା, ମୁଁ କୌଣସି ବାଧା ଦେଲି ନାହିଁ । ସେ କହିଲା, "ଆମେ ଚନ୍ଦ୍ରର ମାଧ୍ୟାକର୍ଷଣ ପ୍ରତି ଯଥେଷ୍ଟ ନଜର ଦେଉ ନାହୁଁ । ଆମର ମାଂସପେଶୀ ସବୁ ଏପର୍ଯ୍ୟନ୍ତ ଠିକ୍ ଭାବରେ ଅଭ୍ୟସ୍ତ ହୋଇ ନାହାନ୍ତି । ତୁମେ ଦମ ପାଇ ସାରିବା ପରେ ଆମକୁ ଏହା ଅଭ୍ୟାସ କରିବାକୁ ପଡ଼ିବ ।"

ମୁଁ ମୋର ହାତରୁ ଦୁଇ ତିନୋଟି କଣ୍ଟା ଓପାଡ଼ି ବାହାର କଲି ଏବଂ କିଛିକ୍ଷଣ ପର୍ଯ୍ୟନ୍ତ ଖଣ୍ଡେ ପଥର ଉପରେ ବସି ରହିଲି । ମୋର ମାଂସପେଶୀ ସବୁ ଥରୁଥିଲା ଏବଂ ମୋ ମନରେ ସେ ସମୟରେ ଯେଉଁ ଭାବ ଜାତ ହୋଇଥିଲା, ପୃଥିବୀ ଉପରେ ସାଇକେଲ୍ ଚଳାଇ ଶିଖୁଥିବା ଲୋକର ପ୍ରଥମ କଚଡ଼ା ଖାଇସାରିଲା ପରେ ସେହିପରି ଭାବ ଜାତ ହୁଏ ।

କେଭରର ହଠାତ୍ ମନେପଡ଼ିଲା ଯେ, ସୂର୍ଯ୍ୟର ତେଜରୁ ଆସି ନାଳର ଥଣ୍ଡା ବାୟୁରେ ବସିଥିବା ଯୋଗୁଁ ମୋର ଜ୍ୱର ହୋଇପାରେ । ତେଣୁ ଆମେ ପାହାଡ଼ ଚଢ଼ି ପୁଣି ସୂର୍ଯ୍ୟକିରଣକୁ ଗଲୁ । ଆମେ ଦେଖିଲୁ ଯେ ମୋର ପତନଦ୍ୱାରା କେତୋଟା ଆଞ୍ଚୁଡ଼ା ଦାଗ ଛଡ଼ା ବିଶେଷ ଆଘାତ

ମୁଁ ପାଇ ନାହିଁ । ତେଣୁ କେଭିନ୍‌ରର ପ୍ରସ୍ତାବ ଅନୁସାରେ ମୋର ଦ୍ୱିତୀୟ ଲମ୍ଫ ପାଇଁ ଗୋଟିଏ ନିର୍ଭୟପଦ ଓ ସୁବିଧା ସ୍ଥାନ ଆମେ ଖୋଜିବାକୁ ଲାଗିଲୁ । ଦଶଗଜ ଦୂରରେ ଖଣ୍ଡେ ପଥର ଆମେ ବାଛିଲୁ । ସେହି ପଥର ଓ ଆମ ମଝିରେ ପୀତ-ସବୁଜ ଶିଂଷାଯୁକ୍ତ ଗୋଟିଏ ବୃନ୍ଦାର ବ୍ୟବଧାନ ରହିଥିଲା ।

ମୋର ପାଦଠାରୁ ଶ୍ୱରଫୁଟ ଦୂରରେ ଥିବା ଗୋଟିଏ ସ୍ଥାନକୁ ଅଙ୍ଗୁଳୀ ନିର୍ଦ୍ଦେଶ କରି କେଭିନ୍ କହିଲା, "ପଥରଟି ସେଇଠି ଅଛି ବୋଲି କଳ୍ପନା-କର !" କେଭିନର ଠାଣିରୁ ଜଣା ପଡୁଥିଲା ସେ ନିଜକୁ ମୋର ଶିକ୍ଷକ ରୂପେ ଠିକ୍ କରି ନେଇଛି । ଏହି ଡିଆଁ ଟା ମୁଁ ଅତି ସୁବିଧାରେ ବାଗେଇ ନେଲି । ସ୍ୱୀକାର କରିବାକୁ ଆପତ୍ତି ନାହିଁ । କେଭିନ୍ ମୋଠାରୁ ପ୍ରାୟ ଏକ-ଫୁଟ ପଛରେ ପଡ଼ି ବୃନ୍ଦାର କଣ୍ଟାଦ୍ୱାରା ଫୋଡ଼ି ହେବାରୁ ମୁଁ ମନେମନେ ଏକପ୍ରକାର ସନ୍ତୋଷ ଲାଭକଲି । ସେ ତା ଦେହରୁ କଣ୍ଟା ବାହାରକରି କହିଲା, "ଦେଖ, ଏଠି ଆମକୁ ସାବଧାନ ହୋଇ ଚାଲିବାକୁ ପଡ଼ିବ ।" ସେହି ମୁହୂର୍ତ୍ତରୁ ସେ ଆଉ ମୋର ଗୁରୁ ହେବାକୁ ଚେଷ୍ଟା କଲା ନାହିଁ, ବରଂ ଗ୍ରନ୍ଥ-ସଞ୍ଚରଣ ବିଦ୍ୟାରେ ମୋର ସହପାଠୀ ହେଲା ।

ଆମେ ଆଗ ଅପେକ୍ଷା ଅଧିକ ସହଜ ଲମ୍ଫ ଗୋଟିଏ ଚେଷ୍ଟା କରି ଦେଖିଲୁ ଏବଂ ତାହା ବେଶ ସୁବିଧାରେ ସମ୍ପନ୍ନ ହେଲା । ତା ପରେ ଓଲଟା ଦିଗରେ ଆମେ ଡେଇଁଲୁ ଏବଂ ଏହିପରି ଭାବରେ ଥରକୁ ଥର ଆଗକୁ ପଛକୁ ଡେଇଁ ନୂତନ ପରିସ୍ଥିତିରେ ଆମର ମାଂସପେଶୀକୁ ଅଭ୍ୟସ୍ତ କରି-ନେଲୁ । ମୁଁ ଯଦି ନିଜେ ତାହା ଅନୁଭବ କରି ନଥାନ୍ତି ତାହାହେଲେ ସେ ଅଭ୍ୟାସ ଏତେ ଶୀଘ୍ର ହୋଇଯିବ ବୋଲି ବିଶ୍ୱାସ କରି ପାରି ନଥାନ୍ତି । ବାସ୍ତବିକ ଅତି ଅଳ୍ପ ସମୟ ଭିତରେ ପ୍ରାୟ ତିରିଶଟି ଲମ୍ଫରୁ କମରେ, ଆମେ କେତେଦୂର ଡେଇଁବାକୁ ହେଲେ କେତେ ପରିମାଣରେ ଜୋର ପ୍ରୟୋଗ କରିବାକୁ ହେବ ତାହା ଜାଣି ପାରିଲୁ । ପୃଥିବୀରେ ଥିଲେ ଏ କଥା ଯେପରି ନିଶ୍ଚିତ ଭାବରେ ଜାଣି ପାରିଥାନ୍ତି, ଏଠି ମଧ୍ୟ ସେହିପରି ଭାବରେ ଜାଣି ପାରିଲୁ ।

ଏବଂ ଏହି ସମସ୍ତ ଭିତରେ ଗୁହାର ଉଦ୍ଭିଦଗୁଡ଼ିକ ଆମ ଗୃହପଟେ ଅଧିକ ଉଚ୍ଚ ହୋଇ, ଅଧିକ ନଗଣ୍ୟ ହୋଇ ଓ ଅଧିକ ଛନ୍ଦାଛନ୍ଦ ହୋଇ ବଢ଼ିବାକୁ ଲାଗିଲେ। ପ୍ରତି ମୁହୂର୍ତ୍ତରେ ସେହି କଣ୍ଟକିତ ଉଦ୍ଭିଦ, ସବୁଜ ସପ୍ତଫେଣୀ ତୁଲ୍ୟ ଉଦ୍ଭିଦ ଛତୁ, ମୋଟା-ଶିଳାବାକ ଉଦ୍ଭିଦ ଏବଂ ଅଦ୍ଭୁତ ଉଜ୍ଜ୍ୱଳ ଓ ସର୍ପିଳ ଉଦ୍ଭିଦଗୁଡ଼ିକ ଦୀର୍ଘତର ଓ ସ୍ଥୂଳତର ହେବାକୁ ଲାଗିଲେ; କିନ୍ତୁ ଆମେ ତେଣିକି ବାରେ ଏତେ ବ୍ୟସ୍ତ ଥିଲୁଁ ଯେ କିଛି ସମୟ ପର୍ଯ୍ୟନ୍ତ ସେମାନଙ୍କର ଅବିଶ୍ରାନ୍ତ ବୃଦ୍ଧି ପ୍ରତି ନଜର ଦେଇ ନ ଥିଲୁ।

ଗୋଟିଏ ଅସାମାନ୍ୟ ପ୍ରଫୁଲ୍ଲତା ଆମକୁ ଅଧିକାର କରିଥିଲା। ଗୋଲକର ବନ୍ଧ ଗହ୍ୱରରୁ ମୁକ୍ତିଲାଭ କରିଥିବା ଆଗ୍ରହ ଯୋଗୁଁ କେତେକାଂଶରେ ଏହି ପ୍ରଫୁଲ୍ଲତା ଜାତ ହୋଇଥିଲା। କିନ୍ତୁ ପ୍ରଧାନତଃ ଏହା ଥିଲା ବାୟୁର ସୂକ୍ଷ୍ମ-ମଧୁରତା-ଲବ୍ଧ ଆନନ୍ଦ। ଆମ ପୃଥିବୀର ବାୟୁରେ ଯେତିକି ପରିମାଣରେ ଅମ୍ଳଜାନ ଅଛି ସେହି ବାୟୁରେ ତାଠୁ ବେଶୀ ପରିମାଣରେ ଅମ୍ଳଜାନ ଥିଲା। ଆମ ଗୃହପଟର ଅପରିଚିତ ଅବସ୍ଥା ସତ୍ତ୍ୱେ ମୁଁ ଯେପରି ଦୁଃସାହସୀ ଓ ଅନୁସନ୍ଧିତ୍ସୁ ଅନୁଭବ ଲାଭ କରିଥିଲି, କୌଣସି ନଗରବାସୀଙ୍କୁ ପର୍ବତର ଆବେଷ୍ଟନୀ ମଧ୍ୟରେ ଛାଡ଼ି ଦେଲେ ସେ ସେହିପରି ଅନୁଭବ ଲାଭ କରିବ। କିନ୍ତୁ ଆମେ ଅଜ୍ଞାତର ସମ୍ମୁଖୀନ ହୋଇଥିଲେ ମଧ୍ୟ, ବିଶେଷ ଭୀତ ବୋଧକରି ନ ଥିଲୁ।

ଅଧ୍ୟବସାୟର ଉତ୍ସାହ ଦ୍ୱାରା ଆମେ ଆକ୍ରାନ୍ତ ହୋଇଥିଲୁ। ପ୍ରାୟ ପନ୍ଦରଫୁଟ ଦୂରରେ ଗୋଟିଏ ଶିଳାବାକ ଉଦ୍ଭିଦପୂର୍ଣ୍ଣ ଶିଳା ଆମେ ବାଛିଲୁ ଏବଂ ଜଣେ ପରେ ଜଣେ ତା ଉପରକୁ ନିର୍ଭୁଲ ଭାବରେ ଡେଇଁ ପଡ଼ିଲୁ। ଆମେ ଦୁହିଁଙ୍କୁ ଦୁହେଁ କହିବାକୁ ଲାଗିଲୁ, "ବାହା ବା ! ବାହାବା !" କେଭର ବାରଫୁଟ ଦଉଡ଼ି ପ୍ରାୟ କୋଡ଼ିଏ ଫୁଟ କି ତାଠାରୁ ବେଶୀ ଦୂରରେ ଥିବା ଗୋଟିଏ ସୁଦୃଶ୍ୟ ବରଫର ଗଡ଼ାଣିଆ ଭୂମି ଉପରକୁ ଡେଇଁ ପଡ଼ିଲା। ତାର ଭାସମାନ ମୂର୍ତ୍ତିର ବିଚିତ୍ର ରୂପ ଆଡ଼େ ସ୍ତବ୍ଧ ଭାବରେ ଚାହିଁ ମୁଁ କ୍ଷଣକ ଲାଗି ଛିଡ଼ାହୋଇ ରହିଲି—ତାର ମଇଳା କ୍ରିକେଟ-ଟୋପି, କଣ୍ଟା ପରି ବାଳ,

ତାର କ୍ଷୁଦ୍ର ଗୋଲାକାର ଶରୀର, ତାର ହାତ ଏବଂ ଚିଲା ବ୍ରେଚେସ୍ ପରିହିତ ଗୋଡ଼ର ସଙ୍କୁଚିତ ଭଙ୍ଗୀ—ଗୃହର ଦୃଶ୍ୟପଟର ଅପାର୍ଥିବ ବସ୍ତୁର ମଧ୍ୟରେ ଏହି ଚିତ୍ର । ଗୋଟିଏ ହଠାତ୍ ଧକ୍କାରେ ମୁଁ ଗଡ଼ିଗଲି । ତା ପରେ ତା ପଛେ ପଛେ ଡିଆଁ ମାରିଲି । ଅପ୍ ! ମୁଁ ଠିକ୍ କେଭରର ପାଖରେ ଆସି ପଡ଼ିଲି ।

ଆମେ କେତୋଟି ଆସୁରିକ ଲମ୍ଫ ଦେଲୁଁ । ଆହୁରି ଚିନଗୃହଠାରୁ ଡିଆଁ ମାରିଲୁ, ତା ପରେ ଗୋଟିଏ ଶିଳାବାଳପୂର୍ଣ୍ଣ ଢାଲୁ ସ୍ଥାନରେ ବସି ପଡ଼ିଲୁ । ଆମର ଶ୍ୱାସ ଯନ୍ତ୍ରରେ ପୀଡ଼ା ହେଉଥିଲା । ଆମେ ଗୁରୁପାଖ ହାତରେ ଯାକି ଧରି ଦମ୍ ନେବାକୁ ଲାଗିଲୁ ଏବଂ ଉଭୟଙ୍କୁ ଉଭୟେ ପ୍ରଶଂସାପୂର୍ଣ୍ଣ ଆଖିରେ ଚାହିଁଲୁ । କେଭର "ଅଦ୍ଭୁତ ଅନୁଭବ" ନା ଏମିତି କଣ ଗୋଟାଏ ଅଣନିଶ୍ୱାସୀ ହୋଇ କହିଲା ଏବଂ ତା ପରେ ମୋ ମୁଣ୍ଡରେ ଗୋଟାଏ ଭାବନା ଆସିଲା । ସେହି ମୁହୂର୍ତ୍ତରେ ଏହି ଭାବନା ମୋ ମନରେ କୌଣସି ଭୟ ଉଦ୍ରେକ କରି ନ ଥିଲା, ଏହା କେବଳ ସେହି ସମୟର ଅବସ୍ଥା ସମ୍ପର୍କରେ ଗୋଟିଏ ସାଧାରଣ ପ୍ରଶ୍ନ ଥିଲା ।

ମୁଁ କହିଲି, "ଆଚ୍ଛା ଆମର ଗୋଲକଟି ଠିକ୍ କେଉଁଠି ଅଛି କହିଲ ?"

କେଭର ମୋ ଆଡ଼େ ଚାହିଁଲା । କହିଲା, "ଏଁ ?"

ହଠାତ୍ ଆମେ ଯାହା କହୁଥିଲୁ ତାର ସମ୍ପୂର୍ଣ୍ଣ ଅର୍ଥ ମୋର ମସ୍ତିଷ୍କରେ ତୀବ୍ର ଭାବରେ ଆଘାତ କଲା ।

କେଭରର କାନ୍ଧ ଉପରେ ଗୋଟିଏ ହାତ ଥୋଇ ମୁଁ ପାଟିକରି କହିଲି, "କେଭର, ଆମର ଗୋଲକଟି କୁଆଡ଼େ ଗଲା ?



## ୧୦

# ଚନ୍ଦ୍ରରେ ବାଟବଣା ମଣିଷ

ତା ମୁହଁରେ ମଧ୍ୟ ଭୟର ଚିହ୍ନ ଫୁଟି ଉଠିଲା । ସେ ଛୁଟା ହୋଇପଡ଼ି ଗୃହଆଡ଼େ ପ୍ରାଚୀର ପରି ବେଢ଼ିଥିବା ଉଦ୍ଭିଦଗୁଡ଼ିକ ଆଡ଼େ ଅନାଇଲା । ବୃଷ୍ଟିର କ୍ଷୁଦ୍ରକଣାରେ ସେହି ଉଦ୍ଭିଦଗୁଡ଼ିକ ଉପରୁ ଉଡ଼ି ଓଷ୍ଠାର 'ହେଉଥିଲେ । ସେ ଗୋଟିଏ ସଂଶୟଗ୍ରସ୍ତ ହାତ ଓଠ ଉପରେ ରଖିଲା । ତାର କଥାରୁ ଜଣାପଡ଼ିଲା ସେ ହଠାତ୍ ବିଶ୍ୱାସ ହରେଇଛି ।

ସେ ଆସ୍ତେ ଆସ୍ତେ କହିଲା, "ମୁଁ ଭାବୁଛି · ଆମେ ଗୋଲକଟି ରଖି ଦେଇ ଥିଲୁ···ପ୍ରାୟ···ସେଇଠି କୋଉଁଠି ।"

ସେ ଯେଉଁ ଦ୍ୱିଧାଗ୍ରସ୍ତ ଅଙ୍ଗୁଳୀ ନିର୍ଦ୍ଦେଶ କଲା, ତାହା ଗୋଟିଏ ଅର୍ଦ୍ଧବୃତ୍ତରେ ଘୂରି ଆସିଲା ।

"ମୁଁ ନିଶ୍ଚିତ ଭାବରେ କହି ପାରିବ ନାହିଁ ।" ତାର ଆଖିରେ ଭୟର ଚିହ୍ନ ଗାଢ଼ତର ହେଲା । ମୋ ଉପରେ ଆଖି ରଖି ସେ କହିଲା, "ଯାହାହେଉ, ଏହା ବେଶୀ ଦୂରରେ ନାହିଁ ।"

ଆମେ ଦୁହେଁ ଛୁଟା ହୋଇ ପଡ଼ିଥିଲୁ । ଆମେ ଅର୍ଥହୀନ ଶବ୍ଦ କରିବାକୁ ଲାଗିଲୁଁ ଏବଂ ଆମର ଆଖି ଚତୁର୍ଦ୍ଦିଗରେ ଛନ୍ଦାଛନ୍ଦି ହୋଇଥିବା ଉଦ୍ଭିଦର ନିଘଞ୍ଚ ଜଙ୍ଗଲରେ ଖୋଜି ବୁଲିଲା ।

ଆମର ଗୃହଅଡ଼େ ପୃଥ୍ୱୀ ଲୋକଙ୍କ ଗଡ଼ାଣିଆ ଭୂମି ଉପରେ ଊର୍ଦ୍ଧ୍ୱଗାମୀ ବୁଦାଗୁଡ଼ିକ, ଫୁଲ ଉଠୁଥିବା ସପ୍ତଫେଣୀ ଗଛଗୁଡ଼ିକ ଏବଂ ତଳେ ମାଡ଼ିଯାଉଥିବା ଶିଳାବାକ ଉଦ୍ଭିଦଗୁଡ଼ିକ ତରଙ୍ଗାୟିତ ଓ କମ୍ପିତ ହେଉଥିଲେ । ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ ସବୁ ଦିଗରେ ଏକା ଧରଣର ଅପରିଚିତ ଉଦ୍ଭିଦ ପ୍ରସାରିତ

ହୋଇ ରହିଥିଲେ ଏବଂ ଯେଉଁଠି ଗ୍ରୁଇ ରହିଥିଲା, ସେଠି ବରଫ ମେଞ୍ଚା ସବୁ ଛିଣ୍ଡି ରହିଥିଲେ । ଏହି ଛିନ୍ନ ହୋଇଥିବା ବିପର୍ଯ୍ୟସ୍ତ ମଧ୍ୟରେ ଚାଙ୍କି ହୋଇ କେଉଁଠି ପଡ଼ି ରହିଥିଲା ଆମର ଗୋଲକ—ଆମର ଗୃହ, ଆମର ଏକମାତ୍ର ସମ୍ପଦ ଓ ଭରସା । ଆମେ ଯେଉଁ ଏକ ଚିରସ୍ଥାୟୀ ଜଙ୍ଗଲର ଅଦ୍ଭୁତ କାନ୍ତାରରେ ପଡ଼ିଥିଲୁ ସେ ସ୍ଥାନରୁ ପଳାୟନ କରିବାପାଇଁ ସେହି ଗୋଲକ ଥିଲା ଆମର ଏକମାତ୍ର ଆଶା ।

ହଠାତ୍ ଅଙ୍ଗୁଳୀ ନିର୍ଦ୍ଦେଶ କରି କେଭିର କହିଲା, "ମୁଁ ଭାବୁଛି, ଗୋଲକଟି ବୋଧହୁଏ ସେଇଠି ଅଛି ।"

ମୁଁ କହିଲି, "ନା ! ଆମେ ଗୋଟିଏ ବାଙ୍କ ମୋଡ଼ି ଆସିଛୁଁ । ଦେଖ ! ଏଇଠି ମୋର ପାଦଚିହ୍ନ ପଡ଼ିଛି, ପରିଷ୍କାର ଜଣା ପଡ଼ୁଛି ଏହା । ଆହୁରି ପୂର୍ବ ଆଡ଼କୁ ରହିଛି, ଆହୁରି ଅଧିକ ପୂର୍ବ ଆଡ଼କୁ । ନା, ଗୋଲକଟି ନିଶ୍ଚୟ ସେଇଠି ରହିଛି ।"

କେଭିର କହିଲା, "ମୁଁ ଭାବୁଛି, ମୁଁ ବରାବର ସୂର୍ଯ୍ୟକୁ ମୋର ଡାହାଣ କଡ଼କୁ ରଖି ଆସୁଥିଲି ।"

ମୁଁ କହିଲି, "କିନ୍ତୁ ମୋର ମନେ ହୁଏ, ଆମେ ଯେତେବେଳେ ଲମ୍ଫ ଦେଉଥିଲୁ ମୋର ଗ୍ରୁଇ ବରାବର ସାମନାକୁ ପଡ଼ୁଥିଲା ।"

ଆମେ ପରସ୍ପରକୁ ତୀକ୍ଷ୍ଣ ଦୃଷ୍ଟିରେ ନିରୀକ୍ଷଣ କଲୁଁ । ଆମର ଅନୁମାନରେ ଆଗ୍ନେୟଗିରି ଗହ୍ୱରର ଆୟତନ ଖୁବ୍ ବେଶୀ ବଢ଼ି ଗଲାଣି ବୋଲି ବୋଧ ହେଲା । ବର୍ତ୍ତମାନ ଜଙ୍ଗଲ ଅଭେଦ୍ୟ ଭାବରେ ନିଘଞ୍ଚ ହୋଇ ଗଲାଣି ବୋଲି ମନେ ହେଲା ।

"ଭଗବାନ୍ ! ଆମେ କେଡ଼େ ବୋକା ପରି କାମ କରୁଛୁ !"

କେଭିର କହିଲା, "ଏହା ଖୋଜି ଆମକୁ ବାହାର କରିବାକୁ ପଡ଼ିବ ଏବଂ ଅତି ଶୀଘ୍ର । ସୂର୍ଯ୍ୟ କିରଣ କ୍ରମେ କ୍ରମେ ବେଶୀ ଟାଣ ହେଉଛି । ଏହା ଯଦି ଏତେ ଶୁଖିଲା ହୋଇ ନ ଥାନ୍ତା ତାହାହେଲେ ଆମେ ଏତେବେଳକୁ ମୂର୍ଚ୍ଛା ହୋଇ ଯାଆନ୍ତିଣି । ତାଛଡ଼ା···ମୋତେ ଭାରି ଭୋକ କଲାଣି ।"

ମୁଁ ତା ଆଡ଼କୁ ଚାହିଁ ରହିଲି । ଆମ ଅବସ୍ଥାର ଏଇ ଦିଗଟା ମୁଁ ଆଗରୁ ଭାବି ଦେଖି ନଥିଲି । କିନ୍ତୁ ହଠାତ୍ ମୋର କ୍ଷୁଧା ଉଦ୍ରେକ ହେଲା । ମୁଁ ଜୋର ଦେଇ କହିଲି, "ହଁ, ମୋତେ ବି ଭୋକ କଲାଣି ।"

ଗୋଟିଏ ଦୃଢ଼ ସଂକଳ୍ପ ଯେପରି ସେ ଛୁଡ଼ା ହୋଇ ପଡ଼ିଲା । କହିଲା, "ଆମେ ନିଶ୍ଚୟ ଗୋଲ୍‌କଟି ଖୋଜି ବାହାର କରିବା ।"

ଯେତେଦୂର ସମ୍ଭବ ଧୀରତା ସହିତ ଆମେ ଗିରି ଗହ୍ୱର ଚଟାଣର ସୀମାହୀନ ଶିଳା ଓ ଜଙ୍ଗଲକୁ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲୁ । ଆମେ ଉତ୍ତାପ ଓ କ୍ଷୁଧା ଦ୍ୱାରା ପରାଭୂତ ହେବା ପୂର୍ବରୁ ଗୋଲକଟି ଖୋଜି ବାହାର କରିବାର କେତେଦୂର ଆଶା ଅଛି, ଏକଥା ଆମେ ଉଭୟେ ନୀରବରେ ଚିନ୍ତା କରିବାକୁ ଲାଗିଲୁ ।

ଅନିଶ୍ଚିତ ଭଙ୍ଗୀ ସହିତ କେଭର କହିଲା, "ଏହା ଏହି ସ୍ଥାନରୁ ପଚାଶ ଗଜରୁ ବେଶୀ ଦୂରରେ ରହିଥିବା ସମ୍ଭବ ନୁହେ । ଏକମାତ୍ର ଉପାୟ ହେଉଛି, ଏହା ପାଇବା ପର୍ଯ୍ୟନ୍ତ ଚାରିଆଡ଼େ ତନ୍ନ ତନ୍ନ କରି ଖୋଜି ଦେଖିବା ।"

ମୁଁ କହିଲି, "ତାଛଡ଼ା ଆଉ ଉପାୟ ନାହିଁ ।" କିନ୍ତୁ ଅନୁସନ୍ଧାନ ଆରମ୍ଭ କରିବାର କୌଣସି ଉତ୍ସାହ ଦେଖେଇଲି ନାହିଁ । "ଏଇ ପାଜି କଣ୍ଟାବୁଦା ଗୁଡ଼ାକ ଏତେ ଶୀଘ୍ର ଶୀଘ୍ର ନବଢ଼ି ଥାଆନ୍ତେ କି !"

କେଭର କହିଲା, "ଠିକ୍ କଥା । କିନ୍ତୁ ଏହା ଗୋଟିଏ ବରଫ ସ୍ତୂପ ଉପରେ ପଡ଼ିଥିଲା ।

ମୁଁ ଗୋଲକର ପାଖରେ ଯେଉଁ ପଥର-ଚିପ କଣ୍ଟା ବୁଦା ସବୁ ଦେଖିଥିଲି ସେଥିରୁ ଗୋଟାକୁ ଚିହ୍ନିବା ଆଶାରେ ଚାରିଆଡ଼େ ଅନେଇ ଦେଖିଲି । କିନ୍ତୁ ବୃଥା ଆଶା । ଚାରିଆଡ଼େ ସେଇ ଏକ ପ୍ରକାରର ଜଙ୍ଗଲ ଘେରି ରହିଥିଲା । ସେଇ ଏକା ରକମର ବର୍ଦ୍ଧନଶୀଳ ବୁଦା, ଫୁଲ ଉଠୁଥିବା ଛତୁ, ମିଳାଇ ଯାଉଥିବା ବରଫସ୍ତୂପ ଦୃଢ଼ ଓ ଅପରିହାର୍ଯ୍ୟ ଭାବରେ ରୂପ

ପରିବର୍ତ୍ତିତ କରିଥିଲେ । ସୂର୍ଯ୍ୟର ତେଜ ଜ୍ୱାଳାମୟ ଓ ତୀକ୍ଷ୍ଣ ଥିଲା । ଆମର ଅସୀମ ବିସ୍ମୟ ସହିତ ଗୋଟିଏ ଅନିର୍ଣ୍ଣେୟ କ୍ଷୁଧାର ଆଭାସ ମିଶି ଯାଇଥିଲା ଏବଂ ଆମେ ସେଠାରେ ଅଜ୍ଞାତ ବସ୍ତୁମାନଙ୍କ ମଧ୍ୟରେ ବାଟବଣା ହୋଇ ବିସ୍ମିତ ଭାବରେ ଠିଆ ହୋଇଥିବା ସମୟରେ ଚନ୍ଦ୍ର ଉପରେ ଗୋଟିଏ ନୂତନ ଶବ୍ଦ ହଠାତ୍ ଶୁଣିବାକୁ ପାଇଲୁ । ବର୍ଦ୍ଧନଶୀଳ ଉଦ୍ଭିଦମାନଙ୍କର ମର୍ମର ଧ୍ୱନି, ପବନର କ୍ଷୀଣ ଦୀର୍ଘଶ୍ୱାସ କିମ୍ବା ଆମେ ନିଜେ କରୁଥିବା କୌଣସି ଶବ୍ଦଠାରୁ ସେ ଶବ୍ଦ ସମ୍ପୂର୍ଣ୍ଣ ଭିନ୍ନ ଥିଲା ।

ଢଣ୍‌ .....ଢଣ୍‌ .....ଢଣ୍‌ .....

ସେ ଶବ୍ଦ ଆସୁଥିଲା ଆମ ପାଦ ତଳୁ, ମାଟି ଭିତରୁ । ଆମ କାନ ଦ୍ୱାରା ତାହା ଆମେ ଯେତିକି ଶୁଣି ପାରୁଥିଲୁ ଆମ ପାଦ ଦ୍ୱାରା ମଧ୍ୟ ସେତିକି ଶୁଣି ପାରୁଥିଲୁ । ତାହା ଦୂରରୁ ଆସୁଥିବା ଯୋଗୁଁ ତାର କର୍କଶ ପ୍ରତିଧ୍ୱନି ଆଚ୍ଛାଦିତ ହେଲା ପରି ଜଣା ପଡ଼ୁଥିଲା । ମଝିରେ ଥିବା ମାଟିର ବାଧା ସେଇ ଧ୍ୱନିକୁ ନିବିଡ଼ କରି ଦେଇଥିଲା । ମୁଁ ଏପରି କୌଣସି ଶବ୍ଦ କଥା ଭାବି ପାରୁ ନାହିଁ ଯାହାକି ଆମକୁ ସେଇ ଶବ୍ଦ ଅପେକ୍ଷା ବେଶି ବିସ୍ମିତ କରି ପାରିଥାନ୍ତା କିମ୍ବା ଆମର ଚତୁର୍ଦ୍ଦିଗର ଅବସ୍ଥାର ରୂପକୁ ଅଧିକ ପରିବର୍ତ୍ତିତ କରି ପାରି ଥାନ୍ତା । କାରଣ ଏହି ଗମ୍ଭୀର, ଧୀର ଓ ଇଚ୍ଛାକୃତ ଶବ୍ଦ ଶୁଣି ଆମର ମନେ ହେଲା ଯେ ଏହା ମାଟି ତଳେ ପୋତା ହୋଇଥିବା କୌଣସି ବୃହତ୍ ଘଣ୍ଟାର ଧ୍ୱନି ଛଡ଼ା ଅନ୍ୟ କିଛି ହେବା ସମ୍ଭବ ନୁହେଁ ।

ଢଣ୍‌ .....ଢଣ୍‌ .....ଢଣ୍‌ .....

ସେହି ଶବ୍ଦ ସୂଚନା ଦେଉଥିଲା ନିସ୍ତବ୍ଧ ମଠ, ଜନାକୀର୍ଣ୍ଣ ସହରର ବିନିଦ୍ର ରଜନୀ, ସତର୍କ ପହରା ଏବଂ ପ୍ରଶିକ୍ଷିତ ପ୍ରହରୀର କଥା । ଏହି ଅଦ୍ଭୁତ ମରୁସ୍ଥଳୀରେ ଧ୍ୱନିତ ସେହି ଅର୍ଥପୂର୍ଣ୍ଣ, ରହସ୍ୟମୟ ଶବ୍ଦ ଜୀବନରେ ଯାହାକିଛି ସଭ୍ୟତା ଓ ଶୃଙ୍ଖଳା ଅଛି ତାହାରି କଥା ସୂଚନା ଦେଉଥିଲା ! ଆଖି ଆଗରେ ଅବଶ୍ୟ ସବୁ ଜିନିସ ଅପରିବର୍ତ୍ତିତ ହୋଇ ରହିଥିଲା; ବୁଦା ଓ ସପ୍ତଫେଣୀର ଜଙ୍ଗଲ ପବନରେ ନିଃଶବ୍ଦରେ ହଲୁଥିଲା ଏବଂ ଦୂରର ପର୍ବତ ପର୍ଯ୍ୟନ୍ତ

ଅବଚ୍ଛିନ୍ନ ଭାବରେ ପ୍ରସାରିତ ହୋଇଥିଲା । ଉପରେ ଶାନ୍ତ ଗାଢ଼ ଆକାଶ ଥିଲା ଶୂନ୍ୟ ଏବଂ ଉତ୍ତପ୍ତ ସୂର୍ଯ୍ୟ ଥିଲା ସ୍ଥିର ଓ ଜ୍ୱାଳାମୟ । କିନ୍ତୁ ଏସବୁ ମଧ୍ୟରେ ସେହି ଶବ୍ଦର ରହସ୍ୟ ଧ୍ୱନିତ ହୋଇ ଆମକୁ ସାବଧାନ କରିଦେଲା । ଭୁଲ୍ ପ୍ରଦର୍ଶନ କଲା ।

ଢଣ୍......ଢଣ୍......ଢଣ୍......

ଆମେ ପରସ୍ପରକୁ ଅସ୍ପଷ୍ଟ ଓ କ୍ଷୀଣ କଣ୍ଠରେ ପ୍ରଶ୍ନ କରିବାକୁ ଲାଗିଲୁଁ ।

"ଘଣ୍ଟା ?"

"ଘଣ୍ଟା ପରି !"

"ଏହା କଣ ?"

"ଏହା କଣ ହୋଇପାରେ ?"

କେଭରର କହିଲା, "ଗଣ !" କିନ୍ତୁ ଏଇ ବୁଦ୍ଧିଟା ତା ମୁଣ୍ଡକୁ ଅତି ବିଳମ୍ବରେ ଆସିଥିଲା । କାରଣ ସେ 'ଗଣ' ବୋଲି କହିବା ସଙ୍ଗେ ସଙ୍ଗେ ସେହି 'ଢଣ୍, ଢଣ୍' ଶବ୍ଦ ବନ୍ଦ ହୋଇଗଲା ।

ଶବ୍ଦର ଛନ୍ଦ ହଠାତ୍ ବନ୍ଦ ହୋଇଯିବାରୁ ଯେଉଁ ନିସ୍ତବ୍ଧତା ଆସିଲା, ତାହା ଆମକୁ ପୁଣି ଗୋଟିଏ ନୂତନ ଧକ୍କା ଦେଲା । କ୍ଷଣକ ଲାଗି ସନ୍ଦେହ ହେଲା, ଆମେ ପ୍ରକୃତରେ ସେହି ଶବ୍ଦ ଶୁଣିଥିଲୁ କି ନା, କିମ୍ବା ହୁଏତ ସେହି ଶବ୍ଦ ବାସ୍ତବରେ ବନ୍ଦ ହୋଇ ନ ଥିଲା । ମୁଁ ସତରେ ତାହା ଶୁଣିଥିଲି ତ ?

ମୋ କାନରେ କେଭରର ହାତରି ଘୃପ ମୁଁ ଅନୁଭବ କଲି । ସେ ନିମ୍ନ କଣ୍ଠରେ କଥା କହିଲା, ଯେପରି କି ତାର ଭୟ ହେଉଥିଲା କୌଣସି ଜାଗ୍ରତ ବସ୍ତୁର ନିଦ ଭାଙ୍ଗିଯିବ । ମୋ କାନରେ ଫିସ୍ ଫିସ୍ କରି ସେ କହିଲା, "ଆମେ ଏକାଠି ରହି ଗୋଲକଟି ଖୋଜି ଦେଖିବା । ଆମକୁ ଗୋଲକକୁ ଫେରିଯିବାକୁ ପଡ଼ିବ । ଏହାର କାରଣ ବୁଝିପାରିବା ଆମ ପକ୍ଷରେ ଅସମ୍ଭବ ।"

ମୁଁ କହିଲି, "ଆମେ କେଉଁ ଦିଗକୁ ଯିବା ?"

ସେ ଝିକେ ଇତସ୍ତତଃ କଲା । ଆମର ଜୀବନ୍ତଭାବରେ ମନେ ହେଉଥିଲା ଆମ ଚତୁର୍ଦ୍ଦିଗରେ ଓ ନିକଟରେ କୌଣସି ଅଦୃଶ୍ୟ ବସ୍ତୁ ବିଚରଣ କରୁଛି । ତାହା କଣ ହୋଇପାରେ ? ତାହା କେଉଁଠି ରହୁଛି ? ଏହି ପର୍ଯ୍ୟନ୍ତ ନିର୍ମେ ଶୀତଳ ଓ ଉଦ୍ଧସ୍ତ ହୋଇ ଯାଉଥିବା ନିର୍ଜନ ଶୁଷ୍କ ସ୍ଥାନ କଣ କେବଳ କୌଣସି ଭୂଗର୍ଭସ୍ଥ ଦୁନିଆର ବାହାର ଖୋଲ ଓ ଚାଙ୍ଗୁଣୀ ? ଯଦି ତାହା ହୋଇଥାଏ, ସେ ଦୁନିଆ କିପରି ? ସେ ଦୁନିଆ ଆମ ସମ୍ମୁଖରେ କେଉଁଠି ଅଦ୍ଭୁତ ବାହିନୀମାନଙ୍କୁ ଉପସ୍ଥାପିତ କରି ନ ପାରେ ?

ଏବଂ ତାପରେ, ସେହି ଅସହ୍ୟ ନୀରବତା ଭେଦ କରି ଆତଙ୍କିତ ମେଘଗର୍ଜନ ପରି ହଠାତ୍ ଶୁଭିଲା ଗୋଟିଏ ତୀକ୍ଷ୍ଣ ଝଣଝଣ ଶବ୍ଦ, ଯେପରିକି ଧାତୁନିର୍ମିତ ବିରାଟ କବାଟସବୁ ସହସା ଖୋଲି ଦିଆଯାଇଛି ।

ତାହା ଶୁଣି ଆମେ ଜଡ଼ପରି ଠିଆ ହୋଇପଡ଼ିଲୁ । ନିଃସହାୟ ଭାବରେ ବୋକା ପରି ରହି ରହିଲୁ । ତାପରେ କେଭର ଧୀରପଣ ଧୀରେ ଧୀରେ ମୋ ଆଡ଼କୁ ଆସିଲା ।

ମୋ କାନ ପାଖକୁ ମୁହଁ ଆଣି ସେ ଫିସ୍ ଫିସ୍ କରି କହିଲା, ମୁଁ ବୁଝିପାରୁ ନାହିଁ । ତା'ର ଅସ୍ପଷ୍ଟ ଚନ୍ଦ୍ରର ଅସ୍ପଷ୍ଟ ଇଙ୍ଗିତ ସ୍ୱରୂପ ସେ ଆକାଶ ଆଡ଼କୁ ଅର୍ଥଶୂନ୍ୟ ଭାବରେ ହାତ ହଲାଇଲା ।

"ଲୁଚିବାର କୌଣସି ସ୍ଥାନ ! ଯଦି କିଛି ଆସି ପହଞ୍ଚିଯାଏ......"

ମୁଁ ଅମର ଭୂଶପଟେ ରହିଲି । ତାର କଥାରେ ସମ୍ମତି ଦେଇ ମୁଣ୍ଡ ହଲାଇଲି ।

ଆମେ ଧୀରପଣ ଲୁଚ ଲୁଚ ଝିକିଏ ଶବ୍ଦ ପାଇଲେ ଅଧିକ ବେଶୀ ସାବଧାନତା ଅବଲମ୍ବନ କରି ଚାଲିବାକୁ ଆରମ୍ଭ କଲୁ । ଗୋଟିଏ କଣ୍ଟା ଜଙ୍ଗଲ ଆଡ଼କୁ ଆମେ ଗଲୁ । ଧାତୁ ନିର୍ମିତ ଚିଲ୍ଲ କଣିବାର ପାତ୍ର ଉପରେ ହାତୁଡ଼ି ପିଟିଲେ ଯେପରି ଶବ୍ଦ ହୁଏ ସେହିପରି ଗୋଟିଏ କର୍କଶ ଶବ୍ଦ ଶୁଣି ଆମେ ଆହୁରି ବେଗରେ ଚାଲିବାକୁ ଲାଗିଲୁ । କେଭର କହିଲା, ଆମକୁ ଗୁରୁଣ୍ଡି ଗୁରୁଣ୍ଡି ଯିବାକୁ ପଡ଼ିବ ।"

ସଙ୍ଗୀନି ବୃକ୍ଷ ଉଦ୍ଭିଦ ଗୁଡ଼ିକର କମ୍ପାଂକ୍ରର ପତ୍ରସବୁ ଉପରର ନୂତନ ପତ୍ର ଦ୍ୱାରା ଆଚ୍ଛାଦିତ ହୋଇ ଆକୁଞ୍ଚିତ ହେଇଯିବାକୁ ଓ ଝଡ଼ିପଡ଼ିବାକୁ ଆରମ୍ଭ କରୁଥିଲେ । ତେଣୁ ମୋଟା ଡେଙ୍ଗା ଗୁଡ଼ିକ ଭିତର ଦେଇ ଯିବାଦ୍ୱାରା ଆମ ଦେହରେ ବିଶେଷ କୌଣସି ଆଘାତ ହେଲା ନାହିଁ । ମୁହଁ କିମ୍ବା ହାତ ଉପରେ କେତେବେଳେ ଫୋଡ଼ି ହୋଇଗଲେ ଆମେ ତାହା ଖାତିର କଲୁ ନାହିଁ । ଜଙ୍ଗଲର ଠିକ୍ ମଝିରେ ପହଞ୍ଚି ମୁଁ ଅଟକିଗଲି ଏବଂ ବେଦମ୍ ହୋଇ କେଉରର ମୁହଁ ଆଡ଼କୁ ଅନାଇଲି ।

କେଉର ଫିସ୍ ଫିସ୍ କରି କହିଲା, "ଏହା ଭୂଗର୍ଭକୁ ଶୁଭୁଛି । ଚାଲ ।"

"ସେମାନେ ଉପରକୁ ଆସି ଯାଇପାରନ୍ତି !"

"ଆମକୁ ଗୋଲକଟି ଖୋଜି ବାହାର କରିବାକୁ ହିଁ ହେବ ।"

ମୁଁ କହିଲି, "ହଁ, କିନ୍ତୁ କିପରି ?"

"ଆମେ ତାହା ପାଖରେ ପହଞ୍ଚିବା ପର୍ଯ୍ୟନ୍ତ ଗୁରୁଣ୍ଡି ଗୁରୁଣ୍ଡି ଯିବା ।"

"କିନ୍ତୁ ଆମେ ଯଦି ତାହା ନ ପାଉ ?

ତାହାହେଲେ ଲୁଚି ରହିବା । ସେମାନେ କ'ଣ, ତାହା ଦେଖିବା ।"

ମୁଁ କହିଲି, ଆମେ "ବରାବର ଏକାଠି ରହିବା ।"

ସେ ଟିକେ ଭାବିଲା । କହିଲା, "କେଉଁ ଦିଗରେ ଯିବା ?"

"ଯେ କୌଣସି ଗୋଟିଏ ଦିଗରେ ଯାଇ ଆମର ଭାଗ୍ୟ ପରଖି ଦେଖିବା ।"

ଆମେ ଏ ଦିଗକୁ ସେ ଦିଗକୁ ଚାହିଁଲୁ । ତାପରେ ଖୁବ୍ ସତର୍କତା ସହିତ ଆମେ ନିମ୍ନଭାଗସ୍ଥ ଜଙ୍ଗଲ ଭିତର ଦେଇ ଗୁରୁଣ୍ଡି ଗୁରୁଣ୍ଡି ଗଲୁ । ଆମେ ଗୋଟିଏ ବୃତ୍ତାକାରରେ ଧୀର ଅଗ୍ରସର ହେବାକୁ ଚେଷ୍ଟା କଲୁ, ଏବଂ କୌଣସି ଛୋଟ ଗଛ ଟିକିଏ ହଲିଲେ କିମ୍ବା କେଉଁଠି ଟିକିଏ ଶବ୍ଦ ହେଲେ ଆମେ ହଠାତ୍ ଅଟକି ଯାଉଥିଲୁ । ଆମର ଏକମାତ୍ର ଲକ୍ଷ୍ୟ ଥିଲା, ଆମେ ଯେଉଁ ଗୋଲକରୁ ଏତେ ବୋକାପରି ବାହାରି ପଡ଼ିଥିଲୁ ସେହି ଗୋଲକକୁ ଫେରିଯିବା । ମଝିରେ ମଝିରେ ଆମ ପାଦ ତଳର ମାଟି କମ୍ପି ଉଠୁଥାଏ,

ଏବଂ ତା ଭିତରୁ ଅଦ୍ଭୁତ, ଅନୁବର୍ତ୍ତନୀୟ ଯାନ୍ତ୍ରିକ ଶବ୍ଦ ଏବଂ ଫାଡ଼େଇବାର ଶବ୍ଦ ଆସୁଥାଏ । ଥରେ, ଏବଂ ପୁଣି ଆଉଥରେ ଆମେ ଆଉ ଏକ-ପ୍ରକାରର ଶବ୍ଦ ଶୁଣିବାକୁ ପାଇଲୁଁ, କୌଣସି ହୁଲହୁଲ୍ ଓ ଝଣତ୍କାରର କ୍ଷୀଣ ଶବ୍ଦ ବାୟୁରେ ଭାସିଆସିଲା । କିନ୍ତୁ ଆମେ ଏତେ ଦୂର ଭୀତ ହୋଇ-ପଡ଼ିଥିଲୁଁ ଯେ ଆଣ୍ଟିମୁସିଶ ଗହ୍ୱରର ଭିତରଟା ଭଲ କରି ଦେଖିବା ପାଇଁ ଆମରି ଲୁଚିବା ସ୍ଥାନରୁ ବାହାରକୁ ଉଙ୍କି ମାରିବାକୁ ସାହସ ହେଲୁ-ନାହିଁ । ଯେଉଁମାନେ ଏପରି ଉଚ୍ଚ ଓ ଅବିରତ ଭାବରେ ଶବ୍ଦ କରୁଥିଲେ, ସେମାନଙ୍କର ଚେହେରା ଅନେକ ବେଳଯାଏଁ ଆମେ ଦେଖି ପାରିଲୁ ନାହିଁ । ଶୀତ ଯୋଗୁଁ ଯଦି ଆମର ଦେହ ଝିମି ଝିମି କରୁ ନ ଥାନ୍ତା ଏବଂ ଯଦି ଆମ ତଣ୍ଟି ଶୁଖି ଯାଇ ନଥାନ୍ତା, ତାହାହେଲେ ସେହି ଗୁହ୍ଣ୍ଟିବାଟା ଗୋଟିଏ ସୁସ୍ଥ ସ୍ୱପ୍ନ ପରି ମନେ ହୋଇଥାନ୍ତା । ତାହା ଅତି ଅବାସ୍ତବ ଥିଲା । ବାସ୍ତବତାର ପରିଚୟ ଯଦି କିଛି ଦେଉଥିଲା ତାହାହେଲେ ସେହି ଶବ୍ଦ ।

ତାହା ତୁମେ କଳ୍ପନା କରି ଦେଖ ! ଆମର ଚାରିପଟେ ଥିଲା ସ୍ୱପ୍ନବତ୍ ଅରଣ୍ୟ । ସଙ୍ଗୀନ ପରି ପତ୍ରଗୁଡ଼ିକ ନିଃଶବ୍ଦରେ ଉପରକୁ ବଢ଼ି ଯାଉଥିଲେ, ଏବଂ ଆମର ହାତ ଓ ଆଣ୍ଠୁ ତଳେ ଉଜ୍ଜ୍ୱଳ, ସୂର୍ଯ୍ୟାଲୋକିତ ଶିଳାବାକ ଉଦ୍ଭିଦଗୁଡ଼ିକ ବୃଦ୍ଧିର ଉତ୍ତେଜନାରେ ନିଃଶବ୍ଦରେ କମ୍ପିତ ହେଉଥିଲେ, ଯେପରି ସ୍ୱଦର ତଳେ ପବନ ପଶିଲେ ତାହା କମ୍ପିତ ହୁଏ । ବେଳେ ବେଳେ ସୂର୍ଯ୍ୟତଳେ ଫୁଲି ଫୁଲି ଉଠୁଥିବା ରବର ଫୋଟକା ପରି ଛତୁଗୁଡ଼ିକ ଆମର ମୁଣ୍ଡ ଉପରେ ଫଟ୍ଟ ହେଉଥିଲେ । ବେଳେ ବେଳେ ଉଜ୍ଜ୍ୱଳ ରଙ୍ଗରେ ରଙ୍ଗୀନ କୌଣସି ଅପୂର୍ବ ଆକୃତିର ଉଦ୍ଭିଦ ମାତ୍ର ପଡ଼ୁ-ଥିଲା । ଏହି ଉଦ୍ଭିଦ ଗୁଡ଼ିକ ଯେଉଁ କୋଷମାନଙ୍କ ଦ୍ୱାରା ଗଠିତ ହୋଇ-ଥିଲେ ସେଥିରୁ ପ୍ରତ୍ୟେକ କୋଷ ମୋର ବୁଢ଼ା ଆଙ୍ଗୁଠି ଭଳି ବଡ଼ ଥିଲା । ତାହା ରଙ୍ଗୀନ କାଚ ମୁଣ୍ଡା ପରି ଦିଶୁଥିଲା । ଏହି ସମସ୍ତ ପଦାର୍ଥ ସୂର୍ଯ୍ୟର ପ୍ରଖର ତେଜ ଦ୍ୱାରା ଉଦ୍ଭାସିତ ହେଉଥିଲା । ପ୍ରତ୍ୟେକ ଅଣୁ ଆଲୋକରେ

ପ୍ଳାବିତ ହୋଇଥିଲା । ଏବଂ ଯେଉଁ ନୀଳକୃଷ୍ଣ ଆକାଶ ସୂର୍ଯ୍ୟକିରଣ ସହିତ ଅବଶିଷ୍ଟ କେତେଗୋଟି ତାରକାଦ୍ୱାରା ଖଚିତ ହୋଇଥିଲା ସେହି ଆକାଶ ତଳେ ଏ ସମସ୍ତ ଦେଖାଯାଉଥିଲା । ଅପୂର୍ବ ! ପଥର ଗୁଡ଼ିକର ଆକାର ଓ ରୂପ ମଧ୍ୟ ଅପୂର୍ବ ଦେଖାଯାଉଥିଲା । ସବୁ ଜିନିଷ ଅପୂର୍ବ ଥିଲା, ଆମର ଦେହର ଇନ୍ଦ୍ରିୟ ବୋଧ ମଧ୍ୟ ଅଭୂତପୂର୍ବ ଥିଲା ଏବଂ ଦେହର ସାମାନ୍ୟ ଗତି ଆମକୁ ବିସ୍ମିତ କରଦେଉଥିଲା । ଆମେ ନିଶ୍ୱାସ ନେଲାବେଳେ ତଣ୍ଡିରେ ତାହା ଅଟକି ଯାଉଥିଲା, ଏବଂ କାନର ଧମନୀରେ ରକ୍ତର ସ୍ରୋତ ବେଗ ଗତିରେ ବହୁଥିଲା—ଧପ୍, ଧପ୍, ଧପ୍, ଧପ୍···

ଏବଂ କ୍ରମାନ୍ୱୟରେ ସେହି ଗୋଳମାଳ, ହାତୁଡ଼ି ପିଟିବା ଶବ୍ଦ, ଯନ୍ତ୍ରର ଝଣ ଝଣ ଓ ଭଟ୍ ଭଟ୍ ଶବ୍ଦ ଆସିବାକୁ ଲାଗିଲା ଏବଂ ଶେଷରେ ଆସିଲା—ବଡ଼ ବଡ଼ ଜନ୍ତୁଙ୍କର ଗର୍ଜ୍ଜନ !

---

## ୧୧

# ଚନ୍ଦ୍ରଗୋରୁଙ୍କର ଚରଣଭୂମି

ଆମେ ଦୁଇଟି ନିରାଶ୍ରୟ ପୃଥିବୀପରିତ୍ୟକ୍ତ ମନୁଷ୍ୟ ଭୀଷଣ ଚନ୍ଦ୍ର ଅରଣ୍ୟ ମଧ୍ୟରେ ବାଟବଣା ହୋଇ ସେହି ଶବ୍ଦ ଶୁଣି ହତ ଚ୍ଚସ୍ତ ଭାବରେ ଗୁରୁଣ୍ଡି-ବାକୁ ଲାଗିଲୁଁ । ଚନ୍ଦ୍ର ଗୋରୁଙ୍କର ଗର୍ଜ୍ଜନ କ୍ରମାଗତ ଆମର ନିକଟତର ହେଉଛି ବୋଲି ଆମେ ଜାଣିପାରୁଥିଲୁଁ, କିନ୍ତୁ ଚନ୍ଦ୍ର ଗୋରୁଙ୍କୁ କିମ୍ବା ଚନ୍ଦ୍ରିକ (ଚନ୍ଦ୍ରର ଅଧିବାସୀ) ମାନଙ୍କୁ ଦେଖିବା ପୂର୍ବରୁ ଆମକୁ ଅନେକ ବେଳଯାଏଁ ଗୁରୁଣ୍ଡିବାକୁ ହୋଇଥିଲା । ପଥର ପୃଷ୍ଠ ଖାତ ଭିତର ଦେଇ, ବରଫ ହୁଡ଼ା ଉପର ଦେଇ, ଏବଂ ଆମର ଆଘାତରେ ପାତଳା ଚମଡ଼ା ପରି ଫାଟିଯାଇ ପାଣି ପରି ରସ ଝରୁଥିବା ଛତୁଗୁଡ଼ିକ ମଧ୍ୟ ଦେଇ, ପଫ୍‌ବଲ୍ ପରି ଉଦ୍ଭିଦର ଗାଲିଚା ଉପର ଦେଇ ଏବଂ ସୀମାହୀନ କଣ୍ଟାବୁଦା ତଳ ଦେଇ

ଆମେ ଗୁରୁଣ୍ଡିବାକୁ ଲାଗିଲୁଁ । ଏବଂ ପୂର୍ବାପେକ୍ଷା ଅଧିକ ହତାଶା ଭାବରେ ଆମ ଆଖି ପରସ୍ପରକୁ ଗୋଲକଟି ଖୋଜିବାକୁ ଲାଗିଲୁଁ । ବୃଦ୍ଧ ଗୋରୁଙ୍କର ରଡ଼ି ବେଳେ ବେଳେ ବାଛୁରୀଙ୍କର ହମ୍ବାରବ ପରି ଶୁଭୁଥିଲା, କେତେବେଳେ ବା ତାହା ବିସ୍ମୟ ଓ କ୍ରୋଧଜନିତ ଗର୍ଜନ ପରି ଶୁଭୁଥିଲା । ଅନ୍ୟସମୟରେ ଭଣ୍ଡିରେ କିଛି ଅଟକି ଯାଇଥିଲେ ପଶୁର ସ୍ୱର ଯେପରି ଶୁଭେ ସେହିପରି ଶୁଭୁଥିଲା । ମନେ ହେଉଥିଲା ଏହି ଅଦେଖା ଜୀବଗୁଡ଼ିକ ଯେପରି ଖାଇବା ଓ ଗର୍ଜନ କରିବା କାମ ଏକ ସମୟରେ କରିବାକୁ ଚାହୁଁଥିଲେ ।

ଆମେ ପ୍ରଥମେ ଯେତେବେଳେ ସେମାନଙ୍କୁ ଦେଖିଲୁଁ ତାହା କେବଳ ଅସମ୍ପୂର୍ଣ୍ଣ ମୂର୍ତ୍ତିକର ଦର୍ଶନ ଥିଲା, ତଥାପି ତାହା ଯଥେଷ୍ଟ ନ ହେଲେ ମଧ୍ୟ ସେଥିଦ୍ୱାରା ଆମେ ସନ୍ତ୍ରସ୍ତ ହୋଇ ଉଠିଥିଲୁଁ । କେଭର ଆଗରେ ଆଗରେ ଗୁରୁଣ୍ଡୁଥିଲା, ତେଣୁ ସେସବୁ ଅତି ନିକଟକୁ ଆସିଗଲେଣି ବୋଲି ସେ ପ୍ରଥମେ ଜାଣି ପାରିଲା । ସେ ହଠାତ୍ ଅଟକିଗଲା, ଏବଂ ଗୋଟିଏ ମାତ୍ର ସଙ୍କେତ ଦ୍ୱାରା ମୋର ଗତି ରୋଧକଲା ।

ଜଣାଶୁଣା ଗୁଡ଼ିକର ଝଡ଼ ଝଡ଼ ଶବ୍ଦ ଏବଂ ମାଡ଼ି ମକଚି ହୋଇଯାଉଥିବା ଶବ୍ଦ ଠିକ୍ ଆମରି ଆଡ଼କୁ ଆସୁଥିବାର ଜଣାଗଲା । ତାପରେ ଆମେ ଯେତେବେଳେ ଲାଗି ଲାଗି ବସି ସେହି ଶବ୍ଦର ନୈକଟ୍ୟ ଓ ବେଗ ଅନୁମାନ କରିବାକୁ ଚେଷ୍ଟା କରୁଥିଲୁଁ ସେତେବେଳେ ଆମ ପଛପଟେ ଗୋଟିଏ ବିକଟ ଗର୍ଜନ ଶୁଭିଲା । ତାହା ଏତେ ନିକଟରେ ଓ ଏତେ ଜୋରରେ ଶୁଭିଲା ଯେ, ସଙ୍ଗୀନ ପରି ବୁଦା ଗୁଡ଼ିକର ଅଗ୍ରଭାଗ ସେହି ଶବ୍ଦରେ ନଇଁ ଗଲା ଏବଂ ତତଲା ବାଷ୍ପଯୁକ୍ତ ନିଃଶ୍ୱାସ ଆମ ଦେହରେ ଲାଗୁଥିବାର ଆମେ ଅନୁଭବ କରି ପାରିଲୁଁ । ପଛକୁ ବୁଲିପଡ଼ି, କମ୍ପିତ ଡାଳ ଗୁଡ଼ିକ ଭିତର ଦେଇ ଆମେ ବୃଦ୍ଧ ଗୋରୁମାନଙ୍କର ଚକ୍‌କଣ ପାର୍ଶ୍ୱଦେଶ ଓ ଦୀର୍ଘ ପୃଷ୍ଠଦେଶ ଅସ୍ପଷ୍ଟ ଭାବରେ ଦେଖି ପାରିଲୁଁ ।

ଅବଶ୍ୟ ସେତେବେଳେ ମୁଁ ଯାହା ଦେଖିଲି ତାହା ଠିକ୍ ଭାବରେ ବୁଝାଇ କହିବା ବର୍ତ୍ତମାନ ସମ୍ଭବ ନୁହେଁ, କାରଣ ଏହାପରେ ଆହୁରି ସ୍ପଷ୍ଟ

ଭାବରେ ପର୍ଯ୍ୟବେକ୍ଷଣ କରି ମୁଁ ସେମାନଙ୍କ ବିଷୟରେ ଧାରଣା ଜନ୍ମାଇ ପାରିଥିଲି । କିନ୍ତୁ ସେ ସମୟରେ ମୋର ପ୍ରଥମେ ଆଖିରେ ପଡ଼ିଲା, ତାର ବିଶାଳ ଆକୃତି; ତାର ଶରୀରର ସ୍ଥୂଳତା ପ୍ରାୟ ଅଠୀ ଫୁଟ ଥିଲା ଏବଂ ତାର ଦୈର୍ଘ୍ୟ ଥିଲା ଦୁଇଶହ ଫୁଟ । ତାହା ଧୀରେ ଧୀରେ ନିଶ୍ୱାସ ନେଉଥିବା ବେଳେ ତାର ଗ୍ରୀବା ଉଠୁଥିଲା ପଡ଼ୁଥିଲା । ମୁଁ ଦେଖିଲି ଯେ ତାର ବିଶାଳ ମାଂସଳ ଶରୀର ମାଟିକୁ ଲାଗି ରହିଥିଲା । ତାର ସ୍ତର ସ୍ତର ହୋଇ କୁଞ୍ଚିତ ହୋଇଥିବା ଚମଡ଼ା ଥିଲା ଧଳା, କେବଳ ମେରୁହାଡ଼ ନିକଟରେ ତାହା ମେଞ୍ଚା ମେଞ୍ଚା କଳାରଙ୍ଗ ଦ୍ୱାରା ଚିତ୍ରିତ ହୋଇଥିଲା । କିନ୍ତୁ ତାର ପାଦ ଆମେ ଦେଖିପାରିଲୁଁ ନାହିଁ । ତାର ପ୍ରାୟ ମସ୍ତିଷ୍କହୀନ ମୁଣ୍ଡର ଆକାର, ଚର୍ବି ବିହୀନ ବେକ, ଲାଳଯୁକ୍ତ ସର୍ବଭକ୍ଷକ ମୁହଁ, କ୍ଷୁଦ୍ର ନାକପୁଡ଼ା ଏବଂ ମୁଦ୍ରିତ ଆଖି ଆମେ ଦେଖି ପାରିଲୁଁ । (ଗୃଧ୍ର ଗୋରୁଗୁଡ଼ିକ ସୂର୍ଯ୍ୟତେଜ ସମକ୍ଷରେ ବରାବର ସେମାନଙ୍କର ଆଖି ବନ୍ଦକରି ରହନ୍ତି ।) ତାହା ଚର୍ବଣ କରିବାକୁ ଆଉ ଥରେ ପାଟି ଖୋଲିବାରୁ ଆମେ ଗୋଟିଏ ବିରାଟ, ଲାଲ ମୁହଁଗହ୍ୱର କ୍ଷଣିକ ଲାଗି ଦେଖି ପାରିଲୁଁ । ସେହି ଗହ୍ୱରର ନିଃଶ୍ୱାସ ଆମେ ଅନୁଭବ କରି ପାରିଲୁଁ । ତାପରେ ସେଇ ବିକଟ ଜନ୍ତୁ ଗୋଟିଏ ଜାହାଜ ପରି ଝୁଙ୍କି ପଡ଼ିଲା । ଏବଂ ତାର ମୋଟା ଚମଡ଼ା ପରି ଗ୍ରୀଲକୁ ଝାଙ୍ଗ ଝାଙ୍ଗ କରି ମାଟି ଉପରେ ଘୁଷୁରିଗଲା, ଆଉଥରେ ଗଡ଼ିଗଲା ଏବଂ ଏହିପରି ଭାବରେ ଆମପାଖ ଦେଇ ଚାଲିଗଲା । ତାହା ଗଲାବେଳେ ଦୁଇପାଖର କଣ୍ଟାବୁଦାକୁ ମାଡ଼ି ମକଚି ଦେଇ ଯାଉଥାଏ । ଅତି ଶୀଘ୍ର ତାହା ନିଘଞ୍ଚ ଜଙ୍ଗଲ ଭିତରେ କୁଆଡ଼େ ଲୁଚିଗଲା । ଏହାପରେ ଦୂରରେ ଆଉ ଗୋଟେ ଗୃଧ୍ରଗୋରୁ ଦେଖାଗଲା, ପୁଣି ଆଉ ଗୋଟେ, ତାପରେ କ୍ଷଣକ ଲାଗି ଗୋଟିଏ ଗୃଧ୍ରକ ଅର୍ଥାତ ଚନ୍ଦ୍ରର ବାସିନ୍ଦା, ଆମର ଦୃଷ୍ଟିଗୋଚର ହେଲା । ସେ ବୋଧହୁଏ ଏହି ଚଳନ୍ତା ମାଂସପିଣ୍ଡ ଗୁଡ଼ିକୁ ତାଙ୍କର ଚାରଣ ଭୂମି ଆଡ଼କୁ ତଡ଼ି ନେଉଥିଲା । ତାକୁ ଦେଖିଲାକ୍ଷଣି କମ୍ପିତ ହାତରେ ମୁଁ କେଭରର ପାଦକୁ ଜାକି ଧରିଲି । ସେ ଆମର ଦୃଷ୍ଟିରୁ ଅପସାରିତ ହୋଇଗଲାପରେ ମଧ୍ୟ ଅନେକ ସମୟ ପର୍ଯ୍ୟନ୍ତ ଆମେ ନିର୍ଜୀବ ପରି ପଡ଼ି ରହି ଅପଲକ ଦୃଷ୍ଟିରେ ଚାହିଁ ରହିଲୁଁ ।

ବୃଦ୍ଧ ଗୋରୁଙ୍କ ସହିତ ତୁଳନା କଲେ ସେ ଅତି କ୍ଷୁଦ୍ର ଜୀବ ପରି, ଗୋଟିଏ ସାମାନ୍ୟ ପିମ୍ପୁଡ଼ି ପରି, ଦିଶୁଥିଲା । ତାର ଉଚ୍ଚତା ବୋଧହୁଏ ପାଞ୍ଚ ଫୁଟ୍ ବି ନ ଥିଲା । ସେ ଗୋଟିଏ ଚମତ୍କାରୁଲ୍ୟ ପୋଷାକ ଏପରି ଭାବରେ ପିନ୍ଧିଥିଲା ଯେ ତାହାର ଶରୀରର କୌଣସି ଅନାବୃତ ଅଂଶ ଆମର ଆଖିରେ ପଡ଼ି ନଥିଲା । ଅବଶ୍ୟ, ସେତେବେଳେ ଆମେ ଜାଣି ପାରି ନ ଥିଲୁଁ ଯେ ସେ ଚମତ୍କାର ପୋଷାକ ପିନ୍ଧିଛି । ତେଣୁ ସେତେବେଳେ ଆମେ ତାକୁ ଯେଉଁ ରୂପରେ ଦେଖିଲୁଁ ତାହା ହେଉଛି ଏହି—ଗୋଟିଏ ସମ୍ପୂର୍ଣ୍ଣ, ଚାଣ ଲୋମଯୁକ୍ତ ଜୀବ, କୌଣସି ଜଟିଲ ପୋକ ସହିତ ତାର ଅନେକ ସାମଞ୍ଜସ୍ୟ ଥିଲା, ତାର ଚକ୍‌ଚକ୍ କରୁଥିବା ଘୂର୍ଣ୍ଣିପରି ଶରୀର-ଖୋଳପା ଭିତରୁ ଘୁରୁକ୍‌ଘର ଶୁଣ୍ଡ-ଦୁଇଟି ଏବଂ ଦେହସହିତ ବାଡ଼େଇ ହୋଇ ଝନ୍‌ଝନ୍ ଶବ୍ଦକରୁଥିବା ଗୋଟିଏ ବାହୁ ବାହାରକୁ ବାହାରିଥିଲା । ତାରମୁଣ୍ଡ ବୃହତ୍ ବହୁକର୍ଣ୍ଣକଯୁକ୍ତ ଶିରସ୍ତ୍ରାଣ ଦ୍ୱାରା ଆବୃତ ହୋଇଥିଲା—ଆମେ ପରେ ଜାଣି ପାରିଲୁଁ ଯେ ଏହି କର୍ଣ୍ଣ-ଗୁଡ଼ିକ ଅମାନିଆ ବୃଦ୍ଧ ଗୋରୁଙ୍କୁ ଫୋଡ଼ିବା ପାଇଁ ସେ ବ୍ୟବହାର କରୁଥିଲା —ଏବଂ ତାର ଆଖିରେ ଥିଲା କଳା କାଚର ବଡ଼ ଚଷମା ହଳେ । ସେଇ ଚଷମା ମୁହଁର ଦୁଇକଡ଼କୁ ରହିଥିବାରୁ ତାର ଧାତୁନିର୍ମିତ ମୁଖା ଦ୍ୱାରା ଆବୃତ ମୁହଁ ଠିକ୍ ତଡ଼ିଙ୍କର ମୁହଁ ପରି ଦିଶୁଥିଲା । ତାର ବାହୁ ଶରୀର-ଖୋଳପାଠାରୁ ଅଧିକ ଦୂର ଲମ୍ବି ନ ଥିଲା, ଏବଂ ସେ ଗ୍ରେଟଗ୍ରେଟ ଗୋଡ଼ ସାହାଯ୍ୟରେ ଚାଲୁଥିଲା । ସେହି ଗୋଡ଼ ଗରମ ପୋଷାକ ଦ୍ୱାରା ଆବୃତ ହୋଇଥିଲେ ମଧ୍ୟ ଆମର ପାର୍ଥିବ ଚକ୍ଷୁରେ ତାହା ଅତଶସ୍ତ ସରୁ ଦିଶୁଥିଲା । ତାର ଜଙ୍ଘ ଥିଲା ଅତି ଖର୍ବ, ମଝି ଗୋଡ଼ ଥିଲା ଖୁବ୍ ଲମ୍ବ, ଏବଂ ପାଦ ଥିଲା କ୍ଷୁଦ୍ର ।

ତାର ଭାରୀ ପୋଷାକ ସତ୍ତ୍ୱେ ସେ ପୃଥିବୀର ଲୋକଙ୍କ ତୁଳନାରେ ଦେଖିଲେ, ଖୁବ୍ ଲମ୍ବ ଲମ୍ବ ପାଦ ପକେଇ ଚାଲୁଥିଲା । ଏବଂ ତାର ଝନ୍‌ଝନ୍ କରୁଥିବା ହାତ ସବୁବେଳେ ନ୍ୟସ୍ତ ହୋଇ ରହିଥିଲା । ଯେଉଁ ମୁହୂର୍ତ୍ତିକ ପାଇଁ ଆମେ ତାକୁ ଦେଖି ପାରିଲୁଁ ସେ ସମୟରେ ତାର ଚାଲିର ଭଙ୍ଗୀରୁ ଜଣାପଡ଼ୁଥିଲା ସେ ଖୁବ ତରତର ହେଉଛି ଏବଂ ରାଗିଯାଇଛି । ସେ ଆମର

ଦୃଷ୍ଟିରୁ ଅନ୍ତର୍ହିତ ହୋଇଯିବାପରେ ଆମେ ଶୁଣିପାରିଲୁଁ ଗୋଟିଏ ସ୍ୱାନ୍ତ୍ର-ଗୋରୁର ରାବ ହଠାତ୍ ଯନ୍ତ୍ରଣା ଜନିତ ଚିତ୍କାରରେ ପରିଣତ ହେଲା ଏବଂ ତାପରେ ତାର ଗଡ଼ବୁଡ଼ିର ଶବ୍ଦ ଶୁଣାଗଲା । କ୍ରମେ କ୍ରମେ ସେହି ରାବ ଦୂରରୁ ଦୂରକୁ ଚାଲିଗଲା ଏବଂ ଶେଷରେ ବନ୍ଦ ହୋଇଗଲା, ଯେପରିକି ସେମାନେ ଯେଉଁ ଗୋଚାରଣ ଭୂମି ଖୋଜୁଥିଲେ ତାହା ମିଳିଗଲା ।

ଆମେ କାନ ଡେରି ରହିଲୁଁ । କିଛି ସମୟ ପର୍ଯ୍ୟନ୍ତ ଚନ୍ଦ୍ର ଜଗତ୍ ସମ୍ପୂର୍ଣ୍ଣ ନିସ୍ତବ୍ଧ ହୋଇ ରହିଲା । କିନ୍ତୁ ଆହୁରି କିଛି ସମୟ ଯିବା ପରେ ଆମେ ଆମର ହଜି ଯାଇଥିବା ଗୋଲକଟି ଖୋଜିବା ପାଇଁ ପୁଣି ଘୁରୁଣ୍ଡିବାକୁ ଆରମ୍ଭ କଲୁଁ ।

ପୁଣି ଯେତେବେଳେ ଆମେ ସ୍ୱାନ୍ତ୍ର ଗୋରୁଙ୍କୁ ଦେଖିଲୁଁ, ସେତେବେଳେ ସେମାନେ ଆମଠାରୁ କିଛି ଦୂରରେ ଗୋଟିଏ ଭଙ୍ଗା ପଥର ଗଦା ନିକଟରେ ରହିଥିଲେ । ଯେଉଁ ପଥରଗୁଡ଼ିକ ଅପେକ୍ଷାକୃତ କମ୍ ସିଧାସଳଖ ହୋଇ ପଡ଼ିରହିଥିଲା ସେଗୁଡ଼ିକର ଉପରିଭାଗରେ ଶିଉଳି ପରି ଏକ ପ୍ରକାରର ଶାଗୁଆ ଉଦ୍ଭିଦ ମେଞ୍ଚା ମେଞ୍ଚା ହୋଇ ବହଳ ଭାବରେ ବଢ଼ିଥିଲା । ଏହି ଜନ୍ତୁଗୁଡ଼ିକ ସେହି ଉଦ୍ଭିଦ ଉପରେ ଚରୁଥିଲେ । ସେମାନଙ୍କୁ ଦେଖିଲାକ୍ଷଣି ଆମେ ଯେଉଁ ଲମ୍ବ ଲମ୍ବ ଘାସ ଭିତର ଦେଇ ଯାଉଥିଲୁଁ ତାରି ଧାରରେ ଅଟକି ଗଲୁଁ ଏବଂ ସେମାନଙ୍କୁ ଚାହିଁ ରହିଲୁଁ । ଆଉ ଗୋଟିଏ ସ୍ୱାନ୍ତ୍ରକୁ ଦେଖିବା ଆଶାରେ ଚାରିଆଡ଼େ ଅନାଇଲୁଁ । ସ୍ୱାନ୍ତ୍ର ଗୋରୁଗୁଡ଼ିକ ସେମାନଙ୍କର ଖାଦ୍ୟ ପାଖରେ ବିଶାଳକାୟ ଗଣ୍ଡାପରି, ଚର୍ବିବୋଳା ବଡ଼ ବଡ଼ ଜାହାଜ ପରି ପଡ଼ିରହିଥିଲେ ଏବଂ ପେଟୁଙ୍କ ପରି ସଡ଼୍ ସଡ଼୍ କରି ଗିଳୁଥିଲେ, ଜଣା ପଡ଼ୁଥିଲା ଯେପରିକି ସେମାନେ ଅତିରିକ୍ତ କ୍ଷୁଧାରେ କାନ୍ଦି ପକାଉଛନ୍ତି । କେବଳ ସେମାନଙ୍କର ସ୍ଥୂଳତା ଯୋଗୁଁ ହିଁ ସେମାନେ ଏଡ଼େ ବିକଟ ଦିଶୁ-ଥିଲେ । ସେମାନେ ଏଡ଼େ କୁତ୍ସିତ ଓ ଜଡ଼ ପରି ଦିଶୁଥିଲେ ଯେ ନିହାତି ଅଳସୁଆ ବଳଦକୁ ମଧ୍ୟ ସେମାନଙ୍କର ତୁଳନାରେ ଚଞ୍ଚଳତାର ଆଦର୍ଶ ବୋଲି କୁହାଯିବ । ସେମାନଙ୍କର ମୁଦା ଆଖି, ପାକୁଳି କରୁଥିବା ବ୍ୟସ୍ତ

କୁତ୍ସିତ ପ୍ରକୃତି ଏବଂ ରୋମହର୍ଷଣର ଲୋକଙ୍କ ଶବ୍ଦ ମିଶି ଏପରି ଗୋଟିଏ ସର୍ବସୁଲଭ ଆନନ୍ଦର ଚିତ୍ର ସୃଷ୍ଟି କରୁଥିଲା ଯେ ତାହା ଆମର ଖାଲି ପେଟକୁ ଅତ୍ୟନ୍ତ ଉତ୍ତେଜିତ କଲା ।

ଅତିଶୀଘ୍ର ବିରକ୍ତ ସହିତ କେଉଭର କହିଲା, "ଘୃଣ୍ୟ! ନିନ୍ଦନୀୟ ଘୃଣ୍ୟ !" କ୍ରୋଧ ଓ ହିଂସା ମିଶ୍ରିତ ଜ୍ୱଳନ୍ତ ଆଖିରେ ଥରେ ସେମାନଙ୍କ ଆଡ଼େ ଚାହିଁ ସେ ଆମର ଡାହାଣ ଦିଗରେ ଥିବା ବୁଦା ଭିତର ଦେଇ ଗୁରୁଣ୍ଡି ଗୁରୁଣ୍ଡି ଚାଲିଗଲା । ଏହି ମେଞ୍ଚା ମେଞ୍ଚା ଉଦ୍ଭିଦ ଗୁଡ଼ିକ ମଣିଷ ଖାଇବାର ସମ୍ପୂର୍ଣ୍ଣ ଅନୁପଯୁକ୍ତ ବୋଲି ସ୍ଥିର କରିବା ପର୍ଯ୍ୟନ୍ତ ମୁଁ ସେଠାରେ ଛିଡ଼ା ହୋଇରହିଲି, ତାପରେ ଦାନ୍ତରେ ଖଣ୍ଡେ ଘାସ ଚୋବେଇ ଚୋବେଇ କେଉଭରର ପଛେ ପଛେ ଗୁରୁଣ୍ଡି ଗୁରୁଣ୍ଡି ଯିବାକୁ ଲାଗିଲି ।

କିଛି ସମୟ ପରେ ଅତି ନିକଟରେ ଗୋଟିଏ ବୃଦ୍ଧଙ୍କୁ ଦେଖି ଆମର ଚଳ ବନ୍ଦ ହୋଇଗଲା । ଏଥର ଆମେ ତାଙ୍କୁ ଅଧିକ ପୁଙ୍ଖାନୁପୁଙ୍ଖ ଭାବେ ଲକ୍ଷ୍ୟକରି ପାରିଲୁଁ । ବର୍ତ୍ତମାନ ଆମେ ଜାଣି ପାରିଲୁଁ ଯେ ବୃଦ୍ଧଙ୍କର ଆବରଣ ପ୍ରକୃତରେ ଗୋଟିଏ ପୋଷାକ ମାତ୍ର, ତାହା ତାହାର ଦୈହିକ-ଖୋଳପା ନୁହେଁ । ଆମେ ଆଗରୁ ଯେଉଁ ବୃଦ୍ଧଙ୍କୁ ଦେଖିଥିଲୁଁ, ଏହି ବୃଦ୍ଧଙ୍କଟି ମଧ୍ୟ ସେହିପରି ପୋଷାକ ପିନ୍ଧିଥିଲା । ପ୍ରଭେଦ ଏତିକି ଥିଲା ଯେ ଏହାର ବେକରୁ ପଟି ପରି କୌଣସି ଜିନିଷର ଶେଷଭାଗ ବାହାରକୁ ଲମ୍ବିଥିଲା । ସେ ଗୋଟିଏ ଉଚ୍ଚ ପଥର ଉପରେ ଛିଡ଼ା ହୋଇ ତାର ମୁଣ୍ଡ ଏ-ଦିଗରୁ ସେଦିଗକୁ ହଲାଉଥିଲା, ଯେପରିକି ଅନ୍ୱେଷଣ ଗର୍ହିତ ଭଳି ଭାବରେ ପର୍ଯ୍ୟବେକ୍ଷଣ କରୁଥିଲା । ହଲଚଲ ହେଲେ କାଳେ ତାର ଦୃଷ୍ଟି ଆକର୍ଷଣ କରିବୁଁ, ସେଥିପାଇଁ ଆମେ ନିଶ୍ଚଳ ଭାବରେ ପଡ଼ିରହିଲୁଁ । କିଛି ସମୟ ପରେ ସେ ଚାଲିପଡ଼ିଲା ଏବଂ ଅନ୍ତର୍ଦ୍ଧାନ ହୋଇଗଲା ।

ଏହାପରେ ଅନ୍ଧାର ଗୋଟିଏ ଚନ୍ଦ୍ରଗୋଲୁପଲ ପାଖରେ ଆମେ ପହଞ୍ଚିଲୁଁ । ସେମାନେ ଗୋଟିଏ ଖାଲ ଭିତରେ ପଶି ରଡ଼ି ଛାଡ଼ୁଥିଲେ । ସେଠାରୁ ଯାଇ ଆମେ ଯେଉଁ ସ୍ଥାନରେ ପହଞ୍ଚିଲୁ । ସେଠାରେ ମାଟିତଳୁ

କ୍ରମାଗତ ଶବ୍ଦ ଶୁଭୁଥିଲା, ଯନ୍ତ୍ରର ଭଟ୍ ଭଟ୍ ଶବ୍ଦ ଯେପରି କି ଗୋଟିଏ ବିରାଟ କାରଖାନା ଠିକ୍ ମାଟି ତଳକୁ ଲାଗି ରହିଛି । ସେହି ସ୍ଥାନର କିଛି ଦୂରରେ ଗୋଟିଏ ବିସ୍ତୃତ ଖୋଲା ଜାଗାର ଧାରରେ ଆମେ ପହଞ୍ଚିଲୁ । ସେହି ଖୋଲା ଯାଗା ସମ୍ପୂର୍ଣ୍ଣ ସମତଳ ଥିଲା ଏବଂ ତାହାର ବ୍ୟାସ ପ୍ରାୟ ଦୁଇ ଶହ ଗଜ ଥିଲା । ସେହି ଶବ୍ଦ ସେଠାରେ ମଧ୍ୟ ଲାଗି ରହିଥିଲା । ତାର କିନାରାରୁ ମାତ୍ର ଆସିଥିବା କେତେଗୋଟି ଶିଳାବାକ ଉଦ୍ଭିଦଙ୍କୁ ଛାଡ଼ିଦେଲେ ସେଇ ସ୍ଥାନ ପ୍ରାୟ ଅନାବୃତ ଥିଲା । ତାହା ଧୂଳି ବୋଳା ହେଲାପରି ଦିଶୁଥିଲା ଏବଂ ତାର ରଙ୍ଗ ଥିଲା ହଳଦିଆ । ଏହି ସ୍ଥାନ ପାର ହୋଇଯିବାକୁ ଆମର ଭୟ ହେଉଥିଲା, କିନ୍ତୁ କଣ୍ଟାବୁଦା ଅପେକ୍ଷା ଏଠାରେ ଆମର ଗୁରୁଣ୍ଡିବାକୁ କମ ଅସୁବିଧା ହେବ ବୋଲି ବୋଧ ହେଉଥିବାରୁ ଆମେ ଆଣ୍ଠୁମାଡ଼ି ବସି ଅତି ସାବଧାନତା ସହିତ ସେହି ସ୍ଥାନର ଧାର ଦେଇ ଗୁରୁଣ୍ଡିବାକୁ ଲାଗିଲୁ ।

କିଛି ସମୟ ପାଇଁ ତଳୁ ଆସୁଥିବା ଶବ୍ଦ ବନ୍ଦ ହୋଇଗଲା ଏବଂ ବର୍ଦ୍ଧନଶୀଳ ଗଛମାନଙ୍କର କମ୍ପନର କ୍ଷୀଣ ଶବ୍ଦ ଛଡ଼ା ଚତୁର୍ଦ୍ଦିଗ ସମ୍ପୂର୍ଣ୍ଣ ନିସ୍ତବ୍ଧ ହୋଇଗଲା । ତାପରେ ଅକସ୍ମାତ୍ ଗୋଟିଏ ଉଚ୍ଚ କୋଳାହଳ ଆରମ୍ଭ ହେଲା । ଏହା ପୂର୍ବରୁ ଏତେ ନିକଟରେ ଏପରି ତୀକ୍ଷ୍ଣ ଓ ଉଚ୍ଚ କୋଳାହଳ ଆମେ ଶୁଣି ନ ଥିଲୁ । ତାହା ନିଶ୍ଚୟ ମାଟିତଳୁ ଆସୁଥିଲା । ଆମର ସହଜ ପ୍ରବୃତ୍ତିବଶତଃ ଆମେ ଯେତେଦୂର ସମ୍ଭବ ଚିତ୍ ହୋଇ ପଡ଼ିଗଲୁଁ ଏବଂ ଚଟ୍‌କିନା ପାଖର ଜଙ୍ଗଲ ଭିତରକୁ ପଶିଯିବା ପାଇଁ ପ୍ରସ୍ତୁତ ହୋଇ ରହିଲୁଁ । ପ୍ରତ୍ୟେକ ଧକ୍କା ଓ ଢିପ୍ ଢିପ୍ ଶବ୍ଦ ଦ୍ୱାରା ଆମର ଦେହ ଭିତରଟା କମ୍ପି ଉଠିଲା ପରି ମନେ ହେଉଥିଲା । ଏହି ଢିପ୍ ଢିପ୍ ଶବ୍ଦ କ୍ରମଶଃ ଉଚ୍ଚତର ହେବାକୁ ଲାଗିଲା ଏବଂ ସେହି ଅନିୟମିତ କମ୍ପନ ବଢ଼ିବାକୁ ଲାଗିଲା । ପରିଶେଷରେ ସମଗ୍ର ଚନ୍ଦ୍ରଜଗତ୍ ଆନ୍ଦୋଳିତ ଓ ସ୍ପନ୍ଦିତ ହେଲାପରି ବୋଧ ହେଲା ।

ଫିସ୍‌ଫିସ୍ କରି କେଭର୍ କହିଲା, "ଲୁଚପଡ଼"; ଏବଂ ମୁଁ ବୁଦା ଆଡ଼କୁ ଯିବାକୁ ବାହାରିଲି ।

ଠିକ୍ ସେହି ମୁହୂର୍ତ୍ତରେ କର୍କଶ ଆବାଜ ପରି ଗୋଟିଏ ଶବ୍ଦ ଶୁଭିଲା । ତାପରେ ଯେଉଁ ଘଟଣା ଘଟିଲା ତାହାର ଚିତ୍ର ଏପର୍ଯ୍ୟନ୍ତ ମୁଁ ଦୁଃସ୍ୱପ୍ନରେ ଦେଖୁଛି । ମୁଁ କେଭର୍‌ର ମୁହଁ ଆଡ଼କୁ ଚାହିଁବା ପାଇଁ ମୋର ମୁଣ୍ଡ ଘୂରେଇ ଥିଲି ଏବଂ ସେହି ସଙ୍ଗେ ସଙ୍ଗେ ମୋର ହାତଟି ଆଗକୁ ଲମ୍ବେଇ ଦେଇଥିଲି । କିନ୍ତୁ ମୋର ହାତ ମାଟିରେ ବାଜିଲା ନାହିଁ ! ତାହା ହଠାତ୍ ଅତଳ ଗହ୍ୱର ଭିତରକୁ ପଶିଗଲା !

ମୋର ଗୁଡ଼ା କୌଣସି କଠିଣ ବସ୍ତୁ ଉପରେ ବାଡେଇ ହୋଇଗଲା । ମୋ ସମ୍ମୁଖରେ ଗୋଟିଏ ଗଭୀର ଗହ୍ୱର ହଠାତ୍ ଉନ୍ମୁକ୍ତ ହୋଇଯାଇଥିଲା । ତାହାର ଧାରରେ ଓଠ ରଖି ମୁଁ ପଡ଼ିରହିଥିଲି ଏବଂ ମୋର ହାତ ସିଧା ଭାବରେ ଶୂନ୍ୟ ଭିତରକୁ ଲମ୍ବି ଯାଇଥିଲା । ସେଇ ସମତଳ ଗୋଲାକାର ଜାଗାଟି କେବଳ ଗୋଟିଏ ପ୍ରକାଣ୍ଡ ଢାଙ୍କୁଣୀ ଥିଲା । ତାହା ଗୋଟିଏ ବିରାଟ ଗହ୍ୱରକୁ ଢାଙ୍କି ରଖିଥିଲା । ବର୍ତ୍ତମାନ ତାହା ସେହି ଗହ୍ୱର ମୁଖରୁ ଧୀରେ ଧୀରେ ଘୁଞ୍ଚିଯାଇ ତାକୁ ଗ୍ରହଣ କରିବା ପାଇଁ ଯେଉଁ ଫାଟ ତିଆରି କରାଯାଇଥିଲା ତାହାର ଭିତରକୁ ପଶିଯାଉଥିଲା ।

କେଭର ଯଦି ମୋତେ ସାହାଯ୍ୟ କରି ନ ଥାନ୍ତା ତାହାହେଲେ ବୋଧ ହୁଏ, ମୁଁ ସେହି କନାରା ଉପରେ ଝୁଲି, ତଳେ ଥିବା ବିରାଟ ଗହ୍ୱର ଭିତରକୁ ଚାହିଁ କାଠପରି ପଡ଼ି ରହିଥାନ୍ତି, ଏବଂ ପରିଶେଷରେ ଫାଟର ଦାନ୍ତ ମତେ ଗୁଣ୍ଡି ନେଇ ସେହି ଗହ୍ୱର ଭିତରକୁ ଫୋପାଡ଼ି ଦେଇଥାନ୍ତା । ଯେଉଁ ଚମକ ପାଇ ମୁଁ ଜଡ଼ ପାଲଟି ଯାଇଥିଲି, କେଭର ସେପରି କୌଣସି ଚମକ ପାଇ ନଥିଲା । ଢାଙ୍କୁଣୀଟି ପ୍ରଥମେ ଯେତେବେଳେ ଖୋଲିଲା, ସେତେବେଳେ ସେ ଧାରର କିଛି ଦୂରରେ ଥିଲା, ତେଣୁ ମୋର ନିଃସହାୟ ବିପଦଗ୍ରସ୍ତ ଅବସ୍ଥା ଦେଖିପାରି ମୋର ଗୋଡ଼ ଦୁଇଟି ଧରି ପଛକୁ ଭିଡ଼ି ନେଲା । ମୁଁ ସିଧା ଭାବରେ ବସିଲି, କିଛିକ୍ଷଣ ଗୁରୁଣ୍ଡି ଗୁରୁଣ୍ଡି ଧାରରୁ ଦୂରକୁ ଗୁଞ୍ଜିଗଲି, ତାପରେ ଧଡ଼ପଡ଼ କରି ଛିଡ଼ା ହୋଇପଡ଼ି କେଭରର ପଛେ ପଛେ ଦୌଡ଼ିଲି ଏବଂ ସେହି ଥରଥର କରୁଥିବା କମ୍ପିତ ଧାତୁଖୋଲଟି ପାରି ହୋଇଗଲି ।

ସେହି ଖୋଲ କ୍ରମେ କ୍ରମେ ଅଧିକ ବେଗରେ ମେଲି ହୋଇ ଯାଉଥିଲା । ମୁଁ ଦୌଡ଼ିଲାବେଳେ ମୋର ସମ୍ମୁଖସ୍ଥ ବୁଦାଗୁଡ଼ିକ ନଇଁ ପଡ଼ୁଥିଲେ ।

ଆଉ ଟିକେ ଡେରି କରିଥିଲେ ମୋର ଅବସ୍ଥା ସାଂଘାତିକ ହୋଇ ଉଠିଥାନ୍ତା । କେଭର୍ କ୍ରମଶ ବୁଦାଗୁଡ଼ିକ ଭିତରେ ଅନ୍ତର୍ହିତ ହୋଇଗଲା, ଏବଂ ମୁଁ ତା ପଛେ ପଛେ ଯାଇ ଛୁଡ଼ା ହେଲାକ୍ଷଣି ସେହି ବିକଟାକାର ଢଙ୍କୁଣୀ ଝଣକର ଶବ୍ଦକରି ତା ଜାଗାରେ ଲାଖିଗଲା । ଅନେକ ସମୟ ପର୍ଯ୍ୟନ୍ତ ଆମେ ବେଦମ୍ ହୋଇ ପଡ଼ିରହିଲୁଁ, ସେହି ବୃହତ୍ ଗହ୍ୱର ନିକଟକୁ ଯିବାପାଇଁ ଆମର ସାହସ ହେଲା ନାହିଁ ।

କିନ୍ତୁ ଶେଷରେ ଖୁବ୍ ସତର୍କତା ସହିତ ଟିକେ ଟିକେ କରି ଆମେ ଅଗ୍ରସର ହେଲୁଁ ଏବଂ ଗହ୍ୱର ଭିତରକୁ ଚାହିଁବା ପାଇଁ ଗୋଟିଏ ସୁବିଧା ସ୍ଥାନରେ ଲୁଚି ରହିଲୁଁ । ସେହି ବିବର ଭିତରେ ଯେଉଁ ପବନ ବହୁଥିଲା ତାହାର ଜୋରରେ ଆମ ଚାରିପଟେ ଥିବା ବୁଦାଗୁଡ଼ିକ ଦୋହଲୁଥିଲେ ଓ କଟ୍‌କଟ୍ ଶବ୍ଦ କରୁଥିଲେ । ପ୍ରଥମେ ଦୁର୍ଭେଦ୍ୟ ଅନ୍ଧକାର ଭିତରକୁ ପ୍ରସାରିତ ହୋଇଥିବା ଚକ୍‌ଚକ ସଳଖ କାନ୍ଥଗୁଡ଼ିକ ଛଡ଼ା ଆମେ ଆଉ କିଛି ଦେଖି ପାରିଲୁ ନାହିଁ । ତାପରେ ଅନେକ ଗୁଡ଼ିଏ ଶ୍ରେଷ୍ଠ ଶ୍ରେଷ୍ଠ କ୍ଷୀଣ ଆଲୁଅ ଇଆଡ଼େ ସିଆଡ଼େ ଯାଉଥିବାର ଆମେ କ୍ରମେ କ୍ରମେ ବାରିପାରିଲୁଁ ।

କିଛି ବେଳଯାଏଁ ସେଇ ପ୍ରକାଣ୍ଡ ଗହ୍ୱରର ରହସ୍ୟ ଆମକୁ ଏପରି ଅଭିଭୂତ କରି ଦେଇଥିଲା ଯେ ଆମେ ଆମ ଗୋଲକର କଥା ମଧ୍ୟ ଭୁଲି-ଗଲୁଁ । କ୍ରମଶଃ ଆମର ଆଖି ଅନ୍ଧକାର ପ୍ରତି ଅଧିକ ଅଭ୍ୟସ୍ତ ହୋଇଯିବାରୁ ସେହି ସବୁ ଆଲୋକ ରେଖା ମଝିରେ ମଝିରେ କେତେଗୋଟି କ୍ଷୁଦ୍ର କ୍ଷୁଦ୍ର ଝାପସା ଚଞ୍ଚଳମୂର୍ତ୍ତି ଇଆଡ଼େ ସିଆଡ଼େ ଯାଉଥିବାର ଆମେ ବାରି ପାରିଲୁଁ । ଆମେ ବିସ୍ମୟ ଓ ଅବିଶ୍ୱାସ ସହିତ ଚାହିଁ ରହିଲୁଁ । ଆମେ ଏସବୁ ଏତେ ଅଳ୍ପ ବୁଝି ପାରିଥିଲୁଁ ଯେ, ସେ ବିଷୟରେ କହିବା ପାଇଁ କୌଣସି କଥା ଖୋଜି ପାଇଲୁ ନାହିଁ । ଏପରି କୌଣସି ଜିନିଷ ଆମେ ବାରିପାରିଲୁ ନାହିଁ ଯାହାକି ସେହି ଝାପସା ଆକୃତି ଗୁଡ଼ିକର ଅର୍ଥ ନିଶ୍ଚୟ କରିବାରେ ଆମକୁ ସାହାଯ୍ୟ କରିବ ।

ମୁଁ ପଗ୍ଋରିଲି, "ଏହା, କଣ ହୋଇପାରେ ? କଣ ହୋଇପାରେ ?"

କେଭର କହିଲା. "କ'ନମୀଣ' କୁଶଳତା !······ସେମାନେ ରାତରେ ଏଇ ଗହ୍ୱର ଗୁଡିକ ଭିତରେ ରହୁଥିବେ ଏବଂ ଦିନବେଳେ ଉପରକୁ ବାହାରି ଆସୁଥିବେ ।"

ମୁଁ କହିଲି, "କେଭର ! ଏମାନେ କଣ—ମାନେ—ତାହା କଣ ମଣିଷପରି କୌଣସି ଜୀବ ?"

"ଆମେ ଯାହାକୁ ଦେଖିଲୁଁ ସେଇଟା ମଣିଷ ନୁହେଁ ।"

"ଆମେ କୌଣସି ସମ୍ଭାବନାକୁ ଆଡେ଼ଇ ଦେବା ଠିକ୍ ହେବ ନାହିଁ ।"

"ଆମେ ଗୋଲ୍‌କଟି ନ ପାଇବା ପର୍ଯ୍ୟନ୍ତ କିଛୁ କରିବା ଠିକ୍ ହେବ ନାହିଁ ।"

"ଆମେ ଗୋଲକଟି ନ ପାଇବା ପର୍ଯ୍ୟନ୍ତ କିଛୁ କରି ପାରିବା ନାହିଁ ।"

ସେ ତଣ୍ଟିରେ ଏକ ଅଦ୍ଭୁତ ଶବ୍ଦ କରି ମୋ କଥାରେ ହଁ ଭରିଲା ଏବଂ ଅଗ୍ରସର ହେବାକୁ ପ୍ରସ୍ତୁତ ହେଲା । କିଛି ସମୟ ପର୍ଯ୍ୟନ୍ତ ତାର ଗ୍ଭରିଆଡେ଼ ଆଖି ଟେକ ଅନେଇଲା, ଗୋଟିଏ ଦୀର୍ଘ ନିଃଶ୍ୱାସ ତ୍ୟାଗ କଲା ଏବଂ ଗୋଟିଏ ଦିଗ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କଲା ; ଆମେ ଜଙ୍ଗଲ ଭିତର ଦେଇ ଯିବାକୁ ଲାଗିଲୁଁ । କିଛି ସମୟ ପର୍ଯ୍ୟନ୍ତ ଆମେ ଦୃଢ଼ତା ସହିତ ଗୁରୁଣ୍ଡିବାକୁ ଲାଗିଲୁଁ, କିନ୍ତୁ ତାପରେ ଆମର ଗତି ଶିଥିଳ ହୋଇଆସିଲା । ଅଳ୍ପ ସମୟ ପରେ, ଆମେ ବହଳିଆ ବାଇଗଣୀ ରଙ୍ଗର ଉଦ୍ଭିଦଗୁଡିକ ଭିତର ଦେଇ ଯାଉଥିବାବେଳେ ଗୋଟିଏ ମଡମଡ଼ ଶବ୍ଦ ଶୁଭିଲା ଏବଂ ଆମ୍ଭର ଗ୍ଭରିଆଡେ଼ ଚିତ୍କାର ଶୁଭିଲା । ଆମେ ଲାଗି ଲାଗି ପଡି ରହିଲୁ ଏବଂ ଅନେକ ବେଳଯାଏଁ ସେଇ ଶବ୍ଦ ଆମର ଅତି ନିକଟରେ ଯାଆସ କରିବାକୁ ଲାଗିଲା । କିନ୍ତୁ ଏଥର ଆମେ କାହାରିକୁ ଦେଖି ପାରିଲୁ ନାହିଁ । ମୁଁ ଖାଦ୍ୟ ବିନା ଆଉ ଅଧିକ ସମୟ ସମ୍ଭାଳି ପାରିବି ନାହିଁ ବୋଲି କେଭରର କାନରେ ଫୁସ୍‌ଫୁସ୍ କରି କହିବାକୁ ଚେଷ୍ଟାକଲି । କିନ୍ତୁ, ମୋର ତଣ୍ଟି ଏତେଦୂର ଶୁଖି ଯାଇଥିଲା ଯେ ଫିସ୍ ଫିସ୍ କରି କହିବା ସମ୍ଭବ ନ ଥିଲା ।

ମୁଁ କହିଲି, "କେଉଁଠାରେ, ମୁଁ ଆଉ ନ ଖାଇ ରହିପାରିବି ନାହିଁ ।"

ତା ମୁହଁରେ ହତାଶାର ଚିହ୍ନ ଫୁଟି ଉଠିଲା । ସେ କହିଲା, "ବର୍ତ୍ତମାନ ସମ୍ଭାଳି ରହିବାକୁ ହିଁ ହେବ ।"

ମୁଁ କହିଲି, "କିନ୍ତୁ ମୁଁ ସମ୍ଭାଳି ପାରିବି ନାହିଁ । ତା ଛଡ଼ା, ମୋର ଓଠ ଆଡ଼େ ଅନାଇ ଦେଖ ।

"ମତେ ମଧ୍ୟ କିଛି ସମୟ ହେଲା ଭାରି ଶୋଷ କରୁଛି ।"

"ଯଦି ସେହି ବରଫରୁ କିଛି ରହି ଯାଇଥାନ୍ତା !"

"ସେ ସବୁ ଉଭେଇ ଗଲାଣି ! ଆମେ ମିନିଟକୁ ଏକତିରିଶ ହିସାବରେ ହିମମଣ୍ଡଳଠାରୁ ଗ୍ରୀଷ୍ମମଣ୍ଡଳକୁ ଗତି କରୁଛୁଁ..........

ମୁଁ ମୋର ହାତକୁ କାମୁଡ଼ିବାକୁ ଲାଗିଲି ।

ସେ କହିଲା, "ଗୋଲକ ! ଗୋଲକ ଛଡ଼ା ଆଉ ଉପାୟ ନାହିଁ ।"

ଆମେ ଆମର ଶିଥିଳ ଶକ୍ତିକୁ ଜାଗ୍ରତ କରି ପୁଣି ବେଗରେ ଗଡ଼ୁଣ୍ଡିବାକୁ ଲାଗିଲୁଁ । ମୋର ଚିନ୍ତା କେବଳ ଖାଇବା ପଦାର୍ଥରେ ବ୍ୟାପୃତ ହୋଇ ରହିଲା । ଶୀତଳ ପାନୀୟର ଫେନିଳ ଶୋଭା ମୋର ଚକ୍ଷୁ ସମକ୍ଷରେ ଭାସି ଉଠିଲା । ବିଶେଷକରି ବସ୍ତୁର ମଦ୍ୟପ୍ରତି ମୋର ମନ ଆକୃଷ୍ଟ ହେଲା । ଯେଉଁ ଖୋଲିଲା ଗ୍ୟାଲନିଆ ବନ୍ଧର ମଦ୍ୟର ଭାଣ୍ଡ ମୋର ଲମ୍ପନେଷ୍ଟିତ ବାସଭବନରେ ପଡ଼ି ରହିଥିଲା, ମୁଁ କେବଳ ତାହାର ସ୍ୱପ୍ନ ଦେଖିବାକୁ ଲାଗିଲି । ତା ଛଡ଼ା ସେହି ଘରେ ଥିବା ମାଂସର ଆଲମାରୀ, ବିଶେଷ କରି ମାଂସଭଜା ଆଉ କଲିଜା ପିଠା—ଲହୁଣୀପକ୍ୱ ନରମ ମାଂସ ଆଉ ସୁଗନ୍ଧ, ବହଳିଆ ଝୋଳ ବୋଳା ମୁଣ୍ଡାମୁଣ୍ଡା କଲିଜାପିଠା—କଥା ମୋର ମନେ ପଡ଼ିଲା । ଅଜିକୁ ଅନ୍ଧ ମୁଁ ଭୋକିଲା ହାଇ ମାରିବାକୁ ଲାଗିଲି । ଆମେ ଗୋଟିଏ ସମତଳ ସ୍ଥାନରେ ପହଞ୍ଚିଲୁଁ । ସେଠି ବିଶାଳକାୟ ପ୍ରବାଳ ପରି ଲାଲ ରଙ୍ଗର ସରସ ଉଦ୍ଭିଦ ବୃକ୍ଷଆଡ଼େ ଗ୍ରୁଇ ହୋଇ ଯାଇଥିଲା । ଆମେ ସେଗୁଡ଼ିକୁ ଦେହରେ ଠେଲିଦେଇ ଗଲାବେଳେ, ସେ ସବୁ ପଟ୍ କରି ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ଯାଉଥିଲେ । ସେହି ଭଙ୍ଗା ଖଣ୍ଡ ଗୁଡ଼ିକର ଉପରଭାଗ

ମୁଁ ଲକ୍ଷ୍ୟ କରି ଦେଖିଲି । ଜିନିଷଟିର ଚେହେରା ପ୍ରକୃତରେ ଖାଇବାର ଉପଯୁକ୍ତ ଥିଲା । ତାପରେ ମୋର ବୋଧହେଲା ସେଗୁଡ଼ିକର ବାସନା ମଧ୍ୟ ଦେଖି ।

ମୁଁ ସେଥିରୁ ଖଣ୍ଡେ ହାତରେ ଧରି ସୁଙ୍ଘି ଦେଖିଲି ।

ଖାଲି ଗଳାରେ ନମ୍ର ସ୍ୱରରେ ମୁଁ ଡାକିଲି, "କେଉର୍" !

ସେ ମୁହଁ କୁଞ୍ଚିତ କରି ମୋ ଆଡେ ଚାହିଁଲା । କହିଲା, "ଖାଅ ନାହିଁ, ଖାଅ ନାହିଁ । ମୁଁ ସେ ଖଣ୍ଡକ ତଳେ ପକେଇ ଦେଲି ଏବଂ ଆମେ ସେଇ କ୍ଷେତ୍ରଭୂମିର ସରସ ଉଦ୍ଭିଦ ଭିତରେ କିଛି ସମୟ ଯାଏଁ ଗୁରୁଣ୍ଡିବାକୁ ଲାଗିଲୁଁ ।

ମୁଁ ପୁଣି ଡାକିଲି, "କେଉର୍, କାହିଁକି ଖାଇବ ନାହିଁ ?"

ସେ ପଛକୁ ନ ଚାହିଁ କହିଲା, "ବିଷ ।"

ଆହୁରି କିଛି ସମୟ ଗୁରୁଣ୍ଡିବା ପରେ ମୁଁ ମୋର ସଂକଳ୍ପ ଠିକ୍ କଲି ।

ମୁଁ କହିଲି, "ଖାଇ ଦେଖେଁ ତ କଣ ହେଉଛି ।"

ସେ ମତେ ବାଧା ଦେବାକୁ ଅଳ୍ପ ବିଳମ୍ବରେ ଇଙ୍ଗିତ କଲା । ସେତେବେଳକୁ ମୁଁ ପାଟିରେ ଭର୍ତ୍ତିକରି ସାରିଲିଣି । ସେ ଆଣ୍ଠୁମାଡ଼ି ବସି ମୋର ମୁହଁକୁ ଲକ୍ଷ୍ୟ କରିବାକୁ ଲାଗିଲା । ତାର ନଜର ମୁହଁ ଅଦ୍ଭୁତ ଭଙ୍ଗୀରେ କୁଞ୍ଚିତ ହୋଇଥିଲା ।

ମୁଁ କହିଲି, "ଏହା ବଢିଆ ଲାଗୁଛି ।"

ସେ ପାଟିକରି କହିଲା, "ହେ ଭଗବାନ୍ !"

କ୍ଷୋଭ ଓ ନାପସନ୍ଦ, ଏଇ ଦୁଇ ଭାବ ମଝିରେ ତାର ମୁଖର ଭଙ୍ଗୀ ପରିବର୍ତ୍ତିତ କରି ସେ ମୋର ପାକୁଳି କରିବା ଲକ୍ଷ୍ୟ କଲା । ତା ପରେ ଆଉ ଲୋଭ ସମ୍ଭାଳି ନପାରି ହଠାତ୍ ବଡ ବଡ଼ ଖଣ୍ଡମାନ ଭାଙ୍ଗି ପାଟିରେ ଭର୍ତ୍ତି କରିବାକୁ ଲାଗିଲା । କିଛି ସମୟ ପର୍ଯ୍ୟନ୍ତ କେବଳ ଗିଳିବା ଛଡ଼ା ଆମର ଆଉ କିଛି କାମ ରହିଲା ନାହିଁ ।

ଜିନିଷଟି ପ୍ରାୟ ଆମ ପୃଥିବୀର ଛତୁପରି ଥିଲା, କିନ୍ତୁ ତାହା ଅଧିକ କୋମଳ ଥିଲା ଏବଂ ଗିଳିଲାବେଳେ ତଣ୍ଟିକୁ ଉଷୁମ କରି ଦେଉଥିଲା ।

ପ୍ରଥମେ ଆମ୍ଭେ ଖାଲି କଲପରି ଖାଇବାର ଆନନ୍ଦ ଟିକକ ଉପଭୋଗ କଲୁଁ, କିନ୍ତୁ କ୍ରମେ କ୍ରମେ ଆମର ରକ୍ତ ଉଷୁମ ହେବାକୁ ଲାଗିଲା ଏବଂ ଓଠ ଓ ଆଙ୍ଗୁଠି ଝିମ୍ ଝିମ୍ କରିବାକୁ ଲାଗିଲା । ତାପରେ ନୂତନ ଓ ବାଜେ କଳ୍ପନା ସବୁ ଆମ ମଗଜ ଭିତରେ ପଶିବାକୁ ଲାଗିଲା ।

ମୁଁ କହିଲି, "ବଢ଼ିଆ ଜିନିଷ । ଅତି ବଢ଼ିଆ ଜିନିଷ ! ଆମ ପୃଥିବୀର ଅତିରିକ୍ତ ଲୋକ ସମୂହଙ୍କ ପାଇଁ ଏହା ଚମତ୍କାର ସ୍ଥାନ । ଆହା, ବିଚରା ଅତିରିକ୍ତ ଲୋକସମୂହ !" ଏହା କହି ମୁଁ ଆହୁରି ବଡ଼ ଖଣ୍ଡିଏ ଭାଙ୍ଗି ପାଟିରେ ପୂରେଇଲି ।

ଚନ୍ଦ୍ରରେ ଏପରି ଉତ୍ତମ ଖାଦ୍ୟ ଅଛି, ଏକଥା ଭାବି ମୋର ହୃଦୟ ଚନ୍ଦ୍ରପ୍ରତି ହିତବାଞ୍ଛା ଓ ସନ୍ତୋଷରେ ଗଦ୍‌ଗଦ୍ ହୋଇ ଉଠିଲା । ମୋର କ୍ଷୁଧାଜନିତ ବିଷାଦ ପରିବର୍ତ୍ତେ ଆସିଲା ଅହେତୁକ ଉଲ୍ଲାସ । ଆଗରୁ ଯେଉଁ ଭୟ ଓ କଷ୍ଟଦ୍ୱାରା ମୁଁ ଦବିଯାଇଥିଲି ତାହା ସମ୍ପୂର୍ଣ୍ଣରୂପେ ତିରୋହିତ ହେଲା । ଆଗେ ଚନ୍ଦ୍ର ମୋ ନିକଟରେ ଥିଲା ଏପରି ଗୋଟିଏ ଗର୍ତ୍ତ, ଯେଉଁଥିରୁ କି ମତେ ଯେ କୌଣସି ଉପାୟରେ ପଳାଇବାକୁ ପଡ଼ିବ, କିନ୍ତୁ ବର୍ତ୍ତମାନ ମୁଁ ଭାବି ଦେଖିଲି, ତାହା ଅଭାବଗ୍ରସ୍ତ ମନୁଷ୍ୟମାନଙ୍କ ପାଇଁ ଆଶ୍ରୟସ୍ଥଳ ରୂପେ ବ୍ୟବହୃତ ହୋଇପାରେ । ସେହି ଛତୁ ଖାଇବା ମାତ୍ରକେ ମୁଁ ଚନ୍ଦ୍ରକ-ମାନଙ୍କ କଥା, ଚନ୍ଦ୍ରବୋଲୁମାନଙ୍କ କଥା, ସେଇ ଠେଙ୍ଗୁଣି ଏବଂ ଗୋଳମାଳ କଥା ସମ୍ପୂର୍ଣ୍ଣରୂପେ ଭୁଲିଗଲି ।

ମୁଁ ଭାବୁଥିବାର ମୋର "ଅତିରିକ୍ତ ଲୋକସମୂହ" କଥା କହିବାରୁ କେଭର୍ ମଧ୍ୟ ସେଇ ଧରଣର କେତୋଟି କଥା ଦ୍ୱାରା ମତେ ସମର୍ଥନ କଲା ! ମୋର ମୁଣ୍ଡ ବୁଲେଇଲା ପରି ବୋଧହେଲା, କିନ୍ତୁ ମୁଁ ମନେ ମନେ ଠିକ୍ କରି ନେଲି, ଏହା ବୋଧହୁଏ ଦୀର୍ଘ ଅନାହାର ପରେ ଖାଇବାର ଉତ୍ତେଜନା ଯୋଗୁଁ ହେଉଛି ।

ମୁଁ କହିଲି, "କେ-ଭ-ର, ତୁ-ମେ ଚ-ମତ୍-କାର ଆ-ବିଷ୍-କାର କ-ରି-ଛ । ଏ-ହା କେ-ବ-ଳ ଆ-ଆଳୁଠାରୁ ନି-କୃଷ୍ଟ ।"

କେଭରର ପଚାରିଲା, "ଏଁ, ଗ-ଅ-ଣ କ-ହନ୍ତି ? ଇ ନ୍ଦ-ର-ର 'ଆ-ବିଷ୍-କା-ର କେ-ର୍ବ-ଲ ଆ-ଆନ୍ତୁ ଠାରୁଁ ହିଁ ଜନ୍-ଳୁଷ୍ଟ ?"

ତାର ସ୍ୱର ହଠାତ୍ ଏପରି ଗଁ ଗଁ ହୋଇଯାଇଥିବାରୁ ଏବଂ ତାର ଉଚ୍ଚାରଣ ଏପରି ଖରାପ ହେଉଥିବାରୁ ମୁଁ କାବା ହୋଇ ତାଆଡ଼େ ଚାହିଁଲି । ଅକସ୍ମାତ୍ ମୋର ମନେ ହେଲା ଯେ ତାକୁ ନିଶା ଧରିଲାଣି, ବୋଧହୁଏ ସେଇ ଫଳଦ୍ୱାରା । ଆହୁରି ମୁଁ ଲକ୍ଷ୍ୟ କଲି ଯେ ସେ ଚନ୍ଦ୍ରକୁ ଆବିଷ୍କାର କରିଛି ବୋଲି କହିବାଦ୍ୱାରା ମହା ଭୁଲ କରୁଛି; ସେ ତ ଚନ୍ଦ୍ରକୁ ଆବିଷ୍କାର କରି ନ ଥିଲା । କେବଳ ଚନ୍ଦ୍ରରେ ପହଞ୍ଚିଥିଲା । ମୁଁ ତାର କାନ୍ଧରେ ହାତ ଥୋଇ ଏଇ କଥାଟା ବୁଝାଇବାକୁ ଚେଷ୍ଟା କଲି, କିନ୍ତୁ ବ୍ୟାପାରଟା ତା ମଗଜରେ ପଶିଲା ନାହିଁ । ତା ଛଡ଼ା ଏ କଥାଟା ବୁଝାଇବା ମଧ୍ୟ ଅତି ଦୁଃସାଧ୍ୟ ଥିଲା । କ୍ଷଣକ ଲାଗି ମୋ କଥା ବୁଝିବାକୁ ଚେଷ୍ଟା କରି ତାପରେ ସେ ତାର ନିଜର ଗୋଟିଏ ମତ ପ୍ରଚାର କରିବାକୁ ବାହାରିଲା । (ମୋର ସନ୍ଦେହ ହେଲା, ସେଇ ଫଳ ଖାଇବା ଦ୍ୱାରା ମୋର ଆଖି ବି କେଭରର ଆଖି ପରି ଧୂଆଁଳିଆ ହୋଇନାହିଁ ତ ?)

ଗୋଟିଏ ଲମ୍ବା ହକ୍କା ଗୁଡ଼ି ସେ ଘୋଷଣା କଲା, "ଆ-ମ-ର ଖା-ଦ୍ୟ ଓ ପା-ନୀ-ୟ ଆ-ମ-କୁ ଗ-ଠ-ନ କ ରେ ।"

ସେ ଏ କଥାଟା ଆହୁରି ଅଟରେ କହିଲା । ମୋର ମସ୍ତିଷ୍କ ସେତେବେଳେ ଖୁବ୍ ସୂକ୍ଷ୍ମ ଅବସ୍ଥାରେ ଥିବାରୁ ତାର କଥାର ପ୍ରତିବାଦ କରିବାକୁ ମୁଁ ସ୍ଥିର କଲି । ସମ୍ଭବତଃ ମୁଁ ଆଲୋଚିତ ବିଷୟ ଗୁଡ଼ିଏ ଶବ୍ଦ ଭିତରୁ ଟିକେ ବକିଲି । କିନ୍ତୁ କେଭର ଅବଶ୍ୟ ମୋର ସବୁକଥା ଠିକ୍ ଭାବରେ ଶୁଣିଲା ନାହିଁ । ସେ ଅଭଦ୍ରଙ୍କ ପରି ମୋ ମୁଣ୍ଡ ଉପରେ ଗୋଟିଏ ହାତ ରଖି ସଳଖ ଭାବରେ ଛିଡ଼ା ହେବାକୁ ଚେଷ୍ଟା କଲା । ଚନ୍ଦ୍ରର ଅଧିବାସୀ ମାନଙ୍କୁ ଆଉ ଭୟ ନ କରି, ଛିଡ଼ା ହୋଇ ଚାରିଆଡ଼େ ଆଖି ବୁଲେଇବାକୁ ଲାଗିଲା ।

ମୁଁ ତାକୁ ବୁଝେଇବାକୁ ଚେଷ୍ଟା କଲି ଯେ ଏପରି କରିବାଟା ଅତି ବିପଦଜନକ, କିନ୍ତୁ କାହିଁକି ବିପଦଜନକ ତାହା ମୁଁ ନିଜେ ପରିଷ୍କାର ଭାବରେ

ବୁଝି ପାରୁ ନ ଥିଲି । "ବିପଦାଜନକ" ଶବ୍ଦଟା କେମିତି କେଜାଣି "ଅନୁଚିତ" ଶବ୍ଦ ସହିତ ମିଶିଯାଇ ହୋଇଯାଇ "ବିପଚିତ" ରୂପେ ମୋ ମୁହଁରୁ ବାହାରି ଆସିଲା । ତାପରେ ସେହି ଦୁଇଟି ଶବ୍ଦକୁ ପୃଥକ୍ ପୃଥକ୍ କରିବାକୁ କିଛି ସମୟ ଚେଷ୍ଟାକରି ମୁଁ ପୁଣି ମୋର ଯୁକ୍ତି ଆରମ୍ଭ କଲି । ପ୍ରଧାନତଃ ଆମ ଦୁଇପାଖେ ଥିବା ଅପରିଚିତ, କିନ୍ତୁ ମନୋଯୋଗୀ ପ୍ରବାଳ-ସ୍ନେହିତ ଉଦ୍ଭିଦ-ମାନଙ୍କୁ ଶୁଣେଇ ମୁଁ ବକ୍ତୃତା ଦେଇ ଚାଲିଲି । ମୁଁ ଖୁବ ଦେଖିଲି ଯେ ଚନ୍ଦ୍ର ଓ ଆଲୁ ଭିତରେ ଏହି ଗୋଳମାଳଟା ଶୀଘ୍ର ଦୂର କରିବା ଆବଶ୍ୟକ ହୋଇ ପଡ଼ୁଛି—କିନ୍ତୁ ସେ ସମ୍ପର୍କରେ କହୁଁ କହୁଁ ମୁଁ ଯୁକ୍ତିରେ ସଠିକ ସଙ୍କୀର୍ଣ ପ୍ରାଧାନ୍ୟ ବିଷୟରେ ଗୋଟିଏ ଲମ୍ବା ଚଉଡ଼ା ବକ୍ତୃତା ଝାଡ଼ିଦେଲି । ମୋର ଦୈହିକ ଅନୁଭବ ଆଉ ସୁବିଧାଜନକ ମନେ ହେଉ ନ ଥିଲା । କିନ୍ତୁ ଏ କଥାଟାକୁ ମୁଁ ଯେତେଦୂର ସମ୍ଭବ ଭୁଲିଯିବାକୁ ଚେଷ୍ଟାକଲି ।

ମୋର ମନ ଘୂରି ଘୂରି ଯାଇ ଉପନିବେଶ ସ୍ଥାପନ କରିବାର ଚିନ୍ତାରେ ହାଜର ହେଲା । ମୁଁ କହିଲି, "ଆ-ମେ-ଏ-ଇ-ଚ-ନ୍ଦ-ରକୁ ଜ-ୟ-କ-ରି-ନେ-ବା । ଦୋ-ଦୋ-ପା-ଞ୍ଚ-ହେଲେ ଚଳିବ ନାହିଁ । ଏ-ଇ-ଟା ଧ-ଳା ଲୋ-କ-ଙ୍କ ଭା-ର । କେ-ଭ-ର, ଆ-ମେ ହେ-ଉ-ଛୁ—ହିକ୍-—ଲ୍ଲ-ଲି-ସା-ହେବ, ମା-ନେ, ଲ-ଟ-ସା-ହେ-ବ ! ସି-ଜ-ର ବି ଏ-ପ-ରି ସା-ମ-ଗ୍ରା-ଜ୍ୟ କଥା କଳ୍-ପନା କ-ରି-ନ-ଥି-ଲେ । ସ-ବୁ ଖ-ବ-ର କା-ଗ-ଜ-ରେ ନାଁ ବା-ହା-ରି-ବ । କେ-ଭ-ର-ଏ ଦି-ଆ- । ବେ-ଡ଼୍-ଫୋର୍ଡ଼-ସି-ଆ "ବେଡ଼୍-ଫୋ-ର୍ଡ଼ସିଆ—ହିକ୍—ଗ୍ରେ-ଟ, ମା-ନେ° ବ-ଡ଼ । ଏ-କା କଥା ।"

ସତରେ ମୁଁ ମାତାଲ ହୋଇଯାଇଥିଲି ।

ଆମର ଆଗମନ ଦ୍ୱାରା ଚନ୍ଦ୍ରର କ ଅସୀମ ଉପକାର ହେବ, ସେ କଥା ମୁଁ ଯୁକ୍ତିଦ୍ୱାରା ବୁଝାଇବାକୁ ଚେଷ୍ଟାକଲି । କଲମ୍ବସ୍‌ଙ୍କ ଆଗମନଦ୍ୱାରା ମୋଟ ଉପରେ ଆମେରିକାର ଉପକାର ହୋଇଥିଲା ବୋଲି ପ୍ରମାଣ କରିବାକୁ ଯାଇ ମୁଁ ଯୁକ୍ତିର ଗୋଟିଏ ଜଟିଳ ପଙ୍କରେ ପଡ଼ିଗଲି । କେଉଁ ବିଷୟ ମୁଁ ପ୍ରମାଣ କରିବାକୁ ଚାହୁଁଥିଲି, ତାହା ଭୁଲିଗଲି । ତେଣୁ ସମୟ ପୂରଣ କରିବା ଲାଗି "କଲମ୍ବସ୍‌ଙ୍କପରି" କଲମ୍ବସଙ୍କପରି ବୋଲି ବକିବାକୁ ଲାଗିଲି ।

ଏହାପରେ ସେହି ଛତୁର ପ୍ରକ୍ରିୟା ଦ୍ୱାରା ଆଉ ଯାହା ଯାହା ଘଟିଲା ସେ ବିଷୟରେ ମୋର ସ୍ମୃତି 'ଝାପସା' ହୋଇଗଲା । ମୋର କେବଳ ଅସ୍ପଷ୍ଟ ଭାବରେ ମନେ ପଡୁଛି ଯେ, ଆମେ 'କୌଣସି ପାଜି ପୋକଙ୍କୁ ଖାତିର କରୁନା' ବୋଲି ଘୋଷଣା କଲୁଁ । ଆମେ ସ୍ଥିର କଲୁଁ ଯେ ଗୋଟିଏ ବୃକ୍ଷ ଉପଗ୍ରହରେ ଡରୁଆଙ୍କପରି ଲୁଚି ରହିବାଟା ମନୁଷ୍ୟ ଜାତି ପକ୍ଷରେ ସମ୍ମାନଜନକ ନୁହେଁ । ତେଣୁ ଆମେ ବୋଟେଁ ବୋଟେଁ ଛତୁ ମୁଠେଇଲୁଁ—ତାହା ଟେକାରୂପେ ବ୍ୟବହାର କରିବାପାଇଁ ଆମେ ଏପରି କଲୁଁ କି ଆଉ କେଉଁଥିପାଇଁ, ତାହା ମୁଁ ଠିକ୍ ଜାଣେ ନାହିଁ—ତା ପରେ କଣ୍ଟା ବୁଦାର ସଙ୍ଗୀନ୍‌ର କେଞ୍ଚାକୁ ଖାତିର ନ କରି ଆମେ ହୃପୀଲୋକ ଆଡକୁ ଅଗ୍ରସର ହେଲୁଁ ।

ବୋଧହୁଏ ସାଙ୍ଗେ ସାଙ୍ଗେ ଆମେ ଚାନ୍ଦ୍ରକମାନଙ୍କର ସମ୍ମୁଖୀନ ହେଲୁଁ । ସେମାନେ ଛ ଜଣ ଥିଲେ ଏବଂ ଅଦ୍ଭୁତ କେଁ କଟର ଶବ୍ଦ କରି ଗୋଟିଏ ପଥୁରିଆ ସ୍ଥାନ ଉପରେ ଧାଡି ବାନ୍ଧି ଯାଉଥିଲେ । ସେମାନେ ସମସ୍ତେ ଏକା ସମୟରେ ଆମକୁ ଦେଖି ପାରିଲେ । ତତ୍‌କ୍ଷଣାତ୍ ସେମାନେ ନୀରବ ଓ ନିଶ୍ଚଳ ହୋଇଗଲେ ଏବଂ ଠିକ୍ ପଶୁଙ୍କପରି ଆମଆଡକୁ ମୁହଁଟେକି ଚାହିଁ ରହିଲେ ।

କ୍ଷଣକ ଲାଗି ମୋ ମୁଣ୍ଡରୁ ନିଶା ଫିଶା ଉଡିଗଲା ।

କେଭର୍ ଗୁଣୁ ଗୁଣୁ କରି କହିଲା "ପୋକ ! ପୋକ ! ଏମାନେ ଭାବୁଛନ୍ତି ମୁଁ ମୋ ପେଟ ଉପରେ ଘୁଷୁରିବି—ପଶୁପରି ପେଟ ଉପରେ ଘୁସୁରିବି ?"

ସେ ଦାନ୍ତ ଚିପି ଚିପି ପୁଣି କହିଲା, "ପେଟ !" ଯେପରିକି ଅପମାନକୁ ସେ ଗ୍ରେବେଇ ପକାଇଲା ।

ତାପରେ ହଠାତ୍ ଗୋଟିଏ ନୂଆ ରଣଭଙ୍ଗିରେ ସେ ଡନଟି ଲମ୍ବାଲମ୍ବା ପାଦ ପକେଇ ଚାନ୍ଦ୍ରକମାନଙ୍କ ଉପରକୁ ଡିଆଁଦେଲା, କିନ୍ତୁ ଠିକ୍‌ଭାବରେ ଡିଆଁଦେଇ ପାରିଲା ନାହିଁ; ଶୂନ୍ୟରେ ଅନେକଥର ଚକ୍କର ଖାଇଲା । ସେମାନଙ୍କର ଠିକ ମୁଣ୍ଡ ଉପରେ ଘୁରି ଘୁରି ଚାଲିଗଲା ଏବଂ ଗୋଟିଏ ପ୍ରକାଣ୍ଡ

ନଟଡ଼ା ଖାଇଁ ସପ୍ତଫେଣୀ ବୁଦାଗୁଡ଼ିକ ମଧ୍ୟରେ ଅଦୃଶ୍ୟ ହୋଇଗଲା । ଅନାହତରୁ ଏହା ଅଦ୍ଭୁତ, ଏବଂ ମୋ' ମତରେ 'ଅସଙ୍ଗତ' ଅଭ୍ୟୁଦୟର କି ଅର୍ଥ ଗୃଦ୍ଧ୍ରକମାନେ କଲେ ତାହା ଜାଣିବାର ଉପାୟ ମୋର ନାହିଁ । ମୋର ମନେ ହେଉଛି, ସେମାନେ ଚତୁର୍ଦ୍ଦିଗରେ ଅସ୍ତବ୍ୟସ୍ତ ହୋଇ ଦୌଡ଼ି ପଳେଇ ଗଲେ, କିନ୍ତୁ ମୁଁ ସେ ବିଷୟରେ ନିଶ୍ଚିତ ନୁହେଁ । ମୁଁ ଜ୍ଞାନ ହରାଇବାର ଅବ୍ୟବହିତ ପୂର୍ବର ଘଟଣା ଗୁଡ଼ିକ ମୋର ମନରେ ଅସ୍ପଷ୍ଟ ଓ ଝାପ୍ସା ହୋଇ ରହିଛି । ମୁଁ କେବଳ ଏତିକି ଜାଣେ ଯେ କେଭରର ଅନୁସରଣ କରିବା-ପାଇଁ ମୁଁ ପାଦ ବଢ଼େଇଲି, କିନ୍ତୁ ଝୁଣ୍ଟିପଡ଼ି ପଥର ଗଦା ଉପରେ ଚିତ୍ ହୋଇ ପଡ଼ିଗଲି । ବାସ୍ତବିକ୍ ମୁଁ ହଠାତ୍ ଅତି ଅସୁସ୍ଥ ହୋଇ ପଡ଼ିଥିଲି । ଟ୍ୟୁବ୍ ବହେ ଝିଙ୍କାଝିଙ୍କି କରିବା ପରେ ଧାତୁ ନିର୍ମିତ ହାତକଡ଼ା ଦ୍ୱାରା ଆବଦ୍ଧ ହେବା କଥା ମୋର ଠିକେ ଠିକେ ମନେ ପଡ଼ୁଛି ..

ତାପରେ ପୁଣି ଯେତେବେଳେ ମୋର ଜ୍ଞାନ ହେଲା, ମୁଁ ଦେଖିଲି ଯେ ଚନ୍ଦ୍ରର ଭୂଗର୍ଭରେ ଆମେ ବନ୍ଦୀ ଅବସ୍ଥାରେ ରହିଛୁଁ । କେତେଦୂର ଗଭୀରତା ଭିତରେ ଆମେ ରହିଥିଲୁ ତାହା ମୁଁ ଜାଣି ପାରିଲି ନାହିଁ । ଆମର ଚାରିଆଡ଼େ ନିବିଡ଼ ଅନ୍ଧକାର ଥିଲା ଏବଂ ଅଦ୍ଭୁତ ଅସ୍ଥିର କୋଳାହଳ ଶୁଭୁଥିଲା । ଆମର ଦେହସାରା ଆଞ୍ଚୁଡ଼ା ଦାଗ ଓ ଛେଚା ହୋଇଯାଇଥିବାର ଦାଗ ଦେଖା ପାଉଥିଲା, ଏବଂ ଆମର ମୁଣ୍ଡ ଖୁବ୍ ଜୋରରେ ବିନ୍ଧୁଥିଲା ।

---

# ୧୨

## ଗୃଧ୍ରିକର ମୁହଁ

ମୁଁ ଦେଖିଲି ଯେ, ମୁଁ ଶବ୍ଦପୂର୍ଣ୍ଣ ଅନ୍ଧକାର ଭିତରେ ଜାକଜୁକ ହୋଇ ବସିଛି । ଅନେକ ସମୟ ପର୍ଯ୍ୟନ୍ତ ମୁଁ କେଉଁଠି ଅଛି ଏବଂ ସେ ଗୋଲ୍‌କଧନ୍ଦାକୁ କିପରି ଆସିଲି ତାହା ଜାଣି ପାରିଲି ନାହିଁ । ପିଲାଦିନେ ମତେ କିପରି ଆଲମାରୀ ଭିତରେ ବନ୍ଦକରି ଦିଆ ହେଉଥିଲା ତାହା ମୋର ମନେ ପଡ଼ିଲା । ତା ପରେ ମୁଁ ଅସୁସ୍ଥ ଥିଲାବେଳେ କିପରି ଅନ୍ଧାର ଓ ଗୋଳମାଳପୂର୍ଣ୍ଣ କୋଠରୀରେ ଶୋଇଥିଲି ତାହା ବି ମୋର ମନେପଡ଼ିଲା, କିନ୍ତୁ ମୁଁ ଯେଉଁ ଗୋଳମାଳ ସହିତ ପରିଚିତ ଥିଲି, ବର୍ତ୍ତମାନ ମୋ ଚାରିପଟେ ଶୁଭୁଥିବା ଶବ୍ଦ ସହିତ ତାର କୌଣସି ସାମଞ୍ଜସ୍ୟ ନ ଥିଲା । ତା ଛଡ଼ା ପବନରେ ଗୁହାଳର ଗନ୍ଧପରି ଗୋଟିଏ ଝାପ୍‌ସା ଗନ୍ଧ ଭାସି ବୁଲୁଥିଲା । ତା ପରେ ମୁଁ ଭାବିଲି ମୁଁ ବୋଧହୁଏ ବର୍ତ୍ତମାନ ସୁଦ୍ଧା ଗୋଲକ ତିଆରି କରିବା କାମରେ ଲାଗିଛି ଏବଂ କୌଣସି ପ୍ରକାରେ କେଭରର ବସାରେ ଥିବା ଗୋଡ଼ିରି କୋଠରୀ ଭିତରକୁ ପଶି ଯାଇଛି । ତାପରେ ମୋର ମନେ ପଡ଼ିଲା ଯେ ଆମେ ଗୋଲକ ତିଆରି କରି ସାରିଲୁଣି, ଏବଂ ମୁଁ ବୋଧହୁଏ ଗୋଲକ ଭିତରେ ରହି ମହାଶୂନ୍ୟରେ ଉଡ଼ିଯାଉଛି ।

ମୁଁ କହିଲି, "କେଭର, ଆଲୁଅ ଜାଳୁନ କାହିଁକି ?"

କୌଣସି ଉତ୍ତର ଆସିଲା ନାହିଁ ।

ମୁଁ ପୁଣି କହିଲି, "କେଭର !"

ଉତ୍ତରସ୍ୱରୂପ ଗୋଟିଏ ଗାଁ ଗାଁ ଶବ୍ଦ ଆସିଲା । ସେ କହିଲା, "ମୋ ମୁଣ୍ଡ ! ମୋ ମୁଣ୍ଡ ଗଲା !

ମୋର କପାଳରେ ଦରଜ ହେଉଥିବାରୁ ମୁଁ ହାତରେ ତାହା ଦାବିବାକୁ ଚେଷ୍ଟାକଲି; କିନ୍ତୁ ଦେଖିଲି ଯେ ମୋ ହାତ ଦୁଇଟି ଏକାସଙ୍ଗରେ ବନ୍ଧା ହୋଇଛି । ଏହାଦ୍ୱାରା ମୁଁ ଖୁବ ଚମକି ପଡ଼ିଲି । ମୁଁ ହାତକୁ ମୁହଁ

ପା'ଖକୁ ଆଣିଲି ଏବଂ ଧାତୁର ଶୀତଳ ଚକ୍‌ଚକିତା ଅନୁଭବ କରିପାରିଲି । ହାତ ଦୁଇଟି ଶିଙ୍କୁଳୀରେ ବନ୍ଧା ହୋଇଥିଲି । ମୋର ଗୋଡ଼ ଦୁଇଟି ଅଲଗା ଅଲଗା କରିବାକୁ ଚେଷ୍ଟାକଲି । କିନ୍ତୁ ଦେଖିଲି ଯେ ଗୋଡ଼ ମଧ୍ୟ ଶିଙ୍କୁଳିରେ ବନ୍ଧା ହୋଇଛି । ତାପରେ ଦେଖିଲି, ମୋର ଦେହ ମଧ୍ୟ ଆହୁରି ମୋଟା ଶିଙ୍କୁଳୀ ଦ୍ୱାରା କାନ୍ଥ ସହିତ ବନ୍ଧା ହୋଇଛି ।

ଆମର ଅଭୂତ ଅଭିଜ୍ଞତାଗୁଡ଼ିକ ଦ୍ୱାରା ମୁଁ ଏ ପର୍ଯ୍ୟନ୍ତ ଯେତିକି କ୍ଷତ ହୋଇଥିଲି, ବର୍ତ୍ତମାନ ତା ଠାରୁ ଆହୁରି କ୍ଷତ ହୋଇପଡ଼ିଲି । କିଛି ସମୟ ପର୍ଯ୍ୟନ୍ତ ମୁଁ ନୀରବରେ ଶାଙ୍କୁଳୀ ଗୁଡ଼ିକ ଟଣାଓଟରା କଲି । ତାପରେ ଦୁର୍ବଳ କଣ୍ଠରେ ଡାକିଲି, "କେଭର ! ମତେ ବନ୍ଧା ଯାଇଛି କାହିଁକି ? ତମେ ମୋର ଗୋଡ଼ ହାତ ବାନ୍ଧି ପକେଇଛ କାହିଁକି ?"

କେଭର ଉତ୍ତର ଦେଲା, "ମୁଁ ତମକୁ ବାନ୍ଧି ନାହିଁ । ଗୃନ୍ଦ୍ରକମାନେ ବାନ୍ଧିଛନ୍ତି ।

ଗୃନ୍ଦ୍ରକମାନେ ! କିଛି ସମୟଯାଏ ମୋର ଚିନ୍ତା ସେଇ ଶବ୍ଦରେ ଆବଦ୍ଧ ହୋଇ ରହିଲା । ତାପରେ ମୋର ସବୁକଥା ମନେ ପଡ଼ିଲା । ବରଫ ପୃଷ୍ଠ ନିର୍ଜନ ଭୂମି, ଜମାଟବନ୍ଧା ବାୟୁ, ଉଦ୍ଭିଦ ଗୁଡ଼ିକର ବୃଦ୍ଧି, ଆଗ୍ନେୟ-ଗିରିଗହ୍ୱରର ଶୀଳା ଓ ଉଦ୍ଭିଦ ଭିତରେ ଆମର ଅଦ୍ଭୁତଭାବରେ ଡେଇଁବା ଓ ଗୁଡୁଣ୍ଡିବା । ଗୋଲକକୁ ଉନ୍ମାଦ ଭାବରେ ଖୋଜିବାବେଳେ ଆମେ ଯାହା ଯାହା କଷ୍ଟ ପାଇଥିଲୁ ସବୁ ମୋର ମନେ ପଡ଼ିଲା···ଶେଷରେ ବୃହତ୍ ଗହ୍ୱରକୁ ଢାଙ୍କିଥିବା ପ୍ରକାଣ୍ଡ ଢାଙ୍କୁଣୀ ଖୋଲିବା କଥା ସ୍ମରଣ ହେଲା !

ତାପରେ ଆମର ବର୍ତ୍ତମାନ ଅବସ୍ଥାକୁ ଆସିବା ପୂର୍ବରୁ ଶେଷରେ ଯାହା ଯାହା ଘଟିଥିଲା ସେସବୁ ମନେ ପକାଇବାକୁ ଚେଷ୍ଟା କରିବାରୁ ମୋର ମୁଣ୍ଡରେ ଯନ୍ତ୍ରଣା ଅସହ୍ୟ ହୋଇଉଠିଲା । ଗୋଟିଏ ଦୁର୍ଭେଦ୍ୟ ବାଧା, ବିରାଟ ଶୂନ୍ୟତାରେ ପହଞ୍ଚି ମୁଁ ଅଟକିଗଲି ।

"କେଭର !"

"କଣ ?"

"ଆମେ କେଉଁଠି ଅଛୁଁ ?"

"ମୁଁ କପରି ଜାଣିବି ?"

"ଆମେ କଣ ମରି ଗଲୁଣି ?"

"ଦୂର୍ କଣ ଗୁଡେ ବକୁଛ !"

"ତାହାହେଲେ, ସେମାନେ ଆମକୁ ଜବତ୍ କରିଛନ୍ତି !"

ସେ ଗୋଟିଏ ଗାଁ ଗାଁ ଶବ୍ଦ କରିବା ଛଡ଼ା ଅନ୍ୟ କୌଣସି ଉତ୍ତର ଦେଲି ନାହିଁ । ବୋଧହୁଏ ସେହି ବିଷାକ୍ତ ଉଦ୍ଭିଦର ଅଭାବ ସେ ପର୍ଯ୍ୟନ୍ତ ବି ତାର ମେଜାଜ୍‌କୁ ବିଗିଡ଼େଇ ଦେଇଥିଲା ।

ମୁଁ କହିଲି, "ତୁମେ କଣ କରିବାକୁ ବସିଛ ?"

"ମୁଁ କପରି ଜାଣିବି କଣ କରିବାକୁ ହେବ !"

ମୁଁ କହିଲି, "ଆଚ୍ଛା, ବାବା, ଆଚ୍ଛା !" ଏହା କହି ଚୁପ୍ ମାରିଗଲି । କିଛି ସମୟ ପରେ ମୋର ନିସ୍ତବ୍ଧତାରୁ ଚେଇଁ ଉଠି ମୁଁ ପାଟି କରି ଉଠିଲି, "ଓଃ ! ତମର ଏଇ 'ହୁଁ-ହୁଁ' ଶବ୍ଦ ତମେ ବନ୍ଦ କରନ୍ତ କି !"

ଆମେ ଦୁହେଁ ପୁଣି ଅନେକ ବେଳଯାଏଁ ଚୁପ୍ ମାରି ବସି ରହିଲୁଁ, ଏବଂ ଆମ କାନରେ ବାଜୁଥିବା କର୍କଶ ଗୋଳମାଳର ଶବ୍ଦ ଶୁଣିବାକୁ ଲାଗିଲୁଁ । କୌଣସି ଜନଗହଳି ରାସ୍ତା କିମ୍ବା କାରଖାନାରୁ କୌଣସି ବାଧା ଭିତର ଦେଇ ଶବ୍ଦ ଆସୁଥିଲେ ଯେପରି ଶୁଭେ ସେହି ଶବ୍ଦ ସେହିପରି ଶୁଭୁଥିଲା । ଏହାର କାରଣ ମୁଁ ଆଦୌ ଅନ୍ଦାଜ କରିପାରିଲି ନାହିଁ । ମୋର ମନ ଗୋଟିକ ପରେ ଗୋଟିଏ ସ୍ୱର ପଛରେ ଧାଇଁବାକୁ ଲାଗିଲା ଏବଂ ତାର ଅର୍ଥ ବୁଝିବାକୁ ବୃଥା ଚେଷ୍ଟା କରିବାକୁ ଲାଗିଲା । କିନ୍ତୁ ଅନେକ ବେଳ ପରେ ମୁଁ ଗୋଟିଏ ନୂତନ ଏବଂ ଅଧିକ ତୀକ୍ଷ୍ଣ ଶବ୍ଦ ବିଷୟରେ ସଚେତନ ହୋଇ ଉଠିଲି । ତାହା ଅନ୍ୟାନ୍ୟ ଶବ୍ଦ ସହିତ ମିଶି ନଥିଲା, ବରଂ ସେହି ଗୋଳମାଳିଆ ଶବ୍ଦ ଭିତରେ ତାହା ସ୍ପଷ୍ଟ ରୂପେ ବାରି ହେଉଥିଲା । ତାହା କୌଣସି ନିର୍ଦ୍ଦିଷ୍ଟ ଶବ୍ଦ ନ ଥିଲା ବରଂ ଘଷି ହେଉଥିବାର ଏବଂ ଠକ୍‌ଠକ୍ କରୁଥିବାର ଶବ୍ଦପରି କେତେଗୁଡ଼ିଏ ଶବ୍ଦର ସମଷ୍ଟି ଥିଲା ।

ଝରକା ଉପରେ କୌଣସି ଲତା ଧୀରେ ଧୀରେ ବାଡ଼େଇ ହେଉଥିଲେ କିମ୍ବା ବାକ୍ସ ଉପରେ କୌଣସି ପକ୍ଷୀ ଇଆଡ଼େ ସେଆଡେ ବୁଲୁଥିବେ ଯେପରି ଶବ୍ଦ ହୁଏ ସେ ଶବ୍ଦ ସେହିପରି ଶୁଭୁଥିଲା । ଆମେ କାନ ଡେରି ଚାରିଆଡ଼େ ଚାହିଁବାକୁ ଲାଗିଲୁଁ । କିନ୍ତୁ, ଆମ ପୃଷ୍ଠପଟର ଅନ୍ଧକାର ଗୋଟିଏ ମଖମଲ ପର୍ଦ୍ଦା ପରି ସବୁ ଆବୃତକରି ରଖିଥିଲା । ଏହାପରେ ତେଲ ଦିଆଯାଇଥିବା କୌଣସି ତାଲା ଖୋଲିଲେ ଯେପରି କ୍ଷୀଣ ଶବ୍ଦ ହୁଏ ସେହିପରି ଗୋଟିଏ ଶବ୍ଦ ଶୁଭିଲା ଏବଂ ତାପରେ ମୁଁ ଦେଖିପାରିଲି, ନିବିଡ଼ ଅନ୍ଧକାର ଭିତରେ ଗୋଟିଏ ସରୁ ଆଲୋକର ରେଖା ଫୁଟିଉଠିଲା ।

କେଭର୍ ତୁନି ତୁନି କରି କହିଲା, "ଦେଖ !"

"ଏହା କଣ ?"

"କେଜାଣି କଣ ।"

ଆମେ ସ୍ଥିର ଦୃଷ୍ଟିରେ ଚାହିଁ ରହିଲୁ ।

ସରୁ ଆଲୋକ ରେଖାଟି ଗୋଟିଏ ଫାଟ ଏତିକି ଚଉଡ଼ା ହୋଇ କ୍ଷୀଣତର ହେଲା । କୌଣସି ଧଳା ଚୂନ ବୋଳା କାନ୍ଥରେ ନାଲି ଆଲୋକ ପଡ଼ିଲେ ଯେପରି ଦେଖାଯାଏ ତାହା ସେହିପରି ଦେଖାଯାଉଥିଲା । ତାହାର ଦୁଇ ପାଖ ଆଉ ସମାନ୍ତରାଳରେ ରହିଲା ନାହିଁ । ଗୋଟିଏ ପାଖର ରେଖା ସଙ୍କୁଚିତ ହୋଇଗଲା । ଏହି କଥାଟା କହିବା ପାଇଁ ମୁଁ କେଭରକୁ ଆଡେ ଚାହିଁଲି, କିନ୍ତୁ ଦେଖି ଆଶ୍ଚର୍ଯ୍ୟ ହେଲି ଯେ ତାଂର ଗୋଟିଏ କାନ ଉଜ୍ଜ୍ୱଳ ଆଲୋକ ଦ୍ୱାରା ଉଦ୍ଭାସିତ ହୋଇଅଛି—ଶରୀରର ବାକି ସମସ୍ତ ଅଂଶ ଅନ୍ଧାରରେ ଢାଙ୍କି ହୋଇଛି । ଶିକୁଳି ଦ୍ୱାରା ବନ୍ଧା ହୋଇଥିବାରୁ ଯେତିକି ଦୂର ସମ୍ଭବ, ମୁଁ ମୁଣ୍ଡ ପଛ ଆଡକୁ ବୁଲେଇବାକୁ ଚେଷ୍ଟାକଲି । ମୁଁ କହିଲି, "କେଭର୍, ଏଇ ଆଲୁଅ ପଛରୁ ଆସୁଛି !"

ତାର କାନଟା ଉଭେଇଗଲା—ତା ପରିବର୍ତ୍ତିରେ ଗୋଟିଏ ଆଖି ଦେଖାଗଲା !

ସେଇଁ ଫାଙ୍କ ବାଟ ଦେଇ ଆଲୋକ ଆସୁଥିଲା, ତାହା ହଠାତ୍ ଅଧିକ ଚଉଡ଼ା ହୋଇଗଲା ଏବଂ ଜଣାପଡ଼ିଲା ଯେ ତାହା ଗୋଟିଏ ଚେମ୍ବ

ହେଉଥିବା କବାଟର ଫାଙ୍କ । କବାଟର ସେ ପାଖରୁ ଗୋଟିଏ ଉଜ୍ଜ୍ୱଳ ନୀଳ ଆଲୋକର ରେଖା ଆମର ଦୃଷ୍ଟିଗୋଚର ହେଲା, ଏବଂ କବାଟର ଚଉକାଠ ଉପରେ ଆଲୋକକୁ ପଛ କରି ଗୋଟିଏ କମ୍ପିତକମାକାର ଛାୟାମୂର୍ତ୍ତି ଛିଡ଼ା ହୋଇଥିଲା ।

ଆମେ ଦୁହେଁ ପଛକୁ ଘୂରି ବସିବା ପାଇଁ କିଛି ଓଟାରି ହେଲୁଁ ; କିନ୍ତୁ ସେଥିରେ 'ଅକ୍ତକାର୍ଯ୍ୟ ହୋଇ କାନ୍ଧ ଉପରେ ମୁଣ୍ଡ ବଙ୍କେଇ ତାକୁ ଦେଖିବାକୁ ଲାଗିଲୁଁ । ପ୍ରଥମେ ମୋର ମନେହେଲା ତଳକୁ ମୁଣ୍ଡକରି କୌଣସି କୁତ୍ସିତ ଚତୁଷ୍ପଦ ଜନ୍ତୁ ଛିଡ଼ା ହୋଇଛି । ତାପରେ ମୁଁ ଜାଣିପାରିଲି ଯେ ତାହା ଗୋଟିଏ ବୃଦ୍ଧ ଲୋକର ସରୁ ସଙ୍କୁଚିତ ଦେହ ଏବଂ ଖର୍ବ, ଅତ୍ୟନ୍ତ କୃଶ ଓ ଦୁଇ ଆଣ୍ଠୁ ମଝିରେ ଅତିରିକ୍ତ ବ୍ୟବଧାନ ଥିବା ବଙ୍କ ଗୋଡ଼ । ସେ ଦୁଇ କାନ୍ଧ ମଝିରେ ମୁଣ୍ଡକୁ ଝୁଲେଇ ଛିଡ଼ା ହୋଇଥିଲା । ସେମାନେ ଚନ୍ଦ୍ରର ବହିର୍ଭାଗରେ ଥିବାବେଳେ ଯେଉଁ ଶିରସ୍ତ୍ରାଣ ଓ ଅଙ୍ଗାବରଣ ପିନ୍ଧନ୍ତି ତାହା ବର୍ତ୍ତମାନ ତା' ଦେହରେ ନଥିଲା ।

ଆମର ଦୃଷ୍ଟିରେ ସେ ଗୋଟିଏ ଅସ୍ପଷ୍ଟ କଳାମୂର୍ତ୍ତି ରୂପେ ଦେଖା-ଯାଉଥିଲା; କିନ୍ତୁ ସହଜ-ପ୍ରବୃତ୍ତି ବଶତଃ ଆମର କଳ୍ପନା ତାର ମନୁଷ୍ୟ ସୁଲଭ ଆକୃତିକୁ ରୂପ ଦେବାକୁ ଲାଗିଲା । ଅନ୍ତତଃ ମୁଁ ଖାଲି ଖାଲି ଅନ୍ଦାଜ କରିନେଲି ଯେ ସେ କୁଜାପରି ହୋଇଥିବ, ତାର କପାଳ ଉଚ୍ଚ ଓ ଦୈହିକ ଆକୃତି ଲମ୍ବା ହୋଇଥିବ ।

ସେ ତିନପାଦ ଆଗକୁ ଘୁଞ୍ଚି ଆସିଲା ଏବଂ କିଛି ସମୟ ଯାଏ ସେହିପରି ଛିଡ଼ା ହୋଇ ରହିଲା । ତାର ଗତି ଦ୍ୱାରା ଆଦୌ କୌଣସି ଶବ୍ଦ ଜାତ ହେଉ ନଥିଲା । ତାପରେ ସେ ପୁଣି ଅଗ୍ରସର ହେଲା । ସେ ଠିକ୍ ଗଡ଼େଇ ପରି ଚାଲୁଥିଲା, ତାର ଗୋଟିଏ ପାଦ ଆଉ ଗୋଟିଏ ପାଦର ଠିକ ସାମନାରେ ପଡ଼ୁଥିଲା । ଦୁଆର ଆଡୁ ଆସୁଥିବା ଆଲୋକରେଖା ସମ୍ମୁଖରୁ ସେ ଘୁଞ୍ଚିଗଲା ଏବଂ ଅନ୍ଧକାରରେ ସମ୍ପୂର୍ଣ୍ଣ ଅଦୃଶ୍ୟ ହୋଇଗଲା ।

କ୍ଷଣକ ଲାଗି ମୋର ଆଖି ତାକୁ ଭୁଲ ଜାଗାରେ ଅନ୍ୱେଷଣ କରିବାକୁ ଲାଗିଲା । ତାପରେ ମୁଁ ଦେଖିଲି ସେ ଆମ ସମ୍ମୁଖରେ ପୂର୍ଣ୍ଣ ଆଲୋକରେ ଛିଡ଼ା ହୋଇଛି । କିନ୍ତୁ ଯେଉଁ ମନୁଷ୍ୟସୁଲଭ ରୂପ ମୁଁ ଦେଖିବି ବୋଲି ଆଶା କରିଥିଲି, ତାହା ତା'ଠାରେ ନଥିଲା ।

ଅବଶ୍ୟ ମୋର ଅନ୍ଦାଜ କରିବା ଉଚିତ ଥିଲା ଯେ, ମନୁଷ୍ୟର ଚେହେରା ତା'ଠାରେ ଥିବା ସମ୍ଭବ ନୁହେଁ ; କିନ୍ତୁ ମୁଁ ତାହା ଅନ୍ଦାଜ କରି ନଥିଲି । ତାହାର ରୂପ ଦେଖି ମୁଁ ଅତ୍ୟଧିକ ଚମକି ପଡ଼ିଲି, କ୍ଷଣକ ଲାଗି ଏକଦମ ଜଡ଼ ପାଲଟି ଗଲି । ତାର ମୁହଁ ଦେଖି ମୋର ମନେ ହେଲା ସେଇଟା ଆଦୌ ମୁହଁ ନୁହେଁ, ସେଇଟା ଗୋଟିଏ ମୁଖା । ମୁଁ ଆଶା କରିବାକୁ ଲାଗିଲି, ତାର ମୁହଁ ଏପରି କଦାକାର ଓ ଭୟଙ୍କର ହେଲା ହେଁ କପରି, ତାହା ସେ ବୁଝେଇ ଦେବ, ନ ହେଲେ ଜଣେଇ ଦେବ ଯେ ସେଇଟା ପ୍ରକୃତରେ ତାର ମୁହଁ ନୁହେଁ । ତାର ମୁହଁରେ ଜମା ନାକ ନଥିଲା ଏବଂ ତାର ଝାପସା ଓ ଉପରକୁ ଫୁଲି ଉଠିଥିବା ଆଖି ଦୁଇଟି ସାମନାକୁ ନ ରହି ମୁହଁର ଦୁଇ କଡ଼କୁ ରହିଥିଲା । ପ୍ରଥମେ ତାକୁ ଛାଇରେ ଦେଖି ମୁଁ ତାର ଆଖିକୁ କାନ ବୋଲି ଭାବିଥିଲି । ତାର ମୁଣ୍ଡରେ ଜମା କାନ ନଥିଲା ।····· ସେହି ମୁଣ୍ଡର ଚିତ୍ର ଆଙ୍କିବାକୁ ମୁଁ ଅନେକଥର ଚେଷ୍ଟା କରିଛି, କିନ୍ତୁ ସକ୍ଷମ ହୋଇ ନାହିଁ । ତାର ପାଟି ତଳଆଡ଼କୁ ବଙ୍କେଇ ହୋଇଥିଲା—ସିଗିକର ଗୁହୁଁଲାବେଳେ ମନୁଷ୍ୟର ପାଟି ଯେପରି ବଙ୍କେଇ ହୋଇଥାଏ ।·········

ଯେଉଁ ବେକ ଉପରେ ତାର ମୁଣ୍ଡ ରହିଥିଲା, ତାହା ତିନୋଟି ଜାଗାରେ ଯୋଡ଼ା ହୋଇଥିଲା, ଯେପରି କଙ୍କଡ଼ାର ଗୋଡ଼ ପଗ ପଗ ହୋଇ ଯୋଡ଼ା ହୋଇଥାଏ । ତାର ହାତ ଓ ଗୋଡ଼ର ଯୋଡ଼ାସ୍ଥାନ ମୁଁ ଦେଖି ପାରିଲି ନାହିଁ, କାରଣ ସେଗୁଡ଼ିକ ଚମଡ଼ାର ପଟିଦ୍ୱାରା ଆବୃତ ହୋଇଥିଲା । ସେହି ପଟି ଥିଲା ତାର ଏକମାତ୍ର ପରିଧେୟ ।

ଏତାଦୃଶ କିମ୍ଭୂତ କିମାକାର ଜୀବଟି ସେଠି ଛିଡ଼ା ହୋଇ ଆମ ଆଡ଼କୁ ଅନାଇ ରହିଥିଲା ।

ସେହି ଜୀବର ଭୟାବହ ଅବାସ୍ତବତା ଦ୍ୱାରା ସେହି ସମୟରେ ମୋର ମନ ଅଭିଭୂତ ଥିଲା । ବୋଧହୁଏ ସେ ମଧ୍ୟ ଆମକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲା । ସମ୍ଭବତଃ ଆମ ଅପେକ୍ଷା ତାର ଆଶ୍ଚର୍ଯ୍ୟ ହେବାର ବେଶି କାରଣ ଥିଲା । କିନ୍ତୁ ତଥାପି ସେ ମୁହଁରେ ବିସ୍ମୟର କୌଣସି ଚିହ୍ନ ଫୁଟାଇ ନଥିଲା । ଆମେ ଅନ୍ତତଃ ଜାଣିଥିଲୁଁ ଏପରି ଅସମାନ ଜୀବଙ୍କର ସାକ୍ଷାତ କିପରି ଘଟିଲା । କିନ୍ତୁ ଧର, କୌଣସି ସଭ୍ୟ ଲଣ୍ଡନସହରବାସୀ ହାଇଡ୍ ପାର୍କର ମେଣ୍ଢା ପଲ ଭିତରେ ହଠାତ୍ ଏପରି ଦୁଇଟି ଜୀବଙ୍କୁ ଦେଖିପାରିଲା ଯେଉଁ-ମାନେ କି ମଣିଷ ଭଳି ଦେଖା ଅଥଚ କୌଣସି ପାର୍ଥିବ ଜୀବଠାରୁ ଚେହେରାରେ ସମ୍ପୂର୍ଣ୍ଣ ଭିନ୍ନ ! ତାହାହେଲେ ସେ ଯେପରି ଅନୁଭବ କରିବ, ଏହି ବୃଦ୍ଧକ ଆମକୁ ଦେଖି ନିଶ୍ଚୟ ସେହିପରି ଅନୁଭବ କରିଥିବ ।

ଆମର ସେ ସମୟର ଅବସ୍ଥା କଳ୍ପନା କରି ଦେଖ ! ହାତ ଗୋଡ଼ ବନ୍ଧା ହୋଇ ଆମେ କ୍ଳାନ୍ତ ଭାବରେ ପଡ଼ିଥିଲୁଁ । ଆମର ଚେହେରା ଅସୌନ୍ଦର୍ଯ୍ୟ ଦିଶୁଥିଲା, ଦାଢ଼ି ଦୁଇ ଇଞ୍ଚ ବହଳ ହୋଇ ଯାଇଥିଲା ଏବଂ ଆମର ମୁହଁସାରା ଆଞ୍ଚୁଡ଼ା ଚିହ୍ନ ଆଉ ରକ୍ତର ଦାଗ ଲାଗିଥିଲା । କେଭରକୁ ତୁମେ କଳ୍ପନା କର ତାର ବିପର୍ଯ୍ୟସ୍ତ ଅବସ୍ଥାରେ ତାହା ସଙ୍ଗୀନପରି ଉଦ୍ଭିଦ ଗୁଳ୍ମଙ୍କର ମୁନଦ୍ୱାରା କେଁଆଖାଇ ଅନେକ ଜାଗାରେ ଚିରି ଯାଇଥିଲା । ସେ ଗୋଟିଏ ଫ୍ଲେଣ୍ଟାବାଲାର କାମିଜ ଓ ପୁରୁଣା କ୍ରିକେଟ ଟୋପି ପିନ୍ଧିଥିଲା ଏବଂ ତାର ମୋଟା ବାଳ ଅବିନ୍ୟସ୍ତ ହୋଇ ସବୁ ଦିଗରେ ଗୋଟିଏ ଗୋଟିଏ ଚୂଟି ଲମ୍ବିଥିଲା । ସେହି ମ୍ଳାନ ଆଲୋକରେ ତାର ମୁହଁ ଆଉ ଲାଲ ଦିଶୁ ନ ଥିଲା ବରଂ କଳା ଦିଶୁଥିଲା ଏବଂ ତାର ଓଠ ଓ ମୋର ହାତର ଶୁଖିଲା ରକ୍ତ ମଧ୍ୟ କଳା ଦିଶୁଥିଲା । ସମ୍ଭବତଃ ମୁଁ ତା ଅପେକ୍ଷା ଆହୁରି ଶୋଚନୀୟ ଅବସ୍ଥାରେ ଥିଲି, କାରଣ ମୁଁ ଯେଉଁ ହଳଦିଆ ଛତୁ ଭିତରକୁ ଡେଇଁ ପଡ଼ିଥିଲି ତାହା ମୋ ଦେହସାରା ବୋଳି ହୋଇ ଯାଇଥିଲା । ଆମର କୋଟର ବୋତାମ ଫିଟେଇ ଦିଆ ଯାଇଥିଲା ଏବଂ ଆମର ଯୋତା ଗୋଡ଼ରୁ କଟାଯାଇ ପାଦ ନିକଟରେ ପଡ଼ି ରହିଥିଲା । ଆମେ ସେହି ଅଦ୍ଭୁତ ନେଳିଆ

ଆମେ କେଉଁ ପରିକଳ୍ପନା ବଦଳ ଏପରି ଗୋଟିଏ କମ୍ପୁଟରାକାର ଜୀବ ଆଡ଼କୁ ଚାହିଁ ରହିଥିଲୁଁ ଯେପରି ଜୀବ କି କେବଳ ଚାଁଦିକର ଉଦ୍ଭାବକଙ୍କ କଳ୍ପନାରେ ସମ୍ଭବ ।

କେଭରର ନୀରବତା ଭଙ୍ଗ କରି କଥା କହିବାକୁ ଚେଷ୍ଟା କଲା, କିନ୍ତୁ ତାର ସ୍ୱର ଗାଁ ଗାଁ ହୋଇଯିବାରୁ ଖଙ୍କାର ମାରି ତଣ୍ଟି ସଫାକଲା । ବାହାରେ ଗୃହର ଗୋରୁମାନଙ୍କର ରଡ ଶୁଭିଲା, ମନେ ହେଲା ସେମାନେ କୌଣସି ବିପଦରେ ପଡ଼ିଛନ୍ତି । ସେହି ରଡ ଯନ୍ତ୍ରଣା ଜନିତ ଚିତ୍କାରରେ ପରିଣତ ହେଲା, ତାପରେ ପୁଣି ସବୁ ନିସ୍ତବ୍ଧ ହୋଇଗଲା ।

କିଛି ସମୟ ପରେ ଗୃହ କିଛି ବୁଲି ପଡ଼ିଲା, ଅନ୍ଧକାର ଭିତରକୁ ପଶିଗଲା, ଦୁଆର ପାଖରେ ଛିଡ଼ା ହୋଇ ମୁହୂର୍ତ୍ତିକ ଲାଗି ପଛକୁ ଫେରି ଆମକୁ ନିରୀକ୍ଷଣ କଲା । ତାପରେ ଦୁଆରଟି ବନ୍ଦ କରି ଚାଲିଗଲା । ଆମେ ଯେଉଁ ଗୁମ୍ଫିତ ଅନ୍ଧକାରର ରହସ୍ୟ ଭିତରେ ଚେଇଁ ଉଠିଥିଲୁଁ, ତାହା ପୁଣି ଆମକୁ ପରିବେଷ୍ଟନ କଲା ।

---

## ୧୩

# କେଭରର ପ୍ରସ୍ତାବ

କିଛି ସମୟଯାଏ ଆମେ ନୀରବରେ ବସି ରହିଲୁଁ । ଯେଉଁ ସମସ୍ତ ଅବସ୍ଥାର ବୋଝ ଆମେ ନିଜ ମୁଣ୍ଡଉପରେ ଲଦିଥିଲୁଁ ସେ ସମସ୍ତ ଏକତ୍ରିତ କରି ଭାବି ଦେଖିବା ଯୋଗ୍ୟ ମାନସିକ କ୍ଷମତାର ଅଭାବ ଥିଲା ।

ଶେଷରେ ମୁଁ କହିଲି, "ତାହାହେଲେ ସେମାନେ ଆମକୁ ଜବତ୍ କରିଛନ୍ତି ।"

"ସେଇ ଛତୁ ଯୋଗୁଁ ।"

"ବାଃ, ସେଇ ଛତୁ ନ ଖାଇ ଥିଲେ ଆମେ ତ ମୂର୍ଚ୍ଛା ହୋଇ ଯାଇଥାନ୍ତୁ କି ଭୋକରେ ମରିଯାଇଥାନ୍ତୁ ।"

"ଆମେ ହୁଏତ ଗୋଟିକଟି ଖୋଜି ପାଇ ପାରିଆନ୍ତୁ ।"

ତାର କଥା ଦେଖି ମୋର ମୁଣ୍ଡ ଗରମ ହୋଇଉଠିଲା । ରାଗରେ ଫଁ ଫଁ କରି ମୁଁ ଚୁପ୍ ହୋଇଗଲି । କିଛି ସମୟଯାଏ ଆମେ ପରସ୍ପରକୁ ନୀରବରେ ଘୃଣା କରିବାକୁ ଲାଗିଲୁଁ । ମୋର ଆଣ୍ଠୁ ସନ୍ଧିରେ ଥିବା ମାଟି ଉପରେ ମୁଁ ଆଙ୍ଗୁଠି ଦ୍ୱାରା ତବଲା ବଜାଇବାକୁ ଲାଗିଲି ଏବଂ ମୋର ଶିଙ୍ଗୁଳାକୁ ଘଷିବାକୁ ଲାଗିଲି । ତାପରେ ପୁଣି କଥା କହିବାକୁ ବାଧ ହେଲି ।

ବର୍ଣ୍ଣିତ ଭାବରେ ମୁଁ ପଚାରିଲି, "ଯାହା ହେଉ ତୁମେ ଏହାର କଣ ଅର୍ଥ କରୁଛ ?"

"ସେମାନଙ୍କର ବିବେଚନା ଶକ୍ତି ଅଛି—ସେମାନଙ୍କର ନିର୍ମାଣ କରିବାର କ୍ଷମତା ଅଛି, ଅନେକ କିଛି କରିବା ଭଳିଆ ବୁଦ୍ଧି ଅଛି—ଧର ଆମେ ଯେଉଁ ଆଲୁଅସବୁ ଦେଖିଲୁଁ..."

ସେ ଚୁପ୍ କରିଗଲା । ଜଣାଗଲା, ସେ ଆଲୁଅ ସବୁ କଣ ତାହା ସେ ବୁଝିବାକୁ ସମର୍ଥ ହୋଇ ନାହିଁ ।

ସେ ପୁଣି ଯେତେବେଳେ କହିବାକୁ ଆରମ୍ଭ କଲା, ତାର ଅସାମର୍ଥ୍ୟ ସ୍ୱୀକାର କଲା । "ଯାହାହେଉ, ଆମେ ଯେତିକି ଅନୁମାନ କରିଥିଲୁଁ ତାଠୁଁ ସେମାନେ ଅନେକ ବେଶି ମାନବିକ । ବୋଧହୁଏ——"

ବିରକ୍ତିଜନକ ଭାବରେ ସେ ଚୁପ୍ ହୋଇଗଲା ।

"କହ ।"

"ବୋଧହୁଏ, ଯେ କୌଣସି ଗ୍ରହରେ ଯଦି କୌଣସି ବୁଦ୍ଧିମାନ ଜୀବ ଥାଏ—ତାହାହେଲେ ତାର ମସ୍ତିଷ୍କ-ଆବରଣ ନିଶ୍ଚୟ ଉଚ୍ଚ ହୋଇଥିବ ଏବଂ ତାର ହାତ ଥିବ, ଓ ସେ ସିଧାଭାବରେ ଚାଲୁଥିବ..."

ତା ପରେ ତାର କଥାର ଗତି ଅନ୍ୟ ଗୋଟିଏ ଦିଗକୁ ପରିବର୍ତ୍ତିତ ହେଲା ।

ସେ କହିଲା, "ଆମେ ଚନ୍ଦ୍ରର ଭୂଗର୍ଭରେ ଅନେକ ଭିତରେ ଅଛୁଁ—ବୋଧହୁଏ ଦୁଇ ହଜାର ଫୁଟ କିମ୍ବା ତାଠୁ ବେଶି ଭିତରେ ଅଛୁଁ ।"

"କିପରି ଜାଣିଲ ?"

"ଏଠି ଅଧିକ ଥଣ୍ଡା ବୋଧ ହେଉଛି ଏବଂ ଆମର ସ୍ୱର ଅଧିକ ଉଚ୍ଚ ଶୁଭୁଛି । ଚନ୍ଦ୍ରର ବହିର୍ଭାଗରେ ଆମର ସ୍ୱର ଯେପରି କ୍ଷୀଣ ଶୁଭୁଥିଲା, ଏଠି ଆଉ ସେପରି ଶୁଭୁ ନାହିଁ । ତାଛଡ଼ା ଆମ କାନରେ ଆଉ ତଣ୍ଟିରେ ଯେଉଁ ଅସ୍ୱସ୍ତି ବୋଧ ହେଉଥିଲା, ତାହା ଚାଲିଗଲାଣି ।"

ମୁଁ ଏହା ଲକ୍ଷ୍ୟ କରି ନ ଥିଲି, ବର୍ତ୍ତମାନ ଲକ୍ଷ୍ୟ କଲି ।

ସେ କହିଚାଲିଲା, "ଏଠି ବାୟୁ ଅଧିକ ଘନ ମନେ ହେଉଛି । ଆମେ ଚନ୍ଦ୍ର ଭିତରେ ନିଶ୍ଚୟ ଅନେକ ଗଭୀରରେ ରହିଛୁ—ଏପରିକି ମାଇଲ୍ ଏ ଯାଏ ଗଭୀରରେ ଥିବା ସମ୍ଭବ ।"

"ଚନ୍ଦ୍ରଭିତରେ ଗୋଟିଏ ଦୁନିଆ ଅଛି ବୋଲି ଆମେ ଆଗେ ଭାବି ନ ଥିଲୁଁ ।"

"ନା ।"

"କିପରି ବା ଭାବନ୍ତୁଁ ?"

"ଆମେ ହୁଏତ ଭାବିଥାନ୍ତୁ । କିନ୍ତୁ—ମଣିଷର ମନ ଅଭ୍ୟାସର ବଶବର୍ତ୍ତୀ ହୋଇଯାଏ ।"

ସେ କିଛି ସମୟ ଯାଏ ଚିନ୍ତା କଲା ।

ତା ପରେ କହିଲା, "ବର୍ତ୍ତମାନ ଏ କଥା ଏତେ ସ୍ୱାଭାବିକ ମନେ ହେଉଛି । ବାସ୍ତବିକ ! ଚନ୍ଦ୍ରର ଭିତରଟା କେବଳ ନିଶ୍ଚୟ ବିବରମୟ ହୋଇଥିବ । ତା ଭିତରେ ଗୋଟିଏ ବାୟୁମଣ୍ଡଳ ଥିବ ଏବଂ ବିବର ଗୁଡ଼ିକର ମିଳନ ସ୍ଥାନରେ ଗୋଟିଏ ସମୁଦ୍ର ଥିବ । ଲୋକେ ଜାଣନ୍ତି ଯେ ଚନ୍ଦ୍ରର ଆପେକ୍ଷିକ ଗୁରୁତ୍ୱ ପୃଥିବୀଠାରୁ ଅନେକ ପରିମାଣରେ କମ୍ ଅଟେ । ସେମାନେ ଜାଣନ୍ତି ଯେ ଏହାର ବହିର୍ଭାଗରେ ବାୟୁ କିମ୍ବା ଜଳ ପ୍ରାପ୍ୟ ନାହିଁ । ସେମାନେ ଆଉ ମଧ୍ୟ ଜାଣନ୍ତି ଯେ ଏହା ପୃଥିବୀର ସହୋଦର ହୋଇଥିବାରୁ ଏହାର ଗଠନ ପୃଥିବୀର ଗଠନଠାରୁ କାହିଁକି ଯେ ଭିନ୍ନ ହେବ ତାହାର କୌଣସି

କାରଣ ନାହିଁ । ତେଣୁ ଏହାର ଭିତର ଫୋଲା ହୋଇଥିବ ବୋଲି ଅନୁମାନ କରିବା ଅତି ସହଜ । କିନ୍ତୁ ତଥାପି ଏ କଥା ସତ୍ୟ ବୋଲି କେହି ଧରି ନେଇ ନ ଥିଲେ । ଅବଶ୍ୟ ବୈଜ୍ଞାନିକ କେପ୍‌ଲର୍—"

କେତେଗୁଡ଼ିଏ ଆନୁସଙ୍ଗିକ କାରଣ ନିର୍ଣ୍ଣୟ କରି ପାରିଲେ ଲୋକର ସ୍ୱରରେ ଯେପରି ଉତ୍ସାହ ଫୁଟି ଉଠେ, ବର୍ତ୍ତମାନ ତାହାର ସ୍ୱରରେ ସେହି-ପରି ଉତ୍ସାହ ଫୁଟି ଉଠିଥିଲା ।

ସେ କହିଲା, "ହଁ, କେପ୍‌ଲର୍ ତାଙ୍କର 'ସବ୍-ଭଲ୍‌ଭାନ' (ଭୂମ୍ୟାଭ୍ୟନ୍ତର) ତଥ୍ୟ ଦ୍ୱାରା ଠିକ୍ କଥା ହିଁ କହିଥିଲେ ।"

ମୁଁ କହିଲି, "ଆମେ ଏଠାକୁ ଆସିବା ପୂର୍ବରୁ ସେଇ କଥାଟା ତୁମର ଭାବି ଦେଖିବା ଉଚିତ ଥିଲା ।"

ସେ କୌଣସି ଉତ୍ତର ଦେଲା ନାହିଁ । ଆପଣା ଚିନ୍ତାରେ ନିମଗ୍ନ ରହି ମୃଦୁ ସ୍ୱରରେ ଗୁଣ୍ ଗୁଣ୍ ଶବ୍ଦ କରିବାକୁ ଲାଗିଲା । ମୋର ରାଗ କ୍ରମେ ପଡ଼ି ଆସୁଥିଲା ।

ମୁଁ ପଚାରିଲି, "ଯାହାହେଉ, ଗୋଲକଟିର ଦଶା କଣ ହୋଇଛି ବୋଲି ତୁମେ ଭାବୁଛ ?"

ଗୋଟିଏ ବାଜେ ପ୍ରଶ୍ନର ଉତ୍ତର ଦେଲା ପରି ସେ କହିଲା । "ହଜି-ଯାଇଛି ।"

"ସେହି ଉଦ୍ଭିଦଗୁଡ଼ିକ ଭିତରେ ?"

"ହଁ, ଅବଶ୍ୟ ଯଦି ସେମାନେ ତାହା ପାଇ ନଥାନ୍ତି ।"

"ଯଦି ପାଇଥାନ୍ତି, ତାହାହେଲେ କଣ ହେବ ?"

"ମୁଁ କିପରି ଜାଣିବି ?"

ମୁଁ ଉତ୍ତ୍ୟକ୍ତ ହୋଇ ତିକ୍ତ କଣ୍ଠରେ କହିଲି, "କେଭର, ମୋର କୋମ୍ପାନୀ ପାଇଁ ଏଠି ଭାରି ସୁବିଧା ହେଲାପରି ଜଣା ପଡ଼ୁଛି..."

ସେ କୌଣସି ଉତ୍ତର ଦେଲା ନାହିଁ ।

ମୁଁ ଚିତ୍କାର କରି କହିଲି, "ହେ ଭଗବାନ୍ ! ଏହି ଦୁର୍ଦ୍ଦଶା ଭିତରକୁ ଆସିବା ପାଇଁ ଆମକୁ କେତେ ପରିଶ୍ରମ କରିବାକୁ ହୋଇଥିଲା ତାହା ଥରେ

ଭବ ଦେଖ କେଭର । କି ଉଦ୍ଦେଶ୍ୟରେ ଆମ୍ଭେ ଏଠାକୁ ଆସିଲୁଁ ? କଣ ପାଇବାକୁ ଆମେ ଚାହୁଁଛୁଁ ? ଆମର ଚନ୍ଦ୍ର ସହିତ କି ସମ୍ପର୍କ କିମ୍ବା ଚନ୍ଦ୍ରର ଆମ ସହିତ କି ସମ୍ପର୍କ ? ଆମେ ଅତି ବେଶି ଆଶା କଲୁଁ, ଅତି ବେଶି ଚେଷ୍ଟା କଲୁଁ । ଶ୍ରେଷ୍ଠ ଶ୍ରେଷ୍ଠ ଜିନିଷରେ ପ୍ରଥମେ ହାତ ଦେଇ ଦେଖିବା ଆମର ଉଚିତ ଥିଲା । ତୁମେଇ ତ ଚନ୍ଦ୍ରକୁ ଯିବା କଥା ଉଠେଇଲ ! ମୁଁ ଯେଉଁ କେଭରଟ୍ ସ୍ପ୍ରିଙ୍ଗ ପର୍ଦ୍ଦା କଥା କହୁଥିଲି ! ଆମେ ନିଶ୍ଚୟ ! କେଭର ମୁଁ ଯାହା ପ୍ରସ୍ତାବ କରୁଥିଲି ତୁମେ ପ୍ରକୃତରେ ବୁଝିପାରିଥିଲ ତ ? ଗୋଟିଏ ଇସ୍ପାତ ନିର୍ମିତ ନଳ—"

କେଭର କହିଲା, "ପାଉଁଶ !"

ଆମର କଥାବାର୍ତ୍ତା ବନ୍ଦ ହୋଇଗଲା ।

କିଛି ସମୟ ପର୍ଯ୍ୟନ୍ତ କେଭର ଦରଖଣ୍ଡିଆ ଭାବରେ ଏକା ଏକା ଗପି ଚାଲିଲା, ମୁଁ ସେଥିରେ ବିଶେଷ ଭାଗ ନେଲି ନାହିଁ ।

ସେ କହିବାକୁ ଲାଗିଲା, "ସେମାନେ ଯଦି ତାହା ପାଆନ୍ତି···ସେମାନେ ଯଦି ତାହା ପାଆନ୍ତି, ତେବେ ତାହାଦ୍ୱାରା ସେମାନେ କଣ କରିବେ ? ହିଁ, ସେଇ ହେଉଛି ପ୍ରଶ୍ନ । ବୋଧହୁଏ ତାହା ହିଁ ଏକମାତ୍ର ପ୍ରଶ୍ନ । ଯାହାହେଉ ସେମାନେ ତ ଜିନିଷଟିକୁ ବୁଝି ପାରିବେ ନାହିଁ । ଯଦି ସେମାନେ ସେ ସବୁ ବୁଝିପାରୁ ଥାଆନ୍ତେ ତାହାହେଲେ ତ ସେମାନେ ଅନେକ ପୂର୍ବରୁ ପୃଥିବୀକୁ ଆସି ସାରନ୍ତେଣି । ଆସନ୍ତେ କି ? କାହିଁକି ନ ଆସନ୍ତେ ? ତାହାହେଲେ ତ ସେମାନେ କୌଣସି ଜିନିଷ ପୃଥିବୀକୁ ପଠାଇ ଥାଆନ୍ତେ—ଏପରି ଗୋଟିଏ ସମ୍ଭାବନାକୁ ସେମାନେ କଦାପି ଆଡ଼େଇ ଦେଇ ନ ଥାଆନ୍ତେ । ନା ! କିନ୍ତୁ ସେମାନେ ନିଶ୍ଚୟ ଜିନିଷଟିକୁ ପରୀକ୍ଷାକରି ଦେଖିବେ । ସଫା ଜଣା ପଡୁଛି, ସେମାନେ ବୁଦ୍ଧିମାନ୍ ଓ ଅନୁସନ୍ଧିତ୍ସୁ । ସେମାନେ ଏହାକୁ ପରୀକ୍ଷା କରି ଦେଖିବେ—ଏହା ଭିତରକୁ ପଶିବେ—ବୋତାମ ଗୁଡ଼ିକରେ ହାତ ଦେବେ । ସାଁ କିନା ଉଡ଼ିଯିବେ···ତାର ଅର୍ଥ ବାକି ଜୀବନଟା ଆମେ ଚନ୍ଦ୍ରରେ ପଡ଼ିରହିବୁଁ । ଅଦ୍ଭୁତ ଜୀବ, ଅଦ୍ଭୁତ ଜ୍ଞାନ···"

ମୁଁ କହିଲି, "ଅଦ୍ଭୁତ ଜ୍ଞାନ କଥା ଯଦି କହିଲି—" ବିରକ୍ତିରେ ମୋ ପାଟିରୁ ଆଉ କଥା ବାହାରିଲା ନାହିଁ ।

କେଭର କହିଲା, "ଦେଖ, ବେଡ୍‌ଫୋର୍ଡ୍, ତୁମେ ନିଜର ଇଚ୍ଛାରେ ଏଠାକୁ ଆସିଛ ।"

"କିନ୍ତୁ ତୁମେ କହିଲ, 'ଏହା ରତ୍ନ-ଅନ୍ୱେଷଣ ବୋଲି ଧର !"

"ରତ୍ନ ଅନ୍ୱେଷଣ କରିବାରେ ବରାବର ବିପଦ ଆପଦର ଆଶଙ୍କା ରହିଥାଏ ।"

"ବିଶେଷ କରି ତୁମେ ଯେତେବେଳେ ଅସ୍ତ୍ର ଶସ୍ତ୍ର ନ ନେଇ ଏବଂ ସବୁ ସମ୍ଭାବନା କଥା ଚିନ୍ତା କରି ନ ଦେଖି ଏହା କରିବାକୁ ବାହାରି ।"

"ମୁଁ ଗୋଲକର ଚିନ୍ତାରେ ଏତେ ବ୍ୟସ୍ତ ଥିଲି । ଏହା ହଠାତ୍ ଆମ ମନରେ ମାଡ଼ିଆସିଲା ଏବଂ ଆମକୁ ନେ ହତ୍ରସ୍ତ କରିଦେଲା ।"

"ଅର୍ଥାତ୍ ହଠାତ୍ ତୁମ ମନରେ ମାଡ଼ି ଆସିଲା !"

"ମୋ ମନରେ ବି ସମାନ ପରିମାଣରେ ମାଡ଼ି ଆସିଥିଲା । ମୁଁ ଯେତେବେଳେ ପରମାଣୁ ବିଜ୍ଞାନର ଚର୍ଚ୍ଚା କରିବାକୁ ଆରମ୍ଭ କଲି, ସେତେବେଳେ କଣ ଜାଣିଥିଲି ଯେ ଶେଷରେ ଏହା ମୋତେ ଏଠି ଆଣି ପହଞ୍ଚାଇ ଦେବ ?"

"ଏଇଟା ତମର ବିଜ୍ଞାନର ଦୋଷ । ଏହା ପ୍ରକୃତ ସତ୍ୟ । ମଧ୍ୟ ଯୁଗର ଧର୍ମଯାଜକ ଓ ନୀତିନିର୍ଦ୍ଦେଶକମାନେ ଠିକ୍ କଥା ହିଁ କହୁଥିଲେ, ଆଧୁନିକମାନେ ସବୁ ଭୁଲ କହୁଛନ୍ତି । ବିଜ୍ଞାନକୁ ତୁମେ ଅଣ୍ଟାଳି ଦେଖ—ଏବଂ ଏହା ତୁମକୁ ପୁରସ୍କାରର ଲୋଭ ଦେଖାଏ, କିନ୍ତୁ ତୁମେ ସେହି ପୁରସ୍କାର ଗ୍ରହଣ କଲାକ୍ଷଣି ଏହା ତୁମକୁ କୌଣସି ଅଜ୍ଞାତ ଉପାୟରେ ଧ୍ୱଂସ କରିଦିଏ । ଅଜ୍ଞାତର ହିଂସା ଏବଂ ନୂତନ ଅସ୍ତ୍ର—କେତେବେଳେ ତାହା ତୁମର ଧର୍ମକୁ ଓଲଟ ପାଲଟ କରିଦିଏ, କେତେବେଳେ ବା ସାମାଜିକ ବିଶ୍ୱର ଆଗ୍ରହକୁ ଓଲଟ ପାଲଟ କରିଦିଏ ଅନ୍ୟ କେତେବେଳେ ବା ଏହା ତୁମକୁ ଦୁଃଖ ଓ ନିଃସଙ୍ଗତା ଭିତରକୁ ଫୋପାଡ଼ି ଦିଏ ।"

"ସେ ଯାହା ହେଉ, ବର୍ତ୍ତମାନ ମୋ ସହିତ କଳି କରି ତୁମର ଲାଭ ନାହିଁ । ଏହି ଜୀବମାନେ—ଏମାନଙ୍କୁ ଗ୍ରୁନ୍ଥକ କହ ବା ଆଉ ଯାହା କହ—ଏମାନେ ଆମର ହାତଗୋଡ଼ ବାନ୍ଧି ପକେଇଛନ୍ତି । ଏପରି ଅବସ୍ଥାରେ ତୁମେ ଯେମିତି ମେଜାଜ ଦେଖାଅନା କାହିଁକି, ଏ ଅବସ୍ଥାର କୌଣସି ପରିବର୍ତ୍ତନ ହେବନାହିଁ···ଆମ ଆଗରେ ଏପରି ସବୁ ଅଭିଜ୍ଞତା ଆସିବାର ସମ୍ଭାବନା ଅଛି ଯାହାକୁ ଭେଟିବା ପାଇଁ ଆମକୁ ସମ୍ପୂର୍ଣ୍ଣରୂପେ ମୁଣ୍ଡ ଥଣ୍ଡାକରି ରଖିବାକୁ ପଡ଼ିବ ।"

ସେ ଟିକେ ଚୁପ୍ କରିଗଲା ମୋର ସମ୍ମତି ପାଇବା ଆଶାରେ । କିନ୍ତୁ ମୁଁ ମୁହଁ ପିଡ଼ା କରି ବସିରହିଲି । କହିଲି, "ଚୁଲିକି ଯାଉ ତମର ବିଜ୍ଞାନ ।"

ସେ କହିବାକୁ ଲାଗିଲା, "ସମସ୍ୟା ହେଉଛି ଭାବର ଆଦାନ ପ୍ରଦାନ । ମୋର ଆଶଙ୍କା, ସେମାନଙ୍କର ଇଙ୍ଗିତ ସହିତ ଆମର ଇଙ୍ଗିତ ମେଳ ଖାଇବ ନାହିଁ । ଉଦାହରଣ ସ୍ୱରୂପ ଧର, ଠାରିବା । ମଣିଷ ଆଉ ମାଙ୍କଡ଼ ଛଡ଼ା ଅନ୍ୟ କୌଣସି ଜୀବ ଠାରନ୍ତି ନାହିଁ ।"

ମୁଁ ଜାଣିଥିଲି ଏ କଥାଟା ସମ୍ପୂର୍ଣ୍ଣ ଭୁଲ । କହିଲି, "ପ୍ରାୟ ପ୍ରତ୍ୟେକ ପକ୍ଷୀ ତାର ଆଖି କିମ୍ବା ନାକ ସାହାଯ୍ୟରେ ଠାରେ ।"

କେଭର କଥାଟା ଭାବି ଦେଖିଲା । ଶେଷରେ କହିଲା, "ହଁ, କିନ୍ତୁ ମଣିଷମାନେ ତାହା କରନ୍ତି ନାହିଁ । ଏଡ଼େ ପାର୍ଥକ୍ୟ ରହିଛି—ଏଡ଼େ ପାର୍ଥକ୍ୟ !"

ସେ କହି ଚାଲିଲା, "ହଁ ଏହା କରାଯାଇପାରେ······କିନ୍ତୁ ମୁଁ ଠିକ୍ ଭାବରେ କିପରି କହିବ ? ଧର କଥାବାର୍ତ୍ତା । ସେମାନେ ଯେଉଁ ଶବ୍ଦ କରନ୍ତି, ଏକପ୍ରକାର ଟେଁ ଟେଁ କେଁ କେଁ ଶବ୍ଦ । ତାହା ଆମେ କିପରି ଅନୁକରଣ କରିବା ମୁଁ ବୁଝିପାରୁନାହିଁ । ସେଇଟା କଣ ସେମାନଙ୍କର କଥାବାର୍ତ୍ତା ? ସେମାନଙ୍କର ଭିନ୍ନ ଇନ୍ଦ୍ରିୟ ଥାଇପାରେ, ଭାବର ଆଦାନ ପ୍ରଦାନ ପାଇଁ ଭିନ୍ନ ଉପାୟ ଥାଇପାରେ । ଅବଶ୍ୟ ସେମାନଙ୍କର ଚିନ୍ତାଶକ୍ତି ଅଛି । ଆମର ବି ଅଛି; ତେଣୁ ସେମାନଙ୍କ ଓ ଆମ ଭିତରେ କିଛି ଐକ୍ୟ ଥାଇପାରେ । କିଏ ଜାଣେ, ହୁଏ ତ ଆମେ ସେମାନଙ୍କ ସହିତ ବୁଝାମଣା କରିପାରିବା ।"

ମୁଁ କହିଲି, "ଏ ସବୁ ଆମର କ୍ଷମତାର ବାହାରେ । ପୃଥିବୀର ଅଦ୍ଭୁତ-ତମ ପଶୁ ଅପେକ୍ଷା ସେମାନଙ୍କ ସହିତ ଆମର ପାର୍ଥକ୍ୟ ଢେର ବେଶୀ । ସେମାନେ ସମ୍ପୂର୍ଣ୍ଣ ଭିନ୍ନ ଉପାଦାନରେ ଗଢ଼ା । ଏପରିଭାବରେ ବକବା ଦ୍ୱାରା କି ଲାଭ ମିଳିବ ?"

କେଭର ଘୃଣା ଦେଖିଲା । କହିଲା, "ନା, ମୁଁ ତୁମ ସହିତ ଏକମତ ହୋଇ ପାରୁନାହିଁ । ଯେତେବେଳେ ଦୁଇ ଶ୍ରେଣୀର ଜୀବଙ୍କର ଚିନ୍ତାଶକ୍ତି ରହିଛି, ସେମାନଙ୍କ ଭିତରେ ନିଶ୍ଚୟ କୌଣସି ସାମଞ୍ଜସ୍ୟ ଥିବ—ଯଦିଓ ସେମାନେ ଭିନ୍ନ ଭିନ୍ନ ଢଙ୍ଗରେ ବିବର୍ତ୍ତିତ ହୋଇଥିବେ । ଅବଶ୍ୟ ଏହା ଯଦି କେବଳ ପ୍ରବୃତ୍ତିର ପ୍ରଶ୍ନ ହୋଇଥାନ୍ତା, ଯଦି ସେମାନେ କିମ୍ବା ଆମେ ପଶୁ-ଠାରୁ ଅଧିକ କିଛି ନ ହୋଇଥାନ୍ତୁ—"

"ଆଚ୍ଛା, ସେମାନେ ପଶୁଠୁଁ ଅଧିକ ଆଉ କଣ ? ପଛଆଡ଼ ଗୋଡ଼ରେ ଚାଲୁଥିବା ସିମ୍ପାଞ୍ଜି ସହିତ ସେମାନଙ୍କର ଯେତେ ସାଦୃଶ୍ୟ ଅଛି ମଣିଷ ସହିତ ସେତେ ନାହିଁ । ସିମ୍ପାଞ୍ଜି ସହିତ କିଏ କେବେ ବୁଝାମଣା କରୁଥିଲା ?"

"କିନ୍ତୁ ଏଇ ଯନ୍ତ୍ର ଆଉ ପୋଷାକ ପରିଚ୍ଛଦ ! ନା, ବେଡ୍‌ଫୋର୍ଡ୍, ମୁଁ ତୁମ ସହିତ ଏକମତ ହୋଇପାରୁ ନାହିଁ । ପାର୍ଥକ୍ୟ ଅନେକ—"

"ସେ ପାର୍ଥକ୍ୟ ଅତିକ୍ରମ କରିବା ଅସମ୍ଭବ ।"

"କିନ୍ତୁ ଆମର ସାଦୃଶ୍ୟ ଏହାକୁ ଅତିକ୍ରମ କରିବ । ସ୍ୱର୍ଗୀୟ ଅଧ୍ୟାପକ ଗାଲ୍‌ଟନଙ୍କ ଲେଖା ଗୋଟିଏ ପ୍ରବନ୍ଧ ମୁଁ ଥରେ ପଢ଼ିଥିଲି । ସେ ଗ୍ରହମାନଙ୍କ ଭିତରେ ଖବର ଆଦାନ ପ୍ରଦାନ ବିଷୟ ଆଲୋଚନା କରିଥିଲେ, କିନ୍ତୁ ଦୁଃଖର କଥା, ସେତେବେଳେ ମୁଁ ଭାବି ନ ଥିଲି ଯେ ଏହା ମୋର କୌଣସି କାମରେ ଲାଗିପାରେ । ତେଣୁ ବର୍ତ୍ତମାନର ଅବସ୍ଥା ଦୃଷ୍ଟିରୁ, ମୋର ସେ ପ୍ରବନ୍ଧ ପ୍ରତି ଯେତେଦୂର ମନଦେବା ଉଚିତ ଥିଲା ମୁଁ ତାହା ଦେଇ ନ ଥିଲି । ତଥାପି······ଆଚ୍ଛା, ମୁଁ ମନେପକେଇ ଦେଖେଁ !"

ସେ କହିଚାଲିଲା, "ହିଁ, ତାଙ୍କର ଉଦ୍ଦେଶ୍ୟ ଥିଲା, ସମସ୍ତ ପ୍ରକାର ମାନସିକ କ୍ଷମତାର ଅନ୍ତରାଳରେ ଯେଉଁ ସ୍ଥୂଳ ସତ୍ୟଗୁଡ଼ିକ ନିହିତ ଥିବା

ସୁନିଶ୍ଚିତ, ପ୍ରଥମେ ସେହି ସତ୍ୟଗୁଡ଼ିକ ଉପରେ ନିର୍ଭର କରି ମୂଳଦୁଆ ସ୍ଥାପନ କରିବା । ଜ୍ୟାମିତିର ଶ୍ରେଷ୍ଠ ତଥ୍ୟଗୁଡ଼ିକ ପ୍ରଥମେ ଧରାଯାଉ, ସେ ବୃହତ୍ତ ଥିଲେ, ଇଉକ୍ଲିଡ଼ଙ୍କର କୌଣସି ପ୍ରଧାନ ପ୍ରସ୍ତାବନାକୁ ଗ୍ରହଣକରି ଅଙ୍କନ ଦ୍ୱାରା ଦେଖେଇ ଦିଆଯିବ ଯେ ଏହି ସତ୍ୟ ଆମକୁ ଜଣାଥିଲା । ଉଦାହରଣସ୍ୱରୂପ, ପ୍ରମାଣ କରି ଦିଆଯିବ ଯେ କୌଣସି ସମଦ୍ୱିବାହୁ ତ୍ରିଭୁଜର ଭୂମିରେ ଥିବା କୋଣଗୁଡ଼ିକ ସମାନ ହେବ, ଏବଂ ଯଦି ତ୍ରିଭୁଜର ସବୁବାହୁ ସମାନ ହୁଏ ତାହାହେଲେ ଭୂମିର ବିପରୀତ ଦିଗରେ ଥିବା କୋଣ ମଧ୍ୟ ସମାନ ହେବ, କିମ୍ବା କୌଣସି ସମକୋଣୀ ତ୍ରିଭୁଜର କର୍ଣ୍ଣ ଉପରେ ଥିବା ବର୍ଗ କ୍ଷେତ୍ର ସେହି ତ୍ରିଭୁଜର ଅନ୍ୟ ଦୁଇ ପାଖରେ ଥିବା ବର୍ଗକ୍ଷେତ୍ର ଦ୍ୱୟର ଯୋଗଫଳ ସହିତ ସମାନ । ଏ ସବୁ ବିଷୟରେ ଆମର ଜ୍ଞାନ କଥା ପ୍ରମାଣ କରିବାଦ୍ୱାରା ଆମେ ପ୍ରମାଣ କରି ଦେବୁଁ ଯେ ଆମର ଯଥାର୍ଥ ବୁଦ୍ଧି ଅଛି ।...ଧର, ମୁଁ...ମୁଁ କୌଣସି ଜ୍ୟାମିତିକ ନକ୍ସା ଓ଼ଦା ଆଙ୍ଗୁଠି ସାହାଯ୍ୟରେ ଅଙ୍କନ କରିଦେଇ ପାରେଁ, କିମ୍ବା କେବଳ ଶୂନ୍ୟରେ ତାହା ଟାଣି ଦେଇପାରେଁ.....”

ସେ ଚୁପ୍ ହୋଇଗଲା । ମୁଁ ତାର କଥାଗୁଡ଼ିକ ଭାବି ଦେଖିବାକୁ ଲାଗିଲି । ସେହି ଅଦ୍ଭୁତ ଜୀବଗୁଡ଼ିକଙ୍କ ସହିତ ଭାବର ଆଦାନପ୍ରଦାନ କରିବା-ଆକାଂକ୍ଷାର ଅର୍ଥ ଗ୍ରହଣ କରିବା ବିଷୟରେ ତାର ପ୍ରଚଣ୍ଡ ଆଶା ମୋର ମନକୁ କିଛି ସମୟ ପର୍ଯ୍ୟନ୍ତ ଅଧିକାର କରି ରଖିଲା । ତାପରେ ଯେଉଁ ହତାଶାଜନିତ କ୍ରୋଧ ମୋର କ୍ଲାନ୍ତି ଏବଂ ଦୈହିକ କ୍ଲେଶ ସହିତ ମିଶି ରହିଥିଲା ତାହା ପୁଣି ଉନ୍ମୁକ୍ତ ହେଲା । ମୁଁ ଏପର୍ଯ୍ୟନ୍ତ ଯାହା ଯାହା କରିଥିଲି ତାହା କେତେ ବୋକାମୀର କାର୍ଯ୍ୟ ଥିଲା ଏ କଥା ମୁଁ ହଠାତ୍ ନୂତନରୂପେ ସ୍ପଷ୍ଟଭାବରେ ଉପଲବ୍ଧି କରି ପାରିଲି । ମୁଁ କହିଲି, “ଗଧ ! ଓଃ, ଗଧ, କପଟ ଗଧ... ଓ଼ଲ୍ଙ୍କ ପରି କେବଳ ଅସମ୍ଭବ କାମ କରି ବୁଲିବା ପାଇଁ କଣ ମୋର ଜନ୍ମ ହୋଇଥିଲା ? ଆମେ କାହିଁକି ଗୋଲକଟି ଛାଡ଼ିଦେଇ ଆସିଲୁଁ ? ଚନ୍ଦ୍ରର ଗୁହା ଭିତରେ ଡେଇଁ ଡେଇଁ ସର୍ବସ୍ୱତ୍ୱାଧିକାର ଆଉ ସୁବିଧାଧିକାର ଖୋଜି ବୁଲିବା ପାଇଁ ?......ଗୋଲକଟି କେଉଁଠି ଛାଡ଼ି ଆସିଲୁଁ ତାହା ଦେଖାଇବା ପାଇଁ ଗୋଟିଏ ଖୁଣ୍ଟି ଉପରେ ରୁମାଲଟିଏ ବାନ୍ଧି ଦେଇ ଆସିବା ଭଳିଆ ବୁଦ୍ଧି ଯଦି ଆମର ଆସନ୍ତା !”

ମୁଁ ଶୁଣିରେ ହଁ ହଁ କରି ଚୁପ୍ ହୋଇଗଲି ।

କେଉଭର ଚନ୍ଦ୍ରାମଗ୍ନ ଭାବରେ କହି ଗଲ୍ଲା, "ସଫା, ଜଣା ପଡୁଛି; ସେମାନଙ୍କର ବୁଦ୍ଧି ଅଛି । ଅନେକ କିଛି ଅନୁମାନ କରାଯାଇ ପାରେ । ଯେଣୁ ସେମାନେ ଆମକୁ ସାଙ୍ଗେ ସାଙ୍ଗେ ମାରି ପକେଇ ନାହାନ୍ତି । ସେମାନେ ନିଶ୍ଚୟ ଦୟା କଣ ତାହା ଜାଣନ୍ତି । ଦୟା ..! ଅନ୍ତତଃ ସଂଯମର ଜ୍ଞାନ । ବୋଧହୁଏ ଭାବ ଆଦାନପ୍ରଦାନର ଜ୍ଞାନ ମଧ୍ୟ । ସେମାନେ ଆମ ସହିତ ସାକ୍ଷାତ କରି ପାରନ୍ତି । ଏହି କୋଠରୀ ଆଉ ଏହାର ରକ୍ଷକ କଥା ଭାବି ଦେଖ ! ଡାକ୍ତରୀ ଏଇ ଝିଙ୍କୁଲୀ ! ନିଶ୍ଚୟ ସେମାନଙ୍କର ଅତି ଉଚ୍ଚ ବୁଦ୍ଧି ଅଛି......"

ମୁଁ କହିବାକୁ ଲାଗିଲି, "ଓଃ ! ମୁଁ ଯଦି ଅନ୍ତତଃ ଦୁଇଥର ଭାବି ଦେଖିଥାନ୍ତି ! ଭୁଲ ପରେ ଭୁଲ । ପ୍ରଥମେ ଗୋଟିଏ ଭ୍ରମ, ତାପରେ ପୁଣି ଆଉ ଗୋଟିଏ । କେବଳ ତୁମ ଉପରେ ମୋର ଅଗାଧ ବିଶ୍ୱାସ ଯୋଗୁ ହିଁ ଏହା ହେଲା । ମୁଁ ମୋର ନାଟକ ନେଇ ରହିଲି ନାହିଁ କାହିଁକି ? ସେଇଥିରେ ହିଁ ମୋର ସାମର୍ଥ୍ୟ ଥିଲା । ତାହାହିଁ ଥିଲା ମୋର ଦୁନିଆଁ ଏବଂ ସେଇ ଜୀବନ ଲାଗି ମୁଁ ଗଢ଼ା ହୋଇଥିଲି । ମୁଁ ସେଇ ନାଟକଟି ଶେଷ କରି ପାରିଥାନ୍ତି । ପ୍ରକୃତରେ···ତାହା ଗୋଟିଏ ଚମତ୍କାର ନାଟକ ଥିଲା । ମୁଁ ଦୃଶ୍ୟଋତୁର ପ୍ରାୟ ଶେଷ କରି ସାରିଥିଲି । ତାପରେ···ଭାବି ଦେଖ ! ଚନ୍ଦ୍ର ଉପରକୁ ଡିଆଁ ମାରିବା ! ବାସ୍ତବିକ—ମୁଁ ମୋର ଜୀବନକୁ ପାଣି ଛଡ଼େଇ ଦେଇଛି ! କେଣ୍ଟରବରୀର ଘରେଇ ଘରେ ସେଇ ବୁଢ଼ୀଟାର ବରଂ ବେଶୀ ବୁଦ୍ଧି ଥିଲା ।"

ମୁଁ ମୁଣ୍ଡଟେକି ବକ୍ତୃତାର ମଝିରେ ଅଟକି ଗଲି । ଅନ୍ଧକାର ପରି-ବର୍ତ୍ତେ ପୁଣି ନୀଳ ଆଲୋକ ଦେଖାଯାଉଥିଲା । କବାଟଟା ଧୀରେ ଧୀରେ ଖୋଲୁଥିଲା ଏବଂ ଅନେକଗୁଡ଼ିଏ ଗୃହ୍ର କ ନିଃଶବ୍ଦ ଭାବରେ କୋଠରୀ ଭିତରକୁ ପଶି ଆସୁଥିଲେ । ମୁଁ ସ୍ତବ୍ଧ ହୋଇ ସେମାନଙ୍କର କଦାକାର ମୁହଁଆଡ଼େ ଚାହିଁ ରହିଲି ।

ତାପରେ ହଠାତ୍ ମୋର ଅସ୍ୱସ୍ତିକର ଅଜଣା ଭାବ ପରିବର୍ତ୍ତେ ଔତ୍ସୁକ୍ୟ ଦେଖାଗଲା । ମୁଁ ଦେଖିଲି ଯେ ସଖା ଆଗରେ ଥିବା ଏବଂ ସ୍ତ୍ରୀ ପଛରେ ଥିବା ଗୃଦ୍ଧ୍ରକର ହାତରେ ଗୋଟିଏ ଲେଖାଏଁ ଗିନା ରହିଛି । ଅନ୍ତତଃ ସେମାନଙ୍କର ଓ ଆମର ମନ ଗୋଟିଏ ମୌଳିକ ଆବଶ୍ୟକ ଏକ ଭାବରେ ବୁଝି ପାରିଥିଲା । ଗିନା ଗୁଡ଼ିକ ଧାତୁ ନିର୍ମିତ ଥିଲା ଏବଂ ଆମର ଟିଙ୍କୁଲୀପରି ନେଳିଆ ଆଲୋକରେ ଗାଢ଼ବର୍ଣ୍ଣ ଦିଶୁଥିଲା । ପ୍ରତ୍ୟେକ ପାତ୍ରରେ କୌଣସି ଧଳା ବସ୍ତୁର ଖଣ୍ଡଗୁଡିଏ ରହିଥିଲା । ଏହା ପୂର୍ବରୁ ଯେଉଁ ଅସ୍ପଷ୍ଟ ଯନ୍ତ୍ରଣା ଓ ଅସ୍ୱସ୍ତି ଦ୍ୱାରା ମୁଁ କଷ୍ଟ ପାଉଥିଲି ତାହା ହଠାତ୍ ଏକସଙ୍ଗରେ ମାତ୍ର ଆସି କ୍ଷୁଧାର ରୂପ ଗ୍ରହଣ କଲା । ମୁଁ କାଙ୍ଗାଳଙ୍କ ପରି ପାତ୍ରଗୁଡ଼ିକ ଆଡ଼େ ଅନେଇ ରହିଲି, ଏବଂ ସେ ସମୟରେ ଗୋଟିଏ କଥା ଲକ୍ଷ୍ୟକଲି ଯାହାକି ଏହାପରେ ଅନେକଥର ମୋର ସ୍ୱପ୍ନରେ ପ୍ରତ୍ୟାବର୍ତ୍ତିତ ହୋଇଥିଲା, କିନ୍ତୁ ସେହି ସମୟରେ ତାହା ମୋ ପକ୍ଷରେ ଗୋଟିଏ ସାମାନ୍ୟ ବ୍ୟାପାର ଥିଲା । ଯେଉଁ ହାତ ମୋ ଆଗରେ ଗୋଟିଏ ପାତ୍ର ଥୋଇଦେଲା ତାର ଶେଷଭାଗରେ ପାପୁଲି ନ ଥିଲା । ପାପୁଲି ପରିବର୍ତ୍ତିରେ ଗୋଟିଏ ଚେପ୍ଟା ପାତଳ ମାଂସଖଣ୍ଡ ଏବଂ ବୁଢ଼ା ଆଙ୍ଗୁଠି ଥିଲା, ଯେପରି ହାତର ଥୋଡ଼ପା-ହାରର ଶେଷଭାଗରେ ଥାଏ ।

ପାତ୍ରରେ ଥିବା ଜିନିଷଟି ଦେଖିବାକୁ ହାଲୁକା ଦିଶୁଥିଲା, ଏବଂ ତାର ରଙ୍ଗଥିଲା ଧଳା-ମାଟିଆ — ପ୍ରାୟ ଫମ୍ପା ଅଣ୍ଡା ପିଠାର ଖଣ୍ଡପରି ଏବଂ ସେଥିରୁ ଛତୁର ଗନ୍ଧପରି ଗୋଟିଏ ଅସ୍ପଷ୍ଟ ଗନ୍ଧ ବାହାରୁଥିଲା । ମୋର ମନେ ହୁଏ ତାହା ସମ୍ଭବତଃ ଗୃଧ୍ର ଗୋରୁର ମାଂସ ଥିଲା, କାରଣ ଏହାର କିଛି ସମୟ ପରେ ଆମେ ଆଂଶିକ ଭାବରେ କଟା ହୋଇଥିବା ଗୋଟିଏ ଗୃଧ୍ରଗୋରୁର ମୃତ ଦେହ ଦେଖିଲୁଁ ।

ମୋର ହାତ ଦୁଇଟି ଏତେ ଜୋରରେ କଷିକରି ବନ୍ଧା ହୋଇଥିଲା ଯେ ମୁଁ ପାତ୍ର ଆଡ଼କୁ ହାତ ବଢ଼ାଇ ପାରିଲି ନାହିଁ । କିନ୍ତୁ ସେମାନେ ଯେତେବେଳେ ଦେଖିଲେ ଯେ, ମୋତେ ଭଡ଼ାଓଟରି କରିବାକୁ ପଡ଼ୁଛି, ସେମାନଙ୍କ ମଧ୍ୟରୁ ଦୁଇଜଣ ନିପୁଣତା ସହିତ ମୋର ହାତର

ଗୋଟିଏ ଗିଙ୍କୁଲି ଖୋଲିଦେଲେ । ସେମାନଙ୍କର ଶୁଣ୍ଡପରି ହାତ ମୋ ଦେହକୁ ନରମ ଓ ଥଣ୍ଡା ଲାଗୁଥିଲା । ମୁଁ ତତ୍‌କ୍ଷଣାତ୍ ଖାଦ୍ୟରୁ ବଡ଼-ମେଞ୍ଚାଏ ମୋର ପାଟିରେ ଭର୍ତ୍ତି କରିଦେଲି । ଚନ୍ଦ୍ରର ସମସ୍ତ ଜୈବିକ ବସ୍ତୁ ଯେପରି ହାଲୁକା ପରି ମନେହୁଏ ତାହା ମଧ୍ୟ ସେହିପରି ହାଲୁକା ଥିଲା । ତାହା ପ୍ରାୟ ଅଣ୍ଡାମିଶା ଫମ୍ପା କେକ୍ ପିଠା ପରି ସ୍ୱାଦଯୁକ୍ତ ଥିଲା, କିନ୍ତୁ ମୋଟେ ଅରୁଚକର ନ ଥିଲା । ମୁଁ ଆଉ ଦୁଇଗୁଣ୍ଡା ପାଟିରେ ଭର୍ତ୍ତି କଲି । ପୁଣି ଆଉରି ବଡ଼ ଗୁଣ୍ଡାଏ ହାତରେ ଧରି ମୁଁ କହିଲି, "ଓଃ, ମୋତେ କେଡ଼େ ଭୋକ କରୁଥିଲା !"

କିଛି ସମୟ ପର୍ଯ୍ୟନ୍ତ ଆମେ ସମ୍ପୂର୍ଣ୍ଣ ଆତ୍ମବିସ୍ମୃତ ହୋଇ ଖାଇବାକୁ ଲାଗିଲୁଁ, ଖାଇସାରି ବାରବୁଲଙ୍କ ପରି ଶୋଷେଇ ସିଝା ପାଣି ପିଇଲୁଁ । ମୁଁ ସେ ସମୟରେ ଯେଉଁ ତୀବ୍ର କ୍ଷୁଧା ବୋଧ କରୁଥିଲି, ଏହା ପୂର୍ବରୁ କିମ୍ବା ଏହାପରେ ଆଉ କେବେ ସେପରି ବୋଧ କରିନାହିଁ । ମୁଁ ଯଦି ନିଜେ ଏହି ଅଭିଜ୍ଞତା ଲାଭ କରି ନଥାନ୍ତି, ତାହାହେଲେ କେବେ ବିଶ୍ୱାସ କରି ନ ଥାନ୍ତି ଯେ, ଆମର ନିଜର ଦୁନିଆଁ ଠାରୁ ଦୁଇଲକ୍ଷ ପଚାଶ ହଜାର ମାଇଲ ଦୂରରେ, ଅଦ୍ଭୁତ ରହସ୍ୟ ଭିତରେ, ଦୁଃସ୍ୱପ୍ନର ବିଭତ୍ସତମ ସୃଷ୍ଟି ଅପେକ୍ଷା ଅଧିକ କିମ୍ଭୂତକିମାକାର ଓ ଅମାନୁଷିକ ଜୀବଗୁଡ଼ିକଙ୍କ ଦ୍ୱାରା ପରିବେଷ୍ଟିତ, ଲକ୍ଷିତ ଓ ସ୍ପୃଷ୍ଟ ହୋଇ ମଧ୍ୟ, ଏ ସବୁ କଥା ସମ୍ପୂର୍ଣ୍ଣରୂପେ ଭୁଲିଯାଇ ଖାଇବାରେ ବ୍ୟସ୍ତ ରହିବା ମୋ ପକ୍ଷରେ ସମ୍ଭବ ହୋଇଥାନ୍ତା । ସେମାନେ ଆମ ଚାରିପଟେ ଘେରି ଆମକୁ ଲକ୍ଷ୍ୟ କରୁଥିଲେ ଏବଂ ମଝିରେ ମଝିରେ ଗୋଟିଏ କ୍ଷୀଣ ଅବୋଧ ଙ୍କଟର କଟର ଶବ୍ଦ କରୁଥିଲେ । ସେହି ଶବ୍ଦ ବୋଧହୁଏ ସେମାନଙ୍କର କଥାବାର୍ତ୍ତା ଥିଲା । ସେମାନେ ମତେ ଛୁଇଁଲେ ବି ମୋର ଦେହ ଶୀତେଇ ଉଠୁ ନ ଥିଲା । ଯେତେବେଳେ ମୋର ଖାଇବାର ପ୍ରଥମ ଉଚ୍ଛ୍ୱାସ ଶେଷ ହେଲା, ମୁଁ ଲକ୍ଷ୍ୟକଲି ଯେ କେଭର ମଧ୍ୟ ମୋପରି ନିର୍ଲଜ୍ଜ ବ୍ୟଗ୍ରତା ସହିତ ଖାଇବାରେ ଲାଗିଛି ।

———

# ୧୪

## କଥାବାର୍ତ୍ତା କରିବାର ଚେଷ୍ଟା

ଶେଷରେ ଯେତେବେଳେ ଆମର ଭୋଜନର ସମାପ୍ତି ହେଲା ବୃଦ୍ଧମାନେ ପୁଣି ଆମର ହାତକୁ କଷିକରି ଏକାଠି ବାନ୍ଧି ଦେଲେ, ଏବଂ ତାପରେ ଆମର ଗୋଡ଼ର ଶିଙ୍କୁଳିକୁ ଢିଲା କରି ଆଣ୍ଠୁଥରେ ଏପରି ଭାବରେ ବାନ୍ଧିଦେଲେ ଯେ ଆମର ଚାଲିବାକୁ ଟିକିଏ ସୁବିଧା ହେଲା । ତାପରେ ସେମାନେ ଆମର ଗ୍ରୀବାର ଶିଙ୍କୁଳିକୁ ଫିଟେଇ ଦେଲେ । ଏସବୁ କରିବା ପାଇଁ ସେମାନଙ୍କୁ ବରାବର ଆମ ଦେହରେ ହାତ ଦେବାକୁ ହେଉଥିଲା । ମଝିରେ ମଝିରେ ସେମାନଙ୍କର ଅଦ୍ଭୁତ ମୁଣ୍ଡ ମୋର ମୁହଁ ପାଖକୁ ଲାଗି ଆସୁଥିଲା, ଏବଂ ନରମ ଶୁଣ୍ଢ ଭଳି ହାତ ମୋର ମୁଣ୍ଡକୁ କମ୍ପା ବେକକୁ ଛୁଇଁ ଦେଉଥିଲା । ସେମାନଙ୍କର ନୈକଟ୍ୟ ଯୋଗୁଁ ମୋର ସେତେବେଳେ ଘୃଣା ବୋଧ ହୋଇ ନ ଥିଲା କି ଭୟ ଜାତ ହୋଇ ନ ଥିଲା । ସବୁ ଜୀବଠାରେ ମନୁଷ୍ୟ ସୁଲଭ ରୂପ କଳ୍ପନା କରିବାର ଯେଉଁ ଦୁର୍ବାରୋଗ୍ୟ ଅଭ୍ୟାସ ଆମଠାରେ ଅଛି ସେଥିଯୋଗୁଁ ଆମେ କଳ୍ପନା କରିବାକୁ ଲାଗିଲୁ ଯେ ସେମାନଙ୍କର ମୁଖା ତଳେ ମନୁଷ୍ୟ ଭଳି ମୁଣ୍ଡ ଅଛି । ଅନ୍ୟସବୁ ଜିନିଷ ପରି ସେମାନଙ୍କର ଚମ ମଧ୍ୟ ନେଳିଆ ଦିଶୁଥିଲା, କିନ୍ତୁ ତାହା ନୀଳ ଆଲୋକ ଯୋଗୁଁ । ସେହି ଚମ ଗୋଲୁର ପୋକର ଡେଣା ପରି ଟାଣ ଥିଲା ଓ ଚକ୍ ଚକ୍ କରୁଥିଲା । ମେରୁଦଣ୍ଡଯୁକ୍ତ ପଶୁର ଚମ ଯେପରି ନରମ ଆର୍ଦ୍ର, ଓ ଲୋମଯୁକ୍ତ ହେବା କଥା ତାହା ସେପରି ନ ଥିଲା । ସେମାନଙ୍କର ମୁଣ୍ଡର ଶୀର୍ଷଭାଗରେ ଧଳା ମେରୁହାଡ଼ର ଗୋଟିଏ ଅଲଗା ହିଳ ରେଖା ପଛଆଡ଼ୁ ଆଗ ଆଡ଼କୁ ଲମ୍ବି ଯାଇଥିଲା, ଏବଂ ତାହା ଅପେକ୍ଷା ଆହୁରି ବଡ଼ ମେରୁହାଡ଼ର ଅନ୍ୟ ଗୋଟିଏ ରେଖା ଆଖି ଦୁଇଟିର ଦୁଇ ପାଖରେ ବଙ୍କା ଭାବରେ ଟାଣି ହୋଇଥିଲା । ଯେଉଁ ବୃଦ୍ଧଟି ମୋର ଶିଙ୍କୁଳି ଫିଟେଇ

ଦେଲ ସେ ତାହା କରିବାପାଇଁ ପାଟି ଓ ହାତ ଉଭୟ ବ୍ୟବହାର କରୁଥିଲେ ।

କେଭର' କହିଲା, "ସେମାନେ ବୋଧହୁଏ ଆମକୁ ମୁକ୍ତ କରି ଦେଉଛନ୍ତି । ଆମେ ତନ୍ତ୍ରରେ ଅଛୁଁ ବୋଲି ଭୁଲି ଯାଅନା ! ହଠାତ୍ ହଲଚଲ ହେବାକୁ ଚେଷ୍ଟା କରନା !"

ମୁଁ କହିଲି, "ତୁମେ ସେଇ ଜ୍ୟାମିତି ପ୍ରୟୋଗ କରିବାକୁ ଚେଷ୍ଟା କରିବ ?"

"ଯଦି ସୁବିଧା ପାଏଁ । କିନ୍ତୁ ସେମାନେ ହୁଏ ତ ପ୍ରଥମେ ଆମ ସହିତ କଥା କହିବାକୁ ଚେଷ୍ଟା କରିପାରନ୍ତି ।"

ଆମେ ନିଶ୍ଚଳହୋଇ ରହିଲୁଁ, ଏବଂ ଗୃଧ୍ରକମାନେ ସେମାନଙ୍କର ଯୋଗାଡ଼ ଶେଷ କରି, ପଛକୁ ଘୁଞ୍ଚି ବୋଧହୁଏ ଆମକୁ ନିରୀକ୍ଷଣ କରିବାକୁ ଲାଗିଲେ । ମୁଁ "ବୋଧହୁଏ" ବୋଲି କହୁଛି, କାରଣ ସେମାନଙ୍କର ଆଖି ମୁହଁର ସାମନାକୁ ନ ଥାଇ ଦୁଇକଡ଼କୁ ଥିବାରୁ କୁକୁଡ଼ା କିମ୍ବା ମାଛ କେଉଁ ଦିଗକୁ ଚାହିଁଛି ତାହା କହିବା ଯେପରି କଷ୍ଟକର, ସେମାନେ କେଉଁଦିଗକୁ ଚାହୁଁଥିଲେ ତାହା କହିବା ମଧ୍ୟ କଷ୍ଟକର ଥିଲା । ସେମାନଙ୍କର ଟିଁ ଟିଁ ସ୍ୱରରେ ସେମାନେ ନିଜ ନିଜ ଭିତରେ କଥାବାର୍ତ୍ତା ହେଲେ । ସେହି ସ୍ୱର ଅନୁକରଣ କରିବା କିମ୍ବା ବର୍ଣ୍ଣନା କରିବା ଅସମ୍ଭବ ବୋଲି ମୋର ବୋଧହେଲା । ଆମର ପଶ୍ଚାତ୍କୁ ଖୋଲା ଦୁଆର ଆହୁରି ମେଲା ହୋଇଗଲା, ଏବଂ କାନ୍ଧ ପଛପଟକୁ ମୁଣ୍ଡ ବଙ୍କେଇ ଦୁଆର ସେପଟେ ଗୋଟିଏ ଅସ୍ପଷ୍ଟ ବଡ଼ସ୍ଥାନ ଏବଂ ସେଠି ରୁଣ୍ଡ ହୋଇଥିବା ଗୃଧ୍ରକ ଜନତାକୁ ମୁଁ ଦେଖିପାରିଲି । ସେହି ଜନତା ବିବିଧ ରୂପର ଗୃଧ୍ରକଙ୍କର ଅଦ୍ଭୁତ ସମଷ୍ଟି ଥିଲା ।

ମୁଁ କେଭରକୁ ପଚାରିଲି, "ଏମାନେ କଣ ଖୁଆନ୍ତି ଯେ ଆମେ ଏହି ଶବ୍ଦକୁ ଅନୁକରଣ କରିବା ?"

କେଭର କହିଲା, "ବୋଧହୁଏ ନା ।"

"ମୋର ମନେହୁଏ, ସେମାନେ ଆମକୁ କୌଣସି ଜିନିଷ ବୁଝାଇବାକୁ ଚେଷ୍ଟା କରୁଛନ୍ତି ।"

"ମୁଁ ସେମାନଙ୍କର ଇଙ୍ଗିତର କୌଣସି ଅର୍ଥ କରିପାରୁ ନାହିଁ । ସେଇ ବୃଦ୍ଧ କପିକୁ ଦେଖ, କେମିତି ମୁଣ୍ଡ ହଲାଉଛି, କେବଳରେ କାଳର କଷି ହୋଇ ଅଡ଼ୁଆ ଅଡ଼ୁଆ ଲାଗୁଥିଲେ ଲୋକେ ଯେପରି ଏପଟକୁ ସେପଟକୁ ମୁଣ୍ଡ କରୁଥାନ୍ତି ।"

"ଆଚ୍ଛା, ଆମେ ବି ତା ଆଡ଼କୁ ମୁଣ୍ଡ ଝୁଙ୍କାଇ ଦେଖିବା ।"

ଆମେ ସେପରି ମୁଣ୍ଡ ଝୁଙ୍କାଇଲୁଁ, କିନ୍ତୁ ଏଥିଦ୍ୱାରା କୌଣସି ଫଳ ନ ହେବାରୁ ସେମାନଙ୍କର ଅଙ୍ଗଭଙ୍ଗୀକୁ ଅନୁକରଣ କରିବାକୁ ଚେଷ୍ଟାକଲୁଁ । ଏହା ସେମାନଙ୍କୁ ଆକୃଷ୍ଟ କଲପରି ବୋଧହେଲା ୀ ଅନନ୍ତର, ସେମାନେ ସମସ୍ତେ ସେହିପରି ଭଙ୍ଗୀ କରିବାକୁ ଚେଷ୍ଟା କଲେ । କିନ୍ତୁ ଏହାଦ୍ୱାରା କୌଣସି ଲାଭ ନ ହେବାରୁ ଆମେ ତାହା ବନ୍ଦ କଲୁଁ ଏବଂ ଆମ ଦେଖା ଦେଖି ସେମାନେ ମଧ୍ୟ ବନ୍ଦ କଲେ । ତାପରେ ସେମାନେ ନିଜ ନିଜ ଭିତରେ କେଁ କଟର କରି ତର୍କ କରିବାକୁ ଲାଗିଲେ । ଏହାପରେ ସର୍ବାପେକ୍ଷା ମୋଟା ଓ ବାଙ୍ଗରା ଏବଂ ଖୁବ୍ ଚଉଡ଼ା ପାଟିଥିବା ଗୋଟିଏ ବୃଦ୍ଧ କପି ହଠାତ୍ କେଭର ପାଖରେ ବସି ପଡ଼ିଲା ଏବଂ କେଭରର ହାତ ଗୋଡ଼ ବନ୍ଧାହୋଇ ଯେଉଁ ଅବସ୍ଥାରେ ରହିଥିଲା ସେ ମଧ୍ୟ ତାର ହାତ ଗୋଡ଼ ସେହିପରି ଭାବରେ ରଖିଲା, ତାପରେ ଖୁବ୍ ଦକ୍ଷତା ସହିତ ଠିଆହୋଇ ପଡ଼ିଲା ।

ମୁଁ ପାଟିକରି କହିଲି, "କେଭର, ଯେମାନେ ବୁଝୁଁଛନ୍ତି ଆମେ ଠିଆ ହେବା !"

କେଭର ଆଁ କରି ଗୁହୁଁ ରହିଲା । କହିଲା "ଠିକ୍ କଥା !"

ଆମର ହାତ ଏକାଠି ବନ୍ଧା ହୋଇଥିବାରୁ ହୁଁ ହୁଃ ଆଃ କରି ଆମେ ଅତି କଷ୍ଟରେ ଛିଡ଼ା ହେଲୁଁ । ଆମେ ହାଓପରି ବଡ଼ ବଡ଼ ନିଃଶ୍ୱାସ ନେଉଥିବାରୁ ବୃଦ୍ଧ କପିମାନେ ଟିକେ ଆଡ଼େଇ ହୋଇଗଲେ ଏବଂ ଆହୁରି ଭିତରେ କେଁ କଟର କରିବାକୁ ଲାଗିଲେ । ଆମେ ଛିଡ଼ା ହେଲାକ୍ଷଣି ମୋଟା ବୃଦ୍ଧ କପି ଜଣକ ଆମ ପାଖକୁ ଆସି ଆମ ଦୁଇଜଣଙ୍କ ମୁହଁକୁ ତାର ଶୁଣ୍ଢରେ ଆପୁଡ଼େଇ ଦେଲା, ତାପରେ ଦୁଆର ଆଡ଼କୁ ଅଗ୍ରସର ହେଲା । ଏହି

ଇଙ୍ଗିତଟା ସ୍ପଷ୍ଟ ବୁଝା ଯାଉଥିଲା, ତେଣୁ ଆମେ ତା ପଛେ ପଛେ ଚାଲିଲୁଁ । ଆମେ ଦେଖିଲୁଁ ଯେ ଦୁଆର ପାଖରେ ଛିଡ଼ା ହୋଇଥିବା ଗୃଧ୍ରକମାନଙ୍କ ମଧ୍ୟରୁ ଚାରି ଜଣ ଅନ୍ୟମାନଙ୍କ ଅପେକ୍ଷା ଅନେକ ବେଶୀ ଡେଙ୍ଗା ଥିଲେ, ଏବଂ ଆମେ ଆଗ୍ନେୟଗିରିଗହ୍ୱରରେ ଦେଖିଥିବା ଗୃଧ୍ରକମାନେ ଯେପରି ପୋଷାକ ପିନ୍ଧିଥିଲେ ଏମାନେ ମଧ୍ୟ ସେହିପରି ପୋଷାକ ପିନ୍ଧିଥିଲେ, ଅର୍ଥାତ୍ କଣ୍ଟକଯୁକ୍ତ ଗୋଲାକାର ଶିରସ୍ତ୍ରାଣ ଓ ସ୍ତମ୍ଭପରି ଶରୀର ଆବରଣ । ସେହି ଚାରିଜଣ ହାତରେ ଗୋଟିଏ ଲେଖାଏଁ ଆଙ୍କୁଶ ଧରିଥିଲେ, ଯାହାର କଣ୍ଟା ଓ ଡାଳ ମଧ୍ୟ ଆମେ ଦେଖିଥିବା ପାତ୍ରଗୁଡ଼ିକ ପରି କୌଣସି ଅନୁଜ୍ଜ୍ୱଳ ଧାତୁ ଦ୍ୱାରା ନିର୍ମିତ ହୋଇଥିଲା । ଏହି ଚାରିଜଣ ଆମ ଚାରିପଟେ ବେଢ଼ି ଗଲେ ଏବଂ ଆମେ କୋଠରୀରୁ ବାହାରି ଯେଉଁ ବିବରରୁ ଆଗ୍ନେକ ଆସିଥିଲୁ ତା ଭିତରକୁ ପଶିଲୁକ୍ଷଣି ଆମର ଦୁଇପଟେ ଜଣେ ଲେଖାଏଁ ଚାଲିବାକୁ ଲାଗିଲେ ।

ସେହି ବିବର ବିଷୟରେ ଆମର ଧାରଣା ଏକ ସମୟରେ ଜାତ ହୋଇ ନ ଥିଲା । ଆମର ଠିକ୍ ଆଗରେ ଥିବା ଗୃଧ୍ରକମାନଙ୍କର ଚାଲିଚଳଣି ଓ ଭାବଭଙ୍ଗୀରେ ଆମର ମନ ଲିପ୍ତ ଥିଲା । ତାଛଡ଼ା, କାଳେ ଅଡ଼ବଡ଼ ପାଦ ପକାଇ ଆମେ ସେମାନଙ୍କୁ ଓ ଆମକୁ ଚମକିତ ଓ ଆତଙ୍କିତ କରିଦେବୁଁ ଏହି ଭୟରେ ଆମକୁ ଜଗି ଜଗି ଚାଲିବାକୁ ହେଉଥିଲା । ଆମକୁ ଛିଡ଼ା ହେବାକୁ କହିବାର ସମସ୍ୟା ଯେଉଁ ବେଡ଼ା ମୋଟା ଗୃଧ୍ରକଟି ସମାଧାନ କରି ଦେଇ ଥିଲା, ସେ ଆମର ସମ୍ମୁଖରେ ଚାଲୁଥିଲା । ତା ପଛେ ପଛେ ଯିବାପାଇଁ ଆହ୍ୱାନ କରିବା ଲାଗି ସେ ଯେଉଁ ଇଙ୍ଗିତ ସବୁ କରୁଥିଲା, ଆମେ ପ୍ରାୟ ସମସ୍ତ ବୁଝିପାରୁଥିଲୁଁ । ତାର ନଳୀ ପରି ମୁହଁ ଟେକି ଆମ ଦୁହିଁଙ୍କ ମଧ୍ୟରେ ପ୍ରଥମେ ଜଣଙ୍କ ଆଡ଼କୁ ତାପରେ ଆଉଜଣଙ୍କ ଆଡ଼କୁ ଏପରି ଢଙ୍ଗ ଢଙ୍ଗ ହୋଇ ସେ ଚାହୁଁଥିଲା ଯେ ସେଥିରୁ ପରିଷ୍କାର ପ୍ରଶ୍ନର ସୂଚନା ଫୁଟି ଉଠୁଥିଲା । କିନ୍ତୁ ସମସ୍ତ ଯାଏ ଆମର ମନ ଏହି ସବୁ ବିଷୟରେ ଲିପ୍ତ ହୋଇ ରହିଥିଲା ।

କିନ୍ତୁ ଯେଉଁ ବିରାଟ ସ୍ଥାନ ମଧ୍ୟ ଦେଇ ଆମେ ଯାଉଥିଲୁ ତାହା ଶେଷରେ ଆମର ଦୃଷ୍ଟି ଆକର୍ଷଣ କଲା । ଆମେ ଛାତରୁ ନିଶାରୁ ଖସିବା ପାଇବା ପର ମୁହୂର୍ତ୍ତଠାରୁ ଏପର୍ଯ୍ୟନ୍ତ ଯେଉଁ ବିଶୃଙ୍ଖଳ ଶବ୍ଦ ଆମର କାନରେ ବାଜି ଆସୁଥିଲା ସେହି ଶବ୍ଦର ଅଧିକାଂଶ ଗୋଟିଏ ବିଶାଳକାୟ ଯନ୍ତ୍ରର ସକ୍ରିୟ ଗତି ଯୋଗୁଁ ଜାତ ହେଉଥିଲା ବୋଲି ବର୍ତ୍ତମାନ ଜଣା ପଡ଼ିଲା । ସେହି ଯନ୍ତ୍ରର କ୍ଷିପ୍ର ଘୂର୍ଣ୍ଣାୟମାନ ଅଂଶଗୁଡ଼ିକ ଆମର ଗୃହପଟେ ଗୁଳୁଥିବା ବୃଦ୍ଧକମାନଙ୍କର ମୁଣ୍ଡ ଉପରୁ ଓ ଦେହ ପାଖରୁ ଅସ୍ପଷ୍ଟରୂପେ ବାରି ହେଉଥିଲା । କେବଳ ଯେ ଚତୁର୍ଦ୍ଦିଗରେ ପ୍ରତିଧ୍ୱନିତ ହେଉଥିବା ଶବ୍ଦରାଶି ସେହି ଯନ୍ତ୍ରରୁ ଜାତ ହେଉଥିଲା ତାହା ନୁହେଁ, ସମସ୍ତ ସ୍ଥାନଟି ଉଜ୍ଜ୍ୱଳ କରୁଥିବା ଅଦ୍ଭୁତ ନୀଳ ଆଲୋକ ମଧ୍ୟ ସେହି ଯନ୍ତ୍ରରୁ ଜାତ ହେଉଥିଲା । ଭୂଗର୍ଭସ୍ଥ ବିବର କୃତ୍ରିମ ଉପାୟରେ ଆଲୋକିତ ହେବାଟା ଅତି ସ୍ୱାଭାବିକ କଥା ବୋଲି ଆମେ ଧରି ନେଇଥିଲୁ, ଏବଂ ବର୍ତ୍ତମାନ ସୁଦ୍ଧା, ଯଦିଓ ଦୃଶ୍ୟଟି ମୋ ଆଖିରେ ସ୍ପଷ୍ଟ ହୋଇଉଠିଲା ତଥାପି କିଛିକ୍ଷଣ ପରେ ଅନ୍ଧକାର ଆସିବା ପର୍ଯ୍ୟନ୍ତ ମୁଁ ଏହାର ପ୍ରକୃତ ତାତ୍ପର୍ଯ୍ୟ ବୁଝିପାରି ନ ଥିଲି । ସେହି ବିରାଟ ଯନ୍ତ୍ରର ଅର୍ଥ ଏବଂ ଗଠନ ମୁଁ ବୁଝାଇ ପାରିବି ନାହିଁ, କାରଣ ଆମେ ଜାଣିପାରି ନ ଥିଲୁ ଏହାର ଉଦ୍ଦେଶ୍ୟ କଣ ଓ ଏହା କିପରି ଚାଲେ । ତାହାର ମଧ୍ୟ ଭାଗରୁ ଉପର ଆଡ଼କୁ ଗୋଟି ଗୋଟି କରି ଲମ୍ବ ଧାତୁ ନିର୍ମିତ ଦଣ୍ଡ ଫିଙ୍ଗି ହେଉଥିଲା, ଏବଂ ପ୍ରତ୍ୟେକ ଦଣ୍ଡର ଅଗ୍ରଭାଗ ଅଧବୃତ୍ତରେ ଗତି କରୁଥିଲା । ପ୍ରତ୍ୟେକ ଦଣ୍ଡ ତାର ଗତିର ଶୀର୍ଷସ୍ଥଳ ଅଡ଼କୁ ଯିବା ସମୟରେ ଗୋଟିଏ ଲେଖାଏଁ ଦୋଳାୟମାନ ବାହୁ ପକେଇ ଦେଉଥିଲା ଏବଂ ଗୋଟିଏ ସଳଖ ସ୍ତମ୍ଭ ଉପରେ ଖସିପଡ଼ି ତାହାକୁ ତଳକୁ ଠେଲି ଦେଉଥିଲା । ସେହି ଯନ୍ତ୍ରର ଚତୁର୍ଦ୍ଦିଗରେ ଯନ୍ତ୍ର ଚାଳକମାନେ ବୁଲୁଥିଲେ । ସେମାନଙ୍କ ଆକୃତି କ୍ଷୁଦ୍ର ଥିଲା ଏବଂ ସେମାନେ ଆମ ସହିତ ଯାଉଥିବା ବୃଦ୍ଧକମାନଙ୍କଠାରୁ ଚେହେରାରେ ଭିନ୍ନ ଥିଲେ ବୋଲି ଅସ୍ପଷ୍ଟ ରୂପେ ଜଣା ପଡ଼ୁଥିଲା । ସେହି ଯନ୍ତ୍ରର ତିନିଗୋଟି ଦୋଳାୟମାନ ବାହୁ ଯେତେବେଳେ ଗୋଟି ଗୋଟି କରି ଖସି ପଡ଼ୁଥିଲେ ସେ ସମୟରେ ଝଣ୍ ଝଣ୍ କରି ଗୋଟିଏ ଶବ୍ଦ ଜାତ

ହେଉଥିଲା, ତାପରେ ଗୋଟିଏ ଗର୍ଜ୍ଜନ ଶୁଭୁଥିଲା, ଏବଂ ସଳଙ୍ଗ ସ୍ତମ୍ଭର ଶୀର୍ଷ ଭାଗରୁ ସେହି ଉଜ୍ଜ୍ୱଳ ପଦାର୍ଥ ଅଜାଡ଼ି ହୋଇ ପଡ଼ୁଥିଲା ଏବଂ ଚତୁର୍ଦ୍ଦିଗ ଆଲୋକିତ କରୁଥିଲା । ସେହି ଉଜ୍ଜ୍ୱଳ ପଦାର୍ଥ ଫୁଟିଲା ଦୁଧ ଯେପରି ପାତ୍ର ଉପରୁ ଉଚ୍ଛୁଳି ପଡ଼େ ସେହିପରି ଉଚ୍ଛୁଳି ପଡ଼ୁଥିଲା ଏବଂ ତଳେଥିବା ଗୋଟିଏ ଆଲୋକ କୁଣ୍ଡ ଭିତରକୁ ଧାର ଭାବରେ ଝରିପଡ଼ୁଥିଲା । ତାହା ଥିଲା ଶୀତଳ ନୀଳ ଆଲୋକ, ଏକ ପ୍ରକାର ଫସ୍‌ଫରସ୍ ଆଲୋକ ପରି କିନ୍ତୁ ତା ଅପେକ୍ଷା ଅନେକଗୁଣ ବେଶୀ ଉଜ୍ଜ୍ୱଳ । ତାହା କୁଣ୍ଡ ଭିତରୁ ବାହାରି ବିବର ଭିତରେ ଲୁକାଲୁଚି ହୋଇ କଟା ହୋଇଥିବା ନାଳ ବାଟେ ବୋହି ଯାଉଥିଲା ।

ସେହି ଦୁର୍ବୋଧ ଯନ୍ତ୍ରର ବାହୁଗୁଡ଼ିକ ଉଠ୍, ଉଠ୍, ଉଠ୍ ଶବ୍ଦ କରି ପଡ଼ୁଥିଲା, ଏବଂ ଉଜ୍ଜ୍ୱଳ ପଦାର୍ଥଟି ହଁ ହଁ କରି ଅଜାଡ଼ି ହୋଇ ପଡ଼ୁଥିଲା । ପ୍ରଥମେ ଯନ୍ତ୍ରଟି ଆମ ଚକ୍ଷୁରେ ସାଧାରଣ ଭାବରେ ବଡ଼ ଓ ନିକଟରେ ଅଛି ବୋଲି ମନେ ହେଉ, କିନ୍ତୁ ତା ପରେ ମୁଁ ଦେଖିଲି ଯେ ତା ଉପରେ ଛିଡ଼ା ହୋଇଥିବା ବୃଦ୍ଧକମାନେ ଅତି କ୍ଷୁଦ୍ର ଦିଶୁଥିଲେ, ତେଣୁ ବିବର ଓ ଯନ୍ତ୍ରର ବିରାଟତ୍ୱ ବିଷୟରେ ମୁଁ ସମ୍ପୂର୍ଣ୍ଣରୂପେ ସଚେତନ ହୋଇ ଉଠିଲି । ଏହି ବିରାଟ ବ୍ୟାପାରରୁ ଆଖି ଫେରାଇ ମୁଁ ବୃଦ୍ଧକମାନଙ୍କ ଆଡ଼କୁ ନୂତନ ସମ୍ମାନ ସହିତ ଚାହିଁଲି । ମୁଁ ଛିଡ଼ା ହୋଇଗଲି, କେଭର ମଧ୍ୟ ଛିଡ଼ା ହୋଇଗଲା, ଏବଂ ଆମ୍ଭେ ସେହି ଗର୍ଜ୍ଜନ କରୁଥିବା ଯନ୍ତ୍ରକୁ ବିସ୍ମୟ ବିସ୍ଫାରିତ ଆଖିରେ ଚାହିଁ ରହିଲୁ ।'

ମୁଁ କହିଲି, "ଓଃ, ଏହା ବିରାଟ ! ଏହା କେଉଁଥି ପାଇଁ ବ୍ୟବହାର କରା ଯାଉଥିବା ସମ୍ଭବ ?"

କେଭରର ନୀଳ ଆଲୋକ ଉଦ୍ଭାସିତ ମୁହଁରେ ଜ୍ଞାନଜାତ ସମ୍ମାନର ଚିହ୍ନ ଫୁଟି ଉଠିଥିଲା । ସେ କହିଲା, "ମୁଁ ଏହା କଳ୍ପନା କରି ପାରୁ ନାହିଁ ! ଅବଶ୍ୟ, ଏହି ଜୀବଗୁଡ଼ିକ······ଏପରି ଗୋଟିଏ ଜନକ ମନୁଷ୍ୟମାନେ ତିଆରି କରି ପାରି ନାହାନ୍ତି ! ହେଲେ ବାହୁଗୁଡ଼ିକ ଲକ୍ଷ୍ୟ କର, ସେଗୁଡ଼ିକ କଣ ସଯୋଗ ଦଣ୍ଡରେ ଯୋଡ଼ା ଯାଇଛନ୍ତି ?"

ମୋଟା ଗୃଦ୍ଧ୍ରକଟି ଅଲକ୍ଷିତ ଭାବରେ କିଛି ବାଟ ଆଗକୁ ଚାଲି ଯାଇଥିଲା । ସେ ଫେରିଆସି ସେହି କୁହୁଡ଼ି ଯନ୍ତ୍ର ଓ ଆମ ମଝିରେ ଛିଡ଼ା ହୋଇଗଲା । ମୁଁ ଜାଣି ଜାଣି ତାକୁ ନ ଦେଖିବାକୁ ଚେଷ୍ଟା କଲି, କାରଣ ମୁଁ କୌଣସି ପ୍ରକାରରେ ବୁଝି ପାରିଥିଲି ଯେ ଆମକୁ ଆଗକୁ ଚାଲିବାକୁ କହିବା ତାର ଉଦ୍ଦେଶ୍ୟ ଥିଲା । ଆମେ ଯେଉଁ ଢଙ୍ଗରେ ଚାଲିବୁଁ ବୋଲି ସେ ଚାହୁଁଥିଲା ସେଇ ଢଙ୍ଗରେ ସେ କିଛି ବାଟ ଆଗକୁ ଗଲା । ତାପରେ ବୁଲିପଡ଼ି ପୁଣି ଫେରିଆସିଲା, ଏବଂ ଆମର ଦୃଷ୍ଟି ଆକର୍ଷଣ କରିବା ପାଇଁ ଆମ ମୁହଁ ଉପରେ ହାତ ବୁଲେଇଲା ।

କେଭର ଓ ମୁଁ ପରସ୍ପର ଆଡ଼କୁ ଚାହିଁଲୁ ।

ମୁଁ କହିଲି, "ଆମେ ଏହି ଯନ୍ତ୍ର ବିଷୟରେ ଜାଣିବାକୁ ଚାହୁଁ ବୋଲି ତାକୁ ବୁଝେଇଦେଇ ପାରିବା ନାହିଁ କି ?

କେଭର କହିଲା, "ହଁ, ଆମେ ଚେଷ୍ଟା କରି ଦେଖିବା ।" ସେ ଆମର ପଥ ପ୍ରଦର୍ଶକ ଆଡ଼େ ଚାହିଁଲା, ଟିକିଏ ହସିଲା ତାପରେ ଯନ୍ତ୍ର ଆଡ଼େ ଆଙ୍ଗୁଠି ଦେଖେଇଲା, ପୁଣି ଆଉଥରେ ସେମିତି କଲା । ତାପରେ ନିଜ ମୁଣ୍ଡ ଆଡ଼େ ଆଙ୍ଗୁଠି ଦେଖେଇଲା, ଏବଂ ତାପରେ ପୁଣି ଯନ୍ତ୍ର ଆଡ଼େ ଆଙ୍ଗୁଠି ଦେଖେଇଲା । କେଜାଣି କାହିଁକି ତାର ଭୁଲ ଧାରଣା ହେଲା ଯେ ଭଙ୍ଗା ଭଙ୍ଗା ଇଂରେଜି ଭାଷାରେ କଥା କହିଲେ ଏହି ଇଙ୍ଗିତ ଗୁଡ଼ିକ ବୁଝାଇବାକୁ ସୁବିଧା ହେବ । ସେ କହିଲା, "ମୁଁ ଦେଖିବା ତାହା । ମୁଁ ଚାହିଁବା ତାହା ବହୁତ । ହଁ ।"

ଏପରି ବ୍ୟବହାର ଦ୍ୱାରା ଗୃଦ୍ଧ୍ରମାନଙ୍କର ଆମକୁ ଆଗକୁ ନେବାର ଇଚ୍ଛା ବୋଧହୁଏ କ୍ଷଣିକ ଲାଗି ଦମିଗଲା । ସେମାନେ ନିଜ ନିଜ ଆଡ଼କୁ ଚାହିଁଲେ, ସେମାନଙ୍କର ଅଦ୍ଭୁତ ମୁଣ୍ଡ ହଲେଇବାକୁ ଲାଗିଲେ, କେଁ କଟର କରି ବେଗେ ବେଗେ କଥାବାର୍ତ୍ତା ହେବାକୁ ଲାଗିଲେ । ତାପରେ ସେମାନଙ୍କ ଭିତରୁ ଗୋଟିଏ ଡେଙ୍ଗା, ସରୁ ଗୃଦ୍ଧ୍ରକ ଆଗକୁ ଆସିଲା । ଅନ୍ୟମାନେ ଯେପରି ପଟି ପିନ୍ଧିଥିଲେ ତାହା ଛଡ଼ା ତା ଦେହରେ ଲମ୍ବ ଆଲଖାନା ପରି ଗୋଟିଏ ଜିନିଷ ଥିଲା । ସେ ତାର ହାତୀ-ଶୁଣ୍ଢ ପରି ହାତ କେଭରର ଅଣ୍ଟାରେ

ବେଡ଼େଇ ଦେଲୁ ଏବଂ ଆମର ପଥପ୍ରଦର୍ଶକର ପଛେ ପଛେ ଯିବାପାଇଁ ତାଙ୍କୁ ଆସ୍ତେ ଆସ୍ତେ ଟାଣିଲୁ । ପଥପ୍ରଦର୍ଶକ ପୁଣି ଆଗରେ ଆଗରେ ଚାଲିବାକୁ ଆରମ୍ଭ କରି ଦେଇଥିଲୁ ।

କିନ୍ତୁ କେଭର ଏପରି ଟାଣିବାରେ ବାଧାଦେଲା । ସେ ମତେ କହିଲା, "ଆମେ ବର୍ତ୍ତମାନ ସବୁକଥା ବୁଝାଇବାକୁ ଆରମ୍ଭ କରିବା ଉଚିତ । ସେମାନେ ହୁଏତ ଭାବିପାରନ୍ତି ଆମେ କୌଣସି ନୂଆ ଧରଣର ପଶୁ, ବୋଧହୁଏ ନୂଆ ରକମର କୌଣସି ଗୃନ୍ଦ୍ର ଗୋରୁ ! ଆମେ ପ୍ରଥମରୁ ବୁଦ୍ଧିମତ୍ତାର ପରିଚୟ ଦେବା ନିହାତି ଜରୁରୀ ।"

ସେ ଭାରି ଜୋରରେ ମୁଣ୍ଡ ହଲେଇବାକୁ ଲାଗିଲି । କହିଲି, "ନା, ନା, ମୁଁ ଯିବା ନୁହେଁ କମା ମୁଁ ଦେଖିବା ତାହା ।"

ଗୃନ୍ଦ୍ରକମାନେ ପୁଣି ଯେତେବେଳେ ନିଜ ନିଜ ଭିତରେ ଆଲୋଚନା କରିବାକୁ ଲାଗିଲେ, ମୁଁ କେଭରକୁ କହିଲି, "ତୁମେ ଏହି ବ୍ୟାପାର ସଂକ୍ରାନ୍ତରେ ଜ୍ୟାମିତିର କୌଣସି ଉପାୟ ଖଟେଇ ପାରିବ ନାହିଁ ?"

କେଭର କହିବାକୁ ଆରମ୍ଭ କଲା, "ସମ୍ଭବତଃ ଜ୍ୟାମିତିର ଅର୍ଦ୍ଧ-ବୃତ୍ତର ଗୋଟାଏ ଦୃଷ୍ଟାନ୍ତ—"

ସେ ହଠାତ୍ ଉଚ୍ଚ ଚିତ୍କାର କରି ଛ ଫୁଟ କି ତାଠୁ ବେଶୀ ଡେଇଁ ପଡ଼ିଲା !

ପୂର୍ବରଜଣ ସଶସ୍ତ୍ର ଗୃନ୍ଦ୍ରକଙ୍କ ମଧ୍ୟରୁ ଜଣେ ତାକୁ ଆଙ୍କୁଶଦ୍ୱାରା ଫୋଡ଼ି ଦେଇଥିଲା !

ମୁଁ ମୋର ପଛରେ ଛିଡ଼ା ହୋଇଥିବା ଆଙ୍କୁଶଧାରୀ ଆଡ଼କୁ ଭୟ ଦେଖାଇ ହଠାତ୍ ଚିହ୍ନିକିଗଲି । ସେ ଡରରେ ପଛକୁ ଘୁଞ୍ଚିଗଲା । କେଭରର ଅକସ୍ମାତ୍ ଚିତ୍କାର ଓ ଲମ୍ଫ ଏବଂ ମୋର ଏହି ବ୍ୟବହାର ଗୃନ୍ଦ୍ରକମାନଙ୍କୁ ବିସ୍ମିତ କରି ଦେଇଥିଲା । ସେମାନେ ଆମ ଆଡ଼କୁ ମୁହଁ କରି ତରବରରେ ପଛକୁ ଘୁଞ୍ଚିବାକୁ ଲାଗିଲେ । ଗୋଟିଏ ମୁହୂର୍ତ୍ତ ପାଇଁ, ଯାହାକି ପୁରେ

ପରି ଲାଗିଲା ? ଆମେ କୁଜ ପ୍ରତିବାଦ କରି ଛିଡ଼ା ହୋଇ ରହିଲୁଁ ଏବଂ ଆମ ଚାରିପଟେ ସେହି ଅମାନୁଷିକ ଜୀବଗୁଡ଼ିକ ଅର୍ଦ୍ଧ ମଣ୍ଡଳାକାରରେ ବାଣ୍ଟି ହୋଇଗଲେ ।

କେଭର୍ କାନ୍ଦ କାନ୍ଦ ହୋଇ କହିଲା, "ସେ ମୋତେ ଫୋଡ଼ି ଦେଲା !"

ମୁଁ ଉତ୍ତର ଦେଲି, "ହଁ, ମୁଁ ଦେଖିଲି ।"

ମୁଁ ବୃଦ୍ଧମାନଙ୍କୁ କହିଲି, "ଖବରଦାର୍ ! ଏହା ସହିବାର ଲୋକ ଆମେ ନୋହୁଁ ! ତୁମେ ସବୁ ଆମକୁ କଣ ମନେ କରୁଛ ?"

ମୁଁ ଶୀଘ୍ର ଏଆଡ଼େ ସେଆଡ଼େ ଚାହିଁ ଦେଖିଲି । ବହୁଦୂରରେ ସୁଡଙ୍ଗର ମାଳ ପ୍ରାନ୍ତରର ସେପାଖେ ଅନେକ ଗୁଡ଼ିଏ ବୃଦ୍ଧକ ଆମ ଆଡକୁ ଦୌଡ଼ି ଆସୁଥିବାର ମୁଁ ଦେଖିପାରିଲି । ସେମାନେ କୃଶ ଅଥଚ ମଜଭୁତ ଥିଲେ ଏବଂ ସେମାନଙ୍କ ମଧ୍ୟରୁ ଜଣକର ମୁଣ୍ଡ ଅନ୍ୟମାନଙ୍କ ଅପେକ୍ଷା ବଡ଼ ଥିଲା । ଗୁହାଟି ପ୍ରଶସ୍ତ ଓ ଅନୁଚ୍ଚ ଥିଲା । ଏବଂ ଚତୁର୍ଦ୍ଦିଗରେ ଅନ୍ଧକାର ଭିତରକୁ ପ୍ରସାରିତ ହୋଇଥିଲା । ମୋର ମନେ ପଡୁଛି, ତାହାର ଗ୍ରୁଡ ତଳକୁ ଦବି ଯାଇଥିଲା, ମନେ ହେଉଥିଲା, ଆମର ଚାରିଆଡ଼େ ବେଢ଼ି ରହିଥିବା ସୁବୃହତ୍ ପ୍ରସ୍ତର-ଗୁଡ଼ିକର ଭାର ତାକୁ ଦବାଇ ଦେଉଛି । ଏହା ଭିତରୁ ପଳେଇବା ପାଇଁ ବାଟ ନ ଥିଲା—କୌଣସି ଉପାୟ ନ ଥିଲା । ଉପରେ, ତଳେ, ଚତୁର୍ଦ୍ଦିଗରେ ଥିଲା ଅଜ୍ଞାତ-ବସ୍ତୁ, ଏବଂ ଆମ ସମ୍ମୁଖରେ ଅଙ୍ଗ ଭଙ୍ଗୀ କରି ଆଙ୍କୁଶ ହସ୍ତରେ ଛିଡ଼ା ହୋଇଥିଲେ ଏଇ ଅମାନୁଷିକ ଜୀବଗୁଡ଼ିକ—ଏପରି ଅବସ୍ଥାରେ ପଡ଼ିଥିଲୁଁ ଆମେ ଦୁଇଟି ଅସହାୟ ମନୁଷ୍ୟ !

———

## ୧୫

## ଝଲମଲଆ ପୋଲ

ସେହି ବରୁଛ ଅବସ୍ଥା ଗୋଟିଏ ମୁହୂର୍ତ୍ତ ପାଇଁ ସ୍ଥାୟୀ ହୋଇଥିଲା । ବୋଧହୁଏ ଆମେ ଓ ଗୃଦ୍ଧ୍ରକମାନେ ସେହି ସମୟ ଭିତରେ ଅଧ ଦ୍ରୁତ ଚିନ୍ତା କରିବାକୁ ଲାଗିଲୁଁ । ମୁଁ ସ୍ପଷ୍ଟଭାବରେ ବୁଝିପାରିଲି ଯେ କୌଣସି ସ୍ଥାନକୁ ପିଠିକରି ଛିଡ଼ା ହେବା ପାଇଁ ସୁବିଧା ନାହିଁ, ତେଣୁ ସେମାନେ ଆମକୁ ଘେରିଯାଇ ମାରିପକାଇବେ, ଏହା ସୁନିଶ୍ଚିତ । ଆମେ ସେଠାରେ ଉପସ୍ଥିତ ହେବାଟା କେତେ ବୋକାମୀର କାମ ହୋଇଥିଲା, ତାହା ଅନୁଭବ କରିପାରି ମୁଁ ନିଜକୁ ଯଥେଚ୍ଛା ଗାଳିଦେବାକୁ ଲାଗିଲି । ଏହି ଅମାନୁଷିକ ଉନ୍ମାଦ ଯାତ୍ରାରେ ଆସିବା ମୋର କଣ ଦରକାର ଥିଲା ?

କେଭର୍ ମୋ ପାଖକୁ ଆସି ମୋ ର କାନ୍ଧ ଉପରେ ହାତ ରଖିଲା । ତାର ରକ୍ତଶୂନ୍ୟ, ଖିଡ ମୁହଁ ନୀଳ ଆଲୋକରେ ବିଭତ୍ସ ଦିଶୁଥିଲା ।

ସେ କହିଲା, "ଆମେ କିଛି କରିପାରିବା ନାହିଁ । ମୁଁ ଭୁଲ ବୁଝିଥିଲି । ସେମାନେ ଆମ ଠାରୁ ଅର୍ଥ ଧରି ପାରୁ ନାହାନ୍ତି । ଆମକୁ ଯିବାକୁ ପଡ଼ିବ, କାରଣ ସେମାନେ ଏହା ଚାହାନ୍ତି ।"

ମୁଁ ତା ଆଡ଼କୁ ଗୁହିଁଲି, ତାପରେ ଯେଉଁ ନୂତନ ଗୃଦ୍ଧ୍ରକମାନେ ସେମାନଙ୍କର ସାଥୀ ଭାଇମାନଙ୍କୁ ସାହାଯ୍ୟ କରିବାକୁ ଆସୁଥିଲେ ସେମାନଙ୍କ ଆଡ଼େ ଆଖି ଫେରାଇଲି । ମୁଁ କହିଲି, "ଓଃ, ତୁମେ ର ହାତ ଦୁଇଟି ଯଦି ଖୋଲା ଥାଆନ୍ତା—"

କେଭର୍ ନିଃଶ୍ୱାସ ଟାଣି କହିଲା, "କୌଣସି ଲାଭ ନାହିଁ ।"

"ନା ।"

"ଆମକୁ ଯିବାକୁ ପଡ଼ିବ ।"

ଏହା ହିଁ ସେ ଭୁଲ୍ ପଡ଼ିଲି ଏବଂ ଯେଉଁ ବାଟରେ ଯିବାପାଇଁ ଆମକୁ ନିର୍ଦ୍ଦେଶ ଦିଆଯାଇଥିଲା ସେହି ବାଟରେ ମୋତେ ବାଟ କଢ଼ାଇଲି ।

ଯେତେଦୂର ସମ୍ଭବ ଶାନ୍ତ ହୋଇ ଘର ମୁହାଁ କରିବାକୁ ଚେଷ୍ଟା କରି ମୁଁ ତା ପଛେ ପଛେ ଚାଲିଲି ଏବଂ ମୋର ହାତର ଶିକୁଳି ଗୁଡ଼ିକ ହାତ-ଡ଼େଇବାକୁ ଲାଗିଲି । ମୋର ରକ୍ତ ଟକଟକ ହୋଇ ଫୁଟୁଥିଲା । ସେହି ବାଦର ପାର ହେବାକୁ ଅନେକ ସମୟ ଲାଗିଥିଲେ ମଧ୍ୟ ମୁଁ ସେହି ସମସ୍ତ ଭିତରେ ବାଦରର ଆଉ କିଛି ଲକ୍ଷ୍ୟ କଲି ନାହିଁ, କିମ୍ବା ଯଦିବା ଲକ୍ଷ୍ୟକଲି ତେବେ ଦେଖିବା ସାଙ୍ଗେ ସାଙ୍ଗେ ପୁଣି ଭୁଲିଯାଉଥିଲି । ମୋର ସମସ୍ତ ଚିନ୍ତା ମୋର ଶିକୁଳି ଓ ଗୃଦ୍ଧ୍ରକମାନଙ୍କ ଉପରେ, ବିଶେଷତଃ ଶିରସ୍ତ୍ରାଣ ପିନ୍ଧିଥିବା ଆଙ୍କୁଶଧାରୀ ଗୃଦ୍ଧ୍ରକମାନଙ୍କ ଉପରେ ନିବଦ୍ଧ ଥିଲା । ପ୍ରଥମେ ସେମାନେ ଆମର ସମାନ୍ତରରେ ଦୂରରେ ଦୂରରେ ହୋଇ ଚାଲୁଥିଲେ, କିନ୍ତୁ କିଛିକ୍ଷଣ ପରେ ଆଉ ତିନି ଜଣ ଆସି ସେମାନଙ୍କ ସହିତ ମିଶିଗଲେ ଏବଂ ତାପରେ ସେମାନେ କ୍ରମେ କ୍ରମେ ଆମର ନିକଟକୁ ଲାଗି ଆସିଲେ । ଶେଷରେ ସେମାନଙ୍କର ଓ ଆମ ମଧ୍ୟରେ ହାତେ ମାତ୍ର ବ୍ୟବଧାନ ରହିଲା । ସେମାନେ ପାଖକୁ ଲାଗି ଆସିଲାବେଳେ ମୁଁ ଗୁରୁକ୍ଷିଆ ଘୋଡ଼ା ପରି ଛଟପଟ କରିବାକୁ ଲାଗିଲି । ମୋଟା, ଗୋଡ଼ା ଗୃଦ୍ଧ୍ରକଟି ପ୍ରଥମେ ଆମର ଡାହାଣ ପଟେ ଚାଲୁଥିଲା, କିନ୍ତୁ କିଛି ସମୟ ପରେ ପୁଣି ଆମ ଆଗରେ ଚାଲିବାକୁ ଲାଗିଲା ।

ସେହି ଦୃଶ୍ୟ ମୋର ଠିକ ମନେ ରହି ଯାଇଛି; ମୋ ସମ୍ମୁଖରେ କେଭରର ତଳକୁ ଝୁଲି ପଡ଼ିଥିବା ମୁଣ୍ଡର ପଛ ଭାଗ ଏବଂ ହତାଶାରେ ନଇଁପଡ଼ିଥିବା କାନ୍ଧ ଦେଖା ଯାଉଥିଲା; ଆମର ପଥପ୍ରଦର୍ଶକର ନେଫଡ଼ା ପାଟି ବରାବର ଏପଟକୁ ସେପଟକୁ ଚୁଆଁଳି ହେଉଥିଲା, ଏବଂ ଦୁଇ ପାଖରେ ଆଙ୍କୁଶଧାରୀମାନେ ସତର୍କଭାବରେ ଅଥଚ ମୁହଁ ମେଲି କରି ଚାଲୁଥିଲେ— ଗୋଟିଏ ଲାଲ ଦୃଶ୍ୟ । ଏହି ବ୍ୟକ୍ତିଗତ ଅବସ୍ଥା ଛଡ଼ା ଆଉ ଗୋଟିଏ କଥା ମଧ୍ୟ ମୋର ମନେ ରହିଛି, ତାହା ହେଉଛି ଏହି ଯେ କିଛି ସମୟ ପରେ ବାଦରର ଚଟାଣ ଉପରେ ଗୋଟିଏ ନଳା କଟା ହୋଇଥିବାର ଆମେ ଦେଖିପାରିଲୁଁ । ତାହା ଚଟାଣ ତେଇଁ ଯେଉଁ ପଥୁରିଆ ରାସ୍ତା ଉପରେ ଆମେ

ଚାଲୁଥିଲୁଁ ତାର ଧାରଦେଇ ଲମ୍ବିଯାଇଥିଲା । ସେହି ବିରାଟ ଯନ୍ତ୍ରରୁ ଯେପରି ଉଜ୍ଜ୍ୱଳ ନୀଳ ପଦାର୍ଥ ବହିର୍ଗତ ହେଉଥିଲା, ଏହି ନଳୀ ମଧ୍ୟ ସେହିପରି ପଦାର୍ଥ ଦ୍ୱାରା ପୂର୍ଣ୍ଣ ହୋଇଥିଲା । ମୁଁ ତାର ପାଖକୁ ଲାଗି ଚାଲୁଥିଲି ଏବଂ ମୁଁ ନିଶ୍ଚିତ ଭାବରେ କହିପାରେଁ ଯେ ସେଥିରୁ ଟିକିଏ ବି ଉତ୍ତାପ ଜାତ ହେଉ ନ ଥିଲା । ସେଥିରୁ ଖୁବ ଉଜ୍ଜ୍ୱଳ ଆଲୋକ ବାହାରୁଥିଲା । କିନ୍ତୁ ତଥାପି ବିବରର ଅନ୍ୟ ଯେ କୌଣସି ଜିନିଷ ଅପେକ୍ଷା ତାହା ବେଶି ଗରମ କି ଥଣ୍ଡା ନଥିଲା ।

ଝନ୍, ଝନ୍, ଝନ୍ କରୁଥିବା ଆଉ ଗୋଟିଏ ବିଶାଳ ଯନ୍ତ୍ରର ବାହାର ଠିକ୍ ତଳ ଦେଇ ଆମେ ଗଲୁଗଲୁଁ, ଏବଂ ଶେଷରେ ଗୋଟିଏ ଚଉଡ଼ା ସୁଡ଼ଙ୍ଗରେ ଆସି ପହଞ୍ଚିଲୁଁ । ସେଠି ଆମର ଯୋତାହୀନ ପାଦର ଥପ୍ ଥପ୍ ଶବ୍ଦ ପର୍ଯ୍ୟନ୍ତ ଆମେ ଶୁଣି ପାରୁଥିଲୁଁ । ଆମ ଡାହାଣ ପଟେ ଥିବା ସୂକ୍ଷ୍ମ ନୀଳ ରେଖା ଛଡ଼ା ଏହି ସ୍ଥାନ ସମ୍ପୂର୍ଣ୍ଣ ଅନାଲୋକିତ ଥିଲା । ସୁଡ଼ଙ୍ଗର ଆବଡ଼ା ଖାବଡ଼ା କାନ୍ଥ ଓ ଛାତ ଉପରେ ଆମର ଓ ଗୃଦ୍ଧ୍ରକମାନଙ୍କର ବିରାଟ ଛାଇ ପଡ଼ି ଅତି ବିଚିତ୍ର ଓ ହାସ୍ୟାସ୍ପଦ ଦିଶୁଥିଲା । ମଝିରେ ମଝିରେ ସୁଡ଼ଙ୍ଗର କାନ୍ଥ ଉପରେ ଥିବା ସ୍ଫଟିକ ସବୁ ରତ୍ନ ପରି ଝଟକୁଥିଲେ, ମଝିରେ ମଝିରେ ସୁଡ଼ଙ୍ଗଟି ବରଫ କଣିକାପୂର୍ଣ୍ଣ ପ୍ରଶସ୍ତ ବିବରରେ ରୂପାନ୍ତରିତ ହେଉଥିଲା । କିମ୍ବା ସେଥିରୁ ଅନେକ ଗୁଡ଼ିଏ ଶାଖା ବାହାରି ଅନ୍ଧକାର ଭିତରକୁ ଲମ୍ବି-ଯାଇଥିଲା ।

ସେହି ସୁଡ଼ଙ୍ଗ ଭିତରେ ଅନେକ ସମୟ ପର୍ଯ୍ୟନ୍ତ ଆମକୁ ଚାଲିବାକୁ ହୋଇଥିଲା । ପ୍ରବାହମାନ ଆଲୋକ କଳ କଳ ଶବ୍ଦ କରି ବହିଯାଉଥିଲା, ଏବଂ ଆମର ପାଦ ପଡ଼ିବାର ଧ୍ୱନି ଓ ତାର ପ୍ରତିଧ୍ୱନି ଗୋଟିଏ ଅସଲଗ୍ନ ଅପ୍ ଅପ୍ ଶବ୍ଦ ଜାତ କରୁଥିଲା । ମୋର ଶିଙ୍କୁଳୀର ସମସ୍ୟା ମୁଁ ଚିନ୍ତା କରିବାକୁ ଲାଗିଲି । ମୁଁ ଯଦି ସେଥିରୁ ଗୋଟିଏ କଡ଼ା ଏହିପରି ଭାବରେ ଖୋଲିଦିଏଁ ଓ ତାପରେ ତାକୁ ଏହିପରି ଭାବରେ ମୋଡ଼ିଦିଏଁ...

ମୁଁ ଯଦି ଏହା ଖୁବ୍ ଧୀରେ ଧୀରେ କରେଁ, ତାହାହେଲେ କଣ ସେମାନେ ଜାଣି ପାରିବେ ଯେ ମୁଁ ଅପେକ୍ଷାକୃତ ଢିଲା କଡ଼ା ଭିତରୁ ମୋର

ହାତଟି ଖଣ୍ଡେଇ ନେଇ ଯାଉଛୁ ? ଯଦି ସେମାନେ ଜାଣିପାରନ୍ତି, ତାହା-ହେଲେ ସେମାନେ କଣ କରିବେ ?

କେଭର କହିଲା, "ବେଡ୍‌ଫୋର୍ଡ୍, ଏହି ସୁଡ଼ଙ୍ଗଟି ତଳକୁ ଯାଉଛି । ଏହା କ୍ରମାଗତ ଆହୁରି ଆହୁରି ତଳକୁ ଯିବାରେ ଲାଗିଛି ।"

ତାର ଏହି ମନ୍ତବ୍ୟଦ୍ୱାରା ମୁଁ ମୋର ଉଦ୍‌ବେଗପୂର୍ଣ୍ଣ ଚିନ୍ତାଧାରାରୁ ଚେଇଁ ଉଠିଲି ।

ସେ ପଛକୁ ଘୁଞ୍ଚି ମୋ ପାଖକୁ ଲାଗି ଆସିଲା ଏବଂ କହିଲା, "ଆମକୁ ମାରି ପକେଇବା ଯଦି ସେମାନଙ୍କର ଇଚ୍ଛାଥାଆନ୍ତା ତାହାହେଲେ ସେମାନେ ଏହା ଆଗରୁ କାହିଁକି ନକରି ଆନ୍ତେ ଏହାର କୌଣସି କାରଣ ନାହିଁ ।"

ମୁଁ ସ୍ୱୀକାର କରି କହିଲି, "ହଁ, ସେ କଥା ସତ ।"

ସେ କହିଲା, "ଏମାନେ ଆମକୁ ବୁଝି ପାରୁନାହାନ୍ତି । ଏମାନେ ଭାବୁଛନ୍ତି ଆମେ କେବଳ ଏକପ୍ରକାର ଅଜଣା ପଶୁ, ବୋଧହୁଏ ଏକପ୍ରକାରର ବନ୍ୟ ଗୃହ୍ର ଗୋରୁ । ଯେତେବେଳେ ଏମାନେ ଆମକୁ ଆହୁରି ଭଲଭାବରେ ଲକ୍ଷ୍ୟ କରିବେ ସେତେବେଳେ ଯାଇ ଜାଣିପାରିବେ ଯେ ଆମର ଚିନ୍ତାଶକ୍ତି ଅଛି—"

ମୁଁ କହିଲି, "ଯେତେବେଳେ ତୁମ୍ଭେ ସେଇ ଜ୍ୟାମିତିକ ସମସ୍ୟାଗୁଡ଼ିକ ଆଙ୍କିବ ।"

"ତାହା ହୋଇପାରେ ।"

କିଛି କ୍ଷଣ ଯାଏ ଆମେ ନୀରବରେ ଚାଲିଲୁ ।

କେଭର କହିଲା, "ଦେଖ, ଏମାନେ ବୋଧହୁଏ ନିମ୍ନ ଶ୍ରେଣୀର ଗୃହ୍ୟକ ।"

ସେମାନଙ୍କର ବିଭତ୍ସ ମୁହଁ ଆଡ଼େ ଚାହିଁ ମୁଁ ରାଗରେ କହିଲି, "ସବୁ ଯାକ ଓଲୁ !"

"ସେମାନେ ଆମକୁ ଯାହା କଲେ ବି ଆମେ ସଦା ସହି ଯିବା—"

ମୁଁ କହିଲି, "ଆମକୁ ସହିବାକୁ ହିଁ ପଡ଼ିବ ।"

"ଏମାନଙ୍କଠାରୁ କମ ବୋକା ଅନ୍ୟ କେହି କେହି ହୁଏତ ଥାଇ ପାରନ୍ତି । ଏଇଟା କେବଳ ସେମାନଙ୍କର ଦୁନିଆର ବାହ୍ୟ ଅଂଶ । ଏହା ନିଶ୍ଚୟ ତଳକୁ ତଳକୁ ଯାଇଥିବ—ବିବର, ପଥ ଓ ସୁଡ଼ଙ୍ଗ ଗୁଡ଼ିକ ଆହୁରି ତଳକୁ ତଳକୁ ଯାଇ ଶେଷରେ ଶହ ଶହ ମାଇଲ ତଳେ ସମୁଦ୍ରରେ ପହଞ୍ଚିଥିବ ।"

ତାର କଥା ଶୁଣି ମୋର ମନେ ପଡ଼ିଲା ଯେ ଆମର ମୁଣ୍ଡ ଉପରେ ପ୍ରାୟ ମାଇଲେ ଯାଏ ଶିଳା ଓ ସୁଡ଼ଙ୍ଗ ରହି ସାରିଲାଣି । ଏହା ଭାବିଲାକ୍ଷଣି ମୋର ପିଠି ଉପରେ ଗୋଟିଏ ବୋଝ ଲଦା ହୋଇଗଲା ପରି ଲାଗିଲା । ମୁଁ କହିଲି, "ସୂର୍ଯ୍ୟ ଆଉ ବାୟୁଠାରୁ ଦୂରରେ ରହିଥିଲେ ଅଧ ମାଇଲ ଗହିରର ଖଣିରେ ବି ଦମ ବନ୍ଦ ହୋଇଗଲାପରି ଲାଗେ ।"

"ଯାହାହେଉ, ଏଠି ସେପରି ଲାଗୁ ନାହିଁ । ସମ୍ଭବତଃ—ବାୟୁ ଗମନାଗମନର ଉପାୟ ! ଚନ୍ଦ୍ରର ଅନ୍ଧକାରଚ୍ଛନ୍ନ ଅଂଶରୁ ସୂର୍ଯ୍ୟାଲୋକିତ ଅଂଶକୁ ବାୟୁ ପ୍ରବାହିତ ହେଉଥିବ ଏବଂ ସେଠି ସବୁ ଅଙ୍ଗାରକାମ୍ଳ ନିଗିଡ଼ି ସେଇ ଉଦ୍ଭିଦମାନଙ୍କୁ ଖାଦ୍ୟ ଯୋଗାଉଥିବ । ଉଦାହରଣ ସ୍ୱରୂପ ଦେଖ, ଏହି ସୁଡ଼ଙ୍ଗର ଉପରିଭାଗରେ ଖୁବ୍ ପବନ ବହୁଛି । ଏହା କେଡ଼େ ଆଶ୍ଚର୍ଯ୍ୟ ଦୁନିଆ ହୋଇଥିବ । ସେଇ ଲୌହ ଦଣ୍ଡରୁ, ସେଇ ଯନ୍ତ୍ରରୁ ଯାହା ଜଣା ପଡ଼ୁଛି—"

ମୁଁ କହିଲି, "ଆଉ ସେଇ ଅଙ୍କୁର । ଅଙ୍କୁର କଥା ଭୁଲି ଯାଅନା ?"

କିଛି ସମୟ ଯାଏ ସେ ମୋ' ଟିକିଏ ଆଗରେ ଚାଲିବାକୁ ଲାଗିଲା ।

ସେ କହିଲା, "ସେଇ ଅଙ୍କୁର ମଧ୍ୟ—"

"କହ ।"

"ସେତେବେଳେ ମୁଁ ରାଗି ଉଠିଥିଲି । କିନ୍ତୁ—ବୋଧହୁଏ ଆମର ସହିଯିବା ଉଚିତ ଥିଲା । ସେମାନଙ୍କର ଚମ ଭିନ୍ନ, ସମ୍ଭବତଃ ସେମାନଙ୍କର ସ୍ନାୟୁ ବି ଭିନ୍ନ । ସେମାନେ ହୁଏତ ଆମର ଆପତ୍ତି ବୁଝି ନ ପାରନ୍ତି । ସେପରି

ମଙ୍ଗଳ ଗ୍ରହର ଜୀବ ଆମର କହୁଣୀ ଫସା ମାରିବାର ପାର୍ଥିବ ଅଭ୍ୟାସ, ପସନ୍ଦ କରି ନ ପାରେ—"

"ମତେ ଏମାନେ କମିତ କହୁଣୀ ଫସା ମାରିବେ ଦେଖିବ !"

"ତାପରେ ସେଇ ଜ୍ୟାମିତି କଥା । ଯାହାହେଉ, ସେମାନଙ୍କର ପ୍ରଣାଳୀ ମଧ୍ୟ ବୁଝାଇବାର ପ୍ରଣାଳୀ । ସେମାନେ ଜୀବନର ମୌଳିକ ଉପାଦାନ ଗୁଡ଼ିକରୁ ଆରମ୍ଭ କରନ୍ତି । ଚିନ୍ତାର ମୌଳିକ ଉପାଦାନରୁ ଆରମ୍ଭ କରନ୍ତି ନାହିଁ । ଯଥା, ଖାଦ୍ୟ, ବାଧତା, ଯନ୍ତ୍ରଣା ସେମାନେ ମୂଳତତ୍ତ୍ୱ ଉପରେହିଁ ଜୋର ଦିଅନ୍ତି ।"

ମୁଁ କହିଲି, "ନିଃସନ୍ଦେହ !"

ଆମେ କହର ବିଶାଳ ଓ ଆଶ୍ଚର୍ଯ୍ୟ ଦୁନିଆ ଭିତରକୁ ନିଆ ଯାଉଛୁଁ, ସେ ବିଷୟରେ ସେ ଗପିବାକୁ ଆରମ୍ଭ କଲା । ତା'ର କଣ୍ଠ ସ୍ୱରରୁ ମୁଁ ଧୀରେ ଧୀରେ ବୁଝିପାରିଲି ଯେ ଏହି ଅସାଧାରଣ ବସ୍ତୁ-ବନ୍ଧୁରର ଅନ୍ତର ଭିତରକୁ ଯିବାର ସମ୍ଭାବନା ଦ୍ୱାରା ଏ ପର୍ଯ୍ୟନ୍ତ ବି ସେ ସମ୍ପୂର୍ଣ୍ଣ ହତାଶ ହୋଇନାହିଁ । ତାର ମନ ଯନ୍ତ୍ର ଓ ଉଦ୍ଭାବନ ପଛରେ ଦୌଡ଼ିବାକୁ ଲାଗିଲା । ଯେଉଁ ଅସଂଖ୍ୟ ଖାଦ୍ୟପ୍ରଦ ଚିନ୍ତା ମତେ ଆକ୍ରାନ୍ତ କରିଥିଲା ତାର ମନ ସେ ସବୁରୁ ସମ୍ପୂର୍ଣ୍ଣ ମୁକ୍ତଥିଲା । ଅବଶ୍ୟ ଏ ସବୁ ଜିନିଷକୁ କୌଣସି ବ୍ୟବହାରରେ ଲଗାଇବାର ଉଦ୍ଦେଶ୍ୟ ତାର ନ ଥିଲା ସେ କେବଳ ସେ ଗୁଡ଼ିକ ବିଷୟରେ ଜ୍ଞାନ ଅର୍ଜନ କରିବାକୁ ଚାହୁଁଥିଲା ।

ସେ କହିଲା, "ଯାହା ହେଉ, ଏହା ଗୋଟିଏ ବିରାଟ ଘଟଣା । ଏହା ଦୁଇଟି ଦୁନିଆଁର ଭେଟ ! ଆମେ କଣ ଦେଖିବା ? ଆମର ତଳେ ଏଠି କଣ ଅଛି ଖିଆଲ କର ।

ମୁଁ ମନ୍ତବ୍ୟ କଲି, "ସେଠା ଆଲୁଅ ଏଠା ଅପେକ୍ଷା ଭଲ ନ ଥିଲେ ଆମେ ବିଶେଷ କିଛି ଦେଖି ପାରିବାନି ।"

"ଏ ସ୍ଥାନଟା କେବଳ ବାହାରର ଖୋପା । ଆହୁରି ତଳେ—ଏହି ପରିମାଣରେ ଯଦି ଗଲେ—ସେଠି ସବୁ ଥିବ । ଏମାନେ ପ୍ରତ୍ୟେକେ

ପ୍ରତ୍ୟେକଙ୍କଠାରୁ ଚେହେରାରେ କେତେ ଭିନ୍ନ ଦିଶୁଛନ୍ତି ତମେ ଲକ୍ଷ୍ୟ କରୁଛ ? ଆମେ କେତେ ଆଶ୍ଚର୍ଯ୍ୟ କାହାଣୀ ଏଠୁ ନେଇଯିବା !”

ମୁଁ କହିଲି “କୌଣସି ବନ୍ୟ ପଶୁଙ୍କୁ ଚିଡ଼ିଆଖାନାକୁ ନିଆ ଯାଉଥିଲା ତେବେ ସେ ଏହିପରି ଭାବରେ ନିଜକୁ ସାନ୍ତ୍ୱନା ଦେଇପାରେ···ଏଥିରୁ ଜଣା ଯାଉନାହିଁ ମେ ଏସବୁ ଜିନିଷ ଆମକୁ ଦେଖେଇ ଦିଆଯିବ ।”

କେଭର କହିଲା, “ସେମାନେ ଯେତେବେଳେ ବୁଝିପାରିବେ ଯେ ଆମର ଚିନ୍ତାଶୀଳ ମନ ଅଛି, ସେତେବେଳେ ସେମାନେ ପୃଥିବୀ ବିଷୟରେ ଜାଣିବାକୁ ଚାହିଁବେ । ସେମାନଙ୍କର କୌଣସି ଦସ୍ତାର ଭାବ ନ ଥିଲେ ମଧ୍ୟ ସେମାନେ ଶିଖିବା ପାଇଁ ଆମକୁ ଶିଖାଇବେ······ଏବଂ ସେମାନେ କେତେ କଥା ଜାଣିଥିବେ ! କେତେ ଅଦ୍ଭୁତ କଥା !”

ପୃଥିବୀର ସେ ଯେଉଁ ସବୁ ବିଷୟ ଜାଣିବାକୁ ଆଶା କରି ନ ଥିଲା, ଏମାନେ ସେ ସବୁ କଥା ଜାଣିଥିବା ସମ୍ଭବ ବୋଲି ସେ ଅନୁମାନ କରିବାକୁ ଲାଗିଲା । ଆଙ୍କୁଶର କେଞ୍ଚା ଖାଇ ତା ଦେହରେ ଘା ହୋଇ ଯାଇଥିଲେ ମଧ୍ୟ ସେ ଏ ସବୁ ଆଲୋଚନାରୁ ବିରତ ହୋଇ ନ ଥିଲା ! ସେ ଯାହା ଯାହା ଗପିଲା ସେଥିରୁ ଅଧିକାଂଶ ମୁଁ ଭୁଲି ଯାଇଛି, କାରଣ ଆମେ ଯେଉଁ ସୁଡଙ୍ଗ ଭିତର ଦେଇ ଯାଉଥିଲୁଁ ତାହା କ୍ରମେ କ୍ରମେ ଅଧିକ ଚଉଡ଼ା ହୋଇ ଯାଉଥିବାରୁ ସେ ବିଷୟରେ ମୋର ମନ ବ୍ୟାପୃତ ଥିଲା । ବାୟୁର ଅନୁଭବରୁ ମନେ ହେଉଥିଲା ଆମେ ଗୋଟିଏ ବିସ୍ତୃତ ସ୍ଥାନ ଆଡ଼କୁ ଗତି କରୁଛୁଁ । କିନ୍ତୁ ସେହି ସ୍ଥାନ ପ୍ରକୃତରେ କେତେ ବିସ୍ତୃତ ଥିଲା ତାହା କହିବାର ଉପାୟ ନ ଥିଲା, କାରଣ ସେଠି ଆଦୌ ଆଲୁଅ ଜଳୁ ନ ଥିଲା । ସେହି ଶ୍ରେଷ୍ଠ ଆଲୋକ-ଝରଣାଟି କ୍ରମେ କ୍ରମେ ଅଧିକ ସଂକୀର୍ଣ୍ଣ ହୋଇ ଦୂରରେ ଅଦୃଶ୍ୟ ହୋଇ ଯାଇଥିଲା । କିଛି ସମୟ ପରେ ଦୁଇ ପାଖର ଶିଳାମୟ କାନ୍ଥ ଅପସାରିତ ହେଲା । ଆମ ସମ୍ମୁଖସ୍ଥ ରାସ୍ତା ଏବଂ ନୀଳ ଫସ୍‌ଫରସ୍‌ର ବେଗଗାମୀ ସବୁ ଝରଣା ଛଡ଼ା ଆଉ କିଛି ଦେଖାଯାଉ ନ ଥିଲା । କେଭର ଏବଂ ପଥପ୍ରଦର୍ଶକ ବୃନ୍ଦ୍ରକଟି ମୋ ଆଗରେ ଚାଲୁଥିଲେ ।

ସେମାନଙ୍କର ଗୋଡ଼ି ଓ ମୁଣ୍ଡ ଯେଉଁ ଅଂଶ ଝରଣା ଆଡକୁ ଥିଲା ତାହା ସ୍ପଷ୍ଟ ଓ ଉଜ୍ଜ୍ୱଳ ନୀଳ ଦିଶୁଥିଲା । ବର୍ତ୍ତମାନ ସୁଡ଼ଙ୍ଗ କାନ୍ଥର ପ୍ରତିଛାୟା ସେମାନଙ୍କର ଅନ୍ଧାରିଆ ଆଡକୁ ଆଉ ଆଲୋକିତ କରୁ ନ ଥିବାରୁ ତାହା ଦୂରର ଅନ୍ଧକାରରେ ସମ୍ପୂର୍ଣ୍ଣରୂପେ ମିଶି ଯାଇଥିଲା ।

କିଛିକ୍ଷଣ ପରେ ମୁଁ ଦେଖିପାରିଲି ଯେ ଆମେ ଏକପ୍ରକାର ଗଡ଼ାଣିଆ ସ୍ଥାନ ଆଡ଼କୁ ଯାଉଛୁଁ, କାରଣ ଶ୍ରେଷ୍ଠ ନୀଳଝରଣାଟି ହଠାତ୍ ଦୃଷ୍ଟି ସମ୍ମୁଖରୁ ଉଭେଇଗଲା ।

ମୁହୂର୍ତ୍ତିକ ପରେ ଆମେ ତାର ଧାରରେ ପହଞ୍ଚିଲୁଁ ବୋଲି ଜଣାଗଲା । ସେହି ଉଜ୍ଜ୍ୱଳ ଝରଣାଟି ଘୁରି ଯାଇଥିବାରୁ ତାର ଗତି ଠିକଏ ଶିଥିଳ ହୋଇ ପୁଣି ପ୍ରଚଣ୍ଡ ବେଗରେ ଅଜାଡ଼ି ହୋଇପଡୁଥିଲା । ତାହା ଏତେ ତଳେ ପଡୁଥିଲା ଯେ ତାର ପତନର ଶବ୍ଦ ଆମକୁ ଜମା ଶୁଣାଯାଉ ନ ଥିଲା । ଖୁବ ତଳେ, ସୀମାହୀନ ତଳେ, ଗୋଟିଏ ନୀଳ ଜ୍ୟୋତି ଦେଖାଯାଉଥିଲା— ଏକପ୍ରକାର ନୀଳ କୁହୁଡ଼ି ଏବଂ ଯେଉଁ ଅନ୍ଧକାରରୁ ଝରଣାଟି ଝରି ପଡୁଥିଲା ସେହି ଅନ୍ଧକାର ସମ୍ପୂର୍ଣ୍ଣ ଫାଙ୍କା ଓ ଗାଢ଼ କଳା ଦିଶୁଥିଲା । କେବଳ ପଟା ପରି ଗୋଟିଏ କଠିନ ପାହାଡ଼ର ଧାରରୁ ବାହାରିଥିଲା ଏବଂ ଆଗକୁ ଲମ୍ବିଯାଇ ସମ୍ପୂର୍ଣ୍ଣ ଅଦୃଶ୍ୟ ହୋଇ ଯାଇଥିଲା । ସେହି ଗହ୍ୱରରୁ ଉଷୁମ ପବନ ବହି ଆସୁଥିଲା ।

ମୁହୂର୍ତ୍ତିକ ଲାଗି ମୁଁ ଓ କେଉର ଯେତେଦୂର ସାହସ କରିପାରିଲୁଁ ଧାରର ପାଖକୁ ଲାଗି ଛିଡ଼ା ହେଲୁଁ ଏବଂ ସେହି ନୀଳ ପ୍ରଭାଯୁକ୍ତ ଗହ୍ୱରତା ଭିତରକୁ ଅନାଇ ରହିଲୁଁ । ତାପରେ ଆମର ପଥପ୍ରଦର୍ଶକ ମୋର ହାତ ଧରି ଭିଡ଼ିବାକୁ ଲାଗିଲା ।

ତାପରେ ସେ ମତେ ଘୁଞ୍ଚେଇଦେଇ ତକ୍ତାର ଧାର ପର୍ଯ୍ୟନ୍ତ ଚାଲିଗଲା ଏବଂ ପଛକୁ ବୁଲି ତା ଉପରକୁ ପାଦ ବଢ଼ାଇଲା । ଆମେ ତାକୁ ଲକ୍ଷ୍ୟ କରୁଛୁଁ ବୋଲି ସେ ଯେତେବେଳେ ଦେଖିଲା ପୁଣି ମୁହଁ ବୁଲେଇ ତା ଉପରେ ଚାଲିବାକୁ ଲାଗିଲା । ମାଟି ଉପରେ ଚାଲିଲେ ଯେପରି ନିଶ୍ଚିନ୍ତରେ ଚାଲନ୍ତି ତକ୍ତା ଉପରେ ସେ ସେହିପରି ଭାବରେ ଚାଲୁଥିଲା । କ୍ଷଣକ ଲାଗି

ତାର ଆକୃତି ସ୍ପଷ୍ଟ ବାରି ହେଉଥିଲା, ତାପରେ ସେ ଖୋଟିଏ ଅସ୍ପଷ୍ଟ ମାଳାକୃତି ପରି ଦିଶିଲା ଏବଂ ଶେଷରେ ଅନ୍ଧକାର ଭିତରେ ସମ୍ପୂର୍ଣ୍ଣ ମିଶିଗଲା । ଅନ୍ଧକାର ଭିତରୁ କୌଣସି ଅସ୍ପଷ୍ଟ ଶ୍ରୁସ୍ୱା ଆସୁଥିବାର ମୁଁ ଅନୁଭବ କରିପାରିଲି ।

କ୍ଷଣକ ଲାଗି ଚୁପ୍ ଚାପ୍ । ତାପରେ କେଭର କହିଲା, "ଆଶ୍ଚର୍ଯ୍ୟ— !"

ଅନ୍ୟ ଗୋଟିଏ ବୃଦ୍ଧ କ ତକ୍ତା ଉପରେ କିଛି ବାଟ ଆଗକୁ ଗଲା ଏବଂ ବୁଲି ପଡ଼ି ଆମ ଆଡ଼କୁ ନିରୁଦ୍‌ବିଗ୍ନ ଭାବରେ ଅନାଇଲା । ଅନ୍ୟମାନେ ଆମ ପଛେ ପଛେ ଯିବା ପାଇଁ ପ୍ରସ୍ତୁତ ହୋଇ ରହିଲେ । ଆମର ପ୍ରେଥପ୍ରଦର୍ଶକର ପ୍ରତୀକ୍ଷମାନ ଚେହେରା ପୁଣି ଦେଖାଦେଲା । ଆମେ କାହିଁକି ଆଗକୁ ଯାଉ ନାହୁଁ ତାହା ଦେଖିବା ପାଇଁ ସେ ଫେରିଆସିଥିଲା ।

ମୁଁ ପଚାରିଲି, "ଦୂରରେ ସେଇଟା କଣ ?"

କେଭର ଉତ୍ତର ଦେଲା, "ମୁଁ ଦେଖି ପାରୁ ନାହିଁ "

ମୁଁ କହିଲି "ଆମେ କୌଣସି ମତେ ତାହା ପାର ହୋଇ ପାରିବା ନାହିଁ ।"

କେଭର କହିଲା, "ମୋର ହାତ ଖୋଲା ହୋଇଥିଲେ ବି ମୁଁ ତାହା ଉପରେ ଚଢ଼ି ପାହୁଣ୍ଡ ପର୍ଯ୍ୟନ୍ତ ଯାଇ ପାରନ୍ତି ନାହିଁ ।"

ଆମେ ପରସ୍ପରର ଶୁଖିଲା ମୁହଁ ଆଡ଼କୁ ଭୟ ଓ ହତାଶାରେ ଅନାଇ ରହିଲୁଁ ।

କେଭର କହିଲା, "ଟଳମଳ ହେଲେ କେମିତି ଲାଗେ ତାହା ବୋଧେ ଏମାନେ ଅନୁଭବ କରନ୍ତି ନାହିଁ !"

"ଏଇ ତକ୍ତା ଉପରେ ଚାଲିବାଟା ଆମ ପକ୍ଷରେ ଏକଦମ୍ ଅସମ୍ଭବ ।"

"ଆମେ ଯେପରି ଦେଖୁ ସେମାନେ ସେପରି ଦେଖନ୍ତି ବୋଲି ମୋର ବିଶ୍ୱାସ ହେଉ ନାହିଁ ମୁଁ ସେମାନଙ୍କୁ ଲକ୍ଷ୍ୟ କରି ଆସୁଛି । ଏହା ଯେ ଆମ ପକ୍ଷରେ ନିଶ୍ଚିତ ମୃତ୍ୟୁ ତାହା ଏମାନେ ଜାଣନ୍ତି ନ ବୋଧହୁଏ । ଏମାନଙ୍କୁ ଆମେ କିପରି ବୁଝେଇବା ?"

"ଯେପରି ହେଉ ବୁଝେଇବାକୁ ପଡ଼ିବ ।"

ଆମେ ଏପରି କଥାବାର୍ତ୍ତା କରୁଥିବେଳେ ଆମର ବୋଧହୁଏ ଆ-ଶା ଥିଲା ଯେ ଗୃଧ୍ରକମାନେ ଆମର ଅବସ୍ଥା କୌଣସି ପ୍ରକାରେ ବୁଝି ପାରିବେ । ମୁଁ ଭଲରୂପେ ଜାଣିଥିଲି, କେବଳ ବୁଝେଇଁ ପାରିଲେ କାମ ଛୁଟିଯିବ । କିନ୍ତୁ ତା ପରେ ଯେତେବେଳେ ମୁଁ ସେମାନଙ୍କର ମୁହଁ ଦେଖିଲି, ବୁଝାଶୁଝା କରିବା ଅସମ୍ଭବ ବୋଲି ଉପଲବ୍ଧି କରି ପାରିଲି । ଏହିଠାରେ ହିଁ ଆମର ସାଦୃଶ୍ୟ ଆମର ପାର୍ଥକ୍ୟକୁ ଅତିକ୍ରମ କରିବା ଅସମ୍ଭବ ଥିଲା । ଯାହା ହେଉ, ତାହା ଉପରେ ନ ରହିବାକୁ ମୁଁ ଠିକ୍ କଲି । ମୁଁ ମୋର ହାତକୁ ହୁଗୁଳି ଯାଇଥିବା ଶିକୁଳିରୁ ଚଞ୍ଚଳ ଫିଟେଇ ପକେଇଲି ଏବଂ ତାପରେ ଓଲଟା ଦିଗରେ ମୋର ଦୁଇ ହାତକୁ ଘୂରେଇବାକୁ ଲାଗିଲି । ସମସ୍ତଙ୍କ ଅପେକ୍ଷା ମୁଁ ପୋଲର ପାଖରେ ଥିଲି ଏବଂ ଶିକୁଳିରୁ ହାତ ଫିଟଉଁ ଫିଟଉଁ ଦୁଇଜଣ ଗୃଧ୍ରକ ଆସି ମତେ ଧଇଲେ ଏବଂ ଆସ୍ତେ ଆସ୍ତେ ପୋଲ ଆଡ଼କୁ ଟାଣିବାକୁ ଆରମ୍ଭ କଲେ ।

ମୁଁ ଖୁବ ଜୋରରେ ମୋର ମୁଣ୍ଡ ହଲାଇବାକୁ ଲାଗିଲି । କହିଲି, "ଉହୁଁ, ଅସମ୍ଭବ । ତୁମେମାନେ ବୁଝିପାରୁ ନାହଁ ।"

ଆଉ ଜଣେ ଗୃଧ୍ରକ ଆସି ବଳ ପ୍ରୟୋଗ କଲା । ମୁଁ ଆଗରୁ ପାଦ ପକେଇବାକୁ ବାଧ ହେଲି ।

କେଭର କହିଲା, "ମୋ ମୁଣ୍ଡରେ ଗୋଟିଏ ବୁଦ୍ଧି ଆସିଛି ।" କିନ୍ତୁ ମୁଁ ତାର ବୁଦ୍ଧି କଥା ଜାଣିଥିଲି ।

ମୁଁ ପାଟିକରି ଗୃଧ୍ରକମାନଙ୍କୁ କହିଲି, "ଦେଖ ! ସମ୍ଭାଳ ! ତୁମେ-ମାନେ ଖସୁଛ—"

ହଠାତ୍ ମୁଁ ପଛକୁ ଡିଆଁମାରି ଯନ୍ତ୍ରଣାରେ ଚିତ୍କାର କରି ଉଠିଲି । କାରଣ, ଜଣେ ସଶସ୍ତ୍ର ଗୃଧ୍ରକ ମତେ ପଛରୁ ଅଙ୍କୁଶ ଦ୍ୱାରା ଖେଞ୍ଚି ଦେଇଥିଲା ।

ମୋର ହାତରେ ଯେଉଁ କ୍ଷୁଦ୍ର ଶୁଣ୍ଡଗୁଡ଼ିକ ଗୁଡ଼େଇ ହୋଇଥିଲା ସେଥିରୁ ମୁଁ ହାତକୁ ଝିଙ୍କି ବାହାରକରି ଆଣିଲି । ଅଙ୍କୁଶଧାରୀ ଆଡ଼କୁ ବୁଲି ପଡ଼ି ମୁଁ ପାଟି କରି କହିଲି, "ଖବରଦାର ! ମୁଁ ତତେ ଆଗରୁ ସାବଧାନ

କରି ଦେଇଛୁ । ମୁଁ କେଉଁଠି ଥିରେ ତିଆରି ହୋଇଛୁ ବୋଲି ତୁ ଭାବିଛୁ ଯେ ମତେ ସେଥିରେ କେଇଁବୁ ? ପୁଣି ଯଦି ମତେ ଛୁଉଁ—"

ଈଶ୍ୱର ସ୍ୱରୂପ ସେ ସାଙ୍ଗେ ସାଙ୍ଗେ ମତେ କେଇଁଦେଲା ।

କେଭରର ଶାନ୍ତ ଓ ଆବେଦନ ପୂର୍ଣ୍ଣ କଣ୍ଠସ୍ୱର ମୁଁ ଶୁଣି ପାରିଲି । ବୋଧହୁଏ ସେତେବେଳେ ବି ସେ ଏହି ଜୀବମାନଙ୍କ ସହିତ ସାଲିସ କରିବାକୁ ଚେଷ୍ଟା କରୁଥିଲା । ସେ ଡାକିଲା, "ବୋଡ଼୍‌ଫୋର୍ଡ଼ ! ଶୁଣ ! ମୁଁ ଗୋଟିଏ ଉପାୟ ଜାଣେ ।" କିନ୍ତୁ ସେଇ ଦ୍ୱିତୀୟ କେଞ୍ଚାର ଦଂଶନ ବୋଧହୁଏ ମୋ ଭିତରେ କୌଣସି ସମ୍ପୂର୍ଣ୍ଣ ଶକ୍ତିକୁ ଉନ୍ମୁକ୍ତ କରି ଦେଇଥିଲା । ତତ୍‌କ୍ଷଣାତ୍ ହାତକଡ଼ିର ଯୋଡ଼ା ଛିଣ୍ଡିଗଲା ଏବଂ ସେଥି ସଙ୍ଗେ ସଙ୍ଗେ ଯାହା କିଛି ବସ୍ତୁର ଆମକୁ ସେହି ବୃହତ୍ ଜୀବମାନଙ୍କ ହାତରେ ପ୍ରତିରୋଧହୀନ କରି ରଖିଥିଲା ତାହା ମଧ୍ୟ ଛିଣ୍ଡି ଗଲା । ସେହି ଗୋଟିଏ ସେକେଣ୍ଡ ଲାଗି ଅନ୍ତତଃ ମୁଁ ଭୟ ଓ କ୍ରୋଧରେ ପାଗଳ ହୋଇଯାଇଥିଲି । ଫଳାଫଳ କଥା ମୁଁ ଆଦୌ ଭାବିଲି ନାହିଁ । ଅଙ୍କୁଶ ଧରିଥିବା ଜୀବର ମୁହଁରେ ମୁଁ ସିଧା ସଳଖ ମୁଥାଏ ମାରିଲି । ଝିଙ୍କୁଲିଟି ମୋର ମୁଠା ସ୍ପର୍ଶରେ ଗୁଡ଼େଇ ହୋଇଥାଏ......

ବିସ୍ମୟପୂର୍ଣ୍ଣ ଚନ୍ଦ୍ର ଜଗତର ପୁଣି ଗୋଟିଏ ବିସ୍ମୟ ମୁଁ ଦେଖିଲି ।

ମତେ ଜଣାଗଲା ଯେମିତି ମୋର ଚର୍ମପିନ୍ଧା ମୁଠା ତାର ମୁଣ୍ଡ ଭିତରେ ସିଧା ସଳଖ ଗଳିଗଲା । ସେ ଫଟ୍ କରି ଫାଟିଗଲା—ଭିତରେ ପାଣି ଥିବା ନରମ ରସଗୋଲା ପରି ପ୍ରବାହିତ ହୋଇଗଲା ! ଛିନ୍ନଭିନ୍ନ ହୋଇଗଲା ! ଖଣ୍ଡଖଣ୍ଡ ହୋଇ ଛିଞ୍ଚାଡ଼ି ହୋଇ ପଡ଼ିଲା ! ଓଦା ଛତୁକୁ ମୁଥାଏ ମାରିଲା ପରି ମତେ ଲାଗିଲା । ତାର ଲଡ଼ ବଡ଼ିଆ ଦେହ ଦଶହାତ ଦୂରକୁ ଛିଟିକିଗଲା ଏବଂ ତଳେ ପଡ଼ି ଚେପା ହୋଇଗଲା । ମୁଁ ବିସ୍ମୟରେ ଅଭିଭୂତ ହୋଇଗଲି । କୌଣସି ଜୀବନ୍ତ ବସ୍ତୁର ଦେହ ଯେ ଏପରି ନରମ ହୋଇପାରେ ଏହା ବିଶ୍ୱାସର ଅତୀତ ଥିଲା । ଗୋଟିଏ ମୁହୂର୍ତ୍ତପାଇଁ ସମସ୍ତ ଘଟଣାଟି ମତେ ଗୋଟିଏ ସ୍ୱପ୍ନ ପରି ଲାଗିଲା ।

ତାପରେ ତାହା ପୁଣି ବାସ୍ତବ ଓ ପ୍ରତ୍ୟକ୍ଷ ହୋଇ ଉଠିଲା । ମୁଁ ପଛକୁ ବୁଲି ପଡ଼ିବାର ସମୟଠାରୁ ମୃତ ଗୃଦ୍ଧକଟି ତଳେ କଗ୍ରନ୍ଥ ହୋଇ ପଡ଼ିବା ପର୍ଯ୍ୟନ୍ତ କେଉଁର କମ୍ବା ଅନ୍ୟ ଗୃଦ୍ଧକମାନେ ନିଶ୍ଚଳ ହୋଇ ରହିଥିଲେ । ସମସ୍ତେ ଆମ ଦୁହିଁଙ୍କଠାରୁ ଦୂରକୁ ଘଞ୍ଚ ଠିଆ ହୋଇଥିଲେ । ସତର୍କ ହୋଇ ରହିଥିଲେ । ସେହି ଅବସ୍ଥା ବୋଧହୁଏ ଗୃଦ୍ଧକଟି ପଡ଼ିବାର ପରମୁହୂର୍ତ୍ତରୁ ସେକେଣ୍ଡକ ଲାଗି ସ୍ଥାୟୀ ହୋଇଥିଲା । ସମସ୍ତେ ବୋଧହୁଏ ସେହି ସମୟ ଭିତରେ ଘଟଣାଟି ହୃଦୟଙ୍ଗମ କରି ନେଉଥିଲେ । ମୁଁ ମଧ୍ୟ ମୋର ହାତକୁ ଅଧା ଟେକ ଛୁଡ଼ା ହୋଇ ଘଟଣାଟି ଉପଲବ୍ଧି କରିବାକୁ ଚେଷ୍ଟା କରୁଥିଲି । ମୋର ମୁଣ୍ଡ ଭିତରେ ଶବ୍ଦ ଉଠୁଥିଲା, "ଏହାପରେ କଣ ? ଏହା-ପରେ କଣ ?" ତାପରେ ହଠାତ୍ ସମସ୍ତେ ଏକ ସଙ୍ଗରେ ଅଗ୍ରସର ହେଲେ ।

ମୁଁ ବୁଝିପାରିଲି ଯେ ଆମକୁ ଶୀଙ୍କୁଳୀ ଗୁଡ଼ାକ ଫିଙ୍ଗିଦେଇ ପକାଇବାକୁ ହେବ ଏବଂ ଏହା କରିପାରିବା ପୂର୍ବରୁ ଆଗେ ଚାନ୍ଦ୍ରକମାନଙ୍କୁ ପରାସ୍ତ କରିବାକୁ ପଡ଼ିବ । ଅଙ୍କୁଶଧାରୀ ଉନଜଣଙ୍କ ଆଡ଼କୁ ମୁଁ ମୁହାଁଇଲି । ସଙ୍ଗେ ସଙ୍ଗେ ଜଣେ ମୋ ଆଡ଼କୁ ତାର ଅଙ୍କୁଶଟି ଫୋପାଡ଼ିଲା । ତାହା ସାଁ କରି ମୁଣ୍ଡ ଉପରେ ଉଡ଼ି ଚାଲିଗଲା ଏବଂ ବୋଧହୁଏ ମୋ ପଛରେ ଥିବା ଖାଲ ଭିତରେ ଯାଇ ପଡ଼ିଲା ।

ଅଙ୍କୁଶଟି ମୋ ମୁଣ୍ଡ ଉପରେ ଉଡ଼ିଗଲା ବେଳେ ମୁଁ ସମସ୍ତ ବଳ ପ୍ରୟୋଗ କରି ସେହି ଗୃଦ୍ଧକ ଉପରକୁ ସିଧା ଝାମ୍ପି ପଡ଼ିଲି । ମୁଁ ଡେଇଁବା କ୍ଷଣି ସେ ପଳେଇବାକୁ ବସିଲା, କିନ୍ତୁ ମୁଁ ସିଧା ଯାଇ ତା ଉପରେ ପଡ଼ିଲି ଏବଂ ତାର ଦଳା ହୋଇ ଯାଇଥିବା ଦେହ ଉପରେ ମୋର ଗୋଡ଼ ପଡ଼ି ଖସିଗଲା । ମୋର ପାଦ ତଳେ ସେ ଛଟପଟ କରିବାକୁ ଲାଗିଲା ।

ମୁଁ ଉଠି ବସିଲି ଏବଂ ଦେଖିଲି ଗୁରୁଆଡ଼େ ଚାନ୍ଦ୍ରକମାନେ ପୃଷ୍ଠଭଙ୍ଗ ଦେଇ ଅନ୍ଧକାର ଭିତରେ ଲୁଚିଯାଉଥିଲେ । ମୁଁ ବଳ ପ୍ରୟୋଗ କରି ଚୋଟିଏ କଡ଼ାକୁ ବଙ୍କା କରିଦେଲି ଏବଂ ମୋ ଗୋଡ଼ରେ ଛନ୍ଦି ହୋଇଥିବା ଶୀଙ୍କୁଳୀକୁ ଫିଙ୍ଗିଦେଇଲି । ତାପରେ ଶୀଙ୍କୁଳୀକୁ ହାତରେ ଧରି ଉଠି

ଛୁଡ଼ାହେଲ । ଆଉ ଗୋଟିଏ ଆଙ୍କୁଶ ମୋ ପାଖ ଦେଇ ବର୍ଚ୍ଛାପରି ସାଁ କନା ଗଲିଗଲା । ଯେଉଁ ଅନ୍ଧକାର ଭିତରୁ ତାହା ଆସିଥିଲା ସେଆଡ଼କୁ ମୁଁ ଦଉଡ଼ି-ନଲି । ତାପରେ ମୁଁ କେଉଁର ଆଡ଼କୁ ଫେରିଲି । ମେ ଖାଲି ପ ଖରେ ଝରଣାର ଆଲୋକରେ ଛୁଡା ହୋଇ ତାର ହାତକୁ ଟିଙ୍କାଟିଙ୍କି କରୁଥିଲା ଏବଂ ତାର ଖିଆଲ କଥା ନେଇ ବକ ବକ ହେଉଥିଲା ।

ମୁଁ କହିଲି, "ଚାଲି ଆସ !"

ସେ ଉତ୍ତର ଦେଲା, "ମୋର ହାତ !"

. ସେ ବୁଝିପାରିଲା ଯେ ମୁଁ ତା ପାଖକୁ ଦୌଡ଼ିଯାଇ ପାରିବ ନାହିଁ । କାରଣ ମୋର ଅସମ୍ଭାଳ ପାହୁଣ୍ଡ ଦ୍ୱାରା ମୁଁ ହୁଏତ ଧାରର ତଳକୁ ଖସି ପଡ଼ିବି । ତେଣୁ ସେ ତାର ହାତକୁ ଆଗକୁ ବଢ଼େଇ ଦେଇ ମୋ ଆଡ଼କୁ ଗ୍ରେଟେଇ ଗ୍ରେଟେଇ ଆସିଲା ।

ମୁଁ ତତ୍‌କ୍ଷଣାତ୍ ତାର ଶୀକୁଳି ଧରି ଫିଟେଇବାକୁ ବସିଲି । ସେ ଅଣନିଶ୍ୱାସୀ ଭାବରେ ପଚାରିଲା, "ସେମାନେ କୁଆଡେ ଗଲେ ?"

"ପଳେଇ ଯାଇଛନ୍ତି । ପୁଣି ଫେରି ଆସିବେ । ସେମାନେ ଫୋପଡ଼ା ଫୋପଡ଼ି କରୁଛନ୍ତି । କେଉଁ ବାଟରେ ଆମେ ଯିବା ?"

"ଆଲୁଅ ବାଟେ ଯିବା । ସେଇ ବଦର ଭିତରକୁ । ଏଁ ?"

ମୁଁ କହିଲି, "ହଁ ।" ତାର ହାତ ଖୋଲି ଯାଇଥିଲା ।

ମୁଁ ଆଣ୍ଠେଇ ପଡ଼ି ତାର ଗୋଡ଼ର ଶୀକୁଳି ଗୁଡ଼ାକ ଖୋଲିବାକୁ ଲାଗିଲି । କୌଣସି ଜିନିଷ—କେଜାଣି କଣ—ସର୍‌କିନା ଉଡ଼ି ଆସିଲା ଏବଂ ଝରଣା ଉପରେ ପଡ଼ି ଚାରିଆଡ଼େ ଫୁଲା ବୁନ୍ଦା ନେଳିଆ ପାଣି ଛିଞ୍ଚିଦେଲା । ଆମର ଡାହାଣ ପଟେ ଅନେକ ଦୂରରେ ଚେଁ ଚେଁ ପେଁ ପେଁ ଶବ୍ଦ ଆରମ୍ଭ ହେଲା ।

ମୁଁ ତାର ପାଦରୁ ଶୀକୁଳିଟି ଟିକି ଆଣି ତାର ହାତରେ ଦେଲି ଏବଂ କହିଲି, "ଏଇଥିରେ ବାଡ଼ାଅ ।" ଉତ୍ତରକୁ ଅପେକ୍ଷା ନ କରି ମୁଁ ବଡ଼ ବଡ଼ ପାହୁଣ୍ଡ ପକେଇ ଆମେ ଯେଉଁ ବାଟରୁ ଆସିଥିଲୁଁ ସେ ଆଡ଼କୁ ଦୌଡ଼ିଲି । ମତେ ଲାଗୁଥିଲା ଯେପରି ଏହି ଜୀବ ଗୁଡ଼ିକ ଅନ୍ଧକାର ଭିତରୁ ମୋର ପିଠି

ଉପରକୁ ଝାମ୍ପି ପଡ଼ିବେ । କେଭର ଡେଇଁ ଡେଇଁ ମୋ ପଛରୁ ଆସୁଥିବାର ମୁଁ ଶୁଣି ପାରିଲି ।

ଆମେ ପ୍ରକାଣ୍ଡ ପ୍ରକାଣ୍ଡ ଲମ୍ଫ ମାରି ଦୌଡ଼ିବାକୁ ଲାଗିଲୁଁ । କିନ୍ତୁ ତୁମେ ବୁଝି ପାରୁଥିବ, ସେହି ଦୌଡ଼ା ପୃଥିବୀର କୌଣସି ଦୌଡ଼ାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପୃଥିବୀରେ ଆମେ ଡେଇଁ ପ୍ରାୟ ତତ୍କ୍ଷଣାତ୍ ମାଟିରେ ପଡ଼ୁ । କିନ୍ତୁ ଚନ୍ଦ୍ରର ଆକର୍ଷଣୀ ଶକ୍ତି କମ୍ ଥିବାରୁ ସେଠାରେ ଡେଇଁ ସାରି ମାଟିରେ ପଡ଼ିବା ପୂର୍ବରୁ ଅନେକ ସେକେଣ୍ଡ ପାଏଁ ଶୂନ୍ୟରେ ରହିବାକୁ ହେଉଥିଲା । ଆମର ଖ୍ରାଷ୍ଟଣ ଚଞ୍ଚଳତା ସତ୍ତ୍ୱେ ଏହାଦ୍ୱାରା ଅନେକ ସମୟପାଏଁ ଅଟକି ରହିବାକୁ ହେଉଥିଲା । ସେ ସମୟ ଭିତରେ ପ୍ରାୟ ସାତ କି ଆଠ ପର୍ଯ୍ୟନ୍ତ ଗଣାଯାଇପାରେ । ପାଦ ପକାଇଲା କ୍ଷଣି ମୁଁ ଶୂନ୍ୟକୁ ଉଠିଯାଉଥିଲି, ଏବଂ ପୁଣି ଖସିବା ପୂର୍ବରୁ ଅନେକ କଥା ଭାବି ଯାଉଥିଲି; ଯଥା "ଚନ୍ଦ୍ରକ-ମାନେ କୁଆଡ଼େ ଗଲେ ? ସେମାନେ କଣ କରିବେ ? ଆମେ ସେଇ ସୁଡ଼ଙ୍ଗ ଭିତରେ ପହଞ୍ଚି ପାରିବୁଁ କି ନାହିଁ ? କେଭର କଣ ବହୁତ ପଛରେ ରହି ଯାଇଛି ? ସେମାନେ କଣ ତାକୁ ଅଟକାଇ ଦେବେ ?" ତାପରେ ତଳେ ପଡ଼ି; ଡିଆଁ ମାରି ଶୂନ୍ୟକୁ ଉଠିଯାଉଥିଲି ।

ଆଗରେ ଗୋଟିଏ ଚନ୍ଦ୍ରକକୁ ଦୌଡ଼ିଯାଉଥିବାର ମୁଁ ଦେଖିଲି । ମଣିଷର ପାଦ ପୃଥିବୀ ଉପରେ ଯେପରି ପଡ଼େ ତାର ପାଦ ଠିକ ସେହିପରି ପଡ଼ୁଥିଲା । ସେ ପଛକୁ ଫେରି ଚାହିଁଲା ଏବଂ ଚିତ୍କାର କରି ମୋ ସାମନାରୁ ହଟି ଯାଇ କଡ଼ ପଟେ ଅନ୍ଧାରରେ ମିଶିଗଲା । ସେ ବୋଧହୁଏ ଆମର ପଥ ପ୍ରଦର୍ଶକ ଥିଲା, କିନ୍ତୁ ସେ ବିଷୟରେ ମୁଁ ନିଶ୍ଚିତ ନୁହେଁ । ଆଉ ଗୋଟିଏ ଲମ୍ବା ପାହୁଣ୍ଡରେ ମୁଁ ଦୁଇପଟେ ଥିବା ପାହାଡ଼ର କାନ୍ଥ ପାଖରେ ପହଞ୍ଚିଗଲି ଏବଂ ପୁଣି ଦୁଇଟି ପାହୁଣ୍ଡରେ ସୁଡ଼ଙ୍ଗ ଭିତରେ ପହଞ୍ଚି ଅନୁଚ୍ଚ ଛାତ ଯୋଗୁଁ ସମ୍ଭାଳି ସମ୍ଭାଳି ଚାଲିଲି । ବୁଲଣି ପାଖରେ ପହଞ୍ଚି ମୁଁ ଅଟକିଗଲି; ଏବଂ ପଛକୁ ଫେରି ଚାହିଁଲି । ନୀଳ ଜଳସ୍ରୋତ ଉପରେ ଥପ୍ ଥପ୍ କରି କେଭର କ୍ରମେ କ୍ରମେ ନିକଟକୁ ଆସିବାକୁ ଲାଗିଲା । ତାପରେ ମୋ ଉପରେ ଆସି କଚାଡ଼ି ହୋଇ ପଡ଼ିଲା । ଆମେ ପରସ୍ପରକୁ ଜାବୁଡ଼ି ଧରି ଛିଡ଼ାହେଲୁଁ ।

ଅନ୍ତତଃ ମୁହୂର୍ତ୍ତିକ ପାଇଁ ଆମ୍ଭେ ଆମର ବନ୍ଧନକାରୀମାନଙ୍କୁ ହଟେଇ ଏକୁଟିଆ ରହିବାର ସୁଯୋଗ ପାଇଲୁଁ ।

ଆମେ ଦୁହେଁ ଖୁବ ଧଇଁସଇଁ ହୋଇପଡ଼ିଥିଲୁଁ । ଲମ୍ବା ଲମ୍ବା ନିଶ୍ୱାସ ନେଇ ଭଙ୍ଗାଭଙ୍ଗା କଥାରେ ଆମେ କୁହାକୁହି ହେଲୁଁ ।

କେଭର କହିଲା, "ତୁମେ ସବୁ ମାଟି କରି ଦେଇଛ !"

ମୁଁ କହିଲି, "ବାଜେ କଥା । ଏପରି ନ କରିଥିଲେ ଆମକୁ ମରିବାକୁ ପଡ଼ିଥାନ୍ତା ।"

"ଆମେ ଏଇନେ କଣ କରିବା ?"

"ଲୁଚିବା ।"

"କିପରି ?"

"ଏଠି ଯଥେଷ୍ଟ ଅନ୍ଧାର ଅଛି ।"

"କିନ୍ତୁ କେଉଁଠି ?"

"ଏଇ ଭରପଟ ବିବରମାନଙ୍କ ଭିତରୁ ଗୋଟିକରେ ।"

"ତାପରେ ?"

"ଭାବି ଦେଖିବା ।"

"ଆଚ୍ଛା—ଚାଲ ।"

ଆମେ ପୁଣି ଲମ୍ବା ପାଦ ପକେଇ ଚାଲିଲୁଁ ଏବଂ କିଛି ସମୟ ପରେ ଗୋଟିଏ ଅନ୍ଧାର ଅଥଚ ରଶ୍ମି ବିକିରଣ କରୁଥିବା ବିବର ମୁଖରେ ପହଞ୍ଚିଲୁଁ । କେଭର ସାମନାରେ ଥିଲା । ଠିକେ ଇତଃସ୍ତତ କରି ସେ ଗୋଟିଏ ଅନ୍ଧାରପୂର୍ଣ୍ଣ ବାଟ ବାଛିଲା । ସେଠି ଭଲରୂପେ ଲୁଚି ପାରିବାର ସୁବିଧା ଥିଲା । ସେ ସେ ଦିଗରେ ଯାଇ ପଛକୁ ଫେରି ଚାହିଁଲା ।

ସେ କହିଲା, "ଏଠି ଖୁବ ଅନ୍ଧାର ।"

"ତୁମର ଗୋଡ଼ ଓ ପାଦ ଆମକୁ ଆଲୁଅ ଯୋଗେଇବ । ତାହା ସେଇ ଆଲୁଅମୟ ପଦାର୍ଥ ଦ୍ୱାରା ଓଦା ହୋଇ ଯାଇଥିଲା ।"

"କିନ୍ତୁ—"

ପ୍ରଧାନ ସୁଡ଼ଙ୍ଗ ଆଡ଼ୁ ଆସୁଥିବା ଗୋଟିଏ ଗୋଳମାଳିଆ ଶବ୍ଦ, ବିଶେଷତଃ ଘଣ୍ଟା ପିଟିଲା ପରି ଗୋଟିଏ ଶବ୍ଦ ଶୁଣାଗଲା । ଆମ ପଛରୁ କେହି ଅସ୍ତବ୍ୟସ୍ତ ହୋଇ ଗୋଡ଼େଇ ଆସୁଥିବାର ଭୟାନକ ସୂଚନା ଏହା ଦେଉ-ଥିଲା । ଆମେ ତତ୍‌କ୍ଷଣାତ୍ ବିବରର ଅନାଲୋକିତ ଦାଗ ଆଡ଼କୁ ଦୌଡ଼ିଲୁ । ଆମେ ଦୌଡ଼ିଯାଉଥିବାବେଳେ କେଭରର ଗୋଡ଼ର ଆଲୋକ ଦ୍ୱାରା ଆମର ରାସ୍ତା ଆଲୋକିତ ହେଉଥିଲା । ମୁଁ ଧଇଁ ସଇଁ ହୋଇ କହିଲି, "ଭାଗ୍ୟକୁ ସେମାନେ ଆମର ଯୋଡ଼ା ଖୋଲି ନେଇଛନ୍ତି, ନ ହେଲେ ଆମେ ଦୌଡ଼ିଲା-ବେଳେ ମଚ ମଚ ଶବ୍ଦ ହୋଇଥାନ୍ତା ।" ବିବରର ଛାତରେ ମୁଣ୍ଡ ନ ବାଜିବ ବୋଲି ଯେତେଦୂର ସମ୍ଭବ ଛୋଟ ଛୋଟ ପାଦ ପକେଇ ଆମେ ଦୌଡ଼ିବାକୁ ଲାଗିଲୁ । କିଛି ସମୟ ପରେ ସେହି ଶବ୍ଦଟି ଆମେ କ୍ରମେ ଦୂରକୁ ଚାଲି-ଯାଉଛୁ ବୋଲି ମନେ ହେଲା । ତାହା ଆଚ୍ଛାଦିତ ହୋଇ ଆସିଲା, କ୍ଷୀଣତର ହୋଇ ଆସିଲା ଏବଂ ଶେଷରେ ସମ୍ପୂର୍ଣ୍ଣ ତିରୋହିତ ହେଲା ।

ମୁଁ ଠିଆ ହୋଇପଡ଼ି ପଛକୁ ଚାହିଁଲି । କେଭରର ପଦଧ୍ୱନି ଶାନ୍ତ ହୋଇ ଆସିଲା । ସେ ବି ଠିଆ ହୋଇ ପଡ଼ିଲା । ରୁଦ୍ଧଶ୍ୱାସରେ ସେ କହିଲା, "ବେଡ଼୍‌ଫୋର୍ଡ଼, ଆମ ସାମନାରେ ଏକପ୍ରକାର ଆଲୁଅ ଦେଖାଯାଉଛି ।"

ମୁଁ ଚାହିଁଲି, କିନ୍ତୁ ପ୍ରଥମେ କିଛି ଦେଖିପାରିଲି ନାହିଁ । ତାପରେ ମୁଁ ଲକ୍ଷ୍ୟ କଲି ତାର ମୁଣ୍ଡ ଏବଂ କାନ୍ଧର ଆକୃତି ଗୋଟିଏ କ୍ଷୀଣତର ଅନ୍ଧକାରର ପୃଷ୍ଠପଟରେ ଅସ୍ପଷ୍ଟ ଭାବରେ ଅଙ୍କିତ ହୋଇଛି । ଆଉ ମଧ ମୁଁ ଲକ୍ଷ୍ୟ କଲି ସେହି ଅନ୍ଧକାରର ହ୍ରାସତା ଚନ୍ଦ୍ରର ଅଭ୍ୟନ୍ତରିତରେ ଥିବା ଅନ୍ୟାନ୍ୟ ଆଲୋକ ପରି ନୀଳ ନୁହେଁ, ବରଂ ଶେତା ପାଣ୍ଡୁର ବର୍ଣ୍ଣ, ଅତି ଅସ୍ପଷ୍ଟ, ଫିକା ଶ୍ୱେତ ବର୍ଣ୍ଣ, ଦିବାଲୋକର ବର୍ଣ୍ଣ । ମୋ'ସଙ୍ଗେ ସଙ୍ଗେ କିମ୍ବା ମୋ'ପୂର୍ବରୁ କେଭର ଏହା ଲକ୍ଷ୍ୟ କରିଥିଲା, ଏବଂ ବୋଧହୁଏ ମୋପରି ତା ର ହୃଦୟରେ ମଧ ଏହା ଗୋଟିଏ ଦୁରାଶା ଜାତ କରିଥିଲା ।

ଥର୍ ଥର ଗଳାରେ ସେ ମୋ କାନରେ କହିଲା, "ବେଡ଼୍‌ଫୋର୍ଡ଼, ସେଇ ଆଲୁଅ—ସମ୍ଭବତଃ—"

ସେ ଯାହା ଆଶା କରୁଥିଲା ତାହା କହିବାକୁ ସାହସ କରି ପାରୁନଥିଲା । ତାପରେ କିଛି ସମୟ ଚୁପ୍‌ଚାପ୍ । ହଠାତ୍ ତାର ପଦ ଶବ୍ଦରୁ ମୁଁ ଜାଣି ପାରିଲି, ସେ ସେହି ଫିକା ଆଲୁଅ ଆଡ଼କୁ ଦୌଡ଼ୁଛି । କମ୍ପିତ ହୃଦୟରେ ମୁଁ ତାର ଅନୁଧାବନ କଲି । ———

# ୧୬

## ବିଭିନ୍ନ ଦୃଷ୍ଟିକୋଣ

ଆମେ ଯେତେ ଅଗ୍ରସର ହେଉଥିଲୁଁ ଆଲୋକ ସେତେ ଉଜ୍ଜ୍ୱଳତର ହୋଇ ଆସୁଥିଲା । ଅଳ୍ପକ୍ଷଣ ମଧ୍ୟରେ ତାହା କେଭରର ଗୋଡ଼ରେ ଲାଗିଥିବା ଫସଫରସ୍ ପରି ଉଜ୍ଜ୍ୱଳ ହୋଇଗଲା । ଆମର ସୁଡ଼ଙ୍ଗ କ୍ରମେ କ୍ରମେ ଚଉଡ଼ା ହୋଇ ଗହ୍ୱରରେ ପରିଣତ ହେଉଥିଲା ଏବଂ ଏହି ନୂତନ ଆଲୋକ ତାହାର ଶେଷ ଭାଗରୁ ଆସୁଥିଲା । ମୁଁ ଗୋଟିଏ ଜିନିଷ ଲକ୍ଷ୍ୟକଲି ଯାହା ଦ୍ୱାରା ମୋର ଆଶା ଫୁଲି ଉଠିବାକୁ ଲାଗିଲା ।

ମୁଁ କହିଲି, "କେଭର, ଏଇ ଆଲୁଅ ଉପରୁ ଆସୁଛି ! ମୁଁ ଠିକ୍ କରି କହିପାରେ ଏହା ଉପରୁ ଆସୁଛି !"

ସେ କୌଣସି ଉତ୍ତର ନ ଦେଇ ଶୀଘ୍ର ଶୀଘ୍ର ଚାଲିବାକୁ ଲାଗିଲା ।

ଏକଥା ନିଃସନ୍ଦେହ ଯେ ସେଇ ଆଲୋକ ଥିଲା ପାଣ୍ଡୁର, ରୂପେଲି ବର୍ଣ୍ଣର ।

ଆଉ ଗୋଟିଏ ମୁହୂର୍ତ୍ତରେ ଆମେ ତାର ଠିକ୍ ତଳେ ପହଞ୍ଚିଗଲୁଁ । ଉ କଡ଼ର କାନ୍ଥରେ ଥିବା ଗୋଟିଏ ଫାଟ ବାଟେ ତାହା ପଶି ପଡ଼ୁଥିଲା, ଏବଂ ମୁଁ ମୁଣ୍ଡ ଟେକି ଚାହିଁବା କ୍ଷଣି ଟପ୍ କରି ପାଣି ଟୋପାଏ ମୋ ମୁହଁରେ ଆସି ପଡ଼ିଲା । ମୁଁ ସ୍ଥିରଦୃଷ୍ଟିରେ ଚାହିଁ ରହି କଡ଼କୁ ଘୁଞ୍ଚିଗଲି—ଟପ୍ କରି ଆଉ ବୁନ୍ଦାଏ ପାଣି ବେଶ୍ ସ୍ପଷ୍ଟ ଭାବରେ ପଥୁରିଆ ଚଟାଣ ଉପରେ ପଡ଼ିଲା ।

ମୁଁ କହିଲି, "କେଭର, ଆମ ଭିତରୁ ଜଣେ ଯଦି ଆର ଜଣକୁ ଟେକି ଧରେ ତାହାହେଲେ ସେ ସେହି ଫାଟ ପାଖରେ ପହଞ୍ଚି ପାରିବ !"

ସେ କହିଲା, "ମୁଁ ତୁମକୁ ଟେକି ଧରିବି", ଏବଂ ତତ୍‌କ୍ଷଣାତ୍ ମତେ ଏପରି ଭାବରେ ଟେକି ଦେଲା ସତେ ଯେମିତି ମୁଁ ଗୋଟିଏ ଛୁଆ ।

ମୁଁ ଫାଟ ଭିତରେ ହାତ ଗଳେଇ ଦେଖିଲି ମୋର ଆଙ୍ଗୁଠି ଅଗରେ ଗୋଟିଏ ଗ୍ରେଟ ଛିପ ଅଛି ଯା ଉପରେ ଭର ଦେଇ ଉଠିପାରିବି । ଧଳା ଆଲୁଅ ବର୍ତ୍ତମାନ ଅନେକ ବେଶୀ ଉଜ୍ଜ୍ୱଳ ହୋଇଥିଲା । ଖୁବ୍ ସାମାନ୍ୟ ଚେଷ୍ଟାରେ ମୁଁ ଦୁଇଟି ଆଙ୍ଗୁଠି ସାହାଯ୍ୟରେ ନିଜକୁ ଉତ୍ତୋଳିତ କଲି, ଯଦିଓ ପୃଥିବୀରେ ମୋର ଓଜନ ଥିଲା ଶହେ ସତୁରି ପାଉଣ୍ଡ । ତାପରେ ଆହୁରି ଉଚ୍ଚକୁ ଉଠି ସେଇ ଗ୍ରେଟ ଛିପ ଉପରେ ପାଦ ଦେଇପାରିଲି । ମୁଁ ଛିଡ଼ା ହୋଇ ପାହାଡ଼ର ଉପରଭାଗକୁ ହାତରେ ଅଣ୍ଡାଳି ଦେଖିଲି ! ଫାଟଟି ଉପରକୁ କ୍ରମେ କ୍ରମେ ଅଧିକ ଚଉଡ଼ା ହୋଇ ଯାଇଥିଲା । ମୁଁ କେଭରକୁ କହିଲି, "ଏହା ଉପରେ ଚଢ଼ି ହେବ । ମୁଁ ଯଦି ମୋର ହାତ ବଢ଼େଇ ଦିଏଁ ତୁମେ ତା ଉପରକୁ ଡେଇଁ ପାରିବ ତ ?"

ମୁଁ ଫାଟର ଦୁଇ କଡ଼ ମଝିରେ ମୋର ଦେହକୁ ଯାକି ଛିପ ଉପରେ ଆଣ୍ଠୁ ଓ ପାଦ ରଖି ତା ଆଡ଼କୁ ଗୋଟିଏ ହାତ ବଢ଼େଇ ଦେଲି । ମୁଁ ତାକୁ ଦେଖିପାରୁ ନ ଥିଲି, କିନ୍ତୁ ସେ ଡେଇଁବା ପାଇଁ ପ୍ରସ୍ତୁତ ହେଲାବେଳେ ତାର ଅଙ୍ଗସଞ୍ଚାଳନ ଜନିତ ଖସ୍ ଖସ୍ ଶବ୍ଦ ଶୁଣିପାରୁଥିଲି । ତାପରେ ଫଙ୍କ୍ କରି ଡେଇଁ ସେ ମୋର ହାତ ଉପରେ ଝୁଲି ପଡ଼ିଲା—ଆଶ୍ଚର୍ଯ୍ୟ, ତାର ଓଜନ ଗୋଟିଏ ବିରାଡ଼ି ଛୁଆ ଅପେକ୍ଷା ଅଧିକ ଜଣା ପଡ଼ୁ ନ ଥିଲା ! ସେ ଛିପ ଉପରେ ହାତ ରଖି ମଡେ ଗୁଡ଼ି ପାରିବା ପର୍ଯ୍ୟନ୍ତ ମୁଁ ତାକୁ ଉଡ଼ି ଆଣିଲି ।

ମୁଁ କହିଲି, "ବାଃ, ଚନ୍ଦ୍ରରେ ଯେ କୌଣସି ଲୋକ 'ପର୍ବତ-ଚଢ଼ାଳୀ ହୋଇପାରିବ ତ"; ତାପରେ ଚଢ଼ିବା କାମରେ ଲାଗିପଡ଼ିଲି । କିଛି ସମୟ-ଯାଏ ମୁଁ ଦୃଢ଼ ଭାବରେ ଚଢ଼ିବାକୁ ଲାଗିଲି, ଏବଂ ତାପରେ ପୁଣି ମୁଣ୍ଡ ଟେକି ଉପରକୁ ଚାହିଁଲା ଫାଟଟି ନିଶ୍ଚିତ ଭାବରେ ଚଉଡ଼ା ହୋଇ-ଯାଉଥିଲା, ଏବଂ ଆଲୁଅ ଉଜ୍ଜ୍ୱଳତର ହୋଇ ଉଠୁଥିଲା । କିନ୍ତୁ—

ତାହା ମୋଟେ ଦିବାଲୋକ ନ ଥିଲା !

ଆଉ ମୁହୂର୍ତ୍ତିକ ପରେ ତାହା କଣ ମୁଁ ଦେଖିପାରିଲି, ଏବଂ ସେଇ ଦୃଶ୍ୟ ଦେଖି ହତାଶାରେ ମୋର ପାହାଡ଼ ଉପରେ ମୁଣ୍ଡ ପିଟିଦେବାକୁ ଇଚ୍ଛା ହେଲା । ମୁଁ ଦେଖିଲି ଗୋଟିଏ ଖୋଲା ଆବଡ଼ା ଖାବଡ଼ା ଗଡ଼ାଣିଆ ଭୂମି—

ସେହି ଭୂମି ଉପରେ ମୁଦ୍‌ଗର ଆକାରର ଛୋଟ ଛୋଟ ଛତୁର ଜଙ୍ଗଲ . ଏବଂ ପ୍ରତ୍ୟେକ ଛତୁ ସେଇ ଗୋଲାପୀ ରୂପେଲି ଆଲୋକରେ ଚମତ୍କାର ଭାବରେ ଝଲସିତ ହେଉଛି । ମୁହୂର୍ତ୍ତେ ପର୍ଯ୍ୟନ୍ତ ମୁଁ ସେହି ଶୀତଳ ପ୍ରଶ୍ୱଅଡ଼େ ଅନାଇ ରହିଲି । ତାପରେ ସେଗୁଡିକ ଉପରକୁ ଝାମ୍ପି ପଡ଼ିଲି । ସେଥିରୁ ମୁଠାଏ ତୋଳି ମୁଁ ପଥର ଉପରେ ଛେଚିଦେଲି, ତାପରେ କେଭରର ଲାଲ ମୁହଁ ଦେଖାଦେବା କ୍ଷଣି ବସିପଡ଼ି ପାଗଳଙ୍କ ପରି ହସିବାକୁ ଲାଗିଲି ।

ମୁଁ କହିଲି, "ଏହା ପୁଣି ସେଇ ଫସ୍‌ଫରସ୍‌! ଡରଡର ହେବାର କୌଣସି ଦରକାର ନାହିଁ । ବସି ଆରାମ କର ।" ତାପରେ ସେ ଯେତେବେଳେ ଆମର ହତାଶା କଥା ନେଇ ହାସ୍ୟ ହାସ୍ୟ କରିବାକୁ ଲାଗିଲା, ମୁଁ ଫାଟ ଭିତରକୁ ଆହୁରି ଆହୁରି ଛତୁ ଫୋପାଡ଼ିବାକୁ ଲାଗିଲି ।

ସେ କହିଲା, "ମୁଁ ଭାବିଥିଲି ଏହା ସୂର୍ଯ୍ୟର ଆଲୁଅ ।"

ମୁଁ ଉଚ୍ଚସ୍ୱରରେ କହିଲି, "ସୂର୍ଯ୍ୟର ଆଲୁଅ! ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ମେଘ ଆଉ ପବନ ପ୍ରବାହିତ ଆକାଶ! ଏ ସବୁ କଣ ଆମେ ଆଉ ଜୀବନରେ ଦେଖିପାରିବା ?"

ମୁଁ ଏହା କହିଲାବେଳେ ଆମ ପୃଥିବୀର ଗୋଟିଏ ଛୋଟ ଛବି ଉଜ୍ଜ୍ୱଳ ଓ ପରିଷ୍କାର ଭାବରେ ମୋ ଆଖି ଆଗରେ ନାଚି ଉଠିଲା—କୌଣସି ପୁରାତନ ଇତାଲୀୟ ଛବିର ପ୍ରଚ୍ଛଦପଟ ପରି । "ଘଡ଼ିକୁ ଘଡ଼ି ବଦଳିଯାଉଥିବା ଆକାଶ ଓ ସମୁଦ୍ର, ଏବଂ ସୂର୍ଯ୍ୟାଲୋକରେ ଝଟକୁଥିବା ପାହାଡ଼ ଓ ଶାଗୁଆ ଗଛ, ସହର ଓ ନଗର । କେଭର, ସୂର୍ଯ୍ୟାସ୍ତ ସମୟରେ ଗୋଟିଏ ଭିଜା ଛାତ କଥା ଭାବି ଦେଖ! ପଶ୍ଚିମମୁଖୀ ଝରକା ଗୁଡ଼ିକ କଥା ଭାବି ଦେଖ!" ସେ କୌଣସି ଉତ୍ତର ଦେଲା ନାହିଁ ।

"ଏଇ କଦର୍ଯ୍ୟ ଦୁନିଆ, ଯାହାକି ମୋଟେ ଦୁନିଆ ନୁହେଁ, ଯାହାର କଟିକଟିଆ କଳା ସମୁଦ୍ର କୌଣସି ନରକ ପରି ଅନ୍ଧାର ତଳେ ଲୁଚି ରହିଛି, ଏବଂ ତାହାରେ ସେଇ ଉତ୍ତପ୍ତ ଧନ ଓ ସେଇ ମୃତ୍ୟୁ ପରି ନିସ୍ତବ୍ଧ ଗନ୍ଧ, ଯାହା ଭିତରେ ଆମେ ପଶୁ ପରି ଗାତରେ ପଶି ପଶି ଯାଉଛୁଁ । ଏବଂ ସେଇ କଦର୍ଯ୍ୟ ଜୀବ ଗୁଡ଼ିକ, ଶୁଖିଲା ଚମଡ଼ାର ମଣିଷ ଗୁଡ଼ିକ, ଦୁଃସ୍ୱପ୍ନରୁ ରୂପ

ଲାଭ କରିଥିବା ପୌକ-ମଣିଷ ଗୁଡ଼ିକ, ଆମକୁ ଗୋଡ଼ାଉଛନ୍ତି ! ଯାହାହେଉ, ସେମାନେ ଠିକ୍ କରୁଛନ୍ତି । ଏଠାକୁ ଆସି ସେମାନଙ୍କୁ ଚୂନା କରିଦେବା ପାଇଁ, ସେମାନଙ୍କର ସଂସାରରେ ଉପଦ୍ରବ କରିବା ପାଇଁ ଆମର କି ଅଧିକାର ଅଛି ! ଯାହା ଜଣା ପଡ଼ୁଛି, ସ୍ୱର୍ଗ ଭିତରେ ସମଗ୍ର ଗହ୍ୱରଟି ଉଠି ଆମ ବିରୁଦ୍ଧରେ ଅଭିଯାନ କରିବାକୁ ବାହାରିଲାଣି । ମିନିଟକ ଭିତରେ ଆମେ ବହୁତ ସେମାନଙ୍କର ଚିତ୍କାର, ସେମାନଙ୍କର ଘଣ୍ଟାର ଆବାଜ ଶୁଣିପାରିବା । କଣ କରିବା ଆମେ ? କୁଆଡ଼େ ଯିବା ? ଲଣ୍ଡନର ସହରତଳୀ ସର୍‌ବିଟନ୍ ଗାମର କୌଣସି ଘରେ କାମ୍ରାଚ୍‌ର ସାପଗୁଡ଼ିଏ ଆଣି ଛାଡ଼ିଦେଲେ ସେମାନେ ଯେଉଁପରି ଆରାମରେ ରହନ୍ତି ଆମେ ସେହିପରି ଆରାମରେ ଅଛୁଁ !"

କେଭର କହିଲା, "ଏହା ତୁମର ଦୋଷ ।"

ମୁଁ ଚିତ୍କାର କରି କହିଲି, "ମୋର ଦୋଷ ! ହେ ଭଗବାନ !"

"ମୋ ମୁଣ୍ଡରେ ଗୋଟିଏ ବୁଦ୍ଧି ଆସିଥିଲା !"

"ଚୁଲିକି ଯାଉ ତୁମ ବୁଦ୍ଧି !"

"ଆମେ ଖଡ଼ ଘୂଞ୍ଚିବାକୁ ନାରାଜ ହୋଇଥାନ୍ତୁ —"

"ସେଇ ଆଙ୍କୁଶ କେଣ୍ଟା ଖାଇ ବି ?"

"ହଁ । ତା' ହେଲେ ସେମାନେ ଆମକୁ ବୋହି ନେଇଥାନ୍ତେ !"

"ସେଇ ପୋଲ ଉପରେ ?"

"ହଁ । ସେମାନେ ବାହାରୁ ଆମକୁ ବୋହି ନେଇଥାନ୍ତେ ।"

ମୁଁ ବରଂ ଗୋଟିଏ ମାଛଧରା ଖୁଣ୍ଟ ଉପରେ ବୁହା ହୋଇଯିବି ।"

"ହାୟ ଭଗବାନ !"

ମୁଁ ପୁଣି ଛତୁଗୁଡ଼ିକ ଧ୍ୱଂସ କରିବାକୁ ଲାଗିଲି, ତାପରେ ହଠାତ୍ ମୁଁ ଗୋଟିଏ ଜିନିଷ ଲକ୍ଷ୍ୟ କଲି ଯାହା ସେତେବେଳେ ବି ମତେ ଚମକେଇ ଦେଇଥିଲା ।

ମୁଁ କହିଲି, "କେଭର, ଏଇ ଶିକୁଳି ଗୁଡ଼ିକ ସୁନାରେ ତିଆରି !"

ସେ ତାର ଗାଲକୁ ହାତରେ ଚପିଧରି ଗମ୍ଭୀର ଭାବରେ ଚିନ୍ତା କରୁଥିଲା । ସେ ଧୀରେ ଧୀରେ ତାର ମୁଣ୍ଡ ବୁଲେଇ ମୋ ଆଡ଼େ ଚାହିଁଲା; ଏବଂ

ମୁଁ କଥାଗୁଡ଼ିକ ଆଉ ଥରେ କହିବାରୁ ତାହାର ତାମ୍ବାଣି ହାତରେ ଗୁଡ଼େଇ ହୋଇଥିବା ସିଙ୍କୁଲୀ ଆଡ଼େ ଗୁହିଁଲି । ସେ କହିଲି, "ହଁ, ସତକଥା, ସତ କଥା ।" ସେ ଅନାଉଥିବା ବେଳେ ବି ତାର ମୁହଁରୁ କ୍ଷଣକର ଲିପ୍ତତା ଲିଭିଗଲା । ମୁହୂର୍ତ୍ତିକ ପାଇଁ ଇତଃସ୍ତତଃ କରି ସେ ପୁଣି ତାର ବାଧାପ୍ରାପ୍ତ ଚିନ୍ତାରେ ବୁଡ଼ିଗଲା । ମୁଁ ଏ ବିଷୟ ଯେ ଏତେ ଡେରିରେ ଲକ୍ଷ୍ୟ କରୁଛି ଏଥିରେ ବିସ୍ମିତ ହୋଇ ଘଡ଼ିଏ ଯାଏ ବସି ରହିଲି । ତାପରେ ମୋର ମନେ ପଡ଼ିଲା, ଆମେ ଯେଉଁ ନୀଳ ଆଲୋକରେ ଥିଲୁଁ ତାହା ଯୋଗୁଁ ଏହି ଧାତୁର ରଙ୍ଗ ଜଣା ପଡ଼ୁ ନଥିଲା । ଏହି ଆବିଷ୍କାରରୁ ମୋ ମନରେ ସେଉଁ ଚିନ୍ତାର ସ୍ରୁଅ ଜାଗି ଉଠିଲା ତାହା ମତେ ଅନେକ ଦୂରକୁ ନେଇଗଲା । ମୁଁ ଭୁଲିଗଲି ଯେ କିଛିକ୍ଷଣ ପୂର୍ବରୁ ମୁଁ ପଗ୍ଭରୁଥିଲି, ଚନ୍ଦ୍ରରେ ଆମର କ କାମ ଅଛି । ସ୍ୱର୍ଣ୍ଣ—

କେଭର ପ୍ରଥମେ କଥା କହିଲା, "ମତେ ଲାଗୁଛି, ଆମ ଆଗରେ ଦୁଇଟି ଉପାୟ ଅଛି ।"

"କଣ ?"

"ହୁଏତ ଆମେ ଆମର ବାଟ ସଫା କରିନେଇ—ଦରକାର ହେଲେ ଲଢେଇ କରି ବାଟ ସଫା କରିନେଇ—ବାହାରେ ପହଞ୍ଚିବା ଏବଂ ତାପରେ ଗୋଲକଟି ପାଇବା ପର୍ଯ୍ୟନ୍ତ ଅଥବା ରାତିର ଶୀତଳତା ଆସି ଆମର ପ୍ରାଣ ନେବା ପର୍ଯ୍ୟନ୍ତ ତାହା ଖୋଜି ବୁଲିବା, କିମ୍ବା—"

ସେ ଅଟକିଗଲା । ମୁଁ କହିଲି, "କହ", ଯଦିଓ ମୁଁ ଜାଣିଥିଲି ସେ କଣ କହିବାକୁ ଯାଉଛି ।

"କିମ୍ବା ଚନ୍ଦ୍ରର ବାସିନ୍ଦାମାନଙ୍କ ସହିତ କୌଣସି ପ୍ରକାର ବୁଝାମଣା କରିବାପାଇଁ ଆମେ ପୁଣି ଚେଷ୍ଟାକରି ଦେଖିବା ।"

"ମୋ କଥା ଯଦି ପଗ୍ଭର—ପ୍ରଥମ ଉପାୟଟି ହିଁ ଠିକ୍ ।"

"ଏ ବିଷୟରେ ମୋର ସନ୍ଦେହ ଅଛି ।"

"ମୋର ନାହିଁ ।"

କେଭର କହିଲା, "ଦେଖ, ସ୍ୱନ୍ଦ୍ରକମାନଙ୍କର ଯାହା ଆମେ ଦେଖିଛୁଁ ସେଥିରୁ ସେମାନଙ୍କୁ ବିଚାରକରି ପାରିବା ବୋଲି ମୋର ମନେ ହେଉନାହିଁ । ସେମାନଙ୍କର ଅସଲ ଜଗତ୍, ସେମାନଙ୍କର ସଭ୍ୟ ଜଗତ୍ ଅନେକ ତଳେ ସମୁଦ୍ର ପୃଷ୍ଠପଟେ ଥିବା ବିଶାଳତର ବିବରଗୁଡ଼ିକ ମଧ୍ୟରେ ଥିବ । ଚନ୍ଦ୍ରର ବାହ୍ୟ ଆବରଣର ଯେଉଁ ଅଂଶରେ ଆମେ ବର୍ତ୍ତମାନ ଅଛୁଁ ଏହା କେବଳ ଗୋଟିଏ ସୀମାନ୍ତ ପ୍ରଦେଶ, ଗୋଟିଏ ଗୋଚାରଣ ପ୍ରଦେଶ । ଯାହାହେଉ, ଏହାହିଁ ମୋର ଅନୁମାନ । ଆମେ ଯେଉଁ ସ୍ୱନ୍ଦ୍ରକମାନଙ୍କୁ ଦେଖିଛୁଁ ଏମାନେ ହୁଏତ ଗଉଡ଼ ଓ ଇଞ୍ଜିନର ଯତ୍ନ ନେବା ଲୋକ ହୋଇ ପାରନ୍ତି । ସେମାନଙ୍କର ଆଙ୍କୁଶର ବ୍ୟବହାର—ଖୁବ୍ ସମ୍ଭବ ସ୍ୱନ୍ଦ୍ରଟୋକୁଙ୍କ ଅଙ୍କୁଶ—ସେମାନେ ଯାହା କରିପାରୁଛନ୍ତି ଆମେ ତାହା କରି ପାରିବୁଁ ବୋଲି ଭାବିବା ଦ୍ୱାରା ସେମାନେ ଯେଉଁ ବୁଦ୍ଧିହୀନତାର ପରିଚୟ ଦେଉଛନ୍ତି, ସେମାନଙ୍କର ପାଶବିକ ବ୍ୟବହାର, ଏସବୁରୁ ସେଇ ରକମ ଅନୁମାନ କରାଯାଇପାରେ । କିନ୍ତୁ ଆମେ ଯଦି ସହିଯାଉଁ—"

"ପାତାଳ ପରି ଖାତ ଉପରେ ଛ ଇଞ୍ଚ ଚଉଡ଼ାର ଗୋଟିଏ ତକ୍ତା ଉପରେ ଆମେ ବେଶି ସମୟ ସମ୍ଭାଳି ପାରିବା ନାହିଁ ।"

କେଭର କହିଲା, "ନା, କିନ୍ତୁ—"

ମୁଁ କହିଲି, "ମୁଁ ପାରିବ ନାହିଁ ।"

ଗୋଟିଏ ନୂତନ ସମ୍ଭାବନାର ଖିଅ ସେ ଆବିଷ୍କାର କଲା । "ଆଚ୍ଛା, ମନେକର ଆମେ ପ୍ରତିରୋଧ କରିବା ପାଇଁ ଏପରି ଗୋଟିଏ ସୁବିଧା ଜାଗା ପାଇ ପାରିଲୁଁ ଯେଉଁଠି କି ଆମେ ଏଇ ଗୃକର ବାକରମାନଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରିପାରିବା । ଧର, ଆମେ ଯଦି ହପ୍ତାଏ ଟଣ୍ଡେ ଏମାନଙ୍କୁ ଅଟକେଇ ପାରିବା, ସମ୍ଭବତଃ ଆମର ଆଗମନ—ସମ୍ବାଦ ଅଧିକ ବୁଦ୍ଧି-ସମ୍ପନ୍ନ ଓ ଲୋକଗହଳି ସ୍ଥାନମାନଙ୍କରେ ପହଞ୍ଚି ପାରିବ—"

"ଯଦି ସେପରି ସ୍ଥାନ ଥାଏ ।"

"ନିଶ୍ଚୟ ଥିବ, ନ ହେଲେ ଏଇ ବିରାଟ ଯନ୍ତ୍ର ସବୁ କୁଆଡ଼ୁ ଆସିଲା ?"

"ତାହା ସମ୍ଭବ, କିନ୍ତୁ ସମ୍ଭାବନା ଦୁଇଟି ମଧ୍ୟରେ ଏଇଟା ଅଧିକ, କଷ୍ଟକର ।"

"ଆମେ କାଗଜରେ ନର୍ଦ୍ଦେଶ ସବୁ ଲେଖି ଦେବା—"

"କିନ୍ତୁ, ଆମେ ଯେଉଁ ଚିହ୍ନ ଲେଖିବା, ତାହା ସେମାନଙ୍କର ଆଖିରେ ପଡ଼ିବ ବୋଲି ଜାଣିବା କେମିତ ?"

"ଆମେ ଯଦ ତାହା ଖୋଲ ଦେଉଁ—"

"ଅବଶ୍ୟ ତାହା ସମ୍ଭବ ।"

ମୁଁ ଗୋଟିଏ ନୂତନ ଚନ୍ଦ୍ରାର ଖିଅ ଧରିଲି । କହିଲି "ଯାହାହେଉ, ତୁମେ କଣ ଭାବୁଛ ଯେ ଏହି ଗୃହ୍ୟକମାନେ ମଣିଷଠାରୁ ଅନେକ ବେଶି ଜ୍ଞାନୀ ?"

"ସେମାନେ ଅନେକ କିଛି ଅଧିକା ଜାଣିଥିବେ—କିମ୍ବା, ଅନ୍ତତଃ ଅନେକ ଅଲଗା ବିଷୟ ଜାଣିଥିବେ ।

"ହଁ, କିନ୍ତୁ—" ମୁଁ ଟିକେ ଇତଃସ୍ତତଃ କଲି ।" ମୁଁ ଭାବୁଛି, କେଭର, ତୁମେ ସ୍ୱୀକାର କରିବ ଯେ ତୁମେ ଗୋଟିଏ ସ୍ୱତନ୍ତ୍ର ପ୍ରକୃତିର ମଣିଷ ।"

"କପରି ?"

"ମାନେ, ତୁମେ—ତୁମେ ଜଣେ ଏକୁଟିଆ ମଣିଷ—ଅର୍ଥାତ୍ ଏକୁଟିଆ ମଣିଷ ଥିଲ । ତୁମେ ବାହା ହୋଇ ନାହିଁ ।"

"ବାହା ହେବାକୁ କେବେ ଇଚ୍ଛା ନ ଥିଲା । କିନ୍ତୁ କାହିଁକି—?"

"ଏବଂ ତୁମର ଯେତିକି ଧନ ଆଗରୁ ଥିଲା ତା ଅପେକ୍ଷା ଆଉ ଅଧିକା ଲାଭ କରି ପାରି ନ ଥିଲ ?"

"ତାହା ମଧ୍ୟ ଇଚ୍ଛା ନ ଥିଲା ।"

"ତୁମେ କେବଳ ଜ୍ଞାନ ପଛରେ ଗୋଡ଼ାଉଛ ?"

"ଆଚ୍ଛା, କୌତୂହଳ ଜାତ ହେବାଟା ସ୍ୱାଭାବିକ—"

"ତୁମେ ସେଇଆ ଭାବୁଛ । ମୁଁ ସେଇ କଥାହିଁ କହୁଛି । ତୁମେ ଭାବୁଛ, ଅନ୍ୟ ସମସ୍ତେ ମଧ୍ୟ ଜାଣିବାକୁ ବ୍ୟଗ୍ର । ମୋର ମନେ ପଡ଼ୁଛି, ମୁଁ ଥରେ ଯେତେବେଳେ ତୁମକୁ ପଚାରିଲି ଯେ ତୁମେ ଏସବୁ ବୈଜ୍ଞାନିକ ଗବେଷଣା କାହିଁକି କରୁଛ, ତୁମେ କହିଲି ତୁମେ ଏଫ୍ ଆର୍ ଏସ୍ ଉପାଧି ପାଇବାକୁ

ଗ୍ରହ, କେଭିରଟ୍ ନାମରେ ଜିନଷଟି ଖ୍ୟାତ ହୋଇଛି ବୋଲି ଗ୍ରହ, ଇତ୍ୟାଦି ଇତ୍ୟାଦି । ତୁମେ ଭଲ ରୂପେ ଜାଣ, ଏସବୁ ଉଦ୍ଦେଶ୍ୟରେ ତୁମେ ତାଙ୍କୁ ବରୁ ନଥିଲ; କିନ୍ତୁ ସେତେବେଳେ ମୋର ପ୍ରଶ୍ନ ହଠାତ୍ ତୁମକୁ ଚମକେଇ ଦେଇଥିଲା ଏବଂ ତୁମେ ଭାବିଲ କୌଣସି ଗୋଟିଏ ଉଦ୍ଦେଶ୍ୟ ବାଡ଼ିବାକୁ ହେବ । ପ୍ରକୃତରେ ତୁମେ ଗବେଷଣା କରୁଥିଲ କାରଣ କରିବାକୁ ପଡ଼ିଥିଲା । ସେଇଟା ତୁମର ସ୍ୱଭାବ ।"

"ବୋଧହୁଏ ସେଇଆ —"

"ଦଶଲକ୍ଷ ଲୋକଙ୍କ ଭିତରେ ଜଣକର ବୋଧହୁଏ ଏପରି ସ୍ୱଭାବ ନଥିବ । ଅଧିକାଂଶ ଲୋକ ଗୃହାନ୍ତି—ଅନେକ କିଛି ଗୃହାନ୍ତି, କିନ୍ତୁ ଖୁବ୍ କମ ଲୋକ ଜ୍ଞାନକୁ କେବଳ ଜ୍ଞାନଲାଭ ଉଦ୍ଦେଶ୍ୟରେ ଗୃହାନ୍ତି । ମୁଁ ଠିକ୍ କରି ଜାଣେ, ମୁଁ ଗୃହେଁ ନାହିଁ । ଆଚ୍ଛା, ଏଇ ଗୃଭ୍ରକମାନେ ଖୁବ୍ କର୍ମୋତ୍ସାହୀ, ବ୍ୟସ୍ତ ଜୀବ ପରି ଜଣା ପଡ଼ୁଛନ୍ତି, କିନ୍ତୁ କପରି ତୁମେ ଜାଣିଲ ଯେ ଏମାନଙ୍କ ଭିତରୁ ଶ୍ରେଷ୍ଠ ବୁଦ୍ଧିମାନ ମଧ୍ୟ ଆମ ବିଷୟରେ କିମ୍ବା ଆମ ଜଗତ ବିଷୟରେ ଜ୍ଞାନଲାଭ କରିବାକୁ ଗୃହେଁ ? ଆମର ଗୋଟିଏ ଜଗତ୍ ଅଛି ବୋଲି ସେମାନେ ଯେ ଜାଣନ୍ତି, ମୁଁ ଏକଥା ବିଶ୍ୱାସ କରିପାରୁ ନାହିଁ । ସେମାନେ ରାତିରେ କେବେ ବାହାରକୁ ବାହାରନ୍ତି ନାହିଁ—ବାହାରିଲେ ଅନ୍ଧାରରେ ବରଫ ଯାଲଟିଯିବେ । ସେମାନେ ବୋଧହୁଏ ଜ୍ୱଳନ୍ତ ସୂର୍ଯ୍ୟ ଛଡ଼ା ଅନ୍ୟ କୌଣସି ଗ୍ରହ ନକ୍ଷତ୍ର କେବେ ଦେଖି ନାହାନ୍ତି । ଆଉ ଗୋଟିଏ ଜଗତ୍ ଅଛି ବୋଲି ସେମାନେ କପରି ଜାଣିବେ ? ଜାଣିଲେ ମଧ୍ୟ ସେମାନଙ୍କର କଣ ଯାଏ ଆସେ ? ଆଚ୍ଛା, ଯଦିବା ସେମାନେ କେତୋଟି ତାରାଙ୍କୁ କିମ୍ବା ଅର୍ଦ୍ଧାଲୋକିତ ପୃଥିବୀକୁ ଦେଖି ପାରିଛନ୍ତି, ସେଥିରୁ କି ଲାଭ ? ଗ୍ରହ ଭିତରେ ରହୁଥିବା ଲୋକେ ଯେପରି ଜିନଷ ଭଲରୂପେ ଲକ୍ଷ୍ୟ କରିବାର ପରିଶ୍ରମ କରିବେ କାହିଁ ? ଋତୁ ପରିବର୍ତ୍ତନ ଓ ସମୁଦ୍ର-ଯାତ୍ରାର ସୁବିଧା ଉଦ୍ଦେଶ୍ୟରେ ହିଁ ମନୁଷ୍ୟମାନେ ଏପରି କରୁଛନ୍ତି, ନ ହେଲେ କରନ୍ତେ ନାହିଁ; ଚନ୍ଦ୍ରର ଲୋକେ କରିବେ କାହିଁକି ?......

"ଅଚ୍ଛା, ମନେକର ତୁମପରି କେତେ ଜଣ ଦାର୍ଶନିକ ଏଠି ଅଛନ୍ତି । ଠିକ୍ ଏହି ଗ୍ରହ୍ରିକମାନେ ହିଁ ଆମର ଅସ୍ତିତ୍ୱ ବିଷୟ କେବେ ଜାଣି ପାରୁନେଇ । ମନେକର, ତୁମେ ଲଣ୍ଡନରେ ଥିଲାବେଳେ ଗୋଟିଏ ଗ୍ରହ୍ରିକ ପୃଥିବୀ ଉପରେ ଖସି ପଡ଼ିଆନ୍ତା, ତେବେ ସେ ଆସିଛି ବୋଲି ତୁମେ ଜମା ଜାଣି ପାରି ନଥାନ୍ତ। ତୁମେ ଖବର କାଗଜ କେବେ ପଢ଼ ନାହିଁ ! ବୁଝି-ପାରୁଛ ତ ତୁମ ବିପକ୍ଷରେ କି କି ସମ୍ଭାବନା ଅଛି । ଅଥଚ ଏଇ ସମ୍ଭାବନା ପାଇଁ ଆମେ ଏଠି ଚୁପ୍‌ଚାପ ବସିଛୁ, ଆଉ ସେ ଆଡ଼େ ବହୁମୂଲ୍ୟ ସମୟ ଚାଲି ଯାଉଛି । ମୁଁ କହୁଛି, ଆମେ ଏକ ମହା ସଙ୍କଟରେ ପଡ଼ିଛୁ । ଆମର ହାତ ହତିଆର ନାହିଁ, ଗୋଲକଟି ହଜି ଯାଇଛି, ଖାଦ୍ୟ ନାହିଁ, ଗ୍ରହ୍ରିକମାନେ ଆମକୁ ଦେଖି ପାରୁଛନ୍ତି ଆଉ ଜାଣିପାରୁଛନ୍ତି ଯେ ଆମେ ଅଦ୍ଭୁତ ଶକ୍ତିମାନ୍, ଭୟଙ୍କର ଜନ୍ତୁ ଏବଂ ଯଦି ଏଇ ଗ୍ରହ୍ରିକମାନେ କପଟି ଓଲୁ ନ ହୋଇଥିବେ ତାହାହେଲେ ସେମାନେ ବର୍ତ୍ତମାନ ଲାଗିପଡ଼ିବେ ଓ ଆମକୁ ପାଇବା ପର୍ଯ୍ୟନ୍ତ ଖୋଜି ବୁଲିବେ, ଏବଂ ପାଇଲା ପରେ ଯଦି ପାରନ୍ତି ବନ୍ଦୀ କରିବେ, ଯଦି ନପାରନ୍ତି ମାରି ପକେଇବେ ଓ ସେଇଠି ସବୁ ଶେଷ ହେବ । ଯଦି ବନ୍ଦୀ କରନ୍ତି ତେବେ ବି ବୋଧହୁଏ ଭୁଲ ବୁଝି ଆମକୁ ମାରି ପକେଇବେ । ଆମେ ମରିଗଲା ପରେ ସେମାନେ ହୁଏତ ଆମକୁ ନେଇ ଆଲୋଚନା କରିବେ, କିନ୍ତୁ ସେଥିରୁ ଆମକୁ ବିଶେଷ ମଜା ମିଳିବ ନାହିଁ ।"

"କହିଯାଅ ।"

"ଅନ୍ୟ ପକ୍ଷରେ, ପୃଥିବୀରେ କିନ୍ତା ପରି ଏଠି କୁଢ଼ କୁଢ଼ ହୋଇ ସୁନା ଜମା ହୋଇଛି । ଆମେ ଯଦି ଏଥିରୁ ଅଳ୍ପ ଏ ଆମ ସାଙ୍ଗରେ ନେଇ ଯାଇ ପାରିବା, ଯଦି ସେମାନେ ଗୋଲକଟି ପାଇବା ପୂର୍ବରୁ ଆମେ ତାହା ପାଇ ପାରିବା, ଏବଂ ପୃଥିବୀକୁ ଫେରିଯାଇ ପାରିବା, ତାହାହେଲେ—"

"ତାହାହେଲେ ?"

"ଆମ ହୁଏତ ଏହି ବ୍ୟାପାରକୁ ଆହୁରି ମଜଭୁତ କରି ପାରିବା, ହୁଏତ ଆହୁରି ବଡ଼ ଗୋଟିଏ ଗୋଲକରେ ବନ୍ଧୁକ ଧରି ଆସିବା ।"

କେଭିର ଚିତ୍କାର କଲା, "ହେ ଭଗବାନ !" ସତେ ଯେମିତି ମୁଁ ଈଶ୍ୱର ଭୁତ୍ସଙ୍କର କଥା ହିଁ କହିଲି ।

ଆଉ ଗୋଟିଏ ଉଜ୍ଜ୍ୱଳ ଛବି ମୁଁ ଫାଟ ଉପରେ ଛେଡଦେଲି ।

ମୁଁ କହିଲି, "ଦେଖ କେଭିର, ଏ ବିଷୟରେ ଅନ୍ତତଃ ମୋର ଅଧେ ଭୋଟ ଦେବାର କ୍ଷମତା ଅଛି, ତା ଛଡ଼ା ଏହା ବାସ୍ତବଙ୍କ ଲୋକର ସମସ୍ୟା । ମୁଁ ବାସ୍ତବଙ୍କ ଲୋକ, କିନ୍ତୁ ତୁମେ ନୁହଁ । ଯଦି ପାରେ, ମୁଁ ଆଉ ଚାନ୍ଦ୍ରିକ ମାନଙ୍କୁ କିମ୍ବା ଜ୍ୟାମିତିକ ନକ୍ସାକୁ ବିଶ୍ୱାସ କରିବାକୁ ଯାଉ ନାହିଁ ।...ଏଇ ଶେଷ କଥା । ଆମେ ଫେରିଯିବା । ଏସବୁ ଲୁଚ଼ ଛପା ଆଉ ରଖିବା ନାହିଁ—କିମ୍ବା ଅଧିକାଂଶ କଥା ଲୁଚ଼ଛପା ରଖିବା ନାହିଁ । ତାପରେ ପୁଣି ଏଠାକୁ ଫେରିଆସିବା ।"

ସେ ଚିନ୍ତା କରିବାକୁ ଲାଗିଲା । କହିଲା, "ମୁଁ ଯେତେବେଳେ ଚନ୍ଦ୍ରକୁ ଆସିଲି, ମୋର ଏକା ଆସିବା ଉଚିତ ଥିଲା ।"

ମୁଁ କହିଲି, "ସବା ଆଗରେ ଏଇ ପ୍ରଶ୍ନ ପଡ଼ୁଛି ଯେ ଗୋଲକକୁ ପୁଣି କେମିତି ଫେରିଯିବା ।"

କିଛିକ୍ଷଣ ପର୍ଯ୍ୟନ୍ତ ଆମେ ଚୁପ୍‌ଚାପ୍ ଆଣ୍ଠୁ ଘଷିବାକୁ ଲାଗିଲୁଁ । ତାପରେ ସେ ବୋଧହୁଏ ମୋର ଯୁକ୍ତିକୁ ସମର୍ଥନ କଲା ।

ସେ କହିଲା, "ମୁଁ ଭାବୁଛି କାର୍ଯ୍ୟ କାରଣର ସଂଯୋଗ ନିର୍ଣ୍ଣୟ କରିବା ସମ୍ଭବ । ବୁଝାଯାଉଛି ଯେ ସୂର୍ଯ୍ୟ ଯେତେବେଳେ ଚନ୍ଦ୍ରର ଏଇ କଡ଼ରେ ରହିଛି ସେତେବେଳେ ଏହି ଅନ୍ଧକାର କଡ଼ରୁ ବାୟୁ ଏହି ସଁନ୍ତ୍ରସର ଛିଦ୍ରଯୁକ୍ତ ଗର୍ଭ ଭିତରକୁ ବହି ଯାଉଛି । ଅନ୍ତତଃ ଏଇ କଡ଼ରେ ବାୟୁ ସ୍ଫୀତ ହୋଇ ଯାଉଥିବ ଓ ଚନ୍ଦ୍ରର ବିବରମାନଙ୍କ ଭିତରୁ ବାହାରି ଆଗ୍ନେୟଗିରି-କନ୍ଦର ଭିତରକୁ ବହିଯାଉ ଥିବ.......ଆଚ୍ଛା, ଏଠିତ ଗୋଟିଏ ବାୟୁର ସ୍ରୋତ ବହୁଛି ।"

"ସତ ।"

"ଏଥିରୁ ଜଣା ପଡ଼ୁଛି ଏହା ଶେଷସୀମା ନୁହେଁ; ଆମ ପଛରେ ଏହି ଫାଟ ଆହୁରି ଅଗ୍ରସର ହୋଇ ଉପରକୁ ଯାଉଛି । ପବନର ସ୍ରୋତ ଉର୍ଦ୍ଧ୍ୱକୁ ବହୁଛି ଏବଂ ସେଇ ଦିଗରେ ଆମେ ଯିବା । ସେଆଡ଼େ ଥିବା କୌଣସି

ପ୍ରକାରର ନଳା କମ୍ବା ନାଳ ଦେଇ ଆମେ ସନ୍ଧ ଉପରକୁ ଉଠିବା ତାହା ହେଲେ ଏଇ ଯେଉଁ ସୁଡ଼ଙ୍ଗଗୁଡ଼ିକ ଭିତରେ ସେମାନେ ଆମକୁ ଖୋଜୁଛନ୍ତି ଆସେ ଯେ କେବଳ ଏଥିରୁ ବାହାରଯାଇ ପାରିବା ତାହା ନୁହେଁ—"

"କିନ୍ତୁ ସନ୍ଧ ନାଳଟି ଅତି ସରୁ ହୋଇଆଏ ?"

"ଆମେ ପୂର୍ଣ୍ଣ ତଳକୁ ଓହ୍ଲେଇ ଆସିବା ।"

ମୁଁ ହଠାତ୍ କହିଲି, ଚୁପ୍ ଚୁପ୍ । କଣ ଶୁଭୁଛି ?"

ଆସ୍ତେ କାନଡେରି କହିଲୁଁ । ପ୍ରଥମେ ଅତି କ୍ଷୀଣ ଫୁସ୍ ଫାସ୍ ଶବ୍ଦ ଶୁଭୁଥିଲା, ତାପରେ ଘଣ୍ଟାର ଆବାଜ ଆମ କାନରେ ବାଜିଲା । ମୁଁ କହିଲି, "ସେମାନେ ଭାବୁଛନ୍ତି ଆମେ ଚନ୍ଦ୍ରଗୋଲୁ, ତେଣୁ ଏପରି ଶବ୍ଦରେ ଡରିଯିବୁଁ ।"

କେଭର କହିଲା, "ସେମାନେ ସୁଡ଼ଙ୍ଗବାଟ ଦେଇ ଏଆଡ଼େ ଆସୁଛନ୍ତି ।"

"ତା ଠିକ୍ ।"

"ସେମାନେ ଫାଟ ଆଡ଼େ ନଜର ଦେବେ ନାହିଁ । ସିଧା ଚାଲିଯିବେ ।"

ମୁଁ କିଛିକ୍ଷଣଯାଏ କାନ ଡେରି ରହିଲି । ନିମ୍ନ କଣ୍ଠରେ କହିଲି, "ଏଥର ବୋଧହୁଏ ସେମାନେ କୌଣସି ହାତ ହତିଆର ଧରି ଆସିଛନ୍ତି ।

ତାପରେ ହଠାତ୍ ମୁଁ ତଆଁ ମାରି ଛିଡ଼ା ହୋଇପଡ଼ି କହିଲି, "କେଭର, କେଭର ! ସେମାନେ ତ ଜାଣି ପାରିବେ ! ମୁଁ ଯେଉଁ ଛତୁ ଫୋପାଡ଼ିଛି ତାହା ତ ସେମାନେ ଦେଖି ପକେଇବେ । ସେମାନେ— !"

ମୁଁ ମୋର ବାକ୍ୟ ଶେଷ କରିପାରିଲି ନାହିଁ । ବୁଲିପଡ଼ି ଛତୁ ବୁଦା ଉପରେ ଡେଇଁ ଛିଦ୍ରର ଉପରିଭାଗ ଆଡ଼କୁ ଅଗ୍ରସର ହେଲି । ମୁଁ ଦେଖିଲି ସ୍ଥାନଟି ଉପରକୁ ଉଠି ପୁଣି ଗୋଟିଏ ବାୟୁସ୍ରୋତପୂର୍ଣ୍ଣ ଫାଟରେ ପରିଣତ ହୋଇଛି ଏବଂ ଗଭୀର ଅନ୍ଧକାର ଭିତରକୁ ଲମ୍ବି ଯାଇଛି । ମୁଁ ତାହାର ଉପରକୁ ଚଢ଼ିବାକୁ ବାହାରିବା ସମୟରେ ମୋ ମନରେ ଗୋଟିଏ ନୂତନ ବୁଦ୍ଧି ଜାଗିବାରୁ ପୁଣି ପଛକୁ ଫେରିଲି ।

କେଭର ପଚାରିଲା, "କଣ କରୁଛ ?"

ମୁଁ କହିଲି, "ତୁମେ ଆଗକୁ ଚାଲ," ଏହା କହି ଫେରିଆସି ସେଇ ଝୁଙ୍କୁଲ ଛତ୍ରରୁ ଦୁଇଗୋଟି ଡୋଳି ଖୋଷାକୁ ମୋର ଗରମକୋଟର ଛୁଟ ପକେଟରେ ଏପରି ଭାବରେ ଭର୍ତ୍ତିଲି ଯେ ତାହା ଆମର ଗନ୍ତବ୍ୟ ପଥକୁ ଆଲୋକିତ କଲା । ଅନ୍ୟଟି କେଭରର ପାଇଁ ନେଇଗଲି । ଗୁର୍ଖା ସୈନିକଙ୍କର ଗୋଳମାଳ ସେତେବେଳକୁ ଏତେ ଦୂର ଶୁଭୁଥିଲା ଯେ ସେମାନେ ଫାଟ ତଳକୁ ଆସିଗଲେଣି ବୋଲି ମନେହେଲା । କିନ୍ତୁ ତାହା ଉପରକୁ ଚଢ଼ି ଆସିବାକୁ ହୁଏତ ସେମାନଙ୍କ ଅନେକ କଷ୍ଟହେବ, କିମ୍ବା ଆମର ପ୍ରତିରୋଧକୁ ଭୟକରି ହୁଏତ ସେମାନେ ଚଢ଼ିବାକୁ ଦ୍ୱିଧାନ୍ୱିତ ହେବେ । ଯାହାହେଉ, ଅନ୍ୟ ଗ୍ରହରେ ଜନ୍ମଲାଭ କରିଥିବାରୁ ଆମର ଅଧିକତର ବଳ ଅଛି ବୋଲି ଜାଣି ଆମେ ମନେ ମନେ ଆଶ୍ୱାସ ଲାଭ କଲୁଁ । ଆଉ ମିନିଟିକ ପରେ ମୁଁ କେଭରର ମାଳାଲୋକମୟ ପାଦ ପଦେ-ପଦେ ପ୍ରଚଣ୍ଡ ଉତ୍ସାହରେ ଚଢ଼ିବାକୁ ଲାଗିଲି ।



## ୧୬

# ଗୃଧ୍ରକ କଂସେଇମାନଙ୍କ ଗୁମ୍ଫା ଭିତରେ ଲଢ଼େଇ

କେତେଦୂର ଚଢ଼ିଲା ପରେ ଆମେ ବାଡ଼ ପାଖରେ ପହଞ୍ଚିଲୁଁ ମୁଁ ଜାଣେ ନାହିଁ । ସମ୍ଭବତଃ ଆମେ ମୋଟେ ଅଳ୍ପ କେତେ ଶହ ଫୁଟ ଚଢ଼ିଥିଲୁଁ । "ଏଥର ସେ ସମୟରେ ମୋର ମନେହେଲା ମାଇଲେ କିମ୍ବା ତାଠୁ ବେଶି ଉଚ୍ଚ ପର୍ଯ୍ୟନ୍ତ ଆମେ ଟାଣି, ଠେଲି, ଲଦି, ଓ କେଞ୍ଚି ହୋଇ ଆସିଛୁଁ । ଯେତେବେଳେ ମୁଁ ସେ ସମସ୍ତ କଥା ଭାବିବସେ, ପ୍ରତ୍ୟେକ ପଦକ୍ଷେପରେ ପୁନା ଶୀକୁଳର ଝଂଣତ୍କାର କଥା ମୋର ମନେ ପଡ଼ିଯାଏ । ଶୀଘ୍ର ମୋର ଆଙ୍ଗୁଠି ଗଣ୍ଠି ଓ ଆଣ୍ଠୁରୁ ଚମଡ଼ା ଛିଡ଼ିଗଲା ଓ ଗୋଟିଏ ଗାଲରେ ଛେଚା ହୋଇଗଲା । କିଛିକ୍ଷଣ ପରେ ଆମର ଆରୋହଣର ପ୍ରଥମ ଉନ୍ମାଦନା କମିଗଲା ଓ ଆମର ଗତି ଅଧିକ ସାବଧାନ ଏବଂ କମ୍ କଷ୍ଟକର ହେଲା । ଆମ ପଛରେ ଅନୁସରଣ କରୁଥିବା ଗୃଧ୍ରକମାନଙ୍କର ଗୋଳମାଳ ସମ୍ପୂର୍ଣ୍ଣ ଦୂର ହୋଇ ଯାଇଥିଲା । ମନେହେଲା ସେମାନେ ଫାଟ ପର୍ଯ୍ୟନ୍ତ ଆମ ପଛେ ପଛେ ଆସି ନାହାନ୍ତି । ଯଦିଓ ତାହା ତଳେ ଭଙ୍ଗା ଛତୁରୀ ହୋଇ ଆମର ଅସ୍ତିତ୍ୱର ସୂଚନା ଦେଉଥିଲା । ସମସ୍ତ ସମୟରେ ଫାଟଟି ଏତେ ସଙ୍କୀର୍ଣ୍ଣ ହୋଇ ଯାଉଥିଲା ଯେ ଆମେ ଅତି କଷ୍ଟରେ ତାହା ଭିତରେ ଗଳି ଚଢ଼ୁଥିଲୁଁ; ଅନ୍ୟ ସମୟରେ ତାହା ଚଉଡ଼ା ହୋଇ କଣ୍ଟକ ସଦୃଶ ତୀକ୍ଷ୍ଣ ସ୍ଫଟିକଦ୍ୱାରା ଖଚିତ ହୋଇଥିବା କିମ୍ବା ଆଲୋକମୟ ଛତୁନ୍ ଦ୍ୱାରା ପୂର୍ଣ୍ଣ ହୋଇଥିବା ସୁବୃହତ୍ ଗୁହାରେ ପରିଣତ ହେଉଥିଲା । କୌଣସି କୌଣସି ଜାଗାରେ ତାହା ମୋଡ଼ ମୋଡ଼ି ହୋଇ ଉପରକୁ ଉଠିଥିଲା, ଅନ୍ୟ କୌଣସି ଜାଗାରେ ପ୍ରାୟ ସମତଳ ଭାବରେ ନିମ୍ନାଭିମୁଖୀ ହୋଇଯାଇଥିଲା । ମଝିରେ ମଝିରେ ଟୋପା ଟୋପା ପାଣି ଆମ ପାଖରେ ଝରି ପଡ଼ୁଥିଲା । ଥରେ ଦୁଇଥର ଆମର ମନେ ହେଲା କେତୋଟି କ୍ଷୁଦ୍ରକାୟ ଜୀବ ଆମ ସାମନାରୁ ଖସ୍‌ଖସ୍ କରି ଚାଲିଗଲେ,

କିନ୍ତୁ ସେଗୁଡ଼ିକ କଣ ଆମେ ଦେଖି ପାରିଲୁ ନାହିଁ । ସେମାନେ କୌଣସି ବୁଦ୍ଧିଜୀବୀ ଜନ୍ତୁ ହୋଇଥାଇ ପାରନ୍ତି କିନ୍ତୁ ସେମାନେ ଆମର କୌଣସି କ୍ଷତି କଲେ ନାହିଁ, ଏବଂ ଆମେ ସେତେବେଳକୁ ଏତେଦୂର ଉତ୍ତେଜିତ ହୋଇପଡ଼ି-ଥିଲୁ ଯେ କେତୋଟି ଗୁରୁଣ୍ଡି ଥିବା କମୁଡ଼ିକମାକାର ଜୀବ କମ୍ କି ବେଶି ହେଲେ ଆମର କିଛି ଯାଇ ଆସି ନ ଥାନ୍ତା । ପରିଶେଷରେ, ଅନେକ ଉପରେ, ସେଇ ପରିଚିତ ନୀଳି ଆଲୋକ ଦେଖାଗଲା । ତାପରେ ଆମେ ଦେଖିଲୁ ଆମର ବାଟ ବନ୍ଦ କରି ଛିଡ଼ା ହୋଇଥିବା ଗୋଟିଏ ବାଡ଼ର ଫାଙ୍କ ଦେଇ ସେହି ଆଲୋକ ଆସୁଥିଲା ।

ଆମେ ପରସ୍ପରକୁ ଏହା ଦେଖେଇ ଦେବାପାଇଁ ନିମ୍ନକଣ୍ଠରେ କଥା କହିଲୁ, ଏବଂ ଅଧିକତର ସତର୍କତା ସହିତ ଚଢ଼ିବାକୁ ଲାଗିଲୁ, କିଛିକ୍ଷଣ ପରେ, ଆମେ ବାଡ଼ର ଖୁବ୍ ନିକଟରେ ପହଞ୍ଚିଗଲୁ । ତାହାର ଛିଦ୍ରଗୁଡ଼ିକରେ ଆଖି ଲଗେଇ ମୁଁ ସେପଟେ ଥିବା ବବରର କେତେକାଂଶ ଦେଖି ପାରିଲି । ସ୍ଥାନଟି ଖୁବ୍ ବଡ଼ ଥିଲା । ସେହି ଭଟ୍ ଭଟ୍ କରୁଥିବା ଯନ୍ତ୍ରର ଯେଉଁ ନୀଳ ଆଲୋକ ବହିଯାଉଥିବାର ଆମେ ଦେଖିଥିଲୁ, ସେହିପରି ଆଲୋକର ଗୋଟିଏ କ୍ଷୁଦ୍ର ନର୍ଦ୍ଦମା ଦ୍ୱାରା ତାହା ଆଲୋକିତ ହୋଇଥିଲା । ମୋ ମୁହଁ ପାଖରେ ଥିବା ଛିଦ୍ରଗୁଡ଼ିକ ଭିତର ଦେଇ ମଝିରେ ମଝିରେ ଟୋପା ଟୋପା ପାଣି ଝରିପଡ଼ୁ ଥିଲା ।

ସ୍ୱଭାବତଃ, ବବରର ଚଟାଣ ଉପରେ କଣ ଅଛି ତାହା ଦେଖିବାକୁ ମୁଁ ପ୍ରଥମେ ଚେଷ୍ଟା କଲି, କିନ୍ତୁ ବାଡ଼ଟି ଯେଉଁ ଜାଗାରେ ଥିଲା ତାହା ତଳକୁ ଦବି ଯାଇଥିବାରୁ ତାହାର ବେଢ଼ା ଆମର ଦୃଷ୍ଟିକୁ ଆଢ଼ୁଆଳ କରି ରଖିଥିଲା । ତେଣୁ, ଯେଉଁ ଶବ୍ଦ ଆମେ ଶୁଣୁଥିଲୁ ତାହାପ୍ରତି ଆମେ ମନଯୋଗ ଦେଲୁ । କିଛିକ୍ଷଣ ପରେ ଖୁବ୍ ଉର୍ଦ୍ଧ୍ୱରେ ସ୍ୱଳ୍ପାଲୋକିତ ସ୍ଥାନ ଉପରେ କେତୋଟି ଅସ୍ପଷ୍ଟ ଛାଇ ହଲଚଲ ହେଉଥିବାର ମୁଁ ଦେଖି ପାରିଲି ।

ସେହି ସ୍ଥାନରେ ଅନେକଗୁଡ଼ିଏ ସୃଷ୍ଟି ଯେ ଥିଲେ ଏ ବିଷୟରେ ସନ୍ଦେହ ନ ଥିଲା, କାରଣ ସେମାନଙ୍କର କଥାବାର୍ତ୍ତାର ଶବ୍ଦ ଏବଂ ପଦଧ୍ୱନି

ଆମେ ଶୁଣି ପାରିଲୁଁ । ସେମାନଙ୍କର ସଂଖ୍ୟା ଖୁବ୍ ବେଶି ହେବା ସମ୍ଭବ । ଚଡ଼ାତ୍ତ୍ ଚଡ଼ାତ୍ତ୍, ଚଡ଼ାତ୍ତ୍ କରି ଆଉ ଗୋଟିଏ ଧାତୁବାଦ୍ୟକ ଶବ୍ଦ ମଧ୍ୟ ସମାନ ବ୍ୟବଧାନରେ ଶୁଭୁଥିଲା । ସେଥିରୁ ଜଣା ପଡୁଥିଲା, ଛୁଞ୍ଚି କିମ୍ବା କଣ୍ଟା ଦ୍ୱାରା କୌଣସି ନରମ ପଦାର୍ଥ ଉପରେ ଷ୍ଟେଚ ପକାଯାଉଛି । ସେହି ଶବ୍ଦ କିଛି ସମୟ ଚାଲି ହାପରେ ବନ୍ଦ ହୋଇଗଲା, ଏବଂ ଝିଙ୍କୁଲୀର ଝଣଝଣକାର ପରି ଗୋଟିଏ ଶବ୍ଦ, ହୁଇସିଲ ମାରିବାର ଶବ୍ଦ, ଓ ପୋଲା ଜାଗା ଉପରେ ଘାଡ଼ି ଚାଲିବାର ଘଡ଼୍ ଘଡ଼୍ ଶବ୍ଦ ଶୁଭିଲା । ପୁଣି ସେହି ଚଡ଼ାତ୍ତ୍, ଚଡ଼ାତ୍ତ୍, ଚଡ଼ାତ୍ତ୍ ଆରମ୍ଭହେଲା । ଗ୍ରାଇ ଗୁଡ଼ିକ ସେହି ନିୟମିତ ଶବ୍ଦ ସଙ୍ଗେ ତାଳ ପକେଇ ତ୍ୱରିତ ବେଗରେ ଏବଂ ଛନ୍ଦୋବଦ୍ଧ ଭାବରେ ଗତି କରୁଥିଲେ ଏବଂ ଶବ୍ଦ ବନ୍ଦ ହେବା ସାଙ୍ଗେ ସାଙ୍ଗେ ବିରତ ହେଉଥିଲେ ।

ଆମେ ଏବାଠି ମୁଣ୍ଡଯୋଡ଼ି ଫୁସ୍‌ଫାସ୍ କରି ଏ ବିଷୟରେ ଆଲୋଚନା କରିବାକୁ ଲାଗିଲୁ ।

ମୁଁ କହିଲି, "ଏମାନେ ବ୍ୟସ୍ତ ଅଛନ୍ତି, କୌଣସି କାମରେ ବ୍ୟସ୍ତ ଅଛନ୍ତି ।"

"ହଁ ।"

"ଏମାନେ ଆମକୁ ଖୋଜୁ ନାହାନ୍ତି କି ଆମ କଥା ଭାବୁ ନାହାନ୍ତି ।"

"ବୋଧହୁଏ ଏମାନେ ଆମ ବିଷୟରେ କିଛି ଶୁଣି ନାହାନ୍ତି ।"

ଅନ୍ୟ ଗ୍ରାଇକମାନେ ତଳେ ଆମକୁ ଖୋଜୁଛନ୍ତି । ଆମେ ଯଦି ହଠାତ୍ ଏମାନଙ୍କ ଆଗରେ ହାଜର ହୋଇଯାଉଁ—"

କେଭର କହିଲା, "କଥାବାର୍ତ୍ତା ଦ୍ୱାରା ସନ୍ଧି କରିବା ସମ୍ଭବ ହୋଇପାରେ ।"

ମୁଁ କହିଲି, "ନା, ଆମେ ଯେପରି ଅବସ୍ଥାରେ ଅଛୁ, ତାହା ସମ୍ଭବ ନୁହେଁ ।"

କିଛିକ୍ଷଣ ପର୍ଯ୍ୟନ୍ତ ଆମେ ନିଜ ନିଜ ଚିନ୍ତାରେ ବୁଡ଼ି ରହି ଚୁପ୍‌ଚାପ୍ ବସିରହିଲୁଁ ।

ଚଡ଼ାତ୍ତ୍, ଚଡ଼ାତ୍ତ୍, ଚଡ଼ାତ୍ତ୍, କରି ଷ୍ଟେଚ ପଡ଼ିବାକୁ ଲାଗିଲା, ଏବଂ ଗ୍ରାଇଗୁଡ଼ିକ ଇଆଡ଼େ ସିଆଡ଼େ ଯାଆସ କରିବାକୁ ଲାଗିଲେ ।

ମୁଁ ଖାଡ଼ ଆଁଡ଼କୁ ଗ୍ରହିଲି । କହିଲି, "ଏହା ଖୁବ ସରୁ । ଆମେ ଦୁଇଟି ଛଡ଼ ବଙ୍କା କରି ଦେଇ ତା ଭିତରେ ଗଳି ଯାଇ ପାରିବା ।"

ବାଜେ ଆଲୋଚନାରେ ଆମେ କିଛି ସମୟ ନଷ୍ଟ କଲୁଁ । ତାପରେ ମୁଁ ଗୋଟିଏ ଛଡ଼କୁ ଦୁଇ ହାତରେ ଧରି ଗୋଡ଼କୁ ପଥର ଉପରକୁ ଟେକିବାକୁ ଲାଗିଲି । ଗୋଡ଼ ଦୁଇଟି ପ୍ରାୟ ମୋର ମୁଣ୍ଡର ସମାନ ଉପରକୁ ଉଠିବା ପରେ ଛଡ଼ ଉପରେ ଜୋରରେ ଧକ୍କା ଦେଲି । ତାହା ଏତେ ହଠାତ୍ ବଙ୍କା ହୋଇଗଲା ଯେ ପ୍ରାୟ ଚିତ୍ପଟ ହୋଇ ପଡ଼ିଲି । ମୁଁ ଉଠି ପଡ଼ି ତାହାର ପାଖରେ ଛଡ଼ଟିକୁ ଓଲଟା ଦିଗକୁ ବଙ୍କା କରି ଦେଲି । ତାପରେ ଉକ୍ତ ଛତୁଟିକୁ ପକେଟରୁ ବାହାର କରି ଫାଟ ଭିତରକୁ ପକେଇ ଦେଲି ।

ମୁଁ ଯେଉଁ ଫାଙ୍କକୁ ଚଉଡ଼ା କରି ଦେଇଥିଲି ତାହାର ଭିତରକୁ ମୋଡ଼ିହୋଇ ପଶିଲାବେଳେ କେଭର ଗୁନ ଗୁନ କହିଲା, "ତରବରିଆ ହୋଇ କିଛି କରନାହିଁ ।" ବାଡ଼ ଭିତରଦେଇ ପଶିଲାବେଳେ ମୁଁ କେତୋଟି କାର୍ଯ୍ୟବ୍ୟସ୍ତ ଗୃଧିନିଙ୍କୁ କ୍ଷଣକଲାଗି ଦେଖିପାରିଲି, ଏବଂ ତତ୍‌କ୍ଷଣାତ୍ ତଳକୁ ନଇଁ ଗଲି । ଯେଉଁ ଦବଯାଉଥିବା ସ୍ଥାନରେ ବାଡ଼ଟି ଥିଲା ତାହାର ବେଢ଼ା ମତେ ସେମାନଙ୍କ ଦୃଷ୍ଟିରୁ ଆଢୁଆଳ କରିଦେଲା । ମୁଁ ଚିତ୍ ହୋଇ ପଡ଼ି ରହିଲି ଏବଂ କେଭର ମଧ୍ୟ ପଶି ଆସିବାକୁ ପ୍ରସ୍ତୁତ ହେଉଥିବାରୁ ସଙ୍କେତରେ ତାଙ୍କୁ ଉପଦେଶ ଦେଲି । କିଛିକ୍ଷଣ ପରେ ଆମେ ଦବା ସ୍ଥାନରେ ଲାଗାଲାଗି ହୋଇ ବସି ଉପରକୁ ଉଙ୍କିମାରି ସେଇ ବବର ଓ ତା ଭିତରେ ଥିବା ଜୀବମାନଙ୍କୁ ଦେଖିବାକୁ ଲାଗିଲୁଁ ।

ଆମର ପ୍ରଥମ ଦର୍ଶନରେ ଆମେ ତାହା ଯେତେ ବଡ଼ ବୋଲି ଭାବିଥିଲୁ ତାହା ଅପେକ୍ଷା ବିବରଟି ଅନେକ ବଡ଼ ଥିଲା । ତାହାର ଗଡ଼ାଣିଆ ଚଟାଣର ସର୍ବନିମ୍ନ ଅଂଶରୁ ଆମେ ଉପରକୁ ଅନାଉଥିଲୁଁ । ତାହା ଆମଠାରୁ ଯେତେ ଦୂରେଇ ଯାଉଥିଲା ସେତେ ବେଶି ବେଶି ଚଉଡ଼ା ହୋଇ ଯାଉଥିଲା ଏବଂ ତାର ଗ୍ଡଳ ତଳକୁ ନଇଁ ଆସି ଦୂରସ୍ଥିତ ଅଂଶଗୁଡ଼ିକୁ ସମ୍ପୂର୍ଣ୍ଣ ରୂପେ ଘୋଡ଼େଇ ଦେଇଥିଲା । ତାହାର ଏକଡ଼ରୁ ସେକଡ଼ ଯାଏଁ ଅନେକ

ଗୁଡ଼ିଏ ପ୍ରକାଣ୍ଡ ମୂର୍ତ୍ତି । ବୃହତ୍ ଫିକା ବର୍ଣ୍ଣର ଗଣ୍ଡି ଧାଡ଼ି ହୋଇ ପଡ଼ିଥିଲେ ଏବଂ ସେହିପରି ଭାବରେ ଲମ୍ବିଯାଇ ଦୂରରେ ଅଦୃଶ୍ୟ ହୋଇ ଯାଇଥିଲେ । ସେହି ବସ୍ତୁଗୁଡ଼ିକ ଉପରେ ଚନ୍ଦ୍ରକମାନେ କାର୍ଯ୍ୟରତ ଥିଲେ । ପ୍ରଥମେ ସେଗୁଡ଼ିକ. ଅସ୍ପଷ୍ଟ ଆକାରର ପ୍ରକାଣ୍ଡ ଧଳା ସ୍ତମ୍ଭପରି ଦେଖାଯାଉଥିଲେ । ତାପରେ ମୁଁ ଲକ୍ଷ୍ୟ କଲି ସେଗୁଡ଼ିକ ଦେହରେ ମୁଣ୍ଡ ଗୋଟିଏ ଲେଖାଏଁ ଲାଗିଛି । କଂସେଇଖାନାରେ ଥିବା ମେଣ୍ଢାର ମୁଣ୍ଡପରି ସେଥିରୁ ଆଖି ଓ ଚମ ବାହାର କରାଯାଇଥିଲା । ସେଗୁଡ଼ିକ ଚନ୍ଦ୍ରଗୋରୁର ମୃତଦେହ । ମୃତ ତିମିମାଛକୁ ଯେପରି ନାବିକମାନେ କାଟି ପକାନ୍ତି, ଏମାନେ ସେଗୁଡ଼ିକ ସେହିପରି ଖଣ୍ଡ ଖଣ୍ଡ କରି କାଟି ପକାଉଥିଲେ । ମାଂସକୁ ଟେଲି ଟେଲି ଉପର କରା ଯାଉଥିଲା ଏବଂ ଦୂରସ୍ଥିତ ଦେହଗୁଡ଼ିକ ଉପରେ ଧଳା ପଞ୍ଜରା ହାଡ଼ଗୁଡ଼ି ଦିଶୁଥିଲା । ସେମାନଙ୍କର କୁରାଢ଼ୀ ଚଡ଼ାକ୍ ଚଡ଼ାକ୍ ଶବ୍ଦ ଜାତ କରୁଥିଲା । କିଛି ଦୂରରେ, ତାରରେ ଝୁଲୁଥିବା ଟ୍ରଲିଗାଡ଼ି ପରି ଗୋଟିଏ ଗାଡ଼ି ମୁଣ୍ଡ ମୁଣ୍ଡ ମାଂସରେ ବୋଝେଇ ହୋଇ ଗହ୍ୱରର ତଟାଣ ଉପରେ ଗଡ଼ିଯାଉଥିଲା । ଖାଦ୍ୟ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିବା ଏହି ଗଣ୍ଡିଗୁଡ଼ିକର ବିରାଟ ଧାଡ଼ି ଦେଖି ଚନ୍ଦ୍ରଜଗତର ବହୁଳ ଲୋକସଂଖ୍ୟା ବିଷୟରେ ଆମର ଧାରଣା ଜନ୍ମିଲା । ସେହି ଧାରଣା ଆମର ଗହ୍ୱରପଥ ଭିତରକୁ ପ୍ରଥମ ଦୃଷ୍ଟିପାତ ବେଳର ଧାରଣାଠାରୁ କେବଳ ନ୍ୟୂନ ।

ପ୍ରଥମେ ମୋର ମନେ ହେଲା ଚନ୍ଦ୍ରକମାନେ କାଠ ଗୋଡ଼ ଉପରେ ରଖା ଯାଇଥିବା ତକ୍ତା ଉପରେ ଛିଡ଼ା ହୋଇଛନ୍ତି ! ତାପରେ ମୁଁ ଦେଖିଲି ଯେ, ତକ୍ତା ଓ ତାର ଗୋଡ ଏବଂ କୁରାଢ଼ୀର ବର୍ଣ୍ଣ ସୀସାର ବର୍ଣ୍ଣ ତୁଲ୍ୟ । ମୋର ଶିକୁଳି ଉପରେ ଧଳା ଆଲୁଅ ପଡ଼ିବା ହେତୁରୁ ତାହାର ବର୍ଣ୍ଣ ମଧ୍ୟ ସେହିପରି ଦିଶୁଥିଲା । [ ଚନ୍ଦ୍ରରେ କାଠର କୌଣସି ଜିନିଷ ଦେଖିଛି ବୋଲି ମୋର ମନେ ପଡ଼ୁନାହିଁ ; କବାଟ, ମେଜ, ଏବଂ ଆମର ପୃଥିବୀରେ କାଠର ଅନ୍ୟ ଯାହା ଆସବାବପତ୍ର ତିଆରି ହୁଏ, ସେ ସମସ୍ତ ଚନ୍ଦ୍ରରେ ଧାତୁ ଦ୍ୱାରା ବିଶେଷତଃ ସୁନା ଦ୍ୱାରା, ତିଆରି ହୁଏ । କାରଣ ସୁନା ମଜଭୁତ ଓ ଦୀର୍ଘକାଳ-ସ୍ଥାୟୀ ହୋଇଥିବାରୁ ଏବଂ ସେଥିରେ ଜିନିଷ ତିଆରି କରିବା ସହଜ ହୋଇ-

ଥିବାରୁ ଅନ୍ୟାନ୍ୟ ଆଲୁ ଅପେକ୍ଷା ଏ ବିଷୟରେ ତାହା ଅଧିକ ଉପଯୋଗୀ ।]
ଅନେକ ଗୁଡ଼ିଏ ମୋଟା ମୋଟା ଶାବଳ ଚଟାଣି ଉପରେ ପଡ଼ିଥିଲା । ମୃତ ବୃହତ୍‌ଗୋରୁଙ୍କୁ ଓଲଟ ପାଲଟ କରିବାପାଇଁ ସେଗୁଡ଼ିକ ବୋଧହୁଏ ବ୍ୟବହୃତ ହେଉଥିଲା । ସେଗୁଡ଼ିକର ଲମ୍ବ ଥିଲା ପ୍ରାୟ ଛ ଫୁଟ ଏବଂ ବେଶ୍ ବେଶ୍ ସଳଖ ଥିଲା । ଅସ୍ତ୍ରରୂପେ ବ୍ୟବହାର କରିବା ପାଇଁ ସେଗୁଡ଼ିକ ଉପଯୁକ୍ତ ଥିଲା । ଛକାଛକ ହୋଇଥିବା ତିନିଗୋଟି ତରଳ ନାଳସ୍ରୋତ ଦ୍ୱାରା ସ୍ଥାନଟି ଆଲୋକିତ ହୋଇଥିଲା ।

ଆମେ ଦୁହେଁ ନୀରବରେ ଏହିସବୁ ଜିନିଷ ଲକ୍ଷ୍ୟକରି ଅନେକ ବେଳ ଯାଏଁ ପଡ଼ି ରହିଲୁ । ଶେଷରେ କେଭର କହିଲା, "ତାପରେ ?"

ମୁଁ ଆଲୁର ତଳକୁ ଜାକିଜୁକି ହୋଇ ତା ଆଡ଼କୁ ମୁହଁ ଫେରାଇଲି । ମୋ ମୁଣ୍ଡରେ ଗୋଟିଏ ଚମତ୍କାର ବୁଦ୍ଧି ଆସିଥିଲା । ମୁଁ କହିଲି, "ଏମାନେ ଯଦି ଏହି ବୃହତ୍‌ଗୋରୁ ଗୁଡ଼ିକଙ୍କୁ କେବଳ ସାହାଯ୍ୟରେ ତଳକୁ ନ ନେଉଥାନ୍ତି ତାହାହେଲେ ବହିର୍ଭାଗର ଯେତେ ପାଖରେ ଅଛୁ ବୋଲି ମୁଁ ଭାବିଥିଲି ତା ଅପେକ୍ଷା ଅଧିକ ପାଖରେ ଆମେ ଅଛୁଁ ।"

"କିପରି ଜାଣିଲ ?"

"ବୃହତ୍‌ଗୋରୁମାନେ କୁଦା ମାରନ୍ତି ନାହିଁ, ଆଉ ସେମାନଙ୍କର ଡେଣା ନାହିଁ ।"

ସେ ଗାତର ଧାର ଉପରକୁ ପୁଣି ଉଙ୍କିମାରିଲା । କହିବାକୁ ଆରମ୍ଭ କଲା, "ମୁଁ ଭାବୁଛି ······ଯାହାହେଉ ଆମେ ବହିର୍ଭାଗର ବେଶି ତଳକୁ କେବେ ଯାଇନାହୁଁ—"

ମୁଁ ହଠାତ୍ ତାର ହାତକୁ ଭିଡ଼ିଧରି କହିବାରେ ବାଧାଦେଲି । ଆମ ତଳେ ଥିବା ଫାଟ ଭିତରୁ ଗୋଟିଏ ଗୋଳମାଳ ଶୁଣି ପାରିଥିଲି ।

ଆମେ ପଛକୁ ମୋଡ଼ି ହୋଇ, ସମସ୍ତ ଇନ୍ଦ୍ରିୟ ସଜାଗ କରି ମୃତ ପ୍ରାୟ ପଡ଼ି ରହିଲୁଁ । କିଛି ସମୟପରେ ମୋର ଆଉ ସନ୍ଦେହ ରହିଲା ନାହିଁ ଯେ କୌଣସି ବସ୍ତୁ ଫାଟ ଉପରକୁ ନିଃଶବ୍ଦରେ ଚଢ଼ି ଆସୁଛି । ମୁଁ ଅତି ଧୀରେ ଓ ନିଃଶବ୍ଦ ଭାବରେ ଶାବୁଳକୁ ଭଲରୂପେ ମୁଠେଇ ଧରିଲି ଏବଂ ସେହି ବସ୍ତୁର ଆଗମନକୁ ଅପେକ୍ଷା କରି ରହିଲି ।

ମୁଁ କହିଲି, "ସେଇ କୁରାଢ଼ୀ ଧରିଥିବା ଲୋକମାନଙ୍କୁ ଆଉଥରେ ଦେଖ ଭଲ ।"

କେଭିନ କହିଲା, "ସେମାନେ ଯେମିତଥିଲେ ସେମିତ ଅଛନ୍ତି ।"

ବାଡ଼ର ଫାଙ୍କ ଭିତରକୁ ମୁଁ ଲକ୍ଷ ଠିକ କରି ରଖିଲି । ଆରୋହିକୋଖି ଗୃହୀକମାନଙ୍କର ମୃଦୁ ଗୁଞ୍ଜନ, ପଥର ଉପରେ ସେମାନଙ୍କର ହାତର ଆଘାତ ଏବଂ ସେମାନେ ଉଠୁଥିବାବେଳେ ହାତବାକ ଝରି ପଡ଼ୁଥିବା ଧୂଳିର ପତନ ଶବ୍ଦ ବର୍ତ୍ତମାନ ସ୍ପଷ୍ଟ ଶୁଣାଯାଉଥିଲା ।

ତା ପରେ ମୁଁ ଦେଖିଲି, ବାଡ଼ ତଳେ ଥିବା ଅନ୍ଧକାର ଭିତରେ କୌଣସି ଜିନିସ ଅସ୍ପଷ୍ଟ ଭାବରେ ବିଚରଣ କରୁଛି । କିନ୍ତୁ ତାହା କଣ ମୁଁ ଦେଖିପାରିଲି ନାହିଁ । ତାହା କ୍ଷଣକ ଲାଗି ନିଶ୍ଚଳ ହୋଇ ରହିଲା, ତାପରେ ହଠାତ୍ କୌଣସି ଜିନିସ ମୋ ଆଡ଼କୁ ଚହିଙ୍କି ଆସିବାରୁ ମୁଁ ଡେଇଁ ପଡ଼ି ପ୍ରଚଣ୍ଡଭାବରେ ତାହାକୁ ଆଘାତ କଲି । ତାହା ଥିଲା ଗୋଟିଏ ବର୍ଚ୍ଛାର ତୀକ୍ଷ୍ଣଧାର । ତାହା ଅତି ଲମ୍ବ ଥିବାରୁ ଫାଟର ସଙ୍କୀର୍ଣ୍ଣତା ଭିତରେ ନିମ୍ନଗାମୀ ହୋଇ ମୋ ନିକଟରେ ପହଞ୍ଚିପାରି ନ ଥିଲା । ଯାହାହେଉ, ଫାଟ ଭିତରୁ ସାପର ଜିଭ ପରି ତାହା ମୋ ଆଡ଼କୁ ଚହିଙ୍କି ଆସିଲା,କିନ୍ତୁ ଲକ୍ଷ୍ୟଭ୍ରଷ୍ଟ ହୋଇ ଫେରିଯାଇ ପୁଣି ଚହିଙ୍କି ଆସିଲା । କିନ୍ତୁ ଏଥର ମୁଁ ତାହାକୁ ଧରି ପକେଇ ଝିଙ୍କି ଛଡ଼େଇ ଆଣିଲି । ସଙ୍ଗେ ସଙ୍ଗେ ଆଉ ଗୋଟିଏ ବର୍ଚ୍ଛା ମଧ ମୋ ଆଡ଼କୁ ଆସି ଲକ୍ଷ୍ୟଭ୍ରଷ୍ଟ ହେଲା ।

ମୁଁ ବର୍ଚ୍ଛାଟି ଭିଡ଼ିଧରିବା ବେଳେ ଗୃହୀ କଟି କ୍ଷଣକ ଲାଗି ପ୍ରତିରୋଧ କରି ତାହା ଛାଡ଼ି ଦେବାରୁ ମୁଁ ବିଜୟସୂଚକ ହୁଙ୍କାର କରି ଉଠିଲି । ତାପରେ ଛିଦ୍ରର ଫାଙ୍କ ଦେଇ ତାହା ଭିତରକୁ କେଞ୍ଚିବାକୁ ଲାଗିଲି । ଅନ୍ଧକାର ଭିତରୁ ଯନ୍ତ୍ରଣା ଜନିତ ଚିତ୍କାର ଉଠିବାକୁ ଲାଗିଲା । କେଭିନ ଅନ୍ୟ ବର୍ଚ୍ଛାଟି ଛଡ଼େଇ ନେଇ ମୋ ପାଖରେ ଡେଇଁ ଡେଇଁ ତାକୁ ଘୂରେଇବାକୁ ଲାଗିଲା ଏବଂ ଅପାରଗ ଭାବରେ କେଞ୍ଚିବାକୁ ଲାଗିଲା । ବାଡ଼ ଭିତରୁ ଝନ୍ ଝନ୍ ଶବ୍ଦ ଶୁଭିଲା ଏବଂ ତାପରେ ଗୋଟିଏ କୁରାଢ଼ୀ ବାୟୁ ଭିତରେ ନିକ୍ଷିପ୍ତ ହୋଇ ଦୂରର ପଥର ଉପରେ କମ୍ପିତ ହୋଇପଡ଼ିଲା । ବନ୍ଦର ଭିତରେ ଥିବା ଜଂସେଇମାନଙ୍କ କଥା ମୋର ମନେ ପଡ଼ିଗଲା ।

ମୁଁ ପଛକୁ ବୁଲିପଡ଼ି ଦେଖିଲି, ସେମାନେ ସମସ୍ତେ କୁରାଢ଼ୀ ଘୂରେଇ ଘୂରେଇ ଏକ ସଙ୍ଗରେ ଆମ ଆଡ଼କୁ ମାଡ଼ି ଆସୁଛନ୍ତି । ସେମାନେ ଥିଲେ ଗେଡ଼ା, ମୋଟା ସୋଟା କ୍ଷୁଦ୍ର ଜୀବଗୁଡ଼ିଏ ଏବଂ ସେମାନଙ୍କର ହାତ ଖୁବ ଲମ୍ବ ଲମ୍ବ ଥିଲା । ଆମେ ଆଗରୁ ଦେଖିଥିବା ଗୃଦ୍ଧ୍ରକମାନଙ୍କଠାରୁ ସେମାନେ ସମ୍ପୂର୍ଣ୍ଣ ଭିନ୍ନ ଥିଲେ । ସେମାନେ ଯଦି ଆମ କଥା ଆଗରୁ ଶୁଣି ନଥିବେ ତାହାହେଲେ ନିଶ୍ଚୟ ଆଶ୍ଚର୍ଯ୍ୟଜନକ କ୍ଷିପ୍ରତା ସହିତ ଘଟଣାଟି ଉପଲବ୍ଧି କରି ପାରିଥିବେ । ମୁଁ ବର୍ଚ୍ଛାଟି ଧରି ସେମାନଙ୍କ ଆଡ଼କୁ ମୁହୂର୍ତ୍ତକ ଲାଗି ଅନାଇ ରହିଲି । ତାପରେ, "କେଭର, ସେଇ ବାଡ଼କୁ ଜଗ" କହିଲି କହି ସେମାନଙ୍କୁ ଡରାଇବା ଲାଗି ହୁଙ୍କାର କରି ସେମାନଙ୍କ ଆଡ଼କୁ ଦଉଡ଼ିଗଲି । ସେମାନଙ୍କ ଭିତରୁ ଦୁଇଜଣଙ୍କର କୁରାଢ଼ୀର ଆଘାତ ଲକ୍ଷ୍ୟଭ୍ରଷ୍ଟ ହେଲା ଏବଂ ବାକିମାନେ ଏଣେତେଣେ ଦଉଡ଼ି ପଳେଇଗଲେ । ତାପରେ ସେଇ ଦୁଇଜଣ ମଧ୍ୟ ମୁଣ୍ଡ ତଳକୁ ପୋତି ଓ ହାତ ମୁଠାକରି ବବର ଭିତରକୁ ଦଉଡ଼ି ପଳେଇଲେ । ମନୁଷ୍ୟମାନେ ଏପରି ଭାବରେ ଦଉଡ଼ିବାର ମୁଁ କେବେ ଦେଖି ନାହିଁ ।

ମୋ ହାତରେ ଯେଉଁ ବର୍ଚ୍ଛାଟି ଥିଲା ତାହା କାମକୁ ଆସିବନି ବୋଲି ମୁଁ ବୁଝିପାରିଲି । ତାହା ଅତି ସରୁ ଓ ଲଡ଼ବଡ଼ିଆ ଥିଲା । ସେଥିରେ କେବଳ କେଞ୍ଚିବାର ସୁବିଧା ଥିଲା, କିନ୍ତୁ ତାହା ଅତି ବେଶି ଲମ୍ବା ହୋଇଥିବାରୁ ଚଞ୍ଚଳ ଟାଣି ଆଣିବାର ସୁବିଧା ନ ଥିଲା । ତେଣୁ କେବଳ ପ୍ରଥମ ମାଡ଼ଟି ପର୍ଯ୍ୟନ୍ତ ମୁଁ ଗୃଦ୍ଧ୍ରକମାନଙ୍କୁ ଗୋଡ଼େଇ ନେଲି ଏବଂ ସେଠି ଛିଣ୍ଡା ହୋଇ ତଳେ ପଡ଼ିଥିବା ଶାବଳଗୁଡ଼ିକ ଭିତରୁ ଗୋଟିକୁ ଉଠେଇ ନେଲି । ସେଇଟି ବେଶ୍ ଭାରୀ ଥିଲା ଏବଂ ସେଥିଦ୍ଵାରା ଯେତେ ଇଚ୍ଛା ସେତେ ଗୃଦ୍ଧ୍ରକଙ୍କୁ ଛତୁ କରି ଦେବାର ସୁବିଧା ଥିଲା ବୋଲି ଜଣା ପଡ଼ିଲା । ମୁଁ ବର୍ଚ୍ଛାଟି ଫୋପାଡ଼ି ଦେଇ ଅନ୍ୟ ହାତ ପାଇଁ ଆଉ ଗୋଟିଏ ଶାବଳ ଉଠେଇନେଲି । ବର୍ଚ୍ଛା ଧରିଥିଲା ବେଳେ ଯେମିତି ଲାଗୁଥିଲା ତା ଅପେକ୍ଷା ମତେ ପାଞ୍ଚଗୁଣ ଅଧିକ ମଜଭୁତ ଲାଗିଲା । ବବରର ଅନେକ ଭିତରେ ଅଟକି ଛିଡ଼ାହୋଇ ପଡ଼ିଥିବା ଗୃଦ୍ଧ୍ରକ ଦଳ ଆଡ଼କୁ ମୁଁ ଭୟ ଦେଖାଇବା ଲାଗି ଶାବଳ ଦୁଇଟି ହଲେଇ ଦେଲି ଏବଂ ତାପରେ କେଭରକୁ ଦେଖିବା ଲାଗି ପଛକୁ ମୁହଁ କଲି ।

ସେ ବାଡ଼ର ଏକଢ଼ରୁ ସେ କଡ଼ଯାଏଁ ଡେଉଁଥିଲି ଏବଂ ତାର ଭଙ୍ଗା ବର୍ଚ୍ଛାଦ୍ୱାରା ଡରାଇବା ପାଇଁ ମଝିରେ ମଝିରେ ଲେଞ୍ଚି ଦେଉଥିଲି । ଭଲକଥା; ଅନ୍ତତଃ କିଛି ସମୟ ପାଇଁ ସେ ବୃନ୍ଦ୍ରୁକମାନଙ୍କୁ ଦବେଇ ରଖିବ । ମୁଁ ପୁଣି ବିବରର ଉପର ଅଂଶ ଆଡ଼କୁ ଅନାଇଲି । ବର୍ତ୍ତମାନ ଆମକୁ କଣ କରବାକୁ ହେବ ?

ଆମେ ସ୍ଥା ଭିତରେ ଏକପ୍ରକାର କୋଣବନ୍ଧ ହୋଇପଡ଼ିଥିଲୁଁ । କିନ୍ତୁ ବିବରର ବାଂସେଇମାନେ ଅତର୍କିତ ହୋଇ ପଡ଼ିଥିଲେ, ହୁଏତ ଭୀତ ହୋଇ-ପଡ଼ିଥିଲେ ଏବଂ ସେହି ଶ୍ରେଷ୍ଠ ଶ୍ରେଷ୍ଠ କୁରାଢ଼ୀ ଛଡ଼ା ସେମାନଙ୍କର ଅନ୍ୟ ଅସ୍ତ୍ର ନଥିଲା ; ଏବଂ ସେଇବାଗରେ ଥିଲି ମୁକ୍ତି । ସେମାନଙ୍କର କ୍ଷୁଦ୍ର ଅଥଚ ମଜଭୁତ ଶରୀର—ଘୋରୁକଣ୍ଠ ବୃନ୍ଦ୍ରୁକମାନଙ୍କ ଅପେକ୍ଷା ଖର୍ବ ଓ ସ୍ଥୂଳ ଶରୀର—ବିବର ଭିତରେ ଏପଟେ ସେପଟେ ଇତଃସ୍ତତଃ ବିକ୍ଷିପ୍ତ ହୋଇଥିଲା ଯେ ସେଥିରୁ ସେମାନଙ୍କର ଅନଶ୍ଚିତତା ସ୍ପଷ୍ଟ ଜଣାପଡ଼ୁଥିଲା । ରାସ୍ତା ଉପରେ ପାଗଲା ଷଣ୍ଢର ସୁବିଧା ମୁଁ ଲକ୍ଷ କରି ପାରିଥିଲି । ତଥାପି ସେମନଙ୍କର ସଂଖ୍ୟା ଖୁବ୍ ବେଶି ଜଣା ପଡ଼ୁଥିଲା, ହୁଏତ ସେମାନଙ୍କର ସଂଖ୍ୟା ପ୍ରକୃତରେ ବେଶିଥିଲା । ଫାଟତଳେ ଥିବା ଗୃନ୍ଦ୍ରୁକମାନଙ୍କର ବର୍ଚ୍ଛା ବାସ୍ତବିକ ସାଙ୍ଘାତିକ ରକମର ଲମ୍ବା ଦେଖାଯାଉଥିଲା । ହୁଏତ ସେମାନଙ୍କର ଆହୁରି କୌଣସି ଅସ୍ତ୍ରଶସ୍ତ୍ର ବି ଥାଇପାରେ ।··· କିନ୍ତୁ, ଦୁର୍ଭାଗ୍ୟବଶତଃ, ଆମେ ଯଦି ଗୁମ୍ଫା ଭିତରକୁ ଯାଇ ଆକ୍ରମଣ କରୁଁ, ସେମାନେ ଆମ ପଛେ ପଛେ ଫାଟ ଭିତରେ ପଶି ଆସିବେ ଏବଂ ଯଦି ତାହା ନକରୁଁ ତାହା ହେଲେ ଗୁମ୍ଫା ଭିତରେ ଥିବା ସେଇ ପଞ୍ଜରଗୁଡ଼ାକ ଆହୁରି ଶକ୍ତି ଯୋଗାଡ଼ କରିନେବେ । ଭଗବାନ ଜାଣନ୍ତି, ଆମ ପାଦ ତଳେ ଥିବା ଏହି ଅଜଣା ଜଗତ—ଏହି ବିଶାଳତର ଜଗତ ଯାହାର ବାହାର ଖୋଲକୁହିଁ ଆମେ କେବଳ ଭେଦ କରିପାରିଛୁଁ—ଆମକୁ ଧ୍ୱଂସ କରିବାପାଇଁ ଏହିକ୍ଷଣି ତୋପ, ବୋମା, କିମ୍ବା ପୃଥିବୀର ଟର୍ପେଡ଼ୋ ପରି କି କି ଭୟଙ୍କର ମାରଣାସ୍ତ୍ର ନ ପଠାଇବ । ଆମେ ପରିଷ୍କାର ରୂପେ ବୁଝିପାରିଲୁଁ ଏକମାତ୍ର ଉପାୟ ଆକ୍ରମଣ କରିବା ! ବିବର ଭିତରେ ଆମ ଆଡ଼କୁ ଦୌଡ଼ିଆସୁଥିବା ନୂତନତମ ବୃନ୍ଦ୍ରୁକମାନଙ୍କର ଗୋଡ଼ ଦେଖା ଦିବା କ୍ଷଣି ଏକଥା ଆହୁରି ପରିଷ୍କାର ରୂପେ ବୁଝିପାରିଲୁଁ ।

କେଉଁର ଚତ୍କାର କଲା, "ବେଡ୍‌ଫୋର୍ଡ଼!" ଏବଂ ଦେଖୁଁ ଦେଖୁଁ ସେ ଭଲ୍ଲ ପାଖରୁ ମୋ ଆଡ଼କୁ ଅଧା ବାଟ ଗ୍ଲଲିଆସିଲା ।

ମୁଁ ପାଟିକରି କହିଲି, "ଫେରିଯାଅ, ଫେରିଯାଅ ! କଣ କରୁଛ—"

"ସେମାନେ—ସେମାନେ ବନ୍ଧୁକ ପରି ଗୋଟିଏ ଜିନିଷ ଆଣିଛନ୍ତି !"

ଫାଙ୍କ ଭିତରେ ଠେଲି ପେଲି ହୋଇ ସେହି ଉଷାକାଶୀ ବର୍ଚ୍ଛା-ମାନଙ୍କର ମଧ୍ୟଭାଗରୁ ଗୋଟିଏ ଆଶ୍ଚର୍ଯ୍ୟରକମ କୃଶ ଓ ଗୋଲିଆ ବୃଦ୍ଧଙ୍କର ମୁଣ୍ଡ ଓ କାନ୍ଧ ଦେଖାଗଲା । ସେ କୌଣସି କଠିନ ହତିଆର ଧରି ଆସିଥିଲା ।

ଆମ ସମ୍ମୁଖରେ ଥିବା ଲଢେଇ ପାଇଁ କେଭରର ସମ୍ପୂର୍ଣ୍ଣ ଅପଟୁତା ମୁଁ ବୁଝିପାରିଲି । ଖଣିକ ପାଇଁ ମୁଁ ଇତଃସ୍ତତଃ କଲି, ତାପରେ ମୋର ଶାବଳ ଦୁଇଟିକୁ ଚକ୍ରାକାରରେ ଘୂରେଇ ଘୂରେଇ ଏବଂ ବୃଦ୍ଧଙ୍କର ଲକ୍ଷ୍ୟ ଭାଙ୍ଗି ଦେବାପାଇଁ ଜୋରରେ ପାଟିକରି ମୁଁ କେଭରର ପାଖ ଦେଇ ଦୌଡ଼ିଗଲି । ବୃଦ୍ଧଜଣକ ତାର ଅସ୍ତ୍ର ପେଟ ଉପରେ ନାକ ଝଡ ଅଦ୍ଭୁତ ଭାବରେ ଲକ୍ଷ କରୁଥିଲା । ତାହା "ଚକ୍କଳଙ୍କ" ଶବ୍ଦ କରି ମୁଁ ଲମ୍ଫ ଦେଉଥିବା ବେଳେ ମତେ ଆଘାତ କଲା । ତାହା ମୋଟେ ବନ୍ଧୁକ ନ ଥିଲା; ବରଂ ଏକପ୍ରକାରର ନଳୀ-ଧନୁ ପରି ଅସ୍ତ୍ର ଥିଲା । ଅଧାଉଡ଼ା-ଅବସ୍ଥାରେ ମତେ ଆଘାତକରି ତାହା ତଳକୁ ଖସେଇ ଦେଲା ।

ଅବଶ୍ୟ ମୁଁ ତଳେ ପଡ଼ିଗଲି ନାହିଁ, କେବଳ ତାହା ମତେ ଆଘାତ କରି ନ ଥିଲେ ଯେତିକି ଉପରକୁ ଉଠି ପାରିଥାନ୍ତି ତାଠୁ କମ ଉଠି ତଳକୁ ଖସି ଆସିଲି । ମୋର କାନ୍ଧର ଅନୁଭବରୁ ଜଣା ପଡ଼ୁଥିଲା ତାହା ମତେ କେବଳ ସ୍ପର୍ଶକରି ଚଷିହୋଇ ଗ୍ଲଲିଗଲା । କିନ୍ତୁ ତାପରେ ମୋର ବାଁ ହାତ ଫାଟ ଉପରେ ବାଜିବାରୁ ମୁଁ ଦେଖିପାରିଲି ବର୍ଚ୍ଛା ପରି ଗୋଟିଏ ଜିନିଷ ମୋର କାନ୍ଧ ଭିତରେ ଅଧା ଲାଗି ରହିଛି । ପର ମୁହୂର୍ତ୍ତରେ ମୁଁ ଡାହାଣ ହାତରେ ଶାବଳଟି ଧରି ଦୌଡ଼ିଗଲି ଏବଂ ବୃଦ୍ଧଙ୍କୁ ପ୍ରଚଣ୍ଡ ଭାବରେ ଆଘାତ କଲି । ସେ ଚଟ୍ଟ ହୋଇ ପଡ଼ିଗଲା, ଢଳି ମକଚ ହୋଇଗଲା, ତାର ମୁଣ୍ଡ ଅଣ୍ଡା ପରି ଫାଟି ଖଣ୍ଡ ଖଣ୍ଡ ହୋଇଗଲା ।

ମୁଁ ଗୋଟିଏ ଶାବଳ ପକେଇ ଦେଇ କାନ୍ଧରୁ ବର୍ଚ୍ଛାଟି ଟାଣି ଆଣିଲି ଏବଂ ଫାଟ ଭିତର ଦେଇ ଅନ୍ଧକାର ଭିତରକୁ ତାହା କେଞ୍ଚିବାକୁ ଲାଗିଲି । ପ୍ରତ୍ୟେକ କେଞ୍ଚା ସହିତ ଯନ୍ତ୍ରଣାଜନକ ଚିତ୍କାର ଓ ଚେଁ ଚେଁ ଶବ୍ଦ ଉଠିବାକୁ ଲାଗିଲା । ଶେଷରେ ମୁଁ ସମସ୍ତ ଶକ୍ତି ପ୍ରୟୋଗ କରି ବର୍ଚ୍ଛାଟି ସେମାନଙ୍କ ଉପରକୁ ଫୋପାଡ଼ି ଦେଲି ଏବଂ ତେଇଁପଡ଼ି ଶାବଳଟି ପୁଣି ଉଠେଇ ନେଇ ଗହ୍ୱରର ଉର୍ଦ୍ଧ୍ୱାଂଶରେ ଥିବା ଗୃଧ୍ରକବଳ ଆଡ଼କୁ ବାହାରିଲି ।

କେଭର୍ ମୋର ପାଖଦେଇ ଦୌଡ଼ିଗଲା ବେଳେ ସେ ଡାକିଲା, "ବେଡ଼-ଫୋର୍ଡ଼! ବେଡ଼ଫୋର୍ଡ଼!" ତାର ପଦଧ୍ୱନି ମୋ ପଛେ ପଛେ ଆସୁଥିବାର ମୁଁ ଶୁଣି ପାରିଲି ।

ଫଙ୍କ୍ [illegible] ଫଙ୍କ୍ ତେଇଁ, ଉଠି, ପଡ଼ି ମୁଁ ଦୌଡ଼ିବାକୁ ଲାଗିଲି । ପ୍ରତ୍ୟେକ ଲମ୍ଫକୁ ଯୁଗେ ଲାଗୁଥିଲା ବୋଲି ମନେ ହେଉଥିଲା । ପ୍ରତ୍ୟେକ ଲମ୍ଫରେ ଗୁମ୍ଫାଟି କ୍ରମେ କ୍ରମେ ଚଉଡ଼ା ହୋଇ ଯାଉଥିଲା ଏବଂ ଦୃଷ୍ଟି ସମ୍ମୁଖସ୍ଥ ଗୃଧ୍ରକମାନଙ୍କର ସଂଖ୍ୟା ବଢ଼ି ଯାଉଥିଲା । ପ୍ରଥମେ ସେମାନେ ସମସ୍ତେ ଆଘାତ-ପ୍ରାପ୍ତ ଉଇହୁଙ୍କାର ଉଇପଲ ପରି ଇଆଡ଼େ ସିଆଡ଼େ ଦଉଡ଼ି ପଳାଉଥିଲେ । ସେମାନଙ୍କ ଭିତରୁ ଜଣେ ଦୁଇଜଣ କୁରାଢ଼ୀ ହଲେଇ ମତେ ଭେଟିବାକୁ ଆସୁଥିଲେ । ଅଧିକାଂଶ ପଳେଇ ଯାଉଥିଲେ, କେହି କେହି ଆଡ଼େଇ ହୋଇ ମୃତ ପଶୁ ଦେହର ଧାଡ଼ି ପଛରେ ଲୁଚି ଯାଉଥିଲେ । ତାପରେ ଅନ୍ୟମାନେ ଏବଂ ପୁଣି ଆହୁରି ଅନେକ ବର୍ଚ୍ଛା ଧରି ଆସୁଥିବାର ଦେଖାଗଲା । ମୁଁ ଗୋଟିଏ ଅଦ୍ଭୁତ ଜିନିଷ ଗୁରୁଣ୍ଡି ଗୁରୁଣ୍ଡି ଲୁଚିବା ପାଇଁ ପଳାଉଥିବାର ଦେଖିଲି । ଆହୁରି ଦୂରକୁ ଗହ୍ୱରଟି ଅଧିକ ଅନ୍ଧାରୁଆ ହୋଇଯାଇଥିଲା । ସର୍ କରି କୌଣସି ଜିନିଷ ମୋ ମୁଣ୍ଡ ଉପର ଦେଇ ଉଡ଼ିଗଲା, ମୁଁ ଲମ୍ଫ ଦେଇ ଉପରକୁ ଉଠିଥିବା ବେଳେ ସର୍ କରି ଆଉ ଗୋଟିଏ ବର୍ଚ୍ଛା ଆସି ମୋ ବାଁ କଡ଼େ ଥିବା ଗୋଟିଏ ପଶୁଶବର ଦେହରେ ବାଜି ଥରଉଠିବାର ମୁଁ ଦେଖିଲି । ତାପରେ ମୁଁ ଯେତେବେଳେ ତଳକୁ ଖସିଆସିଲି ମୋ ସାମନାରେ ଗୋଟିଏ ବର୍ଚ୍ଛା ପଥର ଉପରେ ପଡ଼ିଲା ଏବଂ ସେମାନଙ୍କର ଅସ୍ତ୍ରର "ଚକ୍କ" ଶବ୍ଦ ଦୂରରେ ମୁଁ ଶୁଣି ପାରିଲି । ସିର୍,

ସର୍, ସର୍—କିଛିକ୍ଷଣ ଯାଏ ବର୍ଷାପରି ବର୍ଚ୍ଛା ଅଜାଡ଼ି ହୋଇପଡ଼ିଲା । ସେମାନେ ତୁହାକୁ ତୁହା ଅସ୍ତ୍ର ନିକ୍ଷେପ କରିବାକୁ ଲାଗିଲେ !

ମୁଁ ଅକାମୀର ଛୁଡ଼ା ହୋଇପଡ଼ିଲି ।

ମୁଁ ବୋଧହୁଏ ସେତେବେଳେ ପରିଷ୍କାରରୂପେ ଚିନ୍ତାକରି ପାରିଲି ନାହିଁ । ଗୋଟିଏ ପୁନରୁକ୍ତ ବାକ୍ୟ ମୋ ମନରେ ବାରମ୍ବାର ଜାଗି-ଉଠିଲା "ଅସ୍ତ୍ର ବୃଷ୍ଟିର ସମ୍ମୁଖୀନ ଲୁଚ ପଡ଼ ?" ମୁଁ ଦୁଇଟି ମଡ଼ାର ମଝିରେ ଥିବା ଜାଗାକୁ ତେଇଁ ପଡ଼ିଲି ଏବଂ ସେଠି ଛୁଡ଼ାହୋଇ ଫଁ ଫଁ କରି ନିଶ୍ୱାସ ନେବାକୁ ଲାଗିଲି । ମୋର ମୁଣ୍ଡ ଭିତରେ ସଇତାନ ଚେଇଁ ଉଠିଥିଲା ।

ମୁଁ କେଭରକୁ ଖୋଜିବାପାଇଁ ଆଖି ବୁଲେଇଲି, ମୁହୂର୍ତ୍ତିକ ଲାଗି ମନେ ହେଲା, ସେ ଏହି ଜଗତରୁ ଉଭେଇ ଯାଇଛି । ତାପରେ ସେ ପଶୁ ଶବର ଧାଡ଼ି ଓ ବବରର ପଥୁରିଆ କାନ୍ଥ ମଝିରେ ଥିବା ଅନ୍ଧାର ଭିତରୁ ବାହାରି ଆସିଲା ! ତାର ଅନ୍ଧକାରାଚ୍ଛନ୍ନ ଚେପ୍ଟିଆ ନାଲ ମୁହଁ ଝାଳ ଓ ଉତ୍ତେଜନାରେ ଚକ୍ ଚକ୍ କରୁଥିବାର ମୁଁ ଦେଖିଲି ।

ସେ କୌଣସି କଥା କହୁଥିଲା, କିନ୍ତୁ ମୁଁ ସେଥିରେ କାନ ଦେଲି ନାହିଁ, ମୁଁ ବୁଝି ପାରିଥିଲି ଯେ ମୃତ୍ୟୁଗୋରୁରୁ ମୃତ୍ୟୁଗୋରୁକୁ ଡେଇଁ ଆମକୁ ବବରର ଉପରକୁ ଯିବାକୁ ହେବ ଏବଂ ପରିଶେଷରେ ଶେଷ ଆକ୍ରମଣ କରିବାକୁ ପଡ଼ିବ । ଆକ୍ରମଣ ଛଡ଼ା ଆଉ ଉପାୟ ନ ଥିଲା । ମୁଁ କହିଲି, "ଗ୍ଲାଇଅ.ସ", ତାପରେ ଆଗେ ଆଗେ ଯିବାକୁ ଲାଗିଲି ।

ସେ ଚଞ୍ଚଳ ଭାବରେ ଡାକିବାକୁ ଲାଗିଲା, "ବେଡ଼୍‌ଫୋର୍ଡ଼ ! "

ବବରର କାନ୍ଥ ଓ ଶବ ସ୍ତୂପକର ମଝିରେ ଥିବା ସଙ୍କୀର୍ଣ୍ଣ ପଥ ଉପରେ ଗଲାବେଳେ ମୋର ମନ ଚିନ୍ତାରେ ବୁଡ଼ି ଯାଇଥିଲା । ସେହି ଶୀର୍ଣ୍ଣ-ପଥ ବଙ୍କେଇ ହୋଇ ଯାଇଥିବାରୁ ସେମାନେ ଆମ ଉପରକୁ ଅସ୍ତ୍ର ନିକ୍ଷେପ କରି ପାରୁ ନ ଥିଲେ । ଅବଶ୍ୟ ସେହି ସଙ୍କୀର୍ଣ୍ଣ ସ୍ଥାନରେ ଆମେ ଲମ୍ଫ ଦେଇ ପାରୁ ନଥିଲୁଁ । ତଥାପି ଆମର ପୃଥିବୀ-ଜାତ ବଳଯୋଗୁଁ ଚନ୍ଦ୍ର କମାନଙ୍କ ଅପେକ୍ଷା ଅଧିକ ବେଗରେ ଆମେ ଯାଇ ପାରୁଥିଲୁଁ । ମୁଁ ଅନ୍ଦାଜ କଲି ଅଳ୍ପକ୍ଷଣ

ପରେ ଆମେ ଠିକ ସେମାନଙ୍କର ମଝିରେ ଯାଇ ପଡ଼ିବୁଁ । ସେମାନଙ୍କ ଉପରେ ଥରେ ଝାମ୍ପି ପଡ଼ିଲେ ଗୋବର ପୋକଠାରୁ ସେମାନେ ଅଧିକ ସାଙ୍ଘାତିକ ମନେ ହେବେ ନାହିଁ । ଅବଶ୍ୟ—ପ୍ରଥମେ ଆମକୁ ଗୋଟିଏ ଅସ୍ତ୍ର-ବୃଷ୍ଟିର ସମ୍ମୁଖୀନ ହେବାକୁ ପଡ଼ିବ । ଗୋଟିଏ କୌଶଳ କଥା ମୋ ମନରେ ଉଠିଲା । ଦୌଡ଼ୁ ଦୌଡ଼ୁ ମୁଁ ଗରମ କୋଟଟି କାଢ଼ିଦେଲି ।

କେଭର ପଛରେ ଧଇଁସଇଁ ହୋଇ ଡାକିଲା, "ବେଡ୍‌ଫୋର୍ଡ଼ !"

ମୁଁ ପଛକୁ ଚାହିଁଲି । କହିଲି, "କଣ ?"

ସେ ଶବ ଗୁଡ଼ିକର ସେପଟେ ଉର୍ଦ୍ଧ୍ୱକୁ ଅଙ୍ଗୁଳୀ ନିର୍ଦ୍ଦେଶ କଲା । କହିଲା, "ଧଳା ଆଲୁଅ ! ପୁଣି ଧଳା ଆଲୁଅ !"

ମୁଁ ଚାହିଁଲି, ପ୍ରକୃତରେ ଅଳ୍ପ ଦୂରରେ ବାଦରର ସ୍ତୂପ ଉପରୁ ଗୋଧୂଳି ପରି ଅସ୍ପଷ୍ଟ ଗୋଟିଏ ଶୁଭ୍ର ଆଲୋକର ରେଖା ଦେଖା ଯାଉଥିଲା । ତାହା ମୋର ଶକ୍ତିକୁ ଦ୍ୱିଗୁଣିତ କଲାପରି ମନେ ହେଲା ।

ମୁଁ କହିଲି, "ପାଖେ ପାଖେ ଆସ ।" ଗୋଟିଏ ଚେଷ୍ଟା, ଲମ୍ବା ଚାନ୍ଦ୍ରକ ଅନ୍ଧକାର ଭିତରୁ ଡେଇଁ ପଡ଼ିଲା ଓ ଚିତ୍କାର କରି ଦୌଡ଼ି ପଳେଇଲା । ମୁଁ ଠିଆ ହୋଇ ପଡ଼ିଲି ଓ କେଭରକୁ ହାତରେ ଅଟେକେଇଲି । ମୁଁ ଶାବଳ ଉପରେ କୋଟଟି ଟ୍ରେଇ ଦେଲି, ପାଖରେ ଥିବା ଅନ୍ୟ ଗୋଟିଏ ଶବ ପଛେ ଲୁଚିଗଲି, କୋଟ ଏବଂ ଶାବଳକୁ ପକେଇ ଦେଲି ଏବଂ ଥରେ ଦେଖା ଦେଇ ପୁଣି ଲୁଚିପଡ଼ିଲି ।

"ଚକ୍କକ୍କ—ସର୍" —ଗୋଟିଏ ମାତ୍ର ଶର ଆସିଲା । ଆମେ ଚାନ୍ଦ୍ରକ-ମାନଙ୍କର ଖୁବ୍ ପାଖକୁ ଲାଗି ଆସିଥିଲୁ । ମୋଟା, ଗେଡ଼ା, ଓ ଡେଙ୍ଗା ସବୁ ରକମର ଚାନ୍ଦ୍ରକ ଦଳବାନ୍ଧି ଛିଡ଼ା ହୋଇଥିଲେ, ଏବଂ ସେମାନଙ୍କର ଶର ନିକ୍ଷେପ କରିବା ଯନ୍ତ୍ରର ଗୋଟିଏ ଶ୍ରେଷ୍ଠ ଧାଡ଼ି ଗୁମ୍ଫାର ତଳ ଆଡ଼କୁ ମୁହଁକରି ଜମା ହୋଇଥିଲା । ଏହାପରେ ପୁଣି ତିନ ଚାରିଟି ଶର ଆସିଲା, ତାପରେ ଶର-ନିକ୍ଷେପ ବନ୍ଦ ହୋଇଗଲା ।

ମୁଁ ଟିକିଏ ମୁଣ୍ଡ ଟେକି ଅଳ୍ପକେ ରକ୍ଷା ପାଇଗଲି । ଏଥର ପନ୍ଦର କୋଡ଼ିଏଟା ଶର ଆସିଲା, ଏବଂ ଶର ନିକ୍ଷେପ କରୁ କରୁ ଉତ୍ତେଜନାରେ

ବୃଦ୍ଧୁକମାନେ ଚତ୍କାର ଓ ଚେଁ ଚେଁ ଶବ୍ଦ କରିବାକୁ ଲାଗିଲେ । ମୁଁ ପୁଣି କୋଟ ଓ ଶାବଲକୁ ଉଠେଇ ନେଲି ।

ମୁଁ "ଏଥର" ବୋଲି କହି କୋଟଟିକୁ ଉପରକୁ ଉଠେଇ ଧରିଲି ।

"ଚକ୍କକ୍କ-କ୍କ-କ୍କ ! ଚକ୍କକ୍କ !"—ମୁହୂର୍ତ୍ତକ ଭିତରେ ମୋର କୋଟ ଶରରେ ଦାଡ଼ି ପରି ବନ୍ଧଳ ହୋଇଗଲା ଏବଂ ଆମ ପଛରେ ଥିବା ପଶୁ-ଶବଟି କମାନ ଶରରେ ଗ୍ରାସ ହୋଇ ଗଲା । ତତ୍‌କ୍ଷଣାତ୍ ମୁଁ ଶାବଳାରୁ କୋଟଟି ବାହାର କରିନେଇ ତଳେ ପକେଇ ଦେଲି—ସମ୍ଭବତଃ କୋଟଟି ଏପର୍ଯ୍ୟନ୍ତ ଚନ୍ଦ୍ରରେ ପଡ଼ି ପଡ଼ିଛି—ଏବଂ ତାପରେ ସେମାନଙ୍କ ଉପରକୁ ଝାମ୍ପି ପଡ଼ିଲି ।

ମିନିଟିକ ଯାଏ ଅବାରିତ ସଂହାର ଚାଲିଲା । ମୁଁ ଏତେଦୂର କ୍ରୋଧାନ୍ଧ ହୋଇ ପଡ଼ିଥିଲି ଯେ ଭେଦାଭେଦ ଜ୍ଞାନ ମୋର ନ ଥିଲା, ଏବଂ ବୃଦ୍ଧୁକମାନେ ଏତେଦୂର ଭୀତ ତ୍ରସ୍ତ ହୋଇ ପଡ଼ିଥିଲେ ଯେ ଲଢ଼େଇ କରିବାର କ୍ଷମତା ସେମାନଙ୍କର ନଥିଲା । ଯାହାହେଉ, ସେମାନେ ମୋ ଚାବୁକରେ ଆଦୌ ଯୁଦ୍ଧ କଲେ ନାହିଁ । କହିବାକୁ ଗଲେ, ମୁଁ ସଂହାରମୂର୍ତ୍ତି ଧାରଣ କରିଥିଲି । ମଣିଷ ଲମ୍ବ ଲମ୍ବ ଘାସ ଭିତର ଦେଇ ପେଲି ହୋଇ ଗଲା ପରି ମୁଁ ସେହି ଚର୍ମମୟ କୃଶ ଜୀବମାନଙ୍କ ଭିତରେ ଠେଲି ପେଲି, ଡାହାଣ ବାଁ ଦୁଇ ପଟେ କଚ୍ କଚ୍ କାଟି ବାହେଇ ଚାଲିଥିଲି । ଜଲୀୟ ପଦାର୍ଥର ଗ୍ରେଟ ଗ୍ରେଟ ଟୋପା ଚାରିଆଡ଼େ ଫୋପାଡ଼ି ହୋଇ ପଡ଼ୁଥିଲା । ପେଁ ଶବ୍ଦ କରି ଫାଟିପଡ଼ି ଖଣ୍ଡଖଣ୍ଡ ହୋଇ ଯାଉଥିବା ଜୀବଗୁଡ଼ିକ ଉପରେ ମୁଁ ମାଡ଼ି ମକଚି ଚାଲିଥିଲି । ସେହି ଜନତା ଜଲସ୍ରୋତ ପରି ଦୁଇ ଭାଗ ହୋଇ ପୁଣି ଯୋଡ଼ି ହୋଇ ବୋହି ଯାଉଥିଲେ । ସେମାନଙ୍କର ଆଦୌ କୌଣସି ସମ୍ମିଳିତ ଯୋଜନା ନଥିଲା ପରି ଜଣା ପଡ଼ୁଥିଲା । କେତୋଟି ବର୍ଚ୍ଛା ମୋର ଏପାଖେ ସେପାଖେ ଉଡ଼ି ଯାଉଥିଲା, ଗୋଟିଏ ମୋର କାନକୁ ଆଞ୍ଚୁଡ଼ି ଚାଲିଗଲା । ଥରେ ମୋର ହାତରେ ଏବଂ ଆଉ ଥରେ ଗାଲରେ ଆଘାତ ଲାଗିଲା, କିନ୍ତୁ ଏହା ମୁଁ ସେତେବେଳେ ଜାଣି

ପାରିଲି ନାହିଁ । ପରେ ଯେତେବେଳେ ରକ୍ତ ବନ୍ଧ, ଅଣ୍ଟା ହୋଇ ଓଦା ଓଦା ଲାଗିଲା ସେତେବେଳେ ଯାଇଁ ଜାଣି ପାରିଲି ।

କେତେ ସମୟ ଯାଏ କେଉଁଠି କଣ କରୁଥିଲି ମୁଁ ଜାଣିପାରିଲି ନାହିଁ । କିଛି ସମୟ ଯାଏ ମନେ ହେଲା, ଏହି ଲଢ଼େଇ ଯୁଗେ ଯାଏ ଚାଲିଛି ଏବଂ ଚିରକାଳ ପର୍ଯ୍ୟନ୍ତ ଚାଲିବ । ତାପରେ ହଠାତ୍ ସବୁ ବନ୍ଦ ହୋଇଗଲା । ଶତ୍ରୁମାନେ ଏଣେ ତେଣେ ଦୌଡ଼ି ପଳେଇବା ବେଳେ ସେମାନଙ୍କର ମୁଣ୍ଡର ପଛ ଭାଗ ଉଠିବା ପଡ଼ିବା ଛଡ଼ା ଆଉ କିଛି ଦେଖାଗଲା ନାହିଁ ।......ମୋ ଦେହରେ ଆଦୌ ଆଘାତ ଲାଗିଛି ବୋଲି ଜଣା ଯାଉ ନଥିଲା । ମୁଁ କିଛି ବାଟ ପାଟି କରି କରି ଦୌଡ଼ିଲି, ତାପରେ ପଛକୁ ଫେରିଲି । ମୁଁ ଅତି ବିସ୍ମିତ ହୋଇ ଯାଇଥିଲି ।

ମୁଁ ଉତ୍ତେଜିତ ହୋଇ ବିରାଟ ପାହୁଣ୍ଡ ପକେଇ ପକେଇ ସେମାନଙ୍କ ଭିତର ଦେଇ ଚାଲିଯାଇଥିଲି, ସେମାନେ ସମସ୍ତେ ମୋ ପଛରେ ପଡ଼ିଯାଇଥିଲେ, ଏବଂ ଲୁଚିବାପାଇଁ ଏଣେ ତେଣେ ଦଉଡ଼ି ପଳାଉ ଥିଲେ ।

ମୁଁ ଯେଉଁ ଭୀଷଣ ଲଢ଼େଇ ଭିତରେ ଝାମ୍ପି ପଡ଼ିଥିଲି ତାହା ଏପରି ଭାବରେ ଉଭେଇ ଗଲାରୁ ମୁଁ ଅତ୍ୟନ୍ତ ବିସ୍ମିତ ହୋଇ ପଡ଼ିଲି, ଏବଂ କମ୍ ଉଲ୍ଲସିତ ହୋଇ ନଥିଲି । ଶତ୍ରୁମାନେ ଯେ ଆଶାତୀତ ଭାବରେ ଦୁର୍ବଳ ଥିଲେ, ଏହା ଆବିଷ୍କାର କରିଛି ବୋଲି ମୋର ମନେ ହେଉ ନଥିଲା, ବରଂ ମନେ ହେଉଥିଲା ଯେ ମୁଁ ଆଶାତୀତ ଭାବରେ ବଳବାନ୍ ଅଛି ବୋଲି ଆବିଷ୍କାର କରି ପାରିଛି । ମୁଁ ବୋକାଙ୍କପରି ହସିବାକୁ ଲାଗିଲି । ଅଦ୍ଭୁତ ଏଇ ଚନ୍ଦ୍ର !

ଧବଧବ ଚଟାଣ ଉପରେ ଏଣେତେଣେ ବିକ୍ଷିପ୍ତ ହୋଇ ପଡ଼ିଥିବା ବଦଳିତ କମ୍ପିତ ଦେହଗୁଡ଼ିକଆଡ଼େ କ୍ଷଣେକ ପାଇଁ ମୁଁ ଅନାଇଲି—ପୁଣି ମାରପିଟ୍ କରିବାର ଗୋଟିଏ ଅସ୍ପଷ୍ଟ ଇଚ୍ଛା ମୋ ମନରେ ଜାଗି ଉଠିଥିଲା—ତାପରେ କେଭରର ପଛେ ପଛେ ଦ୍ରୁତ ପାଦରେ ଅଗ୍ରସର ହେଲି ।



# ୧୮

## ସୂର୍ଯ୍ୟାଲୋକରେ

କିଛିକ୍ଷଣ ପରେ ଆମେ ଦେଖି ପାରିଲୁଁ ଆମ ଆଗରେ ବଦରଟି ଗୋଟିଏ ଅନ୍ଧକାରାଚ୍ଛନ୍ନ ଶୂନ୍ୟସ୍ଥାନ ଭିତରକୁ ଖୋଲି ଯାଇଛି । ଅପର ମୁହୂର୍ତ୍ତରେ ଆମେ ଭେରଣ୍ଟ ଝୁଲବାରଣ୍ଡା ପରି ଗୋଟିଏ ସ୍ଥାନରେ ପହଞ୍ଚିଲୁଁ । ତାହା ଗୋଟିଏ ପ୍ରକାଣ୍ଡ ଗୋଲକାର ସ୍ଥାନ—ଉପର ଆଡ଼କୁ ଓ ତଳ ଆଡ଼କୁ ସଳଖ ଭାବରେ ଯାଇଥିବା ଗୋଟିଏ ବୃହତ୍ ନଳ ପରି ଖାତ—ଭିତରକୁ ଲମ୍ବି ଯାଇଥିଲା । ଏହି ଖାତ ଘେରି ପଟେ ଯାଇଥିବା ଭେରଣ୍ଟ ଝୁଲବାରଣ୍ଡାର ଗୋଟିଏ ମୋଡ଼ ଏବଂ ତାର ଅଧା ବାଟ ପର୍ଯ୍ୟନ୍ତ କୌଣସି ପାରେଷ୍ଟ କିମ୍ବା ଆଶ୍ରୟ ନ ଥିଲା, ତାପରେ ତାହା ପୁଣି ଖୁବ୍ ଉପରେ ପର୍ବତ ଭିତରକୁ ପଶି ଯାଇଥିଲା । ତାହା ଦେଖି ସେଣ୍ଟ ଗୋଥାର୍ଡ଼ ଭିତରେ ଯାଇଥିବା ମୋଡ଼ ମୋଡ଼ିକିଆ ରେଲ ଲାଇନ କଥା ମୋର ସେତେବେଳେ ମନେ ପଡ଼ିଗଲା । ସେ ସମସ୍ତ ଅତି ବିଶାଳ ଥିଲା । ସମଗ୍ର ସ୍ଥାନଟିର ବିରାଟ ଆକାର କିମ୍ବା ତାହା ଦେଖି ଆମ ମନରେ ଯେଉଁ ବିରାଟ ପ୍ରତିକ୍ରିୟା ଜାତ ହୋଇଥିଲା, ତାହା ତୁମକୁ ବୁଝେଇବା ମୋ ପକ୍ଷରେ ସମ୍ଭବପର ନୁହେଁ । ଫାଙ୍କିଆ ଖାତର ପ୍ରକାଣ୍ଡ କାନ୍ଥ କଡ଼େ କଡ଼େ ଆମର ଆଖି ବୁଲି ଆସିଲା, ଏବଂ ମୁଣ୍ଡ ଉପରେ ଅତି ଦୂରରେ ଅସ୍ପଷ୍ଟ ତାରକା ଖଚିତ ଗୋଟିଏ ଗୋଲକାର ଛିଦ୍ର ଆମେ ଦେଖି ପାରିଲୁଁ । ସେହି ଛିଦ୍ରର ବେଢ଼ାର ଅର୍ଦ୍ଧାଂଶ ସୂର୍ଯ୍ୟର ଶୁଭ୍ର ଆଲୋକରେ ଝଲସି ଯାଉଥିଲା । ତାହା ଦେଖିଲା କ୍ଷଣି ଆମ୍ଭେ ଦୁହେଁ ଏକ ସଙ୍ଗରେ ଚିତ୍କାର କରି ଉଠିଲୁଁ ।

ମୁଁ ଆଗେ ଆଗେ ବାଟ କଢ଼େଇ କେଭରକୁ କହିଲି, "ଚାଲି ଆସ !"

କେଭର କହିଲା, "କିନ୍ତୁ ସେଠି ?", ଏବଂ ଖୁବ୍ ସାବଧାନତା ସହକାରେ ସେ ଝୁଲବାରଣ୍ଡାର ଧାରର ଆଡ଼ୁର ପାଖକୁ ଘୁଞ୍ଚିଗଲା । ମୁଁ ମଧ୍ୟ ତାକୁ

ଅନୁକରଣ କଲି, ଏବଂ ବେକ ଲମ୍ବେଇ ତଳକୁ ଚାହିଁଲି, ଡ଼ିନ୍ତୁ ଉପରେ ଥିବା ସେହି ଆଲୋକର ଝଲକ ଆମର ଆଖି ଝଲସେଇ ଦେଲା । ମୁଁ କେବଳ ଗୋଟିଏ ଅତଳ ଅନ୍ଧକାର ଏବଂ ସେଥିରେ ମେଞ୍ଚା ମେଞ୍ଚା ହୋଇ ଭାସୁଥିବା ବାଇଗଣି ଓ ଲୋହିତ ବର୍ଣ୍ଣାଳୀ ଦେଖି ପାରିଲି । କିନ୍ତୁ ଦେଖି ପାରୁ ନ ଥିଲେ ମଧ୍ୟ ଶୁଣି ପାରୁଥିଲି । ଅନ୍ଧକାର ଭିତରୁ ଗୋଟିଏ ଶବ୍ଦ ଆସୁଥିଲା, ମହୁମାଛି ଘରର ବାହାରେ କାନ ଲଗେଇଲେ ଯେପରି ଶବ୍ଦ ଆସେ ସେହିପରି ଗୋଟିଏ କ୍ଷୀଣ ଗୁଣ୍ ଗୁଣ୍ ଶବ୍ଦ ଆସୁଥିଲା । ତାହା ଆସୁଥିଲା ସେହି ବିରାଟ ଗହ୍ୱର ଭିତରୁ, ଆମ ପାଦ ତଳେ ହୁଏତ ଚାରିମାଇଲ ଭିତରୁ...

ମୁହୂର୍ତ୍ତିକ ପାଇଁ ମୁଁ କାନ ଡେରି ଶୁଣିଲି, ତାପରେ ଶାବଲଟି ଜୋରରେ ମୁଠେଇ ଧରି ଝୁଲାବାରଣ୍ଡା ଉପରକୁ ବାଟ କଢ଼େଇଲି ।

କେଭିର କହିଲା, "ସେହି ଢଙ୍କୁଣୀ ତଳେ ଥିବା ଯେଉଁ ଗହ୍ୱର ଭିତରକୁ ଆମେ ଅନାଉଥିଲୁ ଏହା ସେହି ଗହ୍ୱର ହୋଇଥିବ ।"

"ଏବଂ ତଳେ ସେଇଠି ଆମେ ଆଲୁଅ ଗୁଡ଼ିଏ ଦେଖିଥିଲୁ ।"

କେଭିର କହିଲା, "ଆଲୁଅ ! ହିଁ—ସେଇ ଜଗତର ଆଲୁଅ ଯାହାକୁ ଆମେ ଆଉ କେବେ ଦେଖି ପାରିବା ନାହିଁ ।"

ମୁଁ କହିଲି, "ଆମେ ପୁଣି ଫେରି ଆସିବା," କାରଣ ଏ ପର୍ଯ୍ୟନ୍ତ ଆମେ ଏତେଦୂର ଖସି ଆସିଥିଲୁ ଯେ ମୁଁ ଅନ୍ଧ ଭାବରେ ବିଶ୍ୱାସ କରୁଥିଲି ଆମେ ନଗାଲିକଟି ଫେରି ପାଇବୁ ।

ତାର ଉତ୍ତର ମୁଁ ଶୁଣି ପାରିଲି ନାହିଁ । ପଚାରିଲି, "ଏଁ ?"

ସେ ଉତ୍ତର ଦେଲା, "ଶୁଣି କିଛି ଲାଭ ନାହିଁ ।" ଆମେ ନୀରବରେ ଦ୍ରୁତ ବେଗରେ ଚାଲିବାକୁ ଲାଗିଲୁ ।

ସେହି କଡ଼େକଡ଼େ ଯାଇଥିବା ଚେରୁଛା ରାସ୍ତା ବୋଧହୁଏ ମୋଡ଼କୁ ହିସାବ କରି ପାଞ୍ଚ କି ଛ ମାଇଲ ଲମ୍ବା ଥିଲା, ଏବଂ ତାହା ଏପରି ଭଙ୍ଗୀ ଭାବରେ ଉପରକୁ ଉଠିଥିଲା ଯେ ପୃଥିବୀରେ ତାହା ଲଙ୍ଘନ କରିବା ପ୍ରାୟ ଅସାଧ୍ୟ ହୋଇ ପଡ଼ିଆନ୍ତା. କିନ୍ତୁ ଚନ୍ଦ୍ରୀୟ ଅବସ୍ଥା ଯୋଗୁଁ ତାହା ଅତି ସହଜରେ ଆରୋହଣ କରି ହେଉଥିଲା । ଆମର ପଳାୟନର ସେହି ପର୍ବରେ

ଆମେ ମାତ୍ର ଦୁଇଜଣ ଗ୍ରହ୍ରକଙ୍କୁ ଦେଖିଲୁ, ଏବଂ ସେମାନେ ଆମର ଅସ୍ତିତ୍ୱ ଲକ୍ଷ୍ୟ କଲା କ୍ଷଣି ନାକସିଧା ଦୌଡ଼ି ପଳେଇଲେ । ସ୍ପଷ୍ଟ ବୁଝାଗଲା, ଆମର ଶକ୍ତି ଓ ଧ୍ୱଂସାତ୍ମକ କାଣ୍ଡର ଖବର ସେମାନେ ଜାଣି ପାରିଛନ୍ତି । ବାହ୍ୟାଂଶକୁ ଆମର ରାସ୍ତା ଆଶାତୀତ ଭାବରେ ସମତଳ ହୋଇ ଯାଇଥିଲା । ମୋଡ଼ି ମୋଡ଼ିକଆ ଟନେଲବାରଣ୍ଡାଟି ସିଧା ହୋଇଯାଇ ତୁଙ୍ଗ ଭାବରେ ଉପରକୁ ଉଠିଥିବା ଗୋଟିଏ ବିବର ଭିତରକୁ ପ୍ରବେଶ କରିଥିଲା । ସେହି ବିବରର ଚଟାଣରେ ଗ୍ରହ୍ରଗୋରୁଙ୍କ ଖୋଜର ଅନେକ ଚିହ୍ନ ରହିଥିଲା । ତାହାର ସୁବୃହତ୍ତ୍ୱ ଶିଖଣର ଅନୁପାତରେ ବିବରଟି ଏପରି ସରଳ ଓ ଅଳ୍ପଦୂରତ୍ୱ ବିଶିଷ୍ଟ ଥିଲା ଯେ ତାହାର କୌଣସି ଅଂଶ ସମ୍ପୂର୍ଣ୍ଣ ଅନ୍ଧକାରମୟ ହୋଇ-ନଥିଲା । ପ୍ରାୟ ସଙ୍ଗେ ସଙ୍ଗେ ତାହା ଆଲୋକିତ ହେବାକୁ ଆରମ୍ଭ କଲା, ଏବଂ ତା ପରେ ଅନେକ ଦୂରରେ ଓ ଅନେକ ଉଚ୍ଚରେ ଅତ୍ୟୁଜ୍ଜ୍ୱଳ ଆଲୋକ ଦ୍ୱାରା ଉଦ୍ଭାସିତ ହୋଇ ବାହାରକୁ ଫିଟିଥିବା ତାହାର ମୁଖ ଦେଖାଗଲା । ସେହି ମୁଖ ଆଲ୍ପସ୍ ପର୍ବତ ପରି ତୁଙ୍ଗ ଭାବରେ ଉପରକୁ ଉଠିଥିଲା, ଏବଂ ତାର ଶୀର୍ଷଦେଶରେ ସଙ୍ଗୀନ ଗୁଳ୍ମ ବୃଦାର ଗୋଟିଏ ଚୂଡ଼ା ଶୋଭା ପାଉଥିଲା । ସେହି ବୃଦା ବର୍ତ୍ତମାନ ଖୁବ୍ ଢେଙ୍ଗା ହୋଇ ଭାଙ୍ଗି ପଡ଼ିଥିଲା, ଶୁଷ୍କ ଓ ମୃତ ହୋଇ ଯାଇଥିଲା ଏବଂ ସୂର୍ଯ୍ୟର ପ୍ରଚ୍ଛଦପଟରେ କଣ୍ଟକମୟ କୃଷ୍ଣଗୁଚ୍ଛ ପରି ଦିଶୁଥିଲା ।

ଅଦ୍ଭୁତ କଥା, ଯେଉଁ ଉଦ୍ଭିଦ କାଳ୍ପ ସମସ୍ତ ପ୍ରବରୁ ଆମକୁ ଏତେ ଭୟଙ୍କର ଓ ପୈଶାଚିକ ମନେ ହୋଇଥିଲା, ବର୍ତ୍ତମାନ ସେହି ଉଦ୍ଭିଦକୁ ଦେଖି ଆମେ ଦୁଇଟି ମନୁଷ୍ୟ ଗୃହବାହୁତା ନିର୍ବାସିତ ବ୍ୟକ୍ତି ସ୍ୱଦେଶର ମାଟି ଦର୍ଶନ ମାତ୍ରକେ ଯେପରି ଆବେଗ ଅନୁଭବ କରେ ସେହିପରି ଆବେଗ ଅନୁଭବ କଲୁ ! ଏପରିକି ଆମେ ବାୟୁର ସ୍ୱଳ୍ପତାକୁ ମଧ୍ୟ ସ୍ୱାଗତ କଲୁ, ଯଦିଚ ତାହା ଆମେ ଦୌଡ଼ିଲା ବେଳେ ଆମକୁ ଅଣନିଃଶ୍ୱାସୀ କରି ଦେଉଥିଲା, ଏବଂ ତାହା ଯୋଗୁଁ କଥା କହିବା ଆଉ ଆଗପରି ସହଜ ମନେ ହେଉ ନଥିଲା ବରଂ ଅନ୍ୟକୁ ଶୁଣେଇବା ପାଇଁ ଯଥେଷ୍ଟମତ ପରିଶ୍ରମ କରିବାକୁ ପଡୁଥିଲା । ଆମ ଉପରେ ଥିବା ସୂର୍ଯ୍ୟାଲୋକିତ ଗୋଲାକାର ଫାଙ୍କଟି କ୍ରମେ

କ୍ରମେ ବଡ଼ ହୋଇ ଉଠିଲା, ଏବଂ ସୁଡଙ୍ଗର ନିକଟତର ଅଂଶଗୁଡ଼ିକ ଗୋଟିଏ ଅବିଚ୍ଛେଦ୍ୟ କାଳିମାମୟ ପରିସୀମାରେ ପରିଣତ ହେଲା । ମୃତ ସଙ୍ଗୀନ—ବୁଦାଟି ଆମ ଆଖିରେ ଆଉ ସବୁଜ-ଚିହ୍ନିତ ମନେ ହେଲାନାହିଁ, ବରଂ ମାଟିଆ, ଶୁଖିଲା ଓ ମୋଟା ମନେହେଲା । ଦୃଷ୍ଟିସୀମାର ବାହାରେ ଅତି ଉଚ୍ଚରେ ଥିବା ତାହାର ଶାଖାଗୁଡ଼ିକର ଗୁମ୍ଫା ଭୂଷୁଡ଼ି ପଡ଼ିଥିବା ପାହାଡ଼ ଉପରେ ପ୍ରତିଫଳିତ ହୋଇ ଗୋଟିଏ ନିବର୍ଣ୍ଣ-ଛନ୍ଦିତ ନକ୍ସା ଆଙ୍କି ଦେଇ-ଥିଲା । ସୁଡଙ୍ଗର ଠିକ୍ ମୁହଁରେ ଗୋଟିଏ ବିସ୍ତୀର୍ଣ୍ଣ ପଦଦଳିତ ଚତ୍ୱର ଥିଲା—ସେଇ ବାଟ ଦେଇ ଗୁନ୍ଦ୍ରିବୋକୁମାନେ ଯା ଆସ କରିଥିଲେ ।

ଶେଷରେ ଆମେ ଯେତେବେଳେ ସେହି ଚତ୍ୱର ଉପରକୁ ବାହାରି ଆସିଲୁଁ ତୀକ୍ଷ୍ଣ ଆଲୋକ ଓ ଉତ୍ତାପ ଆମ ଉପରେ ଅକାଣ୍ଡ ହୋଇ ଆମକୁ ଚାପିଦେଲା । ଅତି କଷ୍ଟରେ ଆମେ ସେହି ଖୋଲାସ୍ଥାନଟି ପାର ହେଲୁଁ ଏବଂ ଏଇ କଣ୍ଟାଡାଳ ଭିତର ଦେଇ ଗୋଟିଏ ଉଠାଣି ଉପରକୁ ଉଠିଲୁଁ । ଶେଷରେ ଗୋଟିଏ ଜମାଟ ଆକୁଞ୍ଚିତ ଲମ୍ବଖଣ୍ଡର ଛାଇ ତଳେ ଉଚ୍ଚସ୍ଥାନରେ ବସି ଆମେ ଦମ୍ ନେବାକୁ ଲାଗିଲୁଁ । ସେଇ ଛାଇ ତଳେ ମଧ୍ୟ ପଥର ଗରମ ଲାଗୁଥିଲା ।

ବାୟୁ ଅତ୍ୟନ୍ତ ଗରମ ଥିଲା, ଏବଂ ଆମେ ବିଶେଷ ଶାରୀରିକ କଷ୍ଟ, ଅନୁଭବ କରୁଥିଲୁଁ । କିନ୍ତୁ ଏ ସମସ୍ତ ସତ୍ତ୍ୱେ ଆମେ ଆଉ ଦୁଃସ୍ୱପ୍ନରେ ଥିଲାପରି ବୋଧ କରୁ ନଥିଲୁଁ । ନକ୍ଷତ୍ର ତଳେ ଆମର ନିଜର ଅଞ୍ଚଳକୁ ଫେରିଆସିଲା ପରି ଆମକୁ ଲାଗୁଥିଲା । ତଳେଥିବା ଅନ୍ଧାରୁଆ ସୁଡଙ୍ଗ ଓ ଫାଟ ଭିତର ଦେଇ ପଳାଇ ଆସିବା ବେଳର ସମସ୍ତ ଭୟ ଓ କ୍ଳାନ୍ତି ଆମଠୁ ଛାଡ଼ି ଯାଇଥିଲା । ଗୃନ୍ଦ୍ରକମାନଙ୍କ ସମ୍ବନ୍ଧରେ ଦେଖିଲେ, ଶେଷ ଲଢେଇଟି ଆମ ମନରେ ଆମ ଶକ୍ତି ଉପରେ ଗଭୀର 'ପ୍ରତ୍ୟୟ ଜନ୍ମାଇ ଦେଇଥିଲା । ଯେଉଁ ଅନ୍ଧକାରାଚ୍ଛନ୍ନ ଗିରିମୁଖ ଭିତରୁ ଆମେ ଅଳ୍ପକ୍ଷଣ ପୂର୍ବରୁ ବାହାରି ଆସିଥିଲୁଁ ତାକୁ ବର୍ତ୍ତମାନ ଆମେ ପ୍ରାୟ ବିଶ୍ୱାସହୀନ ଭାବରେ ଚାହିଁ ଦେଖିଲୁଁ । ତାହାରି ଭିତରେ ଖୁବ ତଳେ ଗୋଟିଏ ନୀଳ ଆଲୋକରେ—ସେଇ ଆଲୋକ ଆମର ମନଶ୍ଚକ୍ଷୁରେ ବର୍ତ୍ତମାନ ପ୍ରାୟ ସମ୍ପୂର୍ଣ୍ଣ ଅନ୍ଧକାର

ଘର ମନେ ହେଉଥିଲା—ଆମେ ଯେଉଁ ଶିଳ୍ପାଣ-ପିଣ୍ଡା ଜୀବ ଗୁଡ଼ିକୁ ଦେଖିଥିଲୁ ସେମାନେ ମନୁଷ୍ୟର ବିକଟ ବ୍ୟଙ୍ଗଚିତ୍ର ପରି ଦେଖାଯାଉଥିଲେ, ଏବଂ ସେହିମାନଙ୍କ ସମକ୍ଷରେ ଆମେ ଡ଼ରି ଡରି ଯାଉଥିଲୁ ଓ ସେ ପର୍ଯ୍ୟନ୍ତ ବଶତା ସ୍ୱୀକାର କରୁଥିଲୁ ଯେ ପର୍ଯ୍ୟନ୍ତକ ଆଉ ବଶତା ସ୍ୱୀକାର କରିବା ସମ୍ଭବ ହେଲାନାହିଁ । ଏବଂ ତାପରେ ଦେଖ ! ଗୁଡ଼ିଏ ଗୁଡ଼ିଏ ସେମାନେ ମଂସମ ପରି ଚୂରମାର ହୋଇଗଲେ, ଚକ୍ଷୁ ପରି ଗୁଣ୍ଡ ହୋଇ ଗୁରିଆଡ଼େ ବିକ୍ଷିପ୍ତ ହୋଇଗଲେ, ଏବଂ ସ୍ୱପ୍ନର ଛାୟା ପରି ପଳେଇ ଯାଇ ହଜିଗଲେ !

ଆମେ ଯେଉଁ ଛତୁ ଖାଇଥିଲୁ ତାହା ଯୋଗୁଁ ତନ୍ଦ୍ରାଛନ୍ନ ହୋଇ ଏ ସବୁ ସ୍ୱପ୍ନ ଦେଖିଛୁ ବୋଲି ସନ୍ଦେହ କରି ମୁଁ ମୋର ଆଖି ମଳିବାକୁ ଲାଗିଲି, ଏବଂ ହଠାତ୍ ମୋ ମୁହଁରେ ରକ୍ତ ଲାଗିଥିବା କଥା ଆବିଷ୍କାର କଲି । ତାପରେ ଅନୁଭବ କଲି ମୋର କାମିଜ, କାନ୍ଧ ଓ ହାତରେ ଲାଗି-ଯାଇ ଦରଜ ହରୁଛି ।

ମୋର ଆଘାତର ଗୁରୁତ୍ୱ ହାତରେ ପରୀକ୍ଷା କରି ମୁଁ କହିଲି, "ଧେତ୍ ତେରିକା !" ତାପରେ ହଠାତ୍ ଦୂରସ୍ଥ ସୁଡ଼ଙ୍ଗ-ମୁଖ ଆମର ଗତିବିଧି ଲକ୍ଷ୍ୟ କରୁଥିବା ପ୍ରହରୀର ଆଖିପରି ମତେ ଦିଶିଲା ।

ମୁଁ କହିଲି, "କେଭର ! ସେମାନେ ବର୍ତ୍ତମାନ କଣ କରିବେ ? ଆଉ, ଆମେ ବର୍ତ୍ତମାନ କଣ କରିବା ?"

ସୁଡ଼ଙ୍ଗ ଉପରେ ତାର ଦୃଷ୍ଟି ନିବଦ୍ଧ କରି ସେ ତାର ମୁଣ୍ଡ ହଲାଇଲା । କହିଲା, "ସେମାନେ କଣ କରିବେ ତା' କେମିତି କହି ହେବ ?"

ମୁଁ କହିଲି, "ସେମାନେ ଆମ ବିଷୟରେ କଣ ଭାବୁଛନ୍ତି, ତାହାରି ଉପରେ ଏହା ନିର୍ଭର କରେ, ଏବଂ ମୁଁ ବୁଝିପାରୁନାହିଁ ଆମେ କିପରି ଭାବରେ ଏହା ଅନ୍ଦାଜ କରିପାରିବା ! ସେମାନଙ୍କର ଆଉ କି କି ସାଜ ସରଞ୍ଜାମ ସଞ୍ଚିତ ଅଛି ତାହାରି ଉପରେ ମଧ୍ୟ ଏହା ନିର୍ଭର କରେ । ତୁମେ ଯେପରି କହୁଥିଲ, କେଭର, ଆମେ କେବଳ ଏହି ଜଗତର ବାହ୍ୟତମ ଅଂଶକୁ ସ୍ପର୍ଶ କରି ପାରିଛୁ । ଭିତରେ ସେଠି ଅନେକ ରକମର ଜିନିଷ

ଥାଇପାରେ । ଏପରିକି ସେହି ଧନୁଶର ଦ୍ୱାରା ମଧ୍ୟ ସେମାନେ ଆମର ଅବସ୍ଥା ଶୋଚନୀୟ କରି ଦେଇ ପାରନ୍ତି.....

ମୁଁ କହି ଚାଲିଲି, "କିନ୍ତୁ ଯାହାହେଉ, ଆମେ ଗୋଲକଟି ସାଙ୍ଗେ ସାଙ୍ଗେ ନ ପାଇ ପାରିଲେ ମଧ୍ୟ, ଆମର ରକ୍ଷା ପାଇବାର ଆଶା ଅଛି । ଆମେ ହୁଏତ ପ୍ରତିରୋଧ ଚଳେଇ ପାରିବା, ହୁଏତ ସମସ୍ତ ରାତି । ଆମେ ହୁଏତ ଜଳକୁ ପୁଣି ଫେରିଯାଇ ପାରୁ ପର୍ଯ୍ୟନ୍ତେ ଲଢ଼େଇ କରି ଦେଖିବା ।"

ମୁଁ ଅନୁସନ୍ଧାନୀ ଚକ୍ଷୁରେ ମୋର ଚାରିଆଡ଼େ ଅନାଇଲି । କଣ୍ଟାବୁଦା ଗୁଡ଼ିକର ବିଶାଳ ବୃଦ୍ଧି ଓ ଅନୁବର୍ତ୍ତୀ ଶୁଷ୍କତା ପ୍ରାପ୍ତି ଯୋଗୁଁ ଚାରିଆଡ଼ର ଦୃଶ୍ୟ ସମ୍ପୂର୍ଣ୍ଣ ବଦଳି ଯାଇଥିଲା । ଆମେ ଯେଉଁ ଚୂଡ଼ା ଉପରେ ବସିଥିଲୁଁ ତାହା ଖୁବ୍ ଉଚ୍ଚରେ ଥିଲା, ତେଣୁ ଆଗ୍ନେୟଗିରି ଗହ୍ୱରର ବିସ୍ତାରିତ ଦୃଶ୍ୟ ସେଠାରୁ ଦେଖା ଯାଉଥିଲା । ବର୍ତ୍ତମାନ ବୃଦ୍ଧସ୍ଥ ଅପରାହ୍ଣର ଚରମକାଳରେ ସେହି ଦୃଶ୍ୟ ଶୁଷ୍କ ଓ ଦଗ୍ଧୀଭୂତ ଦେଖାଯାଉଥିଲା । ଗୋଟିଏ ପଛରେ ଗୋଟିଏ ନମୋଚ ଭୂମିଗୁଡ଼ିକ ମୁଣ୍ଡ ଟେକିଥିଲେ ଏବଂ ଚନ୍ଦ୍ର ଗୋରୁମାନେ ଚରିଥିବା ବଦଳିତ ମାଟିଆ ବର୍ଣ୍ଣର ପଡ଼ିଆଗୁଡ଼ିକ ଲମ୍ବି ଯାଇଥିଲେ । ଅନେକ ଦୂରରେ ସୂର୍ଯ୍ୟର ପୂର୍ଣ୍ଣ ତାପରେ ଗଲେ ଚନ୍ଦ୍ର ଗୋରୁ ନିଦ୍ରିତ ଭାବରେ ଖରା ପୁହାଁଉଥିଲେ । ସେମାନେ ଏଣେ ତେଣେ ଖେଳେଇ ହୋଇ ଯାଇଥିଲେ ଏବଂ ଗଡ଼ାଣିଆ ଚାରଣଭୂମି କଡ଼ରେ ମେଣ୍ଢାଙ୍କ ପରି ପ୍ରତ୍ୟେକଙ୍କ ପାର୍ଶ୍ୱରେ ଲମ୍ବା ଲମ୍ବା ଛାଇ ପଡ଼ିଥିଲା । କିନ୍ତୁ କୌଣସି ଚନ୍ଦ୍ରକର ଚିହ୍ନ ଆଦୌ ଦେଖାଯାଉ ନ ଥିଲା । ସୁଡ଼ଙ୍ଗ ଭିତରୁ ଆମର ବାହାରିବା ସଙ୍ଗେ ସଙ୍ଗେ ସେମାନେ ପଳାଇ ଯାଇଥିଲେ, କି ଚନ୍ଦ୍ର ଗୋରୁ ମାନଙ୍କୁ ବାହାରକୁ ଆଡ଼େଇ ନେବା ପରେ ଚାଲିଯିବା ସେମାନଙ୍କର ଅଭ୍ୟାସ ଥିଲା, ଏହା ମୁଁ କହିପାରୁ ନାହିଁ । ସେହି ସମୟରେ ମୁଁ ଭାବିଥିଲି ଯେ ପ୍ରଥମ କଥାଟି ସତ୍ୟ ।

ମୁଁ କହିଲି, "ଆମେ ଯଦି ଏ ସବୁରେ ନିଆଁ ଲଗେଇ ଦେବା, ତେବେ ବୋଧହୁଏ ପାଉଁଶ ଭିତରେ ଗୋଲକଟି ପାଇପାରିବା ।"

କେଭର ବୋଧହୁଏ ମୋ କଥା ଶୁଣି ପାରିଲା ନାହିଁ । ସେ ତାର ପାପୁଲି ଆଢ଼ୁଆଳରେ ତାରାମାନଙ୍କୁ ଦେଖୁଥିଲା । ପ୍ରଖର ସୂର୍ଯ୍ୟ କିରଣ ସତ୍ତ୍ୱେ

ତାରା ଗୁଡ଼ିକ ପରିଷ୍କାର ଭାବରେ ଆକାଶରେ ଦେଖାଯାଉଥିଲେ । ଶେଷରେ ସେ ପଚାରିଲା, "ଆମେ ଏଠାରେ କେତେଦିନ ହେଲା ରହିଲୁଣି ବୋଲି ତୁମେ ଭାବୁଛ ?"

"କେଉଁଠାରେ ?"

"ଚନ୍ଦ୍ରରେ ।"

"ଦୁଇଟି ପାର୍ଥିବ ଦିନ, ବୋଧହୁଏ ।"

"ନା, ପ୍ରାୟ ଦଶଦିନ ହେବା ସମ୍ଭବ । ଜାଣିଛ କି, ସୂର୍ଯ୍ୟ ମଧ୍ୟାକାଶରୁ ଘୁଞ୍ଚିଯାଇ ପଶ୍ଚିମ ଦିଗକୁ ଚାଲିପଡ଼ୁଛି । ପ୍ରାୟ ଚାରିଦିନ କି ତାଠୁଁ କମ ସମୟରେ ଗତ ହୋଇଯିବ ।"

"କିନ୍ତୁ—ଆମେ ତ ଜମା ଥରେ ଖାଇଛୁ !"

"ମୁଁ ସେ କଥା ଜାଣେ, ଆଉ—କିନ୍ତୁ ଦେଖ ତାରାଗୁଡ଼ିକ ଦିଶୁଛନ୍ତି !"

"କିନ୍ତୁ ଆମେ ଗୋଟିଏ କ୍ଷୁଦ୍ରତର ଗ୍ରହରେ ଅଛୁଁ ବୋଲି ସମୟ କାହିଁକି ଅନ୍ୟ ରକମ ଜଣା ପଡ଼ିବ ?"

"କେଜାଣି । କିନ୍ତୁ ଜଣା ତ ପଡ଼ୁଛି !"

"ସମୟ କିପରି କୁହାଯାଏ ?"

"ଭୋକ—କ୍ଳାନ୍ତି—ଏସବୁ ଜିନିଷ ଏଠି ଅନ୍ୟ ରକମ । ଏଠି ସବୁ ଅନ୍ୟରକମ—ସବୁ । ମତେ ଜଣାପଡ଼ୁଛି, ଆମେ ପ୍ରଥମେ ଗୋଲକରୁ ବାହାରି ଆସିବାବେଳଠାରୁ କେଇ ଘଣ୍ଟା ମାତ୍ର ଯାଇଛି—ଅତି ବେଶୀ ହେଲେ ଲମ୍ବା ଲମ୍ବା କେଇ ଘଣ୍ଟା ।"

ମୁଁ କହିଲି, "ଦଶ ଦିନ, ତାହାହେଲେ ବାକି ରହିଲା—" ମୁଁ କ୍ଷଣକ ପାଇଁ ସୂର୍ଯ୍ୟଆଡ଼େ ଚାହିଁଲି, ଏବଂ ତାପରେ ଦେଖିଲି ତାହା ମଧ୍ୟ ଆକାଶ ଓ ପଶ୍ଚିମ-ସୀମାରେ ଠିକ୍ ମଝିରେ ଅଛି । "ଆଉ ଚାରିଦିନ !...... କେଭର, ଆମେ ଏଠି ବସି ସ୍ୱପ୍ନ ଦେଖିଲେ ଚଳିବ ନାହିଁ । ଆମେ କିପରି ଆରମ୍ଭ କରିବା ବୋଲି ତୁମେ ଭାବୁଛ ?"

ମୁଁ ଛିଡ଼ା ହୋଇପଡ଼ିଲି । କହିଲି, "ଆମେ ଚିହ୍ନିପାରିବା ଭଳି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ଠିକ୍ କରିବା—ଆମେ ତାଉପରେ ଗୋଟିଏ ପତାକା

ରୁମାଲ କ ଅନ୍ୟ କିଛି ଫାଙ୍ଗି ଦେବା—ତାପରେ ସେଇ ସ୍ଥାନରୁ ଆରମ୍ଭକରି ବୃତ୍ତାକାରରେ ଗୃହଦଗରେ ଖୋଜ ଚାଲିବା ।”

ସେ ମୋପାଖେ ଆସି ଛିଡ଼ାହେଲେ । କହିଲେ, “ହଁ, ଗୋଟିଏ ଖୋଜି-ଚାଲିବା ଛଡ଼ା ଆଉ ଅନ୍ୟ ଉପାୟ ନାହିଁ । ଆଉ କରିବା ପାଇଁ କିଛି ନାହିଁ । ଆମେ ହୁଏତ ତାହା ପାଇପାରିବା—ହୁଏତ ନିଶ୍ଚୟ ପାଇବା, ଯଦି ନ ଯାଉ—”

“ଖୋଜିବା ବନ୍ଦ କରିବା ନାହିଁ ।”

ସେ ଏଣେ ତେଣେ ଚାହିଁଲେ, ଆକାଶ ଉପରକୁ ଓ ସୁଡ଼ଙ୍ଗ ଭିତରକୁ ଚାହିଁଲେ, ତାପରେ ହଠାତ୍ ଏପରି ଅଧୀର ହୋଇପଡ଼ିଲେ ଯେ ମୁଁ ଅବାକ୍ ହୋଇଗଲି । ସେ କହିଲେ, “ଓଃ ! ଆମେ କେତେ ବୋକାଙ୍କ ପରି କାମ କରିଛୁ । ଶେଷରେ କଣ ନା ଏଇ ଅବସ୍ଥାକୁ ଆସିଲୁ ! କଣ ହୋଇପାରି ଥାନ୍ତା, କଣ ଆମେ କରିପାରି ଥାନ୍ତୁ ସେ କଥା ଭାବି ଦେଖ !”

“ବର୍ତ୍ତମାନ ବି ଆମେ କିଛି କରିପାରିବା ।”

“କିନ୍ତୁ ଯାହାକରି ପାରିଥାନ୍ତୁ ତାହା ଆଉ ପାରିବା ନାହିଁ । ଏଇଠି ଆମ ପାଦ ତଳେ ଗୋଟିଏ ଦୁନିଆଁ ଅଛି । ସେଇ ଦୁନିଆଁ କଣ ହୋଇଥିବ ଥରେ ଭାବି ଦେଖ ! ଆମେ ଯେଉଁ ଯନ୍ତ୍ରଟି ଦେଖିଲୁ, ଏବଂ ସେଇ ଚାଙ୍ଗୁଣୀ ଓ ଗହ୍ୱର, ସେସବୁ କଥା ଭାବି ଦେଖ ! ସେଗୁଡ଼ିକ ଦୂରସ୍ଥ,ବାହ୍ୟସ୍ଥ ଜିନିଷ, ଏବଂ ଯେଉଁ ଜୀବଗୁଡ଼ିକୁ ଆମେ ଦେଖିଲୁ ଓ ଯାହାଙ୍କ ସାଙ୍ଗେ ଯୁଦ୍ଧ କଲୁ ସେମାନେ କେବଳ ମୂର୍ଖ ଚାଷୀ, ସୀମାନ୍ତ ଅଞ୍ଚଳର ଅଧିବାସୀ, ପ୍ରାୟ ବର୍ବରଙ୍କ ସଙ୍ଗେ ସମାନ ଗାଉଁଲୀଲୋକ ଓ ଶ୍ରମିକ । ଆହୁରି ଭିତରେ ! ଗହ୍ୱର ତଳେ ଗହ୍ୱର, ସୁଡ଼ଙ୍ଗ, ଇମାରତ, ବର୍ତ୍ତି......ଯେତେ ତଳକୁ ଓହ୍ଲାଇ ଯାଉଥିବ ଏହା ଆହୁରି ଆହୁରି ମେଳ ହୋଇଯାଉଥିବ, ଚଉଡ଼ା ହୋଇ ଯାଉଥିବ, ବଡ଼ ହୋଇ ଯାଉଥିବ ଓ ଲୋକଗହଳି ହୋଇ ଯାଉଥିବ । ନିଶ୍ଚୟ । ଶେଷରେ ଚନ୍ଦ୍ରର ଅନ୍ତରତମ ପ୍ରଦେଶର ଚତୁଃସୀମାକୁ ବଧୌତ କରୁଥିବା କେନ୍ଦ୍ରସ୍ଥଳର ସମୁଦ୍ରରେ ପହଞ୍ଚିବ । କ୍ଷୀଣ ଆଲୋକରେ—ଯଦି

ପ୍ରକୃତରେ ସେମାନଙ୍କର ଚକ୍ଷୁ ଆଲୋକ ଦରକାର କରୁଥାଏ—ସେହି ସମୁଦ୍ରର କୃଷ୍ଣଜଳ କଥା ଭାବ ଦେଖ ! ତାହାକୁ ଜଳ ଯୋଗେଇବା ପାଇଁ ପ୍ରଣାଳୀ ଭିତରେ ଅଜାଡ଼ି ହୋଇ ବହିଯାଉଥିବା ନିର୍ଝରଣୀଗୁଡ଼ିକ କଥା ଭାବ ଦେଖ ! ତାହାର ବକ୍ଷ ଉପରେ ଜୁଆର ଓ ଜଳର ହ୍ରାସ ବୃଦ୍ଧି ଜନିତ ପ୍ରବାହ ଓ ଆବର୍ତ୍ତ କଥା ଭାବ ଦେଖ ! ବୋଧହୁଏ ସେହି ସମୁଦ୍ର ଉପରେ ଯିବାପାଇଁ ସେମାନଙ୍କର ଜାହାଜ ଅଛି—ବୋଧହୁଏ ଭିତରେ ସେଠି ପ୍ରକାଣ୍ଡ ପ୍ରକାଣ୍ଡ ସହର ଓ ଜନାକୀର୍ଣ୍ଣ ରାସ୍ତା ଅଛି, ଏବଂ ମନୁଷ୍ୟର କଳ୍ପନାତୀତ ନିୟମ ଓ ଶୃଙ୍ଖଳା ଅଛି । ଆମେ ହୁଏତ ଉପରେ ଏଠି ମରିଯିବା, ଅଥଚ ଏସବୁ ଜନଗଣ ଉପରେ ଶାସନ କରୁଥିବା କର୍ତ୍ତାମାନଙ୍କୁ କେବେ ଦେଖି ପାରିବା ନାହିଁ । ହୁଏତ ଆମେ ବରଫ ପାଲଟିମରିଯିବା ଏବଂ ବାୟୁ ଆମର ଉପରେ ବରଫରୂପେ ଜମିଯାଇ ପୁଣି ତରଳିଯିବ, ଏବଂ ତାପରେ······! ତାପରେ ସେମାନେ ଆମକୁ ଦେଖି ପାରିବେ, ଆମର ନୀରବ ନିଶ୍ଚଳ ଦେହ ପାଖରେ ପହଞ୍ଚିବେ, ଏବଂ ଆମେ ଯେଉଁ ଗୋଲକଟି ଖୋଜି ପାଉନାହୁଁ ତାକୁ ପାଇ-ପାରିବେ । ତାପରେ ସେମାନେ ଶେଷରେ ଅତି ବିଳମ୍ବରେ ବୁଝିପାରିବେ କେତେ ଚିନ୍ତା ଓ ପରିଶ୍ରମ ଏଠି ନିଷ୍ଫଳ ଭାବରେ ବିଲୀନ ହୋଇଛି ।”

ଏଡ଼େ ବଡ଼ ବକ୍ତୃତା ସତ୍ତ୍ୱେ ତାର ସ୍ୱର ଅତି କ୍ଷୀଣ ଓ ଦୂରରୁ ଆସୁଥିଲାପରି ଶୁଭୁଥିଲା, ଟେଲିଫୋନ୍‌ରେ ଯେପରି ଶୁଭେ ।

ମୁଁ କହିଲି, “କିନ୍ତୁ ଅନ୍ଧକାର ?”

“ତାକୁ ଜୟକରି ଯାଇପାରେ ।”

“କିପରି ?”

“ମୁଁ ଜାଣେନା । କେମିତି ଜାଣିବ ? ହୁଏତ ମଶାଲ ନିଆଯାଇପାରେ ବତୀ ନିଆଯାଇପାରେ—ସେମାନେ ହୁଏତ ବୁଝିପାରିବେ ।”

ସେ ତାର ହାତ ତଳକୁ ଝୁଲେଇ ହତାଶହୋଇ ତାକୁ ପରାଭୂତ କରିଥିବା କାନ୍ଥାର ଆଡ଼େ ବିଷଣ୍ଣ ଭାବରେ କ୍ଷଣକାଳ ଅନେଇ ରହିଲା । ତାପରେ ଭାଗ୍ୟହାତରେ ନିଜକୁ ସମର୍ପଣ କଲାପରିଭଙ୍ଗୀ କରି, ଗୋଲକଟି ବାଧ୍ୟବାଧ୍ୟ ଭାବରେ ଖୋଜିବାର ପ୍ରସ୍ତାବ ନେଇ ମୋଆଡ଼କୁ ମୁହଁ ଫେରାଇଲା ।

ମୁଁ କହିଲି, ଆମେ ଫେରିଆସି ପାରିବା ।"

ସେ ତାର ସ୍ବରପଟେ ଗ୍ଭହିଁଲା । କହିଲା, "ପ୍ରଥମେ ଆମକୁ ପୃଥିବୀରେ ପହଞ୍ଚିବାକୁ ହେବ ।"

"ଆମେ ହାତୁରେ ନେବାପାଇଁ ବସ୍ତା, ଚଢ଼ିବା ପାଇଁ କଣ୍ଟାଲଗା ଜୋତା, ଅନ୍ୟାନ୍ୟ ଜିନିଷ ସାଙ୍ଗରେ ନେଇ ଫେରିବା ।"

ସେ କହିଲା, "ହଁ" ।

"ଏହା କୃତକାର୍ଯ୍ୟ କରିବା ବାଟରେ ଖର୍ଚ୍ଚ ଯୋଗେଇବା ପାଇଁ ଆମେ ଏଇ ସୁନା ନେଇଯିବା ।"

ସେ ମୋର ସୁନା ଶାବଳ ଆଡ଼େ ଗ୍ଭହିଁଲା ଏବଂ କିଛି ସମୟ ଲାଗି କୌଣସି କଥା କହିଲା ନାହିଁ । ସେ ତାର ହାତ ଦୁଇଟି ପିଠି ପଛପଟେ ଛନ୍ଦି ଛୁଡ଼ାହୋଇ ଆଗ୍ନେୟଗିରି ଗହ୍ବରର ସେପଟକୁ ଗ୍ଭହିଁ ରହିଲା । ଶେଷରେ ଦୀର୍ଘ ନିଃଶ୍ୱାସ ଗ୍ଭଡ଼ି ସେ କହିଲା, "ଚନ୍ଦ୍ରକୁ ପଥ ଆବିଷ୍କାର କରିଛ ମୁଁ, କିନ୍ତୁ ପଥ ଆବିଷ୍କାର କଲେ ଯେ ପଥରକର୍ତ୍ତା ହେବ ତାହା ନୁହେଁ । ମୁଁ ଯଦି ମୋର ଗୋପନ ଜ୍ଞାନଟି ପୃଥିବୀକୁ ପେନଯାଏ, ତାହାହେଲେ କଣ ଘଟିବ ? ମୁଁ ବୁଝି ପାରୁନାହିଁ, ଉପର ମୁଁ ତାକୁ ବର୍ଷେ ପର୍ଯ୍ୟନ୍ତ କମ୍ବା ବର୍ଷକର ଭାଗେ ପର୍ଯ୍ୟନ୍ତ ଲୁଚେଇ ରଖିପାରିବ । ନିକଟରେ କମ୍ବା ଡେରିରେ ତାହା ନିଶ୍ଚୟ ପଦାକୁ ଫିଟି ପଡ଼ିବ । ଯଦବା ଅନ୍ୟ ଲୋକମାନେ ତାକୁ ପୁନର୍ବିଷ୍କାର କରିବେ । ଏବଂ ତାପରେ······ବିଭିନ୍ନ ଶକ୍ତି ଓ ସରକାର ଏଠାକୁ ଆସିବା ପାଇଁ ପ୍ରାଣପଣେ ଚେଷ୍ଟା କରିବେ, ନିଜ ନିଜ ଭିତରେ ଏବଂ ଚନ୍ଦ୍ରର ଲୋକମାନଙ୍କ ବିରୁଦ୍ଧରେ ଲଢ଼େଇ କରିବେ; ଏହା କେବଳ ଗ୍ଭରିଆଡ଼େ ଯୁଦ୍ଧ ବିସ୍ତାର ଘନେଇ ଦେବ ଏବଂ ଯୁଦ୍ଧର କାରଣମାନଙ୍କୁ ବୃଦ୍ଧିକରିବ । କିଛି ସମୟ ଭିତରେ, ଅତି ଅଳ୍ପ ସମୟ ଭିତରେ, ମୁଁ ଯଦି ମୋର ଗୁପ୍ତ କଥା ପ୍ରକାଶ କରିଦିଏ ଏହି ଗ୍ରହ ତାର ଗଭୀରତମ ସ୍ତର ପର୍ଯ୍ୟନ୍ତ ମୃତ ଦାନବ-ଦେହରେ ବିଛେଇ ହୋଇଯିବ । ଅନ୍ୟ ସବୁକଥା ସନ୍ଦେହ-ଜନକ, କିନ୍ତୁ ଏହା ନିଶ୍ଚିତ ·········। ମନୁଷ୍ୟ ପାଇଁ ଚନ୍ଦ୍ର ଯେକୌଣସି କାମରେ ଲାଗିବ ତା ତ

ନୁହେଁ । ଚନ୍ଦ୍ରକୁ ନେଇ ମଣିଷମାନେ କି ଲାଭ ପାଇବେ ? ଏପରିକି ତାଙ୍କ ନିଜ ଗ୍ରହକୁ ସେମାନେ କେବଳ ଗୋଟିଏ ଯୁଦ୍ଧକ୍ଷେତ୍ର ଓ ଅଶେଷ ଅପକର୍ମର ରଙ୍ଗଭୂମି ଛଡ଼ା ଆଉ କଣ କରିଛନ୍ତି । ତାର ଦୁନିଆ ଶ୍ରେଷ୍ଠ ହେଲେ ମଧ୍ୟ ଏବଂ ତାର ସମୟ ଅଳ୍ପ ହେଲେ ମଧ୍ୟ ତଳେ ସେଠି ତାର କ୍ଷୁଦ୍ର ଜୀବନରେ ସେ ଯେତିକି କରିପାରିବ ତାଠୁ ଅନେକ ବେଶି କାମ ତାର ଅଛି । ନା ! କେବଳ ମୂର୍ଖମାନଙ୍କର ବ୍ୟବହାର ପାଇଁ ହତିଆର ନିର୍ମାଣରେ ବିଜ୍ଞାନ ଅତି ବେଶି କାଳ ପରିଶ୍ରମ କଲାଣି । ବର୍ତ୍ତମାନ ତାହା ବନ୍ଦ କରିବାର ସମୟ ଆସିଛି । ହେଉ ନିକେ—ହୁଏତ ହଜାର ବର୍ଷ ପରେ—ଏହା ପୁଣି ଆବିଷ୍କାର କରୁ ।"

ମୁଁ କହିଲି, "ଗୋପନ କରିବାର ଅନେକ ଧରଣ ଅଛି ।"

ସେ ମୋଆଡ଼କୁ ମୁହଁ ଟେକି, ହସିଲା । କହିଲା, "ଯାହାହେଉ, ଚିନ୍ତିତ ହେବାର କି ଦରକାର ଅଛି ? ଆମେ ଗୋଲକଟି ପାଇବାର ଆଶା ନାହିଁ କହିଲେ ଚଳେ, ଏବଂ ତଳେ ସେଠି ଅବସ୍ଥା ଘନେଇ ଆସିଲାଣି । ମରିବାଯାଏ ଆଶାକରି ଚାଲିଥିବା ମନୁଷ୍ୟ-ସୁଲଭ ଅଭ୍ୟାସ ଯୋଗୁଁହିଁ ଆମେ ଫେରିବା କଥା ଭାବୁଛୁ । ଆମର ବିପଦ ଆରମ୍ଭ ହୋଇଛି ମାତ୍ର । ଆମେ ଏଇ ଚନ୍ଦ୍ରର ଲୋକମାନଙ୍କ ଉପରେ ବଳ-ପ୍ରୟୋଗ କରିଛୁ । ଆମ ଗୁଣର ନମୁନା ସେମାନଙ୍କୁ ଦେଖେଇଛୁ ଏବଂ ପିଞ୍ଜରାରୁ ଖସି ପଳେଇ ହାଇଡ୍ ପାର୍କରେ ଗୋଟିଏ ଲୋକକୁ ମାରି ପକାଇଥିବା ବାଘର କପାଳରେ ଯାହା ଘଟିବ ଆମ କପାଳରେ ସେୟା ଘଟିବ । ଆମର ସମ୍ବାଦ ସୁଡ଼ଙ୍ଗରୁ ସୁଡ଼ଙ୍ଗକୁ ବ୍ୟାପି କେନ୍ଦ୍ରସ୍ଥଳ ପର୍ଯ୍ୟନ୍ତ ଚାଲି ଯାଇଥିବ ।........ସେମାନେ ଆମର ଯାହା ପରିଚୟ ପାଇ ସାରିଛନ୍ତି, ସ୍ଥାପରେ କୌଣସି ସୁସ୍ଥ ମସ୍ତିଷ୍କର ବ୍ୟକ୍ତି ଆମକୁ ଗୋଲକଟି ପୃଥିବୀକୁ ଫେରାଇ ନେବାକୁ ଦେବ ନାହିଁ ।"

ମୁଁ କହିଲି, "ଏଠି ବସି ରହିବାଦ୍ୱାରା ଆମେ ଆମର ଅବସ୍ଥାର ଉନ୍ନତି କରୁନୁ ।"

ଆମେ ପାଖକୁ ପାଖ ଲାଗି ଛିଡ଼ା ହେଲୁଁ ।

ସେ କହିଲା, "ଯାହା ହେଉ, ଆମେ ପରସ୍ପରଠାରୁ ପୃଥକ୍ ହୋଇ-ଯିବା । ଏଇ ଡେଙ୍ଗା କଣ୍ଟା ଗଛରେ ଗୋଟିଏ ରୁମାଲ୍ ଟାଙ୍ଗି ଜୋରରେ ବାନ୍ଧିଦେବା ଏବଂ ଏହାକୁ କେନ୍ଦ୍ର କରି ଆଗ୍ନେୟଗିରି ଚତୁର୍ଦ୍ଦିଗର ଘୁରିଆଡ଼େ ଖୋଜି ବୁଲିବା । ତୁମେ ପଶ୍ଚିମ ଦିଗକୁ ଯିବ, ଅସ୍ତଗାମୀ ସୂର୍ଯ୍ୟ ଆଡ଼କୁ ଅର୍ଦ୍ଧ ବୃତ୍ତରେ ଘୂରିଘୂରି ଚାଲିଯିବ । ତୁମେ ତୁମର ଛାଇକୁ ଡାହାଣ ପଟେ ରଖି ତାହା ରୁମାଲ୍ ଆଡ଼କୁ ସମକୋଣରେ ରହିବା ପର୍ଯ୍ୟନ୍ତ ଚାଲିଯିବ, ତା ପରେ ଛାଇକୁ ବାଁ ପଟେ ରଖିଯିବ । ମୁଁ ମଧ୍ୟ ପୂର୍ବ ଦିଗକୁ ସେଇପରି କରି ଯିବି । ଆମେ ପ୍ରତ୍ୟେକ ଖାଲ, ପ୍ରତ୍ୟେକ ଢିପ ତନ୍ନତନ୍ନ କରି ପରୀକ୍ଷା କରିବା; ମୋର ଗୋଲ୍‌କଟି ପାଇବା ପାଇଁ ସବୁ ରକମର ଚେଷ୍ଟା କରି ନେଇବା । ଯଦି ଗୃଧ୍ରକମାନଙ୍କୁ ଦେଖୁଁ ଯେତେଦୂର ପାରିବା ସେମାନଙ୍କ ସାମନାରୁ ଭଲରୂପେ ଲୁଚିଯିବା । ପାନୀୟରୂପେ ବରଫକୁ ବ୍ୟବହାର କରିବା, ଏବଂ ଖାଦ୍ୟର ଆବଶ୍ୟକତା ଅନୁଭବ କଲେ ଯଦି ପାରୁଁ ଗୋଟିଏ ଗୃଧ୍ରଗୋରୁକୁ ମାରିବା ଏବଂ ତାର ମାଂସକୁ ସେନ୍ଧ ଅବସ୍ଥାରେ—କଞ୍ଚା ଅବସ୍ଥାରେ—ଖାଇବା, ଏବଂ ଏହିପରି ଭାବରେ ପ୍ରତ୍ୟେକ ନିଜ ନିଜ ବାଟେ ଯିବା ।"

"ଏବଂ ଯଦି ଆମ ଭିତରୁ ଜଣେ ଗୋଲ୍‌କଟି ଦେଖେ ?"

"ସେ ଧଳାରୁମାଲ୍ ପାଖକୁ ଫେରି ଆସିବ, ଏବଂ ସେଇଠି ଛିଡ଼ା ହୋଇ ଅନ୍ୟକୁ ସଙ୍କେତ ଦେବ ।"

"ଏବଂ ଯଦି ଦୁହିଙ୍କ ଭିତରୁ କେହି ନ ଦେଖେ ?"

କେଭର ସୂର୍ଯ୍ୟଆଡ଼େ ମୁଣ୍ଡଟେକ ଚାହିଁଲା । କହିଲା, ରାତି ଓ ଶୀତଳତା ଆମକୁ ପରାଭୂତ କରିବା ପର୍ଯ୍ୟନ୍ତ ଖୋଜିବୁଲୁଥିବା ।"

ଧର ଯଦି ଗୃଧ୍ରକମାନେ ଗୋଲ୍‌କଟି ପାଇ ତାକୁ ଲୁଚେଇ ଦେଇଥାନ୍ତି ?"

ସେ ତାର ସ୍କନ୍ଧ ଉତ୍କ୍ଷିପ୍ତ କରି ନିରୁପାୟ-ସୂଚକ ଭଙ୍ଗୀ କଲା ।

"କିମ୍ବା ଯଦି କିଛିକ୍ଷଣପରେ ସେମାନେ ଆମକୁ ଖୋଜି ଖୋଜି ପହଞ୍ଚିଯାଆନ୍ତି ?"

ସେ କୌଣସି ଉତ୍ତର ଦେଲା ନାହିଁ ।

ମୁଁ କହିଲି, "ତୁମେ ବରଂ ଗୋଟିଏ ମୁଦ୍ଗର ନେଇଯାଅ ।"

ସେ ତାହାର ମୁଣ୍ଡ ହଲାଇଲା, ଏବଂ ମୋ ଆଡ଼ୁ ମୁହଁ ଫେରାଇ ଜଙ୍ଗଲ ଆଡ଼େ ଗ୍ରହିଁଲା ।

କିନ୍ତୁ କ୍ଷଣକ ପାଇଁ ସେ ଯିବାକୁ ବାହାରିଲା ନାହିଁ । ମୋ ଆଡକୁ ଲଜ୍ଜିତ ଭାବରେ ମୁହଁ ବୁଲାଇ ଗ୍ରହିଁଲା, ଟିକେ ଇତଃସ୍ତତଃ କଲା । ତା ପରେ କହିଲା, "ପୁଣି ଦେଖା ହେବା ପର୍ଯ୍ୟନ୍ତ ବିଦାୟ !"

ଗୋଟିଏ ଅଦ୍ଭୁତ ଆବେଗର ବେଦନା ମୁଁ ଅନୁଭବ କଲି, ଆମେ କିପରି ପିଇସ୍ପରକୁ ବିରକ୍ତ କରିଥିଲୁଁ, ବିଶେଷତଃ ମୁଁ କିପରି ତାକୁ ବିରକ୍ତ କରିଥିଲି ଏହି ଚିନ୍ତା ମୋ ମନରେ ଉଦିତ ହେଲା । ମୁଁ ମନେ ମନେ କହିଲି, "ଧେତ୍ ଡେଭିକା ! ଆମେ ସ୍ବାଠୁଁ ଭଲ ବ୍ୟବହାରିତ କରିପାରିଥାନ୍ତୁ !" ମୋ ସହିତ ହାତ ମିଳାଇବା ପାଇଁ ମୁଁ ତାକୁ କହିବାକୁ ଯାଉଥିଲି—କାରଣ ସେ ସମୟରେ ମୋର ମନର ଅବସ୍ଥା ସେଇ ରକମ ଥିଲା—କିନ୍ତୁ ଠିକ୍ ସେହି ମୁହୂର୍ତ୍ତରେ ସେ ତାର ପାଦ ଯୋଡ଼ି ମୋ ପାଖରୁ ଉତ୍ତର ଦିଗକୁ ଡେଇଁ ଗ୍ରଲିଗଲା । ଶୁଖିଲା ପତ୍ରର ପରି ସେ ବାୟୁ ଭିତରେ ଭାସିଗଲା, ଧୀରେ ଖସି ପଡିଲା, ଏବଂ ପୁଣି ଲମ୍ଫ ଦେଲା । ମୁଁ ମୁହୂର୍ତ୍ତିକ ଲାଗି ତାକୁ ଗ୍ରହିଁରହି ଛିଡ଼ା ହେଲି, ତା ପରେ ଅନିଚ୍ଛା ପୂର୍ବକ ପଶ୍ଚିମ ଦିଗକୁ ମୁହଁ ଫେରାଇଲି, ନିଜକୁ ସମ୍ଭାଳିନେଲି ଏବଂ ବରଫ ତୁଲ୍ୟ ଥଣ୍ଡାପାଣି ଭିତରକୁ ଡେଉଁ ଥିବା ଲୋକପରି ଅନୁଭବ କରି ଡେଇଁବା ପାଇଁ ଗୋଟିଏ ଜାଗା ବାଛିଲି, ଏବଂ ତାପରେ ଚନ୍ଦ୍ର ଜଗତରେ ମୋ ପାଇଁ ନିର୍ଦ୍ଦିଷ୍ଟ ନିଃସଙ୍ଗ ଅବସ୍ଥାନ ଅନ୍ୱେଷଣ କରିବା ପାଇଁ ଲମ୍ଫଦେଲି । ମୁଁ ଅଖାଡ଼ୁଆ ଭାବରେ ପଥର ଭିତରେ ପଡ଼ିଲି, ଛିଡ଼ାହୋଇ ଗ୍ରରିଆଡ଼େ ଗ୍ରହିଁଲି, ଗୋଟିଏ ସମତଳ ଶିଳାଖଣ୍ଡ ଉପରକୁ ଚଢ଼ିଲି ଏବଂ ପୁଣି ଲମ୍ଫ ଦେଲି······

କିଛି ସମୟ ପରେ ମୁଁ ଯେତେବେଳେ କେଭରର ସନ୍ଧାନରେ ଗ୍ରହିଁଲି ସେ ମୋର ଦୃଷ୍ଟିସମ୍ମୁଖରୁ ଲୁଚିଯାଇଥିଲା, କିନ୍ତୁ ରୁମାଲଟି ତାର ଉଚ୍ଚସ୍ଥାନରୁ ସହଜରେ ପ୍ରକଟିତ ହେଉଥିଲା, ସୂର୍ଯ୍ୟର ଜ୍ବଳନ୍ତ କିରଣରେ ଶୁଭ୍ର ଦିଶୁଥିଲା ।

ଯାହାପଛେ ଧଳା ରୁମାଲଟିରୁ ମୋର ଦୃଷ୍ଟି ନ ହରାଇବା ପାଇଁ ମୁଁ ସଙ୍କଳ୍ପ କଲି ।



# ୧୯

## ବେର୍ଡ଼ଫୋର୍ଡ଼ ଏକାକୀ

ଅଳ୍ପ ସମୟ ପରେ ମତେ ଜଣାଗଲା ଯେପରିକି ମୁଁ ଚନ୍ଦ୍ରରେ ବରାବର ଏକୁଟିଆ ରହିଆସିଛି । ମୁଁ କିଛି ସମୟ ଯାଏ ଉତ୍ସାହ ସହିତ ଖୋଜିଲି, କିନ୍ତୁ ସେତେବେଳେ ବି ଉତ୍ତାପ ଅତି ପ୍ରଖର ଥିଲା ଏବଂ ବାୟୁର ସ୍ବଳ୍ପତା ଯୋଗୁଁ ଗ୍ରୁତ ଭିତର ଚପି ହୋଇଗଲା ପରି ଲାଗୁଥିଲା । କିଛି ସମୟ ପରେ ମୁଁ ଗୋଟିଏ ଛାଟିଆ ପରି ମଣ୍ଡଳାକାର ଗହ୍ଵରିଆ ସ୍ଥାନରେ ପହଞ୍ଚିଲି । ତାହାର ଧାରର ଚତୁଃପାର୍ଶ୍ଵ ଉଚ୍ଚ, ଶୁଷ୍କ, ବାଦାମୀବର୍ଣ୍ଣର ଜନନପର୍ଣ୍ଣ ଉଦ୍ଭିଦ ଦ୍ଵାରା ପରିପୂର୍ଣ୍ଣ ହୋଇଥିଲା । ମୁଁ ବିଶ୍ରାମ ନେବାପାଇଁ ଓ ଥଣ୍ଡା ପାଇବା ପାଇଁ ସେହି ଉଦ୍ଭିଦ ଗୁଡ଼ିକ ତଳେ ବସିଲି । କେବଳ ଅଳ୍ପ ସମୟ ପାଇଁ ବିଶ୍ରାମ ନେବାକୁ ମୁଁ ଚାହୁଁଥିଲି । ମୁଁ ମୋର ମୁଦ୍ଗର ଦୁଇଟି ପାଖରେ ଥୋଇଦେଲି ଓ ହାତ ଉପରେ ଚିବୁକ ରଖି ବସି ପଡ଼ିଲି । ସେହି ଗହ୍ଵରିଆ ସ୍ଥାନର ପଥର ଖଣ୍ଡିକ ଉପରୁ ମସ୍ ମସ୍ କରୁଥିବା ଶୁଖିଲା ଶିଳାବାକ ଉଦ୍ଭିଦମାନ ଏଠିସେଠି ସଙ୍କୁଚିତହୋଇ ଖସି ଯାଇଥିବାରୁ ସେହି ଦାଗଗୁଡ଼ିକ ବାହାରକୁ ଦିଶୁଥିଲା । ତେଣୁ ମୁଁ ଦେଖିପାରିଲି ସେହି ଜାଗା ଗୁଡ଼ିକ ସ୍ଵର୍ଣ୍ଣଶୀର୍ଷ ମଣ୍ଡିତ ହୋଇଥିଲା, ଏବଂ ସ୍ଥାନେ ସ୍ଥାନେ ଅଙ୍ଗିଆ ଭିତରୁ ଗୋଲାପରି ଗୋଲାକାର ଓ କୁଞ୍ଚିତ ସୁନାମୁଣ୍ଡା ଉପରକୁ ଫୁଟି ଦିଶୁଥିଲା । କିନ୍ତୁ ଏ ସବୁ ମୁଁ ଉତ୍ସାହହୀନ ଲିପ୍ତତା ସହିତ ଦେଖିଲି । ଏଥିରୁ ବର୍ତ୍ତମାନ କଣ ଯାଏ ଆସେ ? ଏକ ପ୍ରକାର ଅବସନ୍ନତା ମୋର ଅଙ୍ଗପ୍ରତ୍ୟଙ୍ଗ ଓ ମନକୁ ବଶୀଭୂତ କରିଥିଲା, ସେହି ବିରାଟ ଶୁଷ୍କ କାନ୍ତାରରେ ଆମେ କେବେହେଲେ ଗୋଲକଟି ପାଇ ପାରିବୁ ବୋଲି ମୁଁ ମୁହୂର୍ତ୍ତିକ ପାଇଁ ସୁଦ୍ଧା ବିଶ୍ଵାସ କରୁ ନ ଥିଲି । ଗୃହ୍ୟକର୍ମୀନେ ଆସିବା ପର୍ଯ୍ୟନ୍ତ କିଛି କରିବା ପାଇଁ ମୁଁ କୌଣସି କାରଣ ଖୋଜି ପାରିଲି ନାହିଁ । ତାପରେ ମୋର ମନେ ହେଲା ମୁଁ କର୍ମତତ୍ପର ହେବା ଉଚିତ, କାରଣ

ଯେଉଁ ଯୁକ୍ତିହୀନ ବାଧ୍ୟତା ମଣିଷକୁ ସର୍ବୋପରି ନିଜର-ଜୀବନ ବଞ୍ଚେଇବାକୁ ଓ ରକ୍ଷା କରିବାକୁ ତାଗିଦ ଦିଏ—ଯଦିଓ ଅଳ୍ପକ୍ଷଣ ପରେ ଅଧିକ ଯନ୍ତ୍ରଣା ସହିତ ମରିବାକୁ ହିଁ ମଣିଷ ହୁଏତ ନିଜକୁ ବଞ୍ଚାଏ—ସେହି ବାଧ୍ୟତାକୁ ମଧ୍ୟ ମାନିନେବାକୁ ପଡ଼ିଥିଲା ।

ଆମ ଚନ୍ଦ୍ରକୁ କାହିଁକି ଆସିଥିଲୁଁ ?

ଏହା ଗୋଟିଏ ଜଟିଳ ସମସ୍ୟା ପରି ମୋ ଆଗରେ ଉପସ୍ଥିତ ହେଲା । ମାନବ-ହୃଦୟର ଏହି ଆବେଗ କଣ ଯାହା ତାକୁ ଚିରକାଳ ସୁଖ ଓ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିବାକୁ, କଷ୍ଟ-ସ୍ୱୀକାର କରିବାକୁ, ବିପଦର ସମ୍ମୁଖୀନ ହେବାକୁ, ଏପରିକି ପ୍ରାୟ ନିଶ୍ଚିତ ମୃତ୍ୟୁର ସମ୍ଭାବନା ବରଣ କରିନେବାକୁ ବାଧ୍ୟ କରି-ଆସୁଛି ? ସେଠି ଚନ୍ଦ୍ରରେ ଏଇ କଥା ମୋର ମନରେ ଉଦିତ ହେଲା ଯେ ମୁଁ ବରାବର ଜାଣିବା ଉଚିତ ଥିଲା—ମଣିଷ କେବଳ ନିରାପତ୍ତା ଓ ଆରାମ ଖୋଜିବାକୁ, ଖାଇ ପିଇ ଖୁସି ରହିବାର ଚେଷ୍ଟା କରିବାକୁ ଗଢ଼ା ହୋଇ-ନାହିଁ । ଯେ କୌଣସି ଲୋକକୁ ତୁମେ ଯଦି ଏ କଥା ପଚାର—କଥାରେ ନୁହେଁ, ସୁଯୋଗ ଦାନ କରିବାରେ—ସେ ଦେଖେଇଦେବ ଯେ ସେ ବି ଏହା ଜାଣେ । ତାର ସ୍ୱାର୍ଥ ବିରୁଦ୍ଧରେ, ସୁଖ ବିରୁଦ୍ଧରେ ସେ ବରାବର ଯୁକ୍ତିହୀନ କାର୍ଯ୍ୟ ପଛରେ ପରିଚାଳିତ ହୋଇଆସୁଛି । ସେ ନିଜେ ନୁହେଁ, କୌଣସି ଅଦୃଶ୍ୟ ଶକ୍ତି ତାକୁ ଠେଲି ଦେଉଛି, ଏବଂ ଯିବାକୁ ସେ ବାଧ୍ୟ । କିନ୍ତୁ କାହିଁକି ? କାହିଁକି ? ସେଠି ସେହି ଅକାମୀ ଗ୍ରହ ସୁନା ମଝିରେ ବସି ଭିନ୍ନ ଜଗତର ପଦାର୍ଥମାନଙ୍କ ଭିତରେ ବସି, ମୁଁ ମୋର ସମସ୍ତ ଜୀବନର ହିସାବ ନେବାକୁ ଲାଗିଲି । ଚନ୍ଦ୍ରରେ ପରିତ୍ୟକ୍ତ ଭାବରେ ମରିବି ବୋଲି ଧରିନେଇ, ମୁଁ ଭାବ ଠିକ୍ କରି ପାରିଲି ନାହିଁ କି ଉଦ୍ଦେଶ୍ୟ ମୁଁ ସାଧନ କରିଛି । ଏ ବିଷୟରେ ମୁଁ କୌଣସି ଉତ୍ତର ପାଇଲି ନାହିଁ । କିନ୍ତୁ ଯାହାହେଉ, ମୁଁ ପରିଷ୍କାର ଭାବରେ ବୁଝିପାରିଲି, ଏବଂ ଏପରି ପରିଷ୍କାର ଭାବରେ ମୁଁ ଆଉ କେବେ ବୁଝି ନ ଥିଲି, ଯେ ମୁଁ ମୋର ନିଜର ଉଦ୍ଦେଶ୍ୟ ସାଧନ କରୁନାହିଁ । ବାସ୍ତବିକ ସମସ୍ତ ଜୀବନ ମୁଁ ମୋର ବ୍ୟକ୍ତିଗତ ଜୀବନର ଉଦ୍ଦେଶ୍ୟ କେବେ ସାଧନ କରିନାହିଁ । କାହାର ଉଦ୍ଦେଶ୍ୟ, କି ଉଦ୍ଦେଶ୍ୟ

ମୁଁ ସାଧନ କରୁଛି ?……ଆମ୍ଭେ ଚନ୍ଦ୍ରକୁ କାହିଁକି ଆସିଛୁ ଏ ବିଷୟରେ ଆଲୋଚନା କରିବା ଛାଡ଼ିଦେଇ ମୋର ଚିନ୍ତାର ପରିସର ଆହୁରି ବିସ୍ତୃତ ହେଲା । ମୁଁ ପୃଥିବୀକୁ କାହିଁକି ଆସିଥିଲି ? ମୋର ଗୋଟିଏ ବ୍ୟକ୍ତିଗତ ଜୀବନ ଅଛି ବା କାହିଁକି ?……ଶେଷରେ ଅତଳ ଚିନ୍ତାସାଗରରେ ମୁଁ ନିଜକୁ ହଜାଇଦେଲି……

ମୋର ଚିନ୍ତା ଅସ୍ପଷ୍ଟ ଓ ଗୋଳିଆ ହୋଇ ଉଠିଲା, ତାହା ଆଉ କୌଣସି ନିର୍ଦ୍ଦିଷ୍ଟ ଦିଗରେ ଗତି କଲା ନାହିଁ । ମୋର ଦେହ ଖୁବ କମ୍ପା ଅବଶ ବୋଧ ହେଉ ନଥିଲା—ଚନ୍ଦ୍ର ଉପରେ ଏପରି ହେବା ସମ୍ଭବ ନୁହେଁ—କିନ୍ତୁ ମୁଁ ବୋଧହୁଏ ଅତ୍ୟନ୍ତ କ୍ଲାନ୍ତ ହୋଇ ପଡ଼ିଥିଲି । ଯାହାହେଉ ମୁଁ ନିଦ୍ରିତ ହୋଇ ପଡ଼ିଲି ।

ନିଦ୍ରା ଦ୍ୱାରା ବୋଧହୁଏ ମୋର କ୍ଲାନ୍ତି ଅନେକ ପରିମାଣରେ ଚାଲିଗଲା । ମୁଁ ଶୋଇ ପଡ଼ିଥିବା ସମୟ ଭିତରେ ସୂର୍ଯ୍ୟ କ୍ରମେ କ୍ରମେ ଢଳି ପଡ଼ୁଥିଲା ଏବଂ ଉତ୍ତାପର ପ୍ରଖରତା କମି ଯାଉଥିଲା । ଶେଷରେ ଯେତେବେଳେ ଗୋଟିଏ ବଡ଼ ଦୂରସ୍ଥ ଗୋଳମାଳ ଦ୍ୱାରା ମୋର ନିଦ ଭାଙ୍ଗିଗଲା, ମୁଁ ପୁଣି ସତେଜ ଓ ସମର୍ଥ ବୋଧକଲି । ମୁଁ ମୋର ଆଖି ମଳି ମୋଡ଼ି ଭିଡ଼ି ହେଲି । ତାପରେ ଉଠି ଛିଡ଼ାହେଲି, ଏବଂ ତତ୍‌କ୍ଷଣାତ୍ ପୁଣି ଅନ୍ୱେଷଣ ଆରମ୍ଭ କରିବାକୁ ପ୍ରସ୍ତୁତ ହେଲି । ମୋର ଗୋଡ଼ହାତ ଅବଶ୍ୟ ଟିକେ ଝିମ୍ ଝିମ୍ କରୁଥିଲା । ମୁଁ ମୋର ଗଦା ଦୁଇଟି ଦୁଇ କାନ୍ଧରେ ବୋହିଲି ଏବଂ ସ୍ୱର୍ଣ୍ଣଶୀରମଣ୍ଡିତ ଶିଳାମୟ ଖାଲ ପରିତ୍ୟାଗ କରି ଆଗକୁ ଚାଲିଲି ।

ସୂର୍ଯ୍ୟ ପ୍ରକୃତରେ ତଳକୁ ଖସିଆସିଥିଲା, ଆଗ ଅପେକ୍ଷା ଅନେକ ତଳକୁ ଖସିଆସିଥିଲା; ବାୟୁ ଅନେକ ପରିମାଣରେ ଥଣ୍ଡା ହୋଇ ଆସିଥିଲା । ବୁଝିପାରିଲି, ମୁଁ ଅନେକ ବେଳଯାଏ ଶୋଇ ପଡ଼ିଥିବି । ମୋର ମନେ ହେଲା, ପଶ୍ଚିମଦିଗସ୍ଥ ଭୃଗୁଶୈଳକୁ ଘେରି କୁହୁଡ଼ିଆ ନୀଳ ରଙ୍ଗର ଗୋଟିଏ କ୍ଷୀଣ ଆଭା ଭାସି ଉଠୁଛି । ମୁଁ ଗୋଟିଏ ଶ୍ରେଷ୍ଠ ଉଚ୍ଚ ପଥର ଖଣ୍ଡ ଉପରକୁ ଡେଇଁପଡ଼ି ଆଗ୍ନେୟଗିରି ଗହ୍ୱରର ଚାରିଆଡ଼େ ଆଖି ବୁଲେଇଲି । ମୁଁ ଚନ୍ଦ୍ରଗୋଳ କିମ୍ବା ଚନ୍ଦ୍ରିକମାନଙ୍କର କୌଣସି ଚିହ୍ନ ଦେଖିଲି ନାହିଁ, କେଉଁଆଡ଼କୁ 'ବି ଦେଖି

ପାରିଲି ନାହିଁ, କିନ୍ତୁ ଅନେକ ଦୂରରେ କଣ୍ଟାବୁଦା ଉପରେ ଉଡୁଥିବା ମୋର ରୁମାଲଟିକୁ ଦେଖିପାରିଲି । ମୁଁ ମୋର ଘରିପଟେ ଚାହିଁ ଦେଖିଲି, ତାପରେ ପରବର୍ତ୍ତୀ ଦର୍ଶନୋପଯୋଗୀ ସ୍ଥାନ ଉପରକୁ ଚଢିଇ ପଡ଼ିଲି ।

ମୁଁ ଅର୍ଦ୍ଧବୃତ୍ତାକାର ପଥରେ ଖୋଜି ଖୋଜି ଗଲି, ଏବଂ ତାପରେ ପୁଣି ଆହୁରି ଦୂରକୁ ବିସ୍ତୃତ ଅର୍ଦ୍ଧଚନ୍ଦ୍ରାକାରରେ ପ୍ରତ୍ୟାବର୍ତ୍ତନ କଲି । ଏହି ଅନ୍ୱେଷଣ ଅତ୍ୟନ୍ତ କ୍ଳାନ୍ତିପ୍ରଦ ଓ ନୈରାଶ୍ୟଜନକ ଥିଲା । ବାୟୁ ପ୍ରକୃତରେ ଆଗ ଅପେକ୍ଷା ଖୁବ୍ ଥଣ୍ଡା ହୋଇଯାଇଥିଲା ଏବଂ ମୋର ମନେ ହେଲା ପଶ୍ଚିମ ଦିଗସ୍ଥ ଗୁଡ଼ୁଶୈଳ ତଳର ଛାଇ ଲମ୍ବି ଯାଉଛି । ମୁଁ ପୁନଃପୁନଃ ମୋର ଗତି ବନ୍ଦ କରି ଚାରିଆଡ଼େ ଆଖି ବୁଲେଇ ନେଉଥିଲି, କିନ୍ତୁ କେଉଁଠି କିମ୍ବା ଗୃହିକମାନଙ୍କର କୌଣସି ଚିହ୍ନ ଦିଶୁ ନ ଥିଲା; ଏବଂ ମୋର ମନେ ହେଲା ଗୃହିଗୋରୁମାନଙ୍କୁ ପୁଣି ଭିତରକୁ ଅଡ଼େଇ ନିଆ ହୋଇଥିବ, କାରଣ ସେମାନଙ୍କୁ ବି ମୁଁ ଆଉ ଦେଖିପାରିଲି ନାହିଁ । କେଉଁଠିକୁ ଦେଖିବା ପାଇଁ ମୁଁ କ୍ରମେ କ୍ରମେ ଅଧିକ ଆଗ୍ରହୀ ହୋଇପଡ଼ିଲି । ସୂର୍ଯ୍ୟର କ୍ଷିପ୍ରଗାମୀ ବହିଃରେଖା ବର୍ତ୍ତମାନ ସଙ୍କୁଚିତ ହୋଇଯାଇ ଥିଲା, ତାର ବ୍ୟାସ ଯେତିକି ଥିଲା ଆକାଶର ଧାରରୁ ତାହା କେବଳ ସେତିକି ଦୂରରେ ରହିଥିଲା । ଅଳ୍ପକ୍ଷଣ ପରେ ଗୃହିକମାନେ ତାଙ୍କର ଚାଙ୍କୁଣି ଓ ବାୟୁର ଗମନାଗମନ ନିୟନ୍ତ୍ରଣ କରୁଥିବା କବାଟ ବନ୍ଦ କରିଦେବେ ଏବଂ ନିର୍ଦ୍ଦୟଭାବରେ ମାଡ଼ି ଆସୁଥିବା ଘୃଣ୍ୟ ରାତିତଳେ ଆମକୁ ଛାଡ଼ିଦେବେ, ଏହି ଚିନ୍ତା ମତେ ବ୍ୟାକୁଳ କରିଦେଲା । କେଉଁର ଅନ୍ୱେଷଣ ପରିତ୍ୟାଗ କରି ମୋ ସହିତ ପରାମର୍ଶ କରିବାର ସମୟ ଆସିଗଲାଣି ବୋଲି ମୋର ମନେ ହେଲା । ଆମର କାର୍ଯ୍ୟପନ୍ଥା ଶୀଘ୍ର ନିର୍ଣ୍ଣୟ କରିବା ଯେ କେଡ଼େ ଜରୁରୀ ତାହା ମୁଁ ବୁଝିପାରିଲି । ଆମେ ଗୋଲକଟି ପାଇବାରେ ଅକୃତକାର୍ଯ୍ୟ ହୋଇଛୁ, ତାହା ଖୋଜିବାକୁ ଆଉ ସମୟ ନାହିଁ, ଏବଂ ଏହି ନଳଗୁଡ଼ିକ ବନ୍ଦ ହୋଇ ଆମକୁ ବାହାରେ ଛାଡ଼ିଦେବା ପରେ ଆମର ଜୀବନର ଆଉ ଆଶା ରହିବ ନାହିଁ । ମହାଶୂନ୍ୟର ବିରାଟ ରାତି ଆମ ଉପରକୁ ମାଡ଼ି ଆସିବ—ଶୂନ୍ୟର ସେହି କାଳିମା କେବଳ ନିଶ୍ଚିତ ମୃତ୍ୟୁ ଛଡ଼ା ଆଉ କିଛି ନୁହେଁ । ତାର ଆଗମନର ଆଶଙ୍କାରେ ମୁଁ ନିସ୍ତ

ହୋଇଉଠିଲି । ଆମକୁ ଚନ୍ଦ୍ର ଭିତରକୁ ପୁଣି ପଶିବାକୁ ପଡ଼ିବ,' ଏହା କରୁଁ କରୁଁ ନିହତ ହେଲେ ମଧ୍ଯ । ମୁଁ କଳ୍ପନା ଚକ୍ଷୁରେ ଦେଖିଲି । ଆମେ ଅନ୍ଧାରେ କୋଳମାରି ମରଯାଉଛୁଁ, ଶେଷ ଶକ୍ତି ନିୟୋଗ କରି ସେହି ପ୍ରକାଣ୍ଡ ଖାଡର କବାଟ ଉପରେ କରାଘାତ କରୁଛୁଁ ।

ଗୋଲକ କଥା ମୁଁ ଆଉ ଭାବିଲି ନାହିଁ, କେବଳ କେଭରକୁ ପୁଣି ଖୋଜି ପାଇବା କଥା ଚିନ୍ତା କଲି । ଅତି ବିଳମ୍ବ ହୋଇଯିବା ପର୍ଯ୍ୟନ୍ତ ତାକୁ ଖୋଜିବା ଅପେକ୍ଷା ବରଂ ତାକୁ ଛାଡ଼ି ଏକା ଚନ୍ଦ୍ର ଭିତରକୁ ଫେରିଯିବା ପାଇଁ ମୋର ଅଧା ଇଚ୍ଛା ହେଲା । ମୁଁ ରୁମାଲ ଆଡ଼କୁ ଅଧେ ବାଟ ଫେରିଯାଇଥିଲିଣି, ଏପରି ସମୟରେ ହଠାତ୍—

ମୁଁ ଗୋଲକଟି ଦେଖିଲି !

ମୁଁ ତାକୁ ପାଇଲି ନାହିଁ, ବରଂ ତାହା ମତେ ପାଇଲା । ମୁଁ ପଶ୍ଚିମ ଦିଗକୁ ଯେତେଦୂର ଯାଇଥିଲି ତା ଅପେକ୍ଷା ଆହୁରି ଦୂରରେ ତାହା ପଡ଼ିଥିଲା, ଏବଂ ଅସ୍ତଗାମୀ ସୂର୍ଯ୍ୟର ନିମ୍ନାଭିମୁଖୀ କିରଣ ରେଖା ତାର କାଚ ଉପରେ ପ୍ରତିଫଳିତ ହୋଇ ହଠାତ୍ ଉଜ୍ଜ୍ୱଳ ଜ୍ୟୋତିଚ୍ଛଟାରେ ତାର ଅସ୍ତିତ୍ୱ ଘୋଷଣା କଲା । କ୍ଷଣକ ପାଏ ମୁଁ ଭାବିଲି ଯେ ଆମ ବିରୁଦ୍ଧରେ ଚନ୍ଦ୍ରିକ ମାନଙ୍କର ଏହା ଗୋଟିଏ ନୂତନ ଛଳ, ତାପରେ ମୁଁ ପ୍ରକୃତ କଥା ବୁଝି ପାରିଲି ।

ମୁଁ ମୋର ହାତ ଦୁଇଟି ଉପରକୁ ଟେକି ଗୋଟିଏ ଭୌତିକ ଚିତ୍କାର କଲି, ଏବଂ ପ୍ରକାଣ୍ଡ ପ୍ରକାଣ୍ଡ ଲମ୍ଫ ଦେଇ ତା ଆଡ଼କୁ ଅଗ୍ରସର ହେଲି । ଗୋଟିଏ ଲମ୍ଫ ଲକ୍ଷଚ୍ୟୁତ ହେବାରୁ ଗୋଟିଏ ଗଭୀର ଗିରିନାଳ ଭିତରେ ପଡ଼ି ମୋର ଗୋଡ଼ ମୋଡ଼ି ହୋଇଗଲା, ଏବଂ ତାପରେ ମୁଁ ପ୍ରାୟ ପ୍ରତ୍ୟେକ ଲମ୍ଫରେ ଝୁଣ୍ଟି ପଡ଼ିବାକୁ ଲାଗିଲି । ମୁଁ ଉତ୍ତେଜନାରେ ଉନ୍ମାଦଗ୍ରସ୍ତ ହୋଇ ପଡ଼ିଥିଲି, ଭୀଷଣ ଭାବରେ ଥରୁଥିଲି, ଏବଂ ଗୋଲକ ପାଖରେ ପହଞ୍ଚିବାର ଅନେକ ପୂର୍ବରୁ ବେଦମ ହୋଇପଡ଼ିଥିଲି । ଅନ୍ତତଃ ତିନିଥର ମତେ ଗୁଡ଼ିରେ ହାତଦେଇ ଛିଡ଼ା ହେବାକୁ ପଡ଼ିଥିଲା, ଏବଂ ବାୟୁର ପାତଳ ଶୁଷ୍କତା ସତ୍ତ୍ୱେ ମୋର ମୁହଁ ଝାଳରେ ଓଦା ହୋଇଯାଇଥିଲା ।

ଗୋଲକ ନିକଟରେ ପହଞ୍ଚିବା ପର୍ଯ୍ୟନ୍ତ ମୁଁ ଗୋଲକ ଛଡ଼ା ଆଉ କୌଣସି ବସ୍ତୁ ଭାବୁ ନ ଥିଲି, ଏପରିକି କେଭରର ପଶ୍ଚାତ ନ ମିଳୁଥିବାର ଦୁଃଖ ମଧ୍ୟ ଭୁଲି ଯାଇଥିଲି । ମୋର ଶେଷ ଲମ୍ଫ ଦ୍ୱାରା ମୁଁ ଗୋଲକ ଉପରକୁ ଫିଙ୍ଗି ହୋଇଗଲି ଏବଂ ମୋର ହାତ ଦୁଇଟି ତାର କାଚ ଉପରେ ବାଡ଼େଇ ହୋଇଗଲା । ତା ପରେ ମୁଁ ତା ଉପରେ ଆଉଜି ପଡ଼ି ଦମ୍ ନେବାକୁ ଲାଗିଲି, ଏବଂ ନିଷ୍ଫଳ ଭାବରେ ଡାକିବାକୁ ଚେଷ୍ଟା କଲି, "କେଭର ! ଗୋଲକଟି ଏଇଠି ଅଛି !" ସେତେବେଳେ ମୁଁ ଠିକେ ସୁସ୍ଥ ବୋଧକଲି, ମୋଟା କାଚ ଭିତରକୁ ଉଙ୍କିମାରି ଦେଖିଲି, ଏବଂ ମୋର ମନେହେଲା ଭିତରର ଜିନିଷ ସବୁ ଓଲଟ ପାଲଟ ହୋଇଯାଇଛି । ଆହୁରି ପରିଷ୍କାର ଭାବରେ ଦେଖିବା ପାଇଁ ମୁଁ ନଇଁ ପଡ଼ିଲି । ତାପରେ ଭିତରକୁ ପଶିବାକୁ ଚେଷ୍ଟା କଲି । ଗର୍ତ୍ତିବାଟେ ମୁଣ୍ଡ ଗଳେଇବା ପାଇଁ ମତେ ଗୋଲକକୁ ଟିକେ ଟେକି ଦେବାକୁ ପଡ଼ିଥିଲା । ଫେଣ୍ଟାଲଗା ଠିପିଟି ଭିତରେ ଥିଲା, ଏବଂ ବର୍ତ୍ତମାନ ମୁଁ ଦେଖି ପାରିଲି କୌଣସି ଜିନିଷରେ ହାତ ଦିଆ ହୋଇନାହିଁ, କୌଣସି ଜିନିଷ ନଷ୍ଟ ହୋଇ ନାହିଁ । ଆମେ ବରଫ ଭିତରକୁ ଡେଇଁପଡ଼ିଲା ବେଳେ ତାହାକୁ ଯେପରି ଭାବରେ ଗୁଡ଼ି ଯାଇଥିଲୁଁ, ତାହା ଠିକ୍ ସେହିପରି ଭାବରେ ପଡ଼ିଥିଲା । କିଛିସମୟ ଏପର୍ଯ୍ୟନ୍ତ ମୁଁ ଥରକୁ ଥର ଜିନିଷଗୁଡ଼ିକ ହିସାବ କରିବାରେ ବ୍ୟସ୍ତ ହୋଇ ରହିଲି । ଉତ୍ତେଜନାରେ ମୋର ଦେହ କମ୍ପୁଥିଲା । ସେହି ପରିଚିତ ଅନ୍ଧକାରାଚ୍ଛନ୍ନ ଭିତରଟା ପୁଣି ଦେଖିବାରେ କି ଗଭୀର ତୃପ୍ତିଥିଲା ! ମୁଁ ତୁମକୁ ବୁଝାଇ କହି ପାରିବି ନାହିଁ ସେ ତୃପ୍ତି କେତେ ଗଭୀର । ଏହାପରେ ମୁଁ ଭିତରକୁ ଗୁରୁଣ୍ଡି ପଶିଗଲି, ଏବଂ ଜିନିଷଗୁଡ଼ିକ ମଝିରେ ବସି ପଡ଼ିଲି । ମୁଁ କାଚ ବାଟେ ଦେଇ ଚନ୍ଦ୍ର ଜଗତକୁ ଚାହିଁଲି ଓ ମୋର ଦେହ ଶୀତେଇ ଉଠିଲା । ମୁଁ ଗଣ୍ଠିଲି ଉପରେ ମୋର ସୁନାଗଦା ଦୁଇଟି ରଖିଲି ଓ କିଛି ଖାଦ୍ୟ ବାହାର କରି ଖାଇଲି; ଖାଦ୍ୟ ମୋର ବିଶେଷ ପ୍ରୟୋଜନ ଥିଲା ବୋଲି ନୁହେଁ, କେବଳ ତାହା ସେଠି ଥିଲାବୋଲି ଖାଇଲି । ତା ପରେ ମୋର ମନେ ପଡ଼ିଲା, ବର୍ତ୍ତମାନ ବାହାରକୁ ଯାଇ କେଭରକୁ ସଙ୍କେତ ଦେବାର ସମୟ ହେଲାଣି । କିନ୍ତୁ ମୁଁ

ଯାଙ୍କେ ଯାଙ୍କେ ବାହାରକୁ ଯାଇ କେଭରକୁ ସଙ୍କେତ ଦେଲି ନାହିଁ । କୌଣସି ଶକ୍ତି ମତେ ଗୋଲକ ଭିତରେ ବାନ୍ଧିରଖିଲା ।

ଯାହାହେଉ, ସବୁକଥା ବେଶ୍ ଠିକଣା ହୋଇ ଆସୁଥିଲା । ଯେଉଁ ଐନ୍ଦ୍ରଜାଲିକ ପ୍ରସ୍ତର ଦ୍ୱାରା ମନୁଷ୍ୟମାନଙ୍କ ଉପରେ କର୍ତ୍ତୃତ୍ୱ କରାଯାଇ ପାରେ ସେଥିରୁ ଆହୁରି ଖଣ୍ଡାଏ ନେବା ପାଇଁ ଆମକୁ ଯଥେଷ୍ଟ ସମୟ ମିଳିବ । ସେଠି ହାତ ପାଖରେ ରହିଥିଲା ସୁନା, କେବଳ ଉଠେଇ ନେବା ଯାହା ବାକି; ଏବଂ ଗୋଲକଟି ସୁନାରେ ଅଧେ ଭର୍ତ୍ତି ହେଲେ ମଧ୍ୟ ଯିବାରେ କୌଣସି ଅସୁବିଧା ହେବ ନାହିଁ । ଖାଲି ହୋଇଥିଲେ ଯେପରି ଯାଉଥା ଠିକ୍ ସେହିପରି ଯିବ । ଆମେ ବର୍ତ୍ତମାନ ଫେରିଯାଇ ଆପଣାର ଓ ପୃଥିବୀର ମାଲିକ ହୋଇ ପାରିବୁଁ, ଏବଂ ତାପରେ—

ଶେଷରେ ମୁଁ ନିଜକୁ ଜାଗ୍ରତ କରି କଥିତ ଚେଷ୍ଟାରେ ଗୋଲକ ଭିତରୁ ବାହାର ଆସିଲି । ବାହାରିଲାକ୍ଷଣି ମୋର ଦେହ ସିର ସିରେଇ ଉଠିଲା, କାରଣ ଯାନ୍ଧ୍ୟ ବାୟୁ ଭାରି ଥଣ୍ଡା ହୋଇ ଆସିଥିଲା । ମୁଁ ଖାତ ଭିତରେ ଛିଡ଼ା ହୋଇ ଚାରିଆଡ଼େ ଅନାଇ ଦେଖିଲି । ମୋର ଚାରିପଟେ ଥିବା ବୃଦାଗୁଡ଼ିକୁ ଭଲରୂପେ ପରୀକ୍ଷା କରି ମୁଁ ନିକଟରେ ଥିବା ଶୈଳ-ପାବଚ୍ଛ ଉପରକୁ ଡେଇଁ ପଡ଼ିଲି—ଚନ୍ଦ୍ରରେ ମୋର ପ୍ରଥମ ଲମ୍ଫର ପୁନରାବୃତ୍ତି ଘଟିଲା । କିନ୍ତୁ ବର୍ତ୍ତମାନ ମୁଁ ବିନା ପ୍ରୟାସରେ ତାହା କରିପାରିଲି ।

ଉଦ୍ଭିଦମାନଙ୍କରେ ବୃଦ୍ଧି ଓ କ୍ଷୟ ତ୍ୱରିତ ଗତିରେ ଘଟିଥିଲା, ଏବଂ ଶୈଳଗୁଡ଼ିକର ଚେହେରା ସମ୍ପୂର୍ଣ୍ଣରୂପେ ବଦଳି ଯାଇଥିଲା, କିନ୍ତୁ ତଥାପି ଯେଉଁ ଢାଲୁ ଭୂମିରେ ମଞ୍ଜିଗୁଡ଼ିକ ଅଙ୍କୁରିତ ହୋଇଥିଲେ ଏବଂ ଯେଉଁ ଶୈଳଖଣ୍ଡରୁ ଆମେ ଆଗ୍ନେୟଗିରି ଗହ୍ୱରର ପ୍ରଥମ ଦର୍ଶନ ଲାଭ କରିଥିଲୁଁ ସେସବୁ ବର୍ତ୍ତମାନ ସୁଦ୍ଧା ବାରିପାରିବା ସମ୍ଭବ ଥିଲା । କିନ୍ତୁ ଢାଲୁ ଭୂମି ଉପରର କଣ୍ଟକିତ ବୁଦା ବର୍ତ୍ତମାନ ଧୂସର ଓ ଶୁଷ୍କ ହୋଇ ଛିଡ଼ା ହୋଇ ଥିଲା ଏବଂ ତିରିଶ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୋଇ ଯାଇଥିଲା । ତାହାର ଗ୍ରୁଇ ଏତେଦୂର ଯାଏ ଲମ୍ବିଥିଲା ଯେ ତାର ଶେଷକୁ ଆଖି ପାଉ ନଥିଲା, ଏବଂ ତାହାର ଊର୍ଦ୍ଧ୍ୱାଂଶର ଶାଖାମାନଙ୍କରେ ଗୁଚ୍ଛ ଗୁଚ୍ଛ ହୋଇଥିବା କ୍ଷୁଦ୍ର ମଞ୍ଜିଗୁଡ଼ିକ

ଧୂସର ଓ ପଙ୍କ ହୋଇ ଯାଇଥିଲେ । ତାହାର କାମ ଶେଷ ହୋଇଯାଇ-ଥିଲା ଏବଂ ତାହା ପତନୋନ୍ମୁଖ ହୋଇ ସୃଷ୍ଟିର ଆଗମନ ସଙ୍ଗେ ସଙ୍ଗେ ଘନୀଭୂତ ବାଷ୍ପ ତଳେ ପଡ଼ି ମକଚ ହୋଇଯିବା ପାଇଁ ପ୍ରସ୍ତୁତ ହୋଇ ରହିଥିଲା । ଏବଂ ଯେଉଁ ପ୍ରକାଣ୍ଡ ସପ୍ତଫେଣିଗୁଡ଼ିକ ଆମେ ବଢ଼ୁଁ ବଢ଼ୁଁ ଫୁଲି ଉଠିଥିଲେ, ସେମାନେ ଅନେକକ୍ଷଣ ପୂର୍ବେ ଫାଟିଯାଇ ଚନ୍ଦ୍ରର ଚତୁର୍ଦ୍ଦିଗରେ ସେମାନଙ୍କର ରେଣୁ-ବୀଜଗୁଡ଼ିକ ବିଛେଇ ଦେଇଥିଲେ । ବିଶ୍ୱବ୍ରହ୍ମାଣ୍ଡର ଏହା ଗୋଟିଏ ଅଦ୍ଭୁତ କ୍ଷୁଦ୍ର କୋଣ—ମନୁଷ୍ୟମାନଙ୍କର ଓହ୍ଲେଇବାର ଘାଟିଜାଗା ।

ମୁଁ ଭାବିଥିଲି, କେବେନା କେବେ ମୁଁ ନିଶ୍ଚୟ ଖାଲର ଠିକ୍ ମଝିରେ ଗୋଟିଏ ସ୍ମୃତି-ଫଳକ ସ୍ଥାପନ କରିବି । ମୋର ମନରେ ଗୋଟିଏ ଚିନ୍ତା ଉଦିତ ହେଲା, ଯଦି ଏହି ମୁହୂର୍ତ୍ତର ସମ୍ପୂର୍ଣ୍ଣ ଗୁରୁତ୍ୱ ଭିତରର ଏହି ଜନାକୀର୍ଣ୍ଣ ଦୁନିଆ ବୁଝି ପାରନ୍ତା, ତାହାହେଲେ ତାହା କି ଭୀଷଣ ହୁଲସ୍ଥୁଲ କାଣ୍ଡ ଆରମ୍ଭ କରି ନ ଦଅନ୍ତା !

କିନ୍ତୁ, ଏପର୍ଯ୍ୟନ୍ତ ଏହା ଆମର ଆଗମନର ତାତ୍ପର୍ଯ୍ୟ କଳ୍ପନା ସୁଦ୍ଧା କରି ନ ଥିବ । ଯଦି କରିଥାନ୍ତା, ତାହାହେଲେ ଏତେବେଳକୁ ଆଗ୍ନେୟ-ଗିରି ଗହ୍ୱରଟି ମୃତ୍ୟୁତୁଲ୍ୟ ନିସ୍ତବ୍ଧ ନ ହୋଇ ପଶ୍ଚାଦ୍ଧାବନର କୋଳା-ହଳରେ ପରିପୂର୍ଣ୍ଣ ହୋଇ ଯାଇଥାନ୍ତା ! କେଭରକୁ ସଙ୍କେତ ଦେବାପାଇଁ ଗୋଟିଏ ଉପଯୁକ୍ତ ସ୍ଥାନ ଖୋଜିବା ଅଭିପ୍ରାୟରେ ମୁଁ ଘୂରି ଅଟେଡ଼େ ବୁଲିଲି, ଏବଂ ମୁଁ ବର୍ତ୍ତମାନ ଯେଉଁଠି ଛିଡ଼ା ହୋଇଥିଲି ସେହି ସ୍ଥାନରୁ ସେ ଯେଉଁ ପଥର ଚେକା ଉପରକୁ ଡେଇଁ ପଡ଼ିଥିଲା ସେହି ପଥରକୁ ଦେଖିପାରିଲି । ତାହା ସୂର୍ଯ୍ୟ ତଳେ ସେହିପରି ଫଙ୍ଗୁଲା ଓ ଟାଙ୍ଗର ହୋଇ ପଡ଼ିଥିଲା । ଗୋଲକଠାରୁ ଏତେ ଦୂରକୁ ଚାଲିଯିବା ପାଇଁ ମୁଁ ମୁହୂର୍ତ୍ତିକ ଲାଗି ଦ୍ୱିଧା ବୋଧକଲି । ତାପରେ ଏହି ଦ୍ୱିଧା ଯୋଗୁଁ ହଠାତ୍ ଲଜ୍ଜିତ ହୋଇପଡ଼ି, ଲମ୍ଫ ଦେଲି......

ଏହି ଉପଯୋଗୀ ସ୍ଥାନରୁ ମୁଁ ପୁଣି ଆଗ୍ନେୟଗିରି ଗହ୍ୱରଟି ପର୍ଯ୍ୟ-ବେକ୍ଷଣ କଲି । ଅନେକ ଦୂରରେ ମୋର ସୁଦୀର୍ଘ ପ୍ରଚ୍ଛାୟାର ଶୀର୍ଷ

ଦେଶରେ ବୁଦା ଉପରେ ଶ୍ୱେତ ଧଳା ରୁମାଲଟି ଆନ୍ଦୋଳିତ ହେଉଥିଲା । ତାହା ଥିଲା ଅତି ସ୍ପଷ୍ଟ ଏବଂ ବହୁ ଦୂରରେ, ଏବଂ କେଭରର କୌଣସି ଚିହ୍ନ ଦୃଶ୍ୟ ନ ଥିଲା । ମୋର ମନେ ହେଲା ସେ ମତେ ଖୋଜିବାକୁ ଆସିବାର ସମୟ ହୋଇଗଲାଣି । ସେସ୍ଥା ଥିଲା ତୃଷ୍ଣା ! କିନ୍ତୁ ତାର ଆଦୌ ପତ୍ତା ମିଳୁ ନ ଥିଲା ।

ମୁଁ ଛିଡ଼ା ହୋଇ ଅପେକ୍ଷା କରିବାକୁ ଲାଗିଲି । ହାତରେ ଆଖିକୁ ଆଡୁଆଳ କରି ଚାହିଁ ରହିଲି, ଏବଂ ପ୍ରତି ମୁହୂର୍ତ୍ତରେ ତାର ଆକୃତି ବାରି ପାରିବି ବୋଲି ଆଶା କରିବାକୁ ଲାଗିଲି । ଖୁବ୍ ସମ୍ଭବତଃ ମୁଁ ସେଠି ଅନେକ ବେଳ ଯାଏଁ ଛିଡ଼ାହୋଇ ରହିଲି । ମୁଁ ପାଟିକରି ଡାକିବାକୁ ଚେଷ୍ଟା କଲି, କିନ୍ତୁ ବାୟୁର ସ୍ୱଳ୍ପତା କଥା ମୋର ମନେ ପଡ଼ିଗଲା । ମୁଁ ଆଗ୍ନେୟଗିରି ଗହ୍ୱର ଆଡ଼କୁ ଅନିଶ୍ଚିତ ଭାବରେ ପାଦେ ଫେରିଆସିଲି । କିନ୍ତୁ ମୋର ହୃଦୟର ଗୋପନ ପ୍ରଦେଶରେ ଚନ୍ଦ୍ରକମାନଙ୍କ ପ୍ରତି ଯେଉଁ ଭୟ ବସାବାନ୍ଧି ରହିଥିଲା, ସେଥିଯୋଗୁଁ ମୁଁ ଆମର କମ୍ବଳକୁ ଗୋଟିଏ ପାର୍ଶ୍ୱସ୍ଥ କଣ୍ଟାବୁଦା ଉପରେ ଟାଙ୍ଗି କେଭରକୁ ମୋର ଅବସ୍ଥାନର ସନ୍ଦେଶ ଦେବାକୁ ଦ୍ୱିଧା ବୋଧକଲି । ମୁଁ ପୁଣି ଆଗ୍ନେୟଗିରି ଗହ୍ୱରଟି ଖୋଜିବାକୁ ଲାଗିଲି ।

ସେହି ସ୍ଥାନଟି ଏପରି ନିର୍ଜନ ବୋଧ ହେଉଥିଲା ଯେ ମୋର ଦେହ ଶୀତେଇ ଉଠିଲା ଏବଂ ତାହା ଥିଲା ଅତି ନିସ୍ତବ୍ଧ ! ତଳର ଦୁନିଆ ଭିତରୁ ଚନ୍ଦ୍ରକମାନଙ୍କର ଯାହା କିଛି ଶବ୍ଦ ଆସୁଥିଲା, ତାହା ମଧ୍ୟ ବନ୍ଦ ହୋଇ ଯାଇଥିଲା । ମୃତ୍ୟୁପରି ତାହା ନିସ୍ତବ୍ଧ ଥିଲା । ମୋର ଚାରିପାଖେ ଥିବା କଣ୍ଟାବୁଦା ଗୁଡ଼ିକ ବର୍ତ୍ତମାନ ମୃଦୁ ସମୀରଣରେ ଧୀରେ ଧୀରେ ଆନ୍ଦୋଳିତ ହେବା ଛଡ଼ା, କୌଣସି ଶବ୍ଦ କିମ୍ବା ଶବ୍ଦର ସାମାନ୍ୟ ଆଭାସ ସୁଦ୍ଧା ମିଳୁ ନ ଥିଲା । ଏବଂ ସେହି ପବନ ଥିଲା ଅତି ଥଣ୍ଡା ।

ଚନ୍ଦ୍ରକ ଯାଉ କେଭର !

ମୁଁ ଗୋଟିଏ ଲମ୍ବା ନିଶ୍ୱାସ ଟାଣିଲି । ପାଟିର ଦୁଇ କଡ଼ରେ ହାତ ରଖିଲି । ଉଚ୍ଚ ସ୍ୱରରେ ଡାକିଲି, "କେଭର !" ବହୁ ଦୂରରେ କୌଣସି ବାମନ ଚତ୍କାର କଲାପରି ସେ ଶବ୍ଦ ଶୁଭିଲା ।

ମୁଁ ରୁମାଲ୍ ଆଡ଼େ ଚାହିଁଲି, ମୋର ପଛପଟେ ପଶ୍ଚିମଦିଗସ୍ଥ ଭୃଗୁ-ଶୈଳର ଘନ ପ୍ରସାରିତ ଛାୟା ଆଡ଼େ ଚାହିଁଲି, ମୋର ହାତ ଆଙ୍ଗୁଳିରେ ସୂର୍ଯ୍ୟ ଆଡ଼େ ଚାହିଁଲି । ମୋର ମନ ହେଲା, ସୂର୍ଯ୍ୟ ପ୍ରାୟ ପ୍ରତ୍ୟକ୍ଷ ଭାବରେ ଆକାଶରେ ଖସି ଖସି ଯାଉଛି ।

ମୁଁ ଯଦି କେଭରକୁ ରକ୍ଷା କରିବାକୁ ଚାହେଁ ତେବେ ସାଙ୍ଗେ ସାଙ୍ଗେ କର୍ମତତ୍ପର ହେବା ଉଚିତ ବୋଲି ମୁଁ ବୁଝିପାରିଲି । ମୁଁ ମୋର ଫତେଇ ଫିଟେଇ ପକେଇ ମୋର ପଛପଟେ ଥିବା କଣ୍ଟାବୁଦାର ଶୁଷ୍କ ସଙ୍ଗୀନଗୁଡ଼ିକ ଉପରକୁ ଚିହ୍ନ ହିସାବରେ ତାକୁ ଫୋପାଡ଼ି ଦେଲି, ଏବଂ ତାପରେ ରୁମାଲ ଆଡ଼କୁ ସରଳ ରେଖାରେ ଅଗ୍ରସର ହେଲି । ତାହା ବୋଧହୁଏ ଦୁଇ ମାଇଲ ଦୂରରେ ଥିଲା—ମୋଟେ କେଇ ଶହ ଲମ୍ଫ ଓ ପାହୁଣ୍ଡର କଥା । ସେହି ଚୁଡ଼ି ଲମ୍ଫ ଦ୍ୱାରା କପର ଶୂନ୍ୟରେ ଝୁଲି ରହିଲା ପରି ଲାଗେ ସେ କଥା ମୁଁ ଆଗରୁ କହିଛି । ପ୍ରତ୍ୟେକ ଥର ଝୁଲି ରହିଲା ବେଳକୁ ମୁଁ କେଭରକୁ ଖୋଜି ଦେଖିଲି ଏବଂ ସେ କାହିଁକି ଲୁଚି ରହିଛି ଏହା ଭାବି ଆଶ୍ଚର୍ଯ୍ୟ ହେଲି । ପ୍ରତ୍ୟେକ ଲମ୍ଫରେ ସୂର୍ଯ୍ୟ ମୋର ପଛପଟେ ଅସ୍ତ ହୋଇଯାଉଛି ବୋଲି ଅନୁଭବ କଲି । ପ୍ରତ୍ୟେକ ଥର ମୁଁ ମାଟି ଛୁଇଁବା ସମୟରେ ଫେରି ଯିବାକୁ ଲାଳାୟିତ ହେଲି ।

ଶେଷ ଲମ୍ଫରେ ମୁଁ ଆମର ରୁମାଲ ତଳେ ଥିବା ଖାଲରେ ପହଞ୍ଚିଲି, ଏବଂ ଆଉ ଗୋଟିଏ ପାହୁଣ୍ଡରେ ଆମର ପୂର୍ବର ପର୍ଯ୍ୟବେକ୍ଷଣୋପଯୋଗୀ ସ୍ଥାନରେ ରୁମାଲର ହାତେ ବ୍ୟବଧାନରେ ପହଞ୍ଚିଲି । ମୁଁ ସଳଖ ହୋଇ ଛିଡ଼ା ହୋଇ ମୋର ପୃଷ୍ଠପଟେ ଥିବା ଜଗତକୁ ତାହାର ଘନ ବର୍ଦ୍ଧିତ ଛାୟା ରେଖା ଭିତର ଦେଇ ନିରୀକ୍ଷଣ କଲି । ଅନେକ ଦୂରରେ, ଗୋଟିଏ ଲମ୍ବ ତାଲ୍ ଜାଗାର ଶେଷରେ, ଆମ୍ଭେ ଯେଉଁ ସୁଡ଼ଙ୍ଗ ବାଟ ଦେଇ ପଳାଇ ଆସିଥିଲୁଁ ତାହାର ମୁହଁ ଦେଖାଯାଉଥିଲା, ଏବଂ ମୋର ଶରୀର ଅଙ୍ଗୁଳି ପରି ତାହା ଆଡ଼କୁ ଲମ୍ବି ଯାଇଥିଲା, ଗଡ଼ି ଯାଇଥିଲା, ଏବଂ ତାକୁ ସ୍ପର୍ଶ କରୁଥିଲା ।

କେଉରର ଚକ୍ଷୁ ନାହିଁ, ଏହି ନିସ୍ତବ୍ଧତା ମଧ୍ୟରେ ଟିକିଏ ଶବ୍ଦ ବି ନାହିଁ, କେବଳ କଣ୍ଟାବୁଦାର ଗୁଳ୍ମଗୁଡ଼ିକର ସ୍ପନ୍ଦନ ଓ ଆନ୍ଦୋଳନ ବୃଦ୍ଧି ପାଉଥିଲା । ଏବଂ ସହସା ମୋର ଦେହ ଭୀଷଣ ଭାବରେ ଶୀତେଇ ଉଠିଲା । "କେଉ—" ବୋଲି ଡାକିବାକୁ ଆରମ୍ଭ କଲାକ୍ଷଣି ସେହି ପାତଳା ବାୟୁରେ ମନୁଷ୍ୟ କଣ୍ଠର ବ୍ୟର୍ଥତା କଥା ମୋର ମନେ ପଡ଼ିଗଲା ।

ନୀରବତା ମୃତ୍ୟୁତୁଲ୍ୟ ନୀରବତା ।

ଏହି ସମୟରେ କୌଣସି ଗୋଟିଏ ଜିନିଷ ଉପରେ ମୋର ଆଖି ପଡ଼ିଲା—ଗୋଟିଏ ଗ୍ରେଟ୍ ଜିନିଷ, ଗଡ଼ାଣି ତଳେ ପ୍ରାୟ ପଚିଶ ଗଜ ଦୂରରେ ଭାଙ୍ଗିଭୁଙ୍ଗି ପଡ଼ିଥିବା ଡାଳର ଅଳିଆ ଭିତରେ ପଡ଼ି ରହିଥିଲା । ତାହା କଣ ? ମୁଁ ଜାଣିଥିଲି, କିନ୍ତୁ ତଥାପି କୌଣସି କାରଣରୁ ଜାଣିବାକୁ ଚାହୁଁ ନ ଥିଲି ।

ମୁଁ ତାହାର ଆହୁରି ପାଖକୁ ଗଲି । ତାହାଥିଲା କେଉରର ଗ୍ରେଟ ନିକେଟ ଟୋପିଟି । ମୁଁ ତାକୁ ଛୁଇଁଲି ନାହିଁ, ଛିଡ଼ାହୋଇ ତାକୁ ଚାହିଁ ରହିଲି ।

ତା ପରେ ମୁଁ ଦେଖିଲି, ତାର ଗୃଣପଟେ ବଟେଇ ହୋଇଥିବା ଡାଳଗୁଡ଼ିକୁ କିଏ ଜବରଦସ୍ତି ମାଡ଼ି ଦଳିଯାଇଛି । ମୁଁ ଟିକିଏ ଇତଃସ୍ତତଃ କରି ପାଦ ବଢ଼େଇଲି ଏବଂ ତାକୁ ତଳୁ ଗୋଟେଇନେଲି ।

ମୁଁ କେଉରର ଟୋପିକୁ ହାତରେ ଧରି ଛିଡ଼ା ହୋଇ ମୋର ଚତୁର୍ଦ୍ଦିଗସ୍ଥ ବଦଳିତ ଝାଁଟି ଓ କଣ୍ଟା ଗୁଡ଼ିକକୁ ଅନାଇ ରହିଲି । ସେଗୁଡ଼ିକରୁ କୌଣସି କୌଣସିରେ ଗାଢ଼ରଙ୍ଗର ଦାଗସବୁ ଲାଗିଥିଲା । ସେହି ଦାଗକୁ ଛୁଇଁବାକୁ ମୋର ସାହସ ହେଲା ନାହିଁ । ପ୍ରାୟ ବାରହାତ ଦୂରରେ ବର୍ତ୍ତମାନ ପବନରେ କୌଣସି ଜିନିଷ—କୌଣସି କ୍ଷୁଦ୍ର ଗାଢ଼ ଧଳାରଙ୍ଗର ଜିନିଷ—ହଲିଉଠିବାରୁ ତାହା ମୋର ଦୃଷ୍ଟି ଆକର୍ଷଣ କଲା ।

ତାହା ଲେମ୍ବୃକୋଷ୍ଟ ହୋଇଥିବା ଗ୍ରେଟ କାଗଜ ଖଣ୍ଡିଏ ଥିଲା ! ବୋଧ ହୁଏ ତାକୁ କେହି ଜୋରରେ ହାତରେ ମୁଠେଇ ଧରିଥିଲା । ମୁଁ ତାକୁ ଗୋଟେଇ ନେଲି, ଏବଂ ସେଥିରେ ଲାଲ ରଙ୍ଗର ଦାଗସବୁ ଲାଗିଥିବାର

ଦେଖିଲି । ପେନ୍‌ସିଲର ଅସ୍ପଷ୍ଟ ଦାଗ ମଧ୍ୟ ମୋର ଆଖିରେ ପଡ଼ିଲା । ମୁଁ କାଗଜଟିକୁ ଓଲଟା କରିଦେଲି, ଏବଂ ଦେଖିଲି ସେଥିରେ ବଙ୍କାଟଙ୍କା ଭଙ୍ଗାଭଙ୍ଗି ଲେଖାଗୁଡ଼ିଏ ରହିଛି, ଏବଂ ଲେଖାର ଶେଷରେ ବଡ଼ଜୋରରେ ଗୋଟିଏ ଗାର ଟାଣି ହୋଇଯାଇଛି ।

ଏହି ଲେଖାର ଅର୍ଥ ବାହାର କରିବାକୁ ମୁଁ ଚେଷ୍ଟା କଲି ।

ଆରମ୍ଭରୁ ବେଶ ସ୍ପଷ୍ଟ ଅକ୍ଷରରେ ଲେଖା ଯାଇଥିଲା, "ମୋର ଆଣ୍ଠୁରେ ଆଘାତ ଲାଗିଛି, ଆଣ୍ଠୁ ଗଣ୍ଠି ଉପରେ ଗ୍ରେଟ ବାଜିଛି ବୋଲି ମନେ ହେଉଛି; ଏବଂ ମୁଁ ଦୌଡ଼ି ପାରୁନାହିଁ କି ଗୁରୁଣ୍ଡି ପାରୁନାହିଁ ।"

ତାପରେ କମ ସ୍ପଷ୍ଟ ଭାବରେ ଲେଖା ହୋଇଥିଲା "ସେମାନେ ମତେ କିଛି ସମୟ ହେଲା ଗୋଡ଼ାଉଛନ୍ତି, କେତେବେଳେ ମୋତେ ଧରିବେ ଏହା କେବଳ"—ଏଇଠି ବୋଧେ "ସମୟର" ବୋଲି ଲେଖା ହୋଇଥିଲା, କିନ୍ତୁ ତାକୁ ଲିଭେଇ ଦେଇ ତା ଜାଗାରେ ଯେଉଁ ଶବ୍ଦ ବସା ଯାଇଥିଲା ତାହା ମୋଟେ ପଢ଼ି ହେଉ ନ ଥିଲା—କଥା ସେମାନେ ମୋର ଗୃହଆଡ଼େ ତନ୍ନ ତନ୍ନ କରି ଖୋଜୁଛନ୍ତି ।"

ତାପରେ ଅକ୍ଷରଗୁଡ଼ିକ ନିହାତି ବଙ୍କାଟଙ୍କା ହୋଇଯାଇଥିଲା । ସେହି ଅର୍ଥହୀନ ଗାର ଗୁଡ଼ିକୁ ମୁଁ ଅନ୍ଦାଜ କରି ଏହିପରି ଭାବରେ ପଢ଼ିଲି "ସେମାନେ ଆସୁଥିବାର ମୁଁ ଶୁଣିପାରୁଛି ।" ଏହା ପରେ କେତୋଟି ବାକ୍ୟ ଆଦୌ ପଢ଼ି ହେଉ ନ ଥିଲା । ତାପରେ ଗୋଟିଏ ଶବ୍ଦମାଳା ବେଶ ସ୍ପଷ୍ଟ ଭାବରେ ଲେଖା ହୋଇଥିଲା . "ଗୋଟିଏ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର ଗୃଦ୍ଧ୍ରକ ଏମାନଙ୍କୁ ପରିଚାଳିତ କରୁଛି ! ସେ—" ଅକ୍ଷରଗୁଡ଼ିକ ପୁଣି ତରବରିଆ ହୋଇ ଲେଖା ହୋଇଥିବାରୁ କେବଳ ଗୋଟିଏ ଗଣ୍ଡଗୋଳ ଛଡ଼ା ଆଉ କିଛି ଜଣାପଡ଼ୁ ନ ଥିଲା ।

"ଏମାନଙ୍କର ମସ୍ତିଷ୍କ-ଆବରଣ ଅନ୍ୟ ଗୃଦ୍ଧ୍ରକମାନଙ୍କ ଅପେକ୍ଷା ବଡ଼ ଅନେକ ବଡ଼ ଏବଂ ଏମାନଙ୍କର ଦେହ ସରୁ ଓ ଗୋଡ଼ ଅତ୍ୟନ୍ତ ଖର୍ବ । ଏମାନେ ମୃଦୁ ଶବ୍ଦ କରନ୍ତି, ଓ ଶୃଙ୍ଖଳିତ ବସ୍ତୁର ସହିତ ଗୁଲନ୍ତି.....

"ଏବେ ମୁଁ ଏଠାରେ ଆହତ ଓ ଅସମର୍ଥ ହୋଇ ପଡ଼ିଥିଲେ ମଧ୍ୟ, ଏମାନଙ୍କର ଆଗମନ ମୋ ମନରେ ଆଶା ସଞ୍ଚାର କରୁଛି—" କେଭରର ଉପଯୁକ୍ତ କଥା "ଏମାନେ ମୋ ଉପରକୁ ଶର ନିକ୍ଷେପ କରି ନାହାନ୍ତି, କିମ୍ବା କୌଣସି ପ୍ରକାର·····ଆଘାତ କରିବାକୁ ଚେଷ୍ଟା କରି ନାହାନ୍ତି । ମୋର ଇଚ୍ଛା—".

ତାପରେ ପେନସିଲଟି ହଠାତ୍ କାଗଜ ଉପରେ ଗୋଟିଏ ଲମ୍ବା ଗାର ଟାଣି ଦେଇ ଥିଲା, ଏବଂ କାଗଜର ଆରପଟେ ଓ କଡରେ ଲାଗିଥିଲା— ରକ୍ତ !

ମୋର ବୋଧଶକ୍ତି 'ଲୋପ କରି ଦେଇଥିବା ସେହି ଶେଷଶବ୍ଦ ଟି ଚାହୁଁଛି ହାତରେ ଧରି ମୁଁ ନିର୍ବାକ ବିସ୍ମୟରେ ସେଠି ଠିଆ ହୋଇଥିବା ବେଳେ କୌଣସି ଅତି କୋମଳ, ମୃଦୁଳ ଓ ଶୀତଳ ବସ୍ତୁ ମୋର ହାତକୁ କ୍ଷଣିକ ଲାଗି ସ୍ପର୍ଶ କରି ବିଲୀନ ହୋଇଗଲା ଏବଂ ତାପରେ କୌଣସି ବସ୍ତୁ, କ୍ଷୁଦ୍ର ଶୁଭ୍ର ଗୋଟିଏ କଣିକା, ଗ୍ଲାସ ପାର ହୋଇ ଖସି ଆସିଲା । ତାହା ଥିଲା ଅତି କ୍ଷୁଦ୍ର ଗୋଟିଏ ତୁଷାରକଣା, ପ୍ରଥମ ତୁଷାର କଣା ରାତ୍ରିର ଅଗ୍ରଦୂତ ।

ମୁଁ ଚମକିପଡ଼ି ଉପରକୁ ଚାହିଁଲି । ଆକାଶ ବର୍ତ୍ତମାନ ଗାଢ଼ ହୋଇ ପ୍ରାୟ ମସୀମୟ ହୋଇ ଉଠିଥିଲା, ଏବଂ ସ୍ଥିରଭାବରେ ନିରୀକ୍ଷଣ କରୁଥିବା ଘନାୟମାନ ତାରକାପୁଞ୍ଜରେ ବ୍ୟାପ୍ତ ହୋଇଯାଇଥିଲା । ମୁଁ ପୂର୍ବ ଦିଗକୁ ଚାହିଁଲି, ସେଠି ସଙ୍କୁଚିତ ଅଞ୍ଚଳର ଆଲୋକ ଗାଢ଼ ହରିଦ୍ରା ବର୍ଣ୍ଣଦ୍ୱାରା ରଞ୍ଜିତ ହୋଇଥିଲା ; ପଶ୍ଚିମ ଦିଗକୁ ଚାହିଁଲି, ଘନାୟମାନ ଶ୍ୱେତ କୁହୁଡ଼ି ଯୋଗୁଁ ସୂର୍ଯ୍ୟ ତାର ଅର୍ଦ୍ଧେକ ଉତ୍ତାପ ଓ ଜ୍ୟୋତି ହରାଇ ଆଗ୍ନେୟଗିରି ଗହ୍ୱରର ପରିଧିକୁ ସ୍ପର୍ଶ କରୁଥିଲା, ଦୃଷ୍ଟି ସମକ୍ଷରୁ ଲୁଚି ଯାଉଥିଲା । ଇତଃସ୍ତତଃ-ନିକ୍ଷିପ୍ତ ଓ ଦନ୍ତୁରିତ ଶିଳାଗୁଡ଼ିକ ଏବଂ କଣ୍ଟାବୁଦାଗୁଡ଼ିକ ସୂର୍ଯ୍ୟର କ୍ଷୀଣ ଆଲୋକରେ କଣ୍ଟକିତ ଓ ବିକୃତାକୃତ କଳା ମୂର୍ତ୍ତିରୂପେ ଧାବମାନ ହୋଇଥିଲେ । ପଶ୍ଚିମଦିଗସ୍ଥ କାଳିମାର ବିଶାଳ ହ୍ରଦ ଭିତରକୁ କୁହୁଡ଼ିର ଗୋଟିଏ ପ୍ରକାଣ୍ଡମାଳା ବୁଡ଼ି ଯାଉଥିଲା । ଶୀତଳ ପବନର ଗୋଟିଏ ସ୍ରୋତ ସମସ୍ତ ଆଗ୍ନେୟଗିରି ଗହ୍ୱରକୁ ଘେରେଇ ଦୌଡ଼ୁଥିଲା । ସହସା

ଦମକାଏ ତୁଷାର ଆସି ମୋ ଉପରେ କ୍ଷଣକ ଲାଗି ଅଡ଼ାଡ଼ ହୋଇ ପଡ଼ିଲା । ଏବଂ ମୋର ଚତୁର୍ଦ୍ଦିଗସ୍ଥ ଦୁନିଆ ଧୂସର ଓ ଅସ୍ପଷ୍ଟ ହୋଇଗଲା ।

ଠିକ୍ ସେହି ସମୟରେ ଶୁଭିଲା ସେଇ ଶବ୍ଦ—ପ୍ରଥମ ପରି ଉଚ୍ଚ ଓ ତୀକ୍ଷ୍ଣ ଭାବରେ ନୁହେଁ, ବରଂ ମୁମୂର୍ଷୁର କଣ୍ଠସ୍ୱର ପରି ଅସ୍ପଷ୍ଟ ଓ କ୍ଷୀଣ ଭାବରେ —ସେହି ଶବ୍ଦ ଯାହାକି ପ୍ରଥମେ ଆଗାମୀ ଦିନସବୁ ସ୍ୱାଗତ କରିଥିଲା, ଠିକ୍ ସେଇ ଘଣ୍ଟାପିଟିବାର ଶବ୍ଦ ଠଣ୍........ଠଣ.....ଠଣ୍!........

ତାହା ଆଗ୍ନେୟଗିରିର ଗହ୍ୱରର ଚତୁର୍ଦ୍ଦିଗରେ ପ୍ରତିଧ୍ୱନିତ ହେଲା, ତାହା ତାଳକାଳଗତର ନକ୍ଷତ୍ରମାନଙ୍କର ସ୍ପନ୍ଦନ ସହିତ ତାଳ ରଖି ସ୍ପନ୍ଦିତ ହେଲାପରି ମନେ ହେଲା, ବର୍ତ୍ତୁଳ ସୂର୍ଯ୍ୟର ରକ୍ତପରି ଲାଲ ଭଗ୍ନାଂଶ ବୁଡି ଯାଉ ଯାଉ ସେହି ଘଣ୍ଟା ବାଜି ଉଠିଲା: ଠଣ୍ !........ଠଣ୍........ଠଣ୍........

କେତେଥର କଣ ହେଲା ? ସେହି ଘଣ୍ଟା ବାଜି ଉଠୁଥିବା ସମୟ ଭିତରେ ମୁଁ ସେଠି ନିର୍ବୋଧ ପରି ଛିଡ଼ାହୋଇ ରହିଲି । ଶେଷରେ ସେହି ଶବ୍ଦ ବନ୍ଦ ହୋଇଗଲା ଏବଂ ହଠାତ୍ ଗଡ଼ାଣି ଶେଷରେ ଥିବା ସୁଡ଼ଙ୍ଗର ଖୋଲା ମୁହଁ ଗୋଟିଏ ଆଖି ପରି ବୁଜି ହୋଇଗଲା ଏବଂ ଦୃଷ୍ଟି ସାମନାରୁ ହଟିଗଲା ।

ତାପରେ ପ୍ରକୃତରେ ମୁଁ ଏକୁଟିଆ ହୋଇ ପଡ଼ିଲି ।

ମୋର ମୁଣ୍ଡ ଉପରୁ, ମୋର ଚାରିକଡ଼ରୁ; ମୋର ନିକଟତର ହୋଇ ପ୍ରତିକ୍ଷଣରେ ନିବିଡ଼ତର ଭାବରେ ମତେ ଆବଦ୍ଧ କରି, ମାଡ଼ି ଆସୁଥିଲା ସେହି ଆଦିଅନ୍ତ-ହୀନ ଶାଶ୍ୱତ ରାତ୍ରି—ଯାହା ସୃଷ୍ଟି ପୂର୍ବରୁ ଥିଲା, ଏବଂ ଲୟପରେ ରହିବ; ସେହି ବିରାଟ ଶୂନ୍ୟତା ଯାହାର ଗର୍ଭରେ ସମସ୍ତ ଆଲୋକ, ଜୀବନ ଓ ସବୁ ଆକାଶଚ୍ୟୁତ ନକ୍ଷତ୍ରର ସ୍ତିମିତ ଓ ନିର୍ବାଣୋନ୍ମୁଖ ଜ୍ୟୋତି ଭୁଲି ବିଲୀନ ହୋଇଯାନ୍ତି, ସେହି ଶୀତଳତା, ସେହି ନୀରବତା, ସେହି ନିସ୍ତବ୍ଧତା —ମହାଶୂନ୍ୟର ସେହି ଅସୀମ ଓ ଚରମ ରାତ୍ରି ।

ନିଃସଙ୍ଗତା ଓ ନିର୍ଜ୍ଜନତାର ଭାବ ପରିବର୍ତ୍ତିତ ହୋଇ ବର୍ତ୍ତମାନ ବୋଧହେଲା କୌଣସି ଗୋଟିଏ ବିରାଟ ସତ୍ତା ମୋ ଉପରକୁ ଝୁଙ୍କି ପଡ଼ୁଛି, ମତେ ପ୍ରାୟ ସ୍ପର୍ଶ କରୁଛି ।

ମୁଁ ଚିତ୍କାର କରି ଉଠିଲି, "ନା, ନା ! ଏତେ ଶୀଘ୍ର ନୁହେଁ ! ଏତେ ଶୀଘ୍ର ନୁହେଁ ! ରହ ! ଓଃ, ରହ !" ମୋର କଣ୍ଠସ୍ୱର ଆର୍ତ୍ତନାଦରେ ପରିଣତ ହେଲା । ମୁଁ ଲେଗ୍ସ୍ ବୋଗ୍ସ୍ କାଗଜଟି ଫୋପାଡ଼ିଦେଲି, ଏବଂ ଦଉଡ଼ି ଠିକ୍ କରିବାପାଇଁ ଚୂଡ଼ା ଉପରକୁ ଫେରିଗଲି । ତାପରେ ମୋ ମୁଠାରେ ଅବଶିଷ୍ଟ ଥିବା ସମସ୍ତ ଇଚ୍ଛା ଶକ୍ତି ଏକତ୍ରିତ କରି, ମୁଁ ଯେଉଁ ଚନ୍ଦ୍ର ରଖି ଯାଇଥିଲି ତାହାରି ଆଡ଼କୁ ଲମ୍ଫ ଦେଲି । ସେହି ଚନ୍ଦ୍ର ବର୍ତ୍ତମାନ ଅନେକ ଦୂରରେ ଗ୍ରହର ଠିକ୍ ଧାରରେ ଥିଲା ଏବଂ ଝାପସା ଦେଖାଯାଉଥିଲା ।

ଲମ୍ଫ ପରେ ଲମ୍ଫ—ପ୍ରତ୍ୟେକ ଲମ୍ଫକୁ ସାତଯୁଗ ଲାଗୁଥିଲା ।

ମୋ ସମ୍ମୁଖରେ ସୂର୍ଯ୍ୟର ପାଣ୍ଡୁର ସର୍ପିଲ-ମେଖଳା-ବେଷ୍ଟିତ ଅଂଶ ବୃଦ୍ଧି ବୃଦ୍ଧି ଯାଉଥିଲା, ଏବଂ ଅଗ୍ରଗାମୀ ଛାୟା ଲମ୍ବି ଲମ୍ବି ଯାଇ ମୁଁ ଗୋଲକ ନିକଟରେ ପହଞ୍ଚିବା ପୂର୍ବରୁ ତାକୁ ଆବୃତ କଲା, ମୁଁ ଦୁଇ ମାଇଲ ଦୂରରେ ଥିଲି, ଶହେ କ ତାଠୁ ବେଶି ଲମ୍ଫର ବାଟ, ଏବଂ ମୋର ସ୍ପେସଆଡ଼ର ବାୟୁ ଦମକଳ ଦ୍ୱାରା ଟାଣି ହୋଇଗଲା ପରି କମି କମି ଯାଉଥିଲା, ଏବଂ ମୋର ହାତ ଗୋଡ଼ର ଗଣ୍ଠି ଥଣ୍ଡାରେ କୋଲ ମାରିଯାଉଥିଲା । କିନ୍ତୁ ମୁଁ ଯଦି ମରିଯାଇଥାନ୍ତି, ନିଶ୍ଚୟ ଲମ୍ଫ ଦେଉଁ ଦେଉଁ ମରିଥାନ୍ତି । ଥରେ, ଦୁଇଥର ଲମ୍ଫ ଦେଲାବେଳେ ବରଫ ଦରଫରେ ପଡି ମୋର ଗୋଡ଼ ଖସିଯାଇ ଲମ୍ଫକୁ କମେଇ ଦେଲା ; ଥରେ ମୁଁ ବୁଦା ଭିତରେ କଣ୍ଟିତ ହୋଇ ପଡ଼ିଲି ଏବଂ ବୁଦାର ଡାଳଗୁଡ଼ିକ ଖଣ୍ଡ ଖଣ୍ଡ ହୋଇ ଧୂଳିପରି ଉଡ଼ିଗଲା ; ଆଉ ଥରେ ମୁଁ ତଳକୁ ଖସି ଆସିଲା ବେଳକୁ ଝୁଣ୍ଟି ପଡ଼ି ଗଡ଼ି ଗଡ଼ି ଯାଇ ଗୋଟିଏ ନାଳ ଭିତରେ ପଡ଼ିଲି, ଏବଂ ଆଣ୍ଠୁ ଗଣ୍ଠି ଛିଣ୍ଡେଇ, ରକ୍ତ ବୋଳି ହୋଇ ଉଠି ଆସିଲି, ଏବଂ କିଛିକ୍ଷଣ ଯାଏ ମୋର ବାଟ ଭୁଲିଗଲି ।

କିନ୍ତୁ ଲମ୍ଫ ଦେଇ ଶୂନ୍ୟରେ ଭାସିବା ବେଳର ସେହି ବିରକ୍ତିଜନକ ଅବସ୍ଥା ତୁଳନାରେ ଏସବୁ ଘଟଣା କିଛି ନୁହେଁ । କୁଆଁର ପରି ଅଜାଡ଼ି ହୋଇ ପଡ଼ୁଥିବା ରାତି ଆଡ଼କୁ ମୁଁ ଥରକୁ ଥର ଏପରି ଭାସିଯାଉଥିଲି । ମୁଁ ନିଃଶ୍ୱାସ ନେଲାବେଳେ ଚିଁ ଚିଁ ଶବ୍ଦ ହେଉଥିଲା, ଏବଂ ମୋର ଫୁସ୍ଫୁସ୍ ଭିତରେ ଛୁରୀ ଘୂରିଲା ପରି ବୋଧ ହେଉଥିଲା । ମୋର ହୃତପିଣ୍ଡ ଯାଇ

ବ୍ରହ୍ମ ଭାଳୁଙ୍କରେ ପିଣ୍ଟି ହେଲା ପରି ଲାଗୁଥିଲା । "ମୁଁ ସେଠି ପହଞ୍ଚି ପାରିବି ତ ? ହେ ଭଗବାନ୍‌! ପହଞ୍ଚି ପାରିବି ତ ?"

ମୁଁ ମୂର୍ତ୍ତିମାନ ଯନ୍ତ୍ରଣାରେ ପରିଣତ ହେଲି ।

ମୋର ବେଦନା ଓ ନୈରାଶ୍ୟ ଚିତ୍କାର କରି ଉଠିଲା, "ଶୋଇପଡ଼ ! ଶୋଇପଡ଼ !"

ମୁଁ ଯେତେ ନିକଟକୁ ପ୍ରାଣପଣେ ଆଗେଇଗଲି, ଗୋଲକଟି ସେତେ ଦୂରେଇ ଦୂରେଇ ଗଲାପରି ଲାଗିଲା । ମୁଁ ପଙ୍ଗୁ ହୋଇ ପଡ଼ିଥିଲି; ଝୁଣ୍ଟିବାକୁ ଲାଗିଲି, ମୋର ଦେହ ଛେଚା ଓ କାଟି ହୋଇଗଲା ଅଥଚ ରକ୍ତ ବୋହିଲା ନାହିଁ ।

ତାହା ନିକଟରେ ଦେଖାଗଲା ।

ମୁଁ ଆଣ୍ଠେଇଁ ପଡ଼ିଲି, ଏବଂ ମୋର ଫୁସ୍‌ଫୁସ୍‌ର ସବୁ ପବନ "ଫୁଁ" କରି ବାହାରିଆସିଲା ।

ମୁଁ ଗୁରୁଣ୍ଡିବାକୁ ଆରମ୍ଭ କଲି । ମୋର ଓଠରେ ନୀହାର କଣିକା ଜମିଗଲା, ନଖରୁ ବରଫ କଣାର ମାଳା ଝୁଲିବାକୁ ଲାଗିଲା, ହିମଶୀତଳ ବାୟୁମଣ୍ଡଳରେ ମୋର ଦେହ ଧଳା ହୋଇଉଠିଲା ।

ମୁଁ ଗୋଲକର ପ୍ରାୟ ଦାରଗଜ ପାଖକୁ ଆସିଗଲି । ମୋର ଆଖି ଝାପସା ହୋଇଯାଇଥିଲା । ନୈରାଶ୍ୟ ଚିତ୍କାର କରି ଉଠିଲା, "ଶୋଇପଡ଼ ! ଶୋଇପଡ଼ !"

ମୁଁ ଗୋଲକକୁ ସ୍ପର୍ଶକଲି, ଏବଂ ମୋର ଗତି ବନ୍ଦ ହୋଇଗଲା । ନୈରାଶ୍ୟ ଡାକି ଉଠିଲା, ଅତି ବିଳମ୍ବ ହୋଇଯାଉଛି ! ଶୋଇପଡ଼ !"

ମୁଁ ପ୍ରାଣପଣେ ତାକୁ ଦବେଇ ରଖିଲି । ଗମ୍ଭୀର ବେଦନା ନିକଟରେ ମୁଁ ପହଞ୍ଚିଯାଇଥିଲି—ଅଚଳ ଓ ଅର୍ଦ୍ଧମୃତ ଅବସ୍ଥାରେ । ମୋର ଗୁଣ୍ଠିଆଡ଼େ ବରଫ ଜମି ଯାଉଥିଲା । ମୁଁ ଗୁରୁଣ୍ଡି ଗୁରୁଣ୍ଡି ଭିତରେ ପଶିଲି । ଭିତରେ ଟିକେ ଉଷୁମ ବାୟୁ ଅବଶିଷ୍ଟ ରହିଥିଲା ।

ବରଫକଣିକାଗୁଡ଼ିକ—ବାୟୁକଣିକାଗୁଡ଼ିକ—ମୋର ଗୁଣ୍ଠିଆଡ଼େ ନୃତ୍ୟ ଆରମ୍ଭ କରି ଦେଇଥିଲେ । ମୁଁ ହିମଶୀତଳ ସ୍ରୋତରେ ବାୟୁର

ଗମନାଗମନ ନିୟନ୍ତ୍ରଣ କରୁଥିଲା ନଳୀଟି ଭିତରକୁ ଠେଲିଦେବାକୁ ଚେଷ୍ଟା କରି ତାଙ୍କୁ କଷିକରି ଜୋରରେ ଘୁରେଇଦେଲି । 'ମୁଁ କାନ୍ଦକାନ୍ଦ ହୋଇ ପଡ଼ିଥିଲି ଏବଂ ଖନମାରି ଯାଉଥିବା ଦାନ୍ତ ଭିତର ଦେଇ କହିଲି, "ନଷ୍ଟ କରିବ !" ତାପରେ, ଭାଙ୍ଗିଗଲି ପରି ଲାଗୁଥିବା ଥର ଥର ଆଙ୍ଗୁଠିଗୁଡ଼ିକ ମୁଁ ଝିଙ୍କାର ବୋତାମଆଡ଼କୁ ବଢ଼ାଇଲି ।

ମୁଁ ସୁଇଚ୍‌ଗୁଡ଼ିକ ମୂର୍ଖ ପରି ଅଣ୍ଡାଳିବାକୁ ଲାଗିଲି, କାରଣ ଆଗେ କେବେ ମୁଁ ସେଗୁଡ଼ିକ ବ୍ୟବହାର କରି ଶିଖି ନ ଥିଲି । ବାଷ୍ପାଚ୍ଛନ୍ନ କାଚ ଭିତର ଦେଇ ମୁଁ ଅସ୍ତଗାମୀ ସୂର୍ଯ୍ୟର ପ୍ରଜ୍ଜ୍ୱଳିତ ଲୋହିତ ଶିଖାଗୁଡ଼ିକ ଅସ୍ପଷ୍ଟ ଭାବରେ ଦେଖିପାରୁଥିଲି—ସେହି ଶିଖାଗୁଡ଼ିକ ତୁଷାର ଝଟିକା ଭିତରେ ନୃତ୍ୟ କରୁଥିଲେ ଓ ସ୍ପନ୍ଦିତ ହେଉଥିଲେ । ଆହୁରମଧ୍ୟ ବହଳ ହୋଇ ଜମି ଯାଉଥିବା ବରଫ ତଳେ ସ୍ଥୂଳ ହୋଇ ଉଠୁଥିବା, ନଇଁ ପଡ଼ୁଥିବା, ଭାଙ୍ଗି ପଡ଼ୁଥିବା କଣ୍ଟାବୁଦାଗୁଡ଼ିକର କଳା ଆକୃତି ମୁଁ ଦେଖି ପାରୁଥିଲି । ବରଫ ଆହୁରି ଆହୁରି ବହଳ ହୋଇ ଘୂରି ଘୂରି ପଡ଼ୁଥିଲା ଏବଂ ଅସ୍ପଷ୍ଟ ଆଲୁଅରେ କଳା ଦିଶୁଥିଲା । ବର୍ତ୍ତମାନ ବି ମୁଁ ଯନ୍ତ୍ର ସୁଇଚ୍‌ଗୁଡ଼ିକକୁ ଆୟତ୍ତ କରି ନ ପାରେଁ ?

ତାପରେ ହଠାତ୍ ମୋର ହାତ ତଳେ କଣ ଗୋଟିଏ "ଖଟ୍"କରି ଶବ୍ଦ କଲା, ଏବଂ ମୁହୂର୍ତ୍ତକ ଭିତରେ ଚନ୍ଦ୍ର ଜଗତର ଶେଷ ଦୃଶ୍ୟ ମୋ ଆଖି ଆଗରୁ ଲୁଚିଗଲା । ମୁଁ ଅନ୍ତର୍-ଜାତିକ ଗୋଲକର ନିଃଶବ୍ଦତା ଓ ଅନ୍ଧକାର ଭିତରେ ବସି ରହିଲି ।



# ୨୦

## ଅନନ୍ତ ମହାଶୂନ୍ୟରେ ବେଡ଼୍‌ଫୋର୍ଡ୍‌

ମୋର ପ୍ରାୟ ମନେ ହେଉଥିଲା ଯେ ମୁଁ ମରିଯାଇଛି । ମୁଁ କଳ୍ପନା କରି ଦେଖିଲି; କୌଣସି ଲୋକ ହଠାତ୍ ପ୍ରଚଣ୍ଡ ଆଘାତପାଇ ମରିଗଲେ, ସେ ଏହିପରି ବୋଧକରିବ । ଗୋଟିଏ ମୁହୂର୍ତ୍ତରେ ଯନ୍ତ୍ରଣାଜନକ ଅଗ୍ନି ଓ ଭୟର ଅନୁଭବ; ଅନ୍ୟ ମୁହୂର୍ତ୍ତରେ ଅନ୍ଧକାର ଓ ନିସ୍ତବ୍‌ଧତା—ଆଲୋକ ନାହିଁ, ପ୍ରାଣ ନାହିଁ; ସୂର୍ଯ୍ୟ ନାହିଁ, ଚନ୍ଦ୍ର ନାହିଁ କିମ୍ବା ନକ୍ଷତ୍ର ନାହିଁ—କେବଳ ଅସୀମ ଶୂନ୍ୟ । ଏହା ମୋର ନିଜର କାର୍ଯ୍ୟଦ୍ୱାରା ଘଟିଲେ ମଧ୍ୟ, କେଭର ସହିତ ମୁଁ ଏପରି ପରିସ୍ଥିତିର ଅଭିଜ୍ଞତା ଆଗରୁ ଲାଭ କରିଥିଲେ ମଧ୍ୟ, ମୁଁ ବିସ୍ମିତ ହୋଇଗଲି, ଜଡ଼ହୋଇଗଲି, ଅଭିଭୂତ ହୋଇଗଲି । ବିରାଟ ଅନ୍ଧକାର ଭିତରକୁ ମତେ କିଏ ଟେକି ନେଇ ଯାଉଥିଲା ପରି ମୋର ମନେହେଲା । ମୋର ଆଙ୍ଗୁଠିଗୁଡ଼ିକ ବୋତାମରୁ ଖସିଯାଇ ଶୂନ୍ୟରେ ଭାସି ଉଠିଲା, ମୁଁ ଶୂନ୍ୟରେ ଝୁଲିବାକୁ ଲାଗିଲି, ସତେ ଯେପରି ମୁଁ ସମ୍ପୂର୍ଣ୍ଣ ଲୋପପାଇ ଯାଇଥିଲି, ଏବଂ ପରିଶେଷରେ ମୁଁ ଅତି ଧୀରେ ଓ ମୃଦୁ ଭାବରେ ଗଣ୍ଠିର ଉପରକୁ ଓ ସୁନା ଶୀକୁଳି ଉପରକୁ, ଏବଂ ଗୋଲକର ମଧ୍ୟ ସ୍ଥଳକୁ ଆସିଥିବା ଶାବଳ ଦୁଇଟି ଉପରକୁ ଖସିଆସିଲି !

ସେହି ଭାସମାନ ଅବସ୍ଥା କେତେ ସମୟ ସ୍ଥାୟୀ ହେଲା ମୁଁ ଜାଣେ ନାହିଁ । ଅବଶ୍ୟ ଗୋଲକ ଭିତରେ ମଣିଷର ପାର୍ଥିବ ସମୟ-ଜ୍ଞାନ କୌଣସି କାମକୁ ଆସୁ ନ ଥିଲା । ଚନ୍ଦ୍ର ଅପେକ୍ଷା ଏଠାରେ ତାହା ଅଧିକ ନିଷ୍ଫଳ ହେଉଥିଲା । ଗଣ୍ଠିରଟି ସ୍ପର୍ଶ କଲାମାତ୍ରକେ ମୁଁ ସ୍ୱପ୍ନସ୍ଥାନ ନିଦ୍ରାରୁ ଜାଗି ଉଠିଲାପରି ବୋଧକଲି । ମୁଁ ବୁଝିପାରିଲି ଯେ ମୁଁ ଯଦି ଜାଗି ରହିବାକୁ ଓ ବଞ୍ଚିରହିବାକୁ ଚାହେଁ, ତାହାହେଲେ ଆଲୁଅ ଜାଳି କିମ୍ବା ଗୋଟିଏ ଝରକା ଖୋଲି ଦେଇ ଦେଖିପାରିଲା ଭଳିଆ କୌଣସି ଜିନିଷରେ ମୋର ଦୃଷ୍ଟି ନିବଦ୍ଧ

କରିବାକୁ ପଡ଼ିବ । ତାଛଡ଼ା, ମୋର ଦେହ ଖାଲି ଅଣ୍ଡା ହୋଇଯାଇଥିଲା । ତେଣୁ ମୁଁ ଗଣ୍ଠିଗିନ୍କୁ ଠେଲି ଦେଇ କାଚ ଭିତରେ ଥିବା ସବୁ ସବୁ ଦଉଡ଼ିକୁ ମୁଠେଇ ଧରିଲି, ଗୁରୁଣ୍ଡି ଗୁରୁଣ୍ଡି ଗଣ୍ଠିର ବେଢା ପର୍ଯ୍ୟନ୍ତ ଚଢ଼ି-ଗଲି, ଏବଂ ଏତଦ୍ଦ୍ୱାରା ଆଲୁଅ ଓ ଝିଡ଼କିର ଢଗ ଠିକ୍ କରି ପାରିଲି । ତା'ପରେ ଗୋଟିଏ ଝଟ୍‌କାରେ ଠେଲିହୋଇ ଅରେ ଗଣ୍ଠିଖିର ଖୁଣ୍ଟପାଖେ ଭସି ଭସି ବୁଡ଼ିଯାଇ, ଏବଂ ଉଶ୍ୱାସ ଭାବରେ ଖାପୁଥିବା କୌଣସି ବଡ଼ ଓ ଯାଉଥିଲା କଳାସର ସ୍ପର୍ଶରେ ଚମକିପଡ଼ି, ମୁଁ ବୋତାମର ନିକଟରେ ଥିବା ଦଉଡ଼ିକୁ ଧରି ପାରିଲି, ଏବଂ ବୋତାମ ପାଖରେ ପହଞ୍ଚିଲି । ଯେଉଁ କଳାସର ସ୍ପର୍ଶରେ ମୁଁ ଚମକି ପଡ଼ିଥିଲି ତାହା କଣ, ଦେଖିବା ପାଇଁ ମୁଁ ସର୍ବପ୍ରଥମେ ଆଲୁଅଟି ଜାଳିଲି । ମୁଁ ଦେଖିଲି "ଲସ୍ତ୍ରଙ୍କ ଖବର"ର ପୁରୁଣା ସଂଖ୍ୟାଟି ତା ଜାଗାରୁ ଖସିଯାଇ ଶୂନ୍ୟରେ ଭାସିବୁଲୁଛି । ତାହା ମତେ ଅସୀମରୁ ପୁଣି ମୋର ନିଜର ପ୍ରକୃତ ସୀମା ମଧ୍ୟକୁ ଟାଣି ଆଣିଲା । ତାହା ଦେଖି ମୁଁ କିଛି ସମୟ ଯାଏଁ ହସି ହସି ବେଦମ ହୋଇ ଉଠିଲି. ଏବଂ ଏହା ଫଳରେ ନଳୀରୁ କିଛି ଅମ୍ଳଜାନ ବାହାର କରିବାକୁ ପଡ଼ିଲା । ତା ପରେ ମୁଁ ଉତ୍ତାପ ଜାତ କରିବାର ଯନ୍ତ୍ରଟି ଲଗେଇଦେଇ ଦେହକୁ ଉଷ୍ମ କରିନେଲି, ଏବଂ କିଛି ଖାଦ୍ୟ ବାହାର କରି ଖାଇଲି । ଗୋଳକଟି କେଉଁ ଦିଗକୁ ଯାଉଥିଲା ଏହା କୌଣସି ଉପାୟରେ ଅନ୍ଦାଜ କରିବାକୁ ଚେଷ୍ଟା କରିବା ପାଇଁ ମୁଁ ଏହାପରେ ଅତି ସାବଧାନତା ସହିତ କେଭରାଇଟ୍ ଝିଡ଼କିଗୁଡ଼ିକରେ ହାତ ଦେଲି ।

ମୁଁ ପ୍ରଥମେ ଯେଉଁ ଝିଡ଼କିଟି ଖୋଲିଲି ତାକୁ ସାଙ୍ଗେ ସାଙ୍ଗେ ବନ୍ଦ କରି ଦେବାକୁ ପଡ଼ିଲା, କାରଣ ସୂର୍ଯ୍ୟର ଉଗ୍ର ଆଲୋକ ଆସି ମତେ ଅଭିଭୂତ କରିଦେଲା, ଏବଂ ମୁଁ ସେଇ ଆଲୋକରେ ଅନ୍ଧୀଭୂତ ହୋଇ କିଛିକ୍ଷଣଯାଏଁ ଶୂନ୍ୟରେ ଝୁଲି ରହିଲି । କିଛି ସମୟ ଯାଏଁ ଚାହା କରି ମୁଁ ସେଇ ଝରକାର ସମକୋଣରେ ଥିବା ଝରକାକୁ ଖୋଲିଲି, ଏବଂ ଦ୍ୱିତୀୟଥର ବିରାଟ ଅର୍ଦ୍ଧଚନ୍ଦ୍ର ପଛରେ କ୍ଷୁଦ୍ର ଅର୍ଦ୍ଧ-ପୃଥିବୀ ମୋର ଦୃଷ୍ଟିଗୋଚର ହେଲା । ଚନ୍ଦ୍ରଠାରୁ ମୁଁ କେତେ ଦୂରରେ ଥିଲି ତାହା ଦେଖି ଆଶ୍ଚର୍ଯ୍ୟ ହୋଇଗଲି ।

ମୁଁ ଅନୁମାନ କରୁଥିଲି ଯେ, ଆମର ଯାତ୍ରାରମ୍ଭରେ ପୃଥିବୀର ବାୟୁମଣ୍ଡଳ ଆମକୁ ଯେପରି ଧକ୍କା ଦେଇଥିଲା, ସେପରି ଧକ୍କା ମୁଁ ସାମାନ୍ୟ ପାଇବି କିମ୍ବା ଜମା ପାଇବି ନାହିଁ । ଏବଂ କେବଳ ଏତିକି ନୁହେଁ, ମୁଁ ଆହୁରି ମଧ୍ୟ ଅନୁମାନ କରିଥିଲି ଯେ, ଚନ୍ଦ୍ରର ପୃଷ୍ଠରୁ ନିକ୍ଷିପ୍ତ ହୋଇ ସରଳ ସ୍ପର୍ଶରେଖାରେ ଉଡ଼ି ଆସିଲାବେଳେ ଗୋଲାକାର ଗତି ପୃଥିବୀ ପୃଷ୍ଠରୁ ସେହିପରି ଆସିବା ବେଳର ଗତି ଅପେକ୍ଷା ଅନ୍ତତଃ ୨୮ ଭାଗ କମ ହେବ । ମୁଁ ଭାବିଥିଲି, ସେହି ମୁହୂର୍ତ୍ତରେ ଗୋଲକଟି ଆଗ୍ନେୟଗିରି ଚନ୍ଦ୍ରର ଉପରେ ଝୁଲୁଛି ଓ ରାତ୍ରିର ଠିକ୍ ସୀମାନ୍ତରେ ରହୁଛି ବୋଲି ମୁଁ ଦେଖିବି, କିନ୍ତୁ ତା ପରିବର୍ତ୍ତିରେ ଦେଖିଲି ଯେ ସେସବୁ ସମଗ୍ର ଆକାଶକୁ ବ୍ୟାପି ରହିଥିବା ଶୁଭ୍ର ଅର୍ଦ୍ଧଚନ୍ଦ୍ରର ବହିଃରେଖାର କେବଳ ଗୋଟିଏ ଅଂଶ ହୋଇଯାଇଛି । ଏବଂ କେଭର—?

ସେ ବର୍ତ୍ତମାନ ଗୋଟିଏ କଳନାତୀତ କ୍ଷୁଦ୍ର ବିନ୍ଦୁରେ ପରିଣତ ହୋଇ ଯାଇଥିଲା ।

ତାର କଣ ଘଟିଥିବ, ଏହା ମୁଁ ଅନୁମାନ କରିବାକୁ ଚେଷ୍ଟା କଲି । କିନ୍ତୁ ସେହି ସମୟରେ ମୁଁ ମୃତ୍ୟୁ ଛଡ଼ା ଆଉ କିଛି ଭାବି ପାରିଲି ନାହିଁ । କୌଣସି ଅଶେଷ ଉଚ୍ଚ ନୀଳ ପ୍ରପାତର ପାଦ ଦେଶରେ ତାର ଭଗ୍ନ, ଛିନ୍ନଭିନ୍ନ ଦେହର ଦୃଶ୍ୟ ମୋର କଳ୍ପନା ଚକ୍ଷୁ ଆଗରେ ଭାସି ଉଠିଲା । ଏବଂ ତାର ଚତୁର୍ଦ୍ଦିଗରେ ବେଢ଼ି ବିସ୍ମାରିତ ଦୃଷ୍ଟିରେ ଚାହିଁ ରହିଥିଲେ ସେହି ନିର୍ବୋଧ ପୋକ ଗୁଡ଼ିକ.....

ଭାସମାନ ଖବର କାଗଜ ଖଣ୍ଡିକର ସ୍ପର୍ଶର ପ୍ରେରଣା ପାଇ ମୁଁ ପୁଣି କିଛିକ୍ଷଣ ଯାଏଁ ବାସ୍ତବଦର୍ଶୀ ହୋଇଉଠିଲି । ମୁଁ ସ୍ପଷ୍ଟ ବୁଝି ପାରୁଥିଲି ଯେ, ମତେ ପୃଥିବୀକୁ ଫେରିଯିବାପାଇଁ ଚେଷ୍ଟା କରିବାକୁ ପଡ଼ିବ, କିନ୍ତୁ ପ୍ରକୃତରେ ପୃଥିବୀଠାରୁ ଦୂରକୁ ଦୂରକୁ ଚାଲି ଯାଉଥିଲି । କେଭରର ଯାହା ଘଟି ଥାଉନା କାହିଁକି ଏପର୍ଯ୍ୟନ୍ତ ସେ ବଞ୍ଚି ରହିଥିଲେ ମଧ୍ୟ—ଯଦିଓ ତାର ରକ୍ତବୋଳା ଟୋପିଟି ଦେଖିଲା ପରେ ଏହା ଅସମ୍ଭବ ବୋଲି ମନେ ହେଉଥିଲା—ମୁଁ ତାକୁ ସାହାଯ୍ୟ କରିବାକୁ ଅସମର୍ଥ ଥିଲି । ସେହି ରଶ୍ମିଶୂନ୍ୟ ରାତ୍ରିର ଓଢ଼ଣା ସେପଟେ ସେ ମୃତ କି ଜୀବନ୍ତ ଅବସ୍ଥାରେ ରହିଥିଲା—ଏବଂ ଅନ୍ତତଃ ମୁଁ

ଆମର ସାଥୀ ମନୁଷ୍ୟମାନଙ୍କୁ ତାର ସାହାଯ୍ୟାର୍ଥେ ଆହ୍ୱାନ କରି ଆଣି ପାରିବା ପର୍ଯ୍ୟନ୍ତ ତାଙ୍କୁ ସେଠି ରହିବାକୁ ପଡିବ । ମୁଁ ତାହା କରିବା ଉଚିତ ହେବ କି ? ଏଇ ରକମ ଗୋଟିଏ କଳ୍ପନା ମୋ ମନରେ ଥିଲା; ସମ୍ଭବ ହେଲେ ପୃଥିବୀକୁ ଫେରିଆସିବି, ଏବଂ ତାପରେ—ଉତ୍ତମରୂପେ ବିବେଚନା କଲାପରେ ଯେପରି ସ୍ଥିରୀକୃତ ହେବ—ହୁଏତ କେତେଜଣ ସୁବିବେଚୀ ଲୋକଙ୍କୁ ଗୋଲକଟି ଦେଖେଇବି ଓ ବୁଝେଇ ଦେବି, ଏବଂ ସେମାନଙ୍କର ସହଯୋଗରେ କାର୍ଯ୍ୟ କରିବି; କିମ୍ବା ମୋର ଗୁପ୍ତଜ୍ଞାନ ଲୁଚେଇ ରଖିବି, ସୁନା ବିକି ଦେଇ ସେଥିରେ ଅସ୍ତ୍ରଶସ୍ତ୍ର ଓ ସରଞ୍ଜାମ କିଣିବି, ଜଣେ ସହକାରୀ ନିଯୁକ୍ତ କରିବି, ଏବଂ ଏଇ ସବୁର ସାହାଯ୍ୟରେ ଚନ୍ଦ୍ରର ଲଡ଼ବଡ଼ିଆ ବାସିନ୍ଦାମାନଙ୍କ ସହିତ ସମାନ ସ୍ତରରେ ଲଢ଼ିବା ପାଇଁ ଚନ୍ଦ୍ରକୁ ଫେରିଆସିବି, ଏବଂ ସମ୍ଭବ ହେଲେ କେଭରକୁ ଉଦ୍ଧାର କରିବି, ଅନ୍ତତଃ ମୋର ପରବର୍ତ୍ତୀ ଅଭିଯାନର ଭିତ୍ତିକୁ ଆହୁରି ଦୃଢ଼ କରିବା ପାଇଁ ଯଥେଷ୍ଟ ସୁନା ନେଇ ଆସିବି । କିନ୍ତୁ ଏସବୁ ଅତି ଦୂର ପର୍ଯ୍ୟନ୍ତ ଆଶା କରିବା କଥା. ପ୍ରଥମେ ମତେ ପୃଥିବୀରେ ପହଞ୍ଚିବାକୁ ହେବ ।

ଠିକ୍ କେଉଁ ଉପାୟରେ ପୃଥିବୀକୁ ଫେରିଯିବା କାର୍ଯ୍ୟ ସାଧନ କରିଯାଇପାରେ, ଏକଥା ମୁଁ ସ୍ଥିର କରିବାକୁ ଚେଷ୍ଟା କଲି । ମୁଁ ଏହି ସମସ୍ୟା ନେଇ ବ୍ୟସ୍ତ ହୋଇପଡ଼ିବାରୁ, ପୃଥିବୀକୁ ଗଲାପରେ ସେଠି କଣ କରିବି ସେ କଥା ଚିନ୍ତା କରିବା ଛାଡ଼ିଦେଲି । ପରିଶେଷରେ ଫେରିଯିବା ହିଁ ମୋର ଏକମାତ୍ର ଭାବନାର ବସ୍ତୁ ହୋଇପଡ଼ିଲା ।

ମୁଁ ଭାବି ଭାବି ଶେଷରେ ଠିକ୍ କଲି ଯେ ମୋର ଏକମାତ୍ର ଉପାୟ ହେଉଛି, ବେଗ ସଂଗ୍ରହ କରିବା ପାଇଁ ଚନ୍ଦ୍ରର ଯେତେ ନିକଟକୁ ନିର୍ବିଘ୍ନ ଭାବରେ ଖସିପଡ଼ିବା ସମ୍ଭବ ସେତେ ନିକଟକୁ ଖସିପଡ଼ିବି, ପଥରେ ମୋର ଝରକା ସବୁ ବନ୍ଦ କରି ଚନ୍ଦ୍ରର ପଛପଟେ ଉଡ଼ିଯିବି, ଏବଂ ଚନ୍ଦ୍ରକୁ ପାରି ହୋଇଗଲା ପରେ ପୃଥିବୀ ଦିଗସ୍ଥ ଝରକାଗୁଡ଼ିକ ଖୋଲିଦେବି ଏବଂ ଏହି ଉପାୟରେ ଶୀଘ୍ରଗତିରେ ଗୃହାଭିମୁଖରେ ଚାଲିଯିବି । କିନ୍ତୁ ଏହି ଉପାୟ ଦ୍ୱାରା ମୁଁ ପ୍ରକୃତରେ ପୃଥିବୀରେ ପହଞ୍ଚିବି, ନା କୌଣସି ପରିବୃତ୍ତ ବା

ଅଧିବୃତ୍ତରେ କେବଳ ପୃଥିବୀ ଚାରିପଟେ ଘୂରୁଥିବ, ଏ କଥା କହିବା ଅସମ୍ଭବ ଥିଲା । ପରେ ମୋ ମୁଣ୍ଡରେ ଗୋଟିଏ ଚମତ୍କାର ଦୈବ ପ୍ରେରଣା ଆସିଗଲା । ଚନ୍ଦ୍ର ବର୍ତ୍ତମାନ ଆକାଶରେ ପୃଥିବୀର ଠିକ୍ ସମ୍ମୁଖରେ ଦେଖାଯାଉଥିଲା । ମୁଁ ଚନ୍ଦ୍ର ଆଡ଼କୁ କେତୋଟି ଝରକା ଖୋଲିଦେଲି, ଏବଂ ଏତଦ୍ୱାରା ମୋର ଗତିପଥକୁ କଡ଼କୁ ମୋଡ଼ିଦେଲି ଏବଂ ପୃଥିବୀ ଆଡ଼କୁ ମୁହାଁଇଲି । ମୁଁ ବୁଝିପାରିଥିଲି ଯେ ଏପରି କୌଣସି ଉପାୟ ଶୀଘ୍ର ନ କଲେ ମୁଁ ପୃଥିବୀକୁ ପଛରେ ପକାଇ ଚାଲିଯିବି । ଏ ସବୁ ସମସ୍ୟା ନେଇ ମୁଁ ଅନେକ ଜଟିଳ ଚିନ୍ତା କଲି—କାରଣ ମୁଁ ଗଣିତଜ୍ଞ ନୁହେଁ—ଏବଂ ମୁଁ ଠିକ୍‌ରୂପେ କହି-ପାରିବି ଯେ ଶେଷରେ ମୋର ବିବେଚନା ଦ୍ୱାରା ଯେତିକି ନୁହେଁ ତା ଅପେକ୍ଷା ବେଶୀ ସୌଭାଗ୍ୟ ଦ୍ୱାରା ହିଁ ମୁଁ ପୃଥିବୀରେ ପହଞ୍ଚିପାରିଲି । ବର୍ତ୍ତମାନ ମୁଁ ଯାହା ଜାଣିପାରୁଛି, ସେତେବେଳେ ବି ଯଦି ତାହା ଜାଣିଥାନ୍ତି—ଅର୍ଥାତ୍ ଗାଣିତିକ ସମ୍ଭାବନା ସବୁ ମୋର ସମ୍ପୂର୍ଣ୍ଣ ବିରୁଦ୍ଧରେ ଥିଲା—ତାହା-ହେଲେ ମୁଁ ବୋଧହୁଏ କୌଣସି ରକମ ଚେଷ୍ଟା କରିବାପାଇଁ ବୋତାମରେ ହାତ ଦେବାକୁ ବି ଯାଇ ନଥାନ୍ତି । ଏପରି ଅବସ୍ଥାରେ ଯାହା କର୍ତ୍ତବ୍ୟ ବୋଲି ମୁଁ ଭାବୁଥିଲି ସେ ବିଷୟରେ ସିଦ୍ଧାନ୍ତ କରି ସାରି ମୁଁ ଚନ୍ଦ୍ର ଦିଗସ୍ଥ ସମସ୍ତ ଝରକା ଖୋଲିଦେଲି ଏବଂ ତଳା ମାଡ଼ି ବସିପଡ଼ିଲି । ଏପରି ଭାବରେ ବସି ପଡ଼ିବା ଦ୍ୱାରା ମୁଁ କିଛି ସମୟ ଯାଏଁ ଶୂନ୍ୟକୁ କେତେ ଫୁଟ ଉଠିଗଲି ଏବଂ ସେଇଠାରେ ଅଦ୍ଭୁତ ଭାବରେ ଝୁଲି ରହିଲି । ଚନ୍ଦ୍ରର ଆକାର କ୍ରମଶଃ ବଢ଼ିବାକୁ ଲାଗିଲା, ଏବଂ ଯେ ପର୍ଯ୍ୟନ୍ତ ତାହା ବିପଜ୍ଜନକ ଭାବରେ ନିକଟ ହୋଇ ନ ଆସିଲା ସେ ପର୍ଯ୍ୟନ୍ତ ମୁଁ ଅପେକ୍ଷା କରିବାକୁ ଲାଗିଲି । ମୁଁ ସ୍ଥିର କରିଥିଲି ଯେ, ଏହାପରେ ମୁଁ ଝରକା ଗୁଡ଼ିକ ବନ୍ଦ କରିଦେବି, ଚନ୍ଦ୍ରଠାରୁ ଯେଉଁ ବେଗ ପାଇଛି ତଦ୍ୱାରା ତାହା ପାଖ ଦେଇ ଉଡ଼ିଚାଲି ଯିବି—ଅବଶ୍ୟ ତା ଉପରେ ଯଦି କଗୁଡ଼ି ହୋଇ ନ ପଡ଼େ—ଏବଂ ଏହି-ପରି ଭାବରେ ପୃଥିବୀ ଆଡକୁ ଗତି କରିବି ।

ଠିକ୍ ଏହାହିଁ ମୁଁ କଲି ।

ଶେଷରେ ମୁଁ ଅନୁଭବ କଲି ଯେ ଚନ୍ଦ୍ର ଆଡକୁ ମୋର ଗତି ଯଥେଷ୍ଟ ହୋଇଯାଇଛି । ତେଣୁ ମୁଁ ଚନ୍ଦ୍ରର ଦୃଶ୍ୟ ମୋର ଦୃଷ୍ଟି ସମ୍ମୁଖରୁ ବନ୍ଦ କରିଦେଲି, ଏବଂ, ବର୍ତ୍ତମାନ ମୁଁ ଖୁବ ଆଶ୍ଚର୍ଯ୍ୟ ହେଉଛି ଯେ, କୌଣସି ପ୍ରକାର ଭୟ ବା ଉତ୍କଣ୍ଠା ଶୂନ୍ୟ ମନରେ ମୁଁ ସେହି କ୍ଷୁଦ୍ରାତି କ୍ଷୁଦ୍ର ଜଡ଼ ବିନ୍ଦୁରେ ଅନନ୍ତ ମହାଶୂନ୍ୟ ମଧ୍ୟ ଦେଇ ମୋର ଯାତ୍ରା-ଜାଗରଣ ଆରମ୍ଭ କରିବା ପାଇଁ ଧୀରଭାବରେ ବସିପଡ଼ିଲି । ପୃଥିବୀକୁ ସ୍ପର୍ଶ କରିବା ପର୍ଯ୍ୟନ୍ତ ସେହି ବିଶ୍ରାମବିହୀନ ଜାଗରଣ ଶେଷ ହେବ ନାହିଁ । ଉତ୍ତାପ ଜାତ କରିବା ଯନ୍ତ୍ର ଯୋଗୁଁ ଗୋଲକଟି ଯଥେଷ୍ଟ ଉଷ୍ମ ହୋଇଥିଲା, ଅମ୍ଳଜାନ ଦ୍ୱାରା ବାୟୁକୁ ନିର୍ମଳ କରାଯାଇଥିଲା, ଏବଂ ମୁଣ୍ଡ ଭିତରଟା ସାମାନ୍ୟ ଭାରି ବୋଧ ହେବା ଛଡ଼ା (ଅବଶ୍ୟ ମୁଁ ଯେତେ ସମୟ ପୃଥିବୀ ତ୍ୟାଗ କରି ଅନ୍ୟତ୍ର ଥିଲି ଏହି ଅସୁସ୍ଥତା ବରାବର ରହିଥିଲା ) ମୁଁ ସମ୍ପୂର୍ଣ୍ଣ ଶାରୀରିକ ସ୍ୱାଚ୍ଛନ୍ଦ୍ୟ ଭୋଗ କରୁଥିଲି । ଆଲୁଅ କାଳେ ଶେଷବେଳକୁ ସରିଯାଇ ପାରେ ଭାବି ମୁଁ ତାହା ଲିଭେଇ ଦେଇଥିଲି; ମୋର ତଳେ ଥିବା ତାରାମାନଙ୍କର ଝଲକ ଓ ପୃଥିବୀର ଜ୍ୟୋତି କଥା ଛାଡ଼ି ଦେଲେ, ମୁଁ ସମ୍ପୂର୍ଣ୍ଣ ଅନ୍ଧକାରରେ ରହିଥିଲି । ସମସ୍ତ ଏପରି ପୂର୍ଣ୍ଣ ଭାବରେ ନୀରବ ଓ ନିସ୍ତବ୍ଧ ଥିଲା ଯେ, ସମଗ୍ର ବିଶ୍ୱ-ବ୍ରହ୍ମାଣ୍ଡରେ ଏକମାତ୍ର ମୋ ଛଡ଼ା ଆଉ କାହାରି ସତ୍ତା ନାହିଁ ପରି ବୋଧ ହେଉଥିଲା । କିନ୍ତୁ ତଥାପି, ଆଶ୍ଚର୍ଯ୍ୟର କଥା ଏହି ଯେ, ମୁଁ ପୃଥିବୀରେ ଖଟ ଉପରେ ଶୋଇଥିଲେ ଯେପରି ବୋଧ କରନ୍ତି ତା ଅପେକ୍ଷା ଅଧିକ ନିଃସଙ୍ଗ କିମ୍ବା ଭୀତ ବୋଧ କରୁ ନ ଥିଲି । ବର୍ତ୍ତମାନ ଏହା ମତେ ଆହୁରି ଆଶ୍ଚର୍ଯ୍ୟ ଲାଗୁଛି । କାରଣ ଚନ୍ଦ୍ର ଆଗ୍ନେୟଗିରି ଗହ୍ୱରରେ ମୁଁ ଯେଉଁ ଶେଷ କେଇ ଘଣ୍ଟା କଟେଇଥିଲି ସେ ସମୟରେ ମୋର ନିଃସଙ୍ଗ ଭାବ ଏକ ଯନ୍ତ୍ରଣାରେ ପରିଣତ ହୋଇଥିଲା ।

ଏହା ଅବିଶ୍ୱାସ୍ୟ ମନେ ହେଲେ ମଧ୍ୟ ସତ୍ୟ ଯେ, ମହାଶୂନ୍ୟରେ ବିତିଥିବା ମୋର ଏଇ ସମସ୍ତ ସହିତ ମୋ ଜୀବନର ଅନ୍ୟ କୌଣସି ସମୟର ସାମାନ୍ୟ ଅନୁପାତ ବି ନାହିଁ । ବେଳେ ବେଳେ ମୋର ମନେ ହେଉଥିଲା ଯେ, ମୁଁ ପଦ୍ମପତ୍ର ଉପରେ ବସିଥିବା କୌଣସି ଦେବତା ତୁଲ୍ୟ

କୋଟି କୋଟି ଯୁଗ ଅତିକ୍ରମ କରି ବସିରହିଛୁ ଓ ବସି ରହିବ । ଅନ୍ୟ କେତେବେଳେ ବା ମନେ ହେଉଥିଲା ଯେ, ଚନ୍ଦ୍ରରୁ ପୃଥିବୀ ଉପରକୁ ଡେଇଁ ପଡିବାକୁ ଏକ ମୁହୂର୍ତ୍ତ ମାତ୍ର ସମୟ ଲାଗିଛି । ପ୍ରକୃତରେ, ପାର୍ଥିବ ସମୟର ଅନେକ ସପ୍ତାହ ବିତିଯାଇଥିଲା । କିନ୍ତୁ ସେଇ ଭିତରେ ମୁଁ ଚିନ୍ତା କିମ୍ବା ଉଦ୍ବେଗ, କ୍ଷୁଧା କିମ୍ବା ଭୟ ସମ୍ପୂର୍ଣ୍ଣ ବିସର୍ଜନ କରିଦେଇଥିଲି । ଆମେ ସହ୍ୟ କରିଥିବା ସମସ୍ତ ଘାତ ପ୍ରତିଘାତ, ମୋ ର ସମସ୍ତ ଜୀବନ ଓ ଅଭିପ୍ରାୟ, ଏବଂ ମୋର ସତ୍ତାର ସମସ୍ତ ଗୋପନ ସମସ୍ୟାକୁ ମୁଁ ଏକ ଅଦ୍ଭୁତ ଉଦାସୀନତା ଓ ବିଚ୍ଛିନ୍ନତା ସହିତ ନିରୀକ୍ଷଣ କରି ଭାସି ବୁଲୁଥିଲି । ମୋର ମନେ ହେଉଥିଲା, ମୁଁ କ୍ରମେ ବିରାଟରୁ ବିରାଟତର ହୋଇ ଉଠୁଛି । ମୋର ସମସ୍ତ ଗତଜୀବନ ଲୁପ୍ତ ହୋଇଛି ଏବଂ ମୁଁ ନକ୍ଷତ୍ରମାନଙ୍କ ସହିତ ଭାସି ବୁଲୁଛି । ପୃଥିବୀର କ୍ଷୁଦ୍ରତା ଏବଂ ତାହା ଉପରେ ମୋର ଜୀବନର ଅସୀମ କ୍ଷୁଦ୍ରତ୍ୱ ବିଷୟକ ଜ୍ଞାନ ବରାବର ମୋର ଚିନ୍ତା ତଳେ ପ୍ରଚ୍ଛନ୍ନ ରହିଥିଲା ।

ମୋର ମନରେ ଯାହା ଯାହା ଘଟିଲା, ସେ ସମସ୍ତ ଭୁଟେଇ ପାରିବ ବୋଲି ଦାବୀ କରିବାର କ୍ଷମତା ମୋର ନାହିଁ । ଅବଶ୍ୟ ମୁଁ ଯେଉଁ ଅଦ୍ଭୁତ ପ୍ରାକୃତିକ ପରିସ୍ଥିତିରେ ଥିଲି ଏ ସମସ୍ତ ତାହାର ପ୍ରତ୍ୟକ୍ଷ କିମ୍ବା ଅପ୍ରତ୍ୟକ୍ଷ ଫଳ ବୋଲି ନିର୍ଦ୍ଦେଶ କରାଯାଇପାରେ । ସେ ସମସ୍ତ ଯେପରି ଭାବରେ ଘଟିଥିଲା ତାର ଅବିକଳ ବର୍ଣ୍ଣନା ମୁଁ ଏଠାରେ ଲେଖିବି । ତା ଉପରେ କୌଣସି ଟିପ୍ପଣୀ କରିବି ନାହିଁ । ସେହି ଅବସ୍ଥାର ପ୍ରଧାନ ଲକ୍ଷଣ ଥିଲା ଏହି ଯେ, ମୋର ନିଜର ପରିଚୟ ବିଷୟରେ ମୋର ପ୍ରଚଣ୍ଡ ସନ୍ଦେହ ଜାତ ହେଲା । କହିବାକୁ ଗଲେ, ମୁଁ ବେଡ଼ଫୋର୍ଡଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇଗଲି । ମୁଁ ବେଡ଼୍ଫୋର୍ଡକୁ ଗୋଟିଏ ତୁଚ୍ଛ, ଅନାସ୍ତୃତ ବସ୍ତୁରୂପେ ଦେଖିବାକୁ ଲାଗିଲି, ତା ସହିତ ଦୈବାତ୍ ମୋର ସଂଯୋଗ ଘଟିଯାଇଥିଲା । ମୁଁ ବେଡ଼୍ଫୋର୍ଡକୁ ବିଭିନ୍ନ ସମ୍ପର୍କରେ ଦେଖିବାକୁ ଲାଗିଲି—ଗୋଟିଏ ଗଧ କିମ୍ବା ଗୋଟିଏ ନଗଣ୍ୟ ପଶୁରୂପେ, ଅଥଚ ଏ ପର୍ଯ୍ୟନ୍ତ ମୁଁ ତାକୁ ଜଣେ ତେଜସ୍ୱୀ ଓ ଶକ୍ତିମାନ ବ୍ୟକ୍ତିରୂପେ ଗର୍ବ ସହିତ ଦେଖିଆସିଥିଲି । ମୁଁ କେବଳ ତାକୁ ଗଧରୂପେ ଦେଖିଲି ନାହିଁ, ତାର ପୂର୍ବପୁରୁଷମାନଙ୍କୁ ମଧ୍ୟ

ଗଧରୂପେ ଦେଖିଲି । ତାର ପ୍ରଥମ ସ୍ପୃହା ବସ୍ତୁ, ତାର ପ୍ରଥମ ଯୌବନ ଓ ପ୍ରେମ ସହିତ ତାର ପ୍ରଥମ ପରିଚୟକୁ ମୁଁ ଏପରି ଭାବରେ ପ୍ରଦର୍ଶନ କଲି ଯେପରି ଗର୍ଦ୍ଦରେ କି ବାଲି ଉପରେ ପିମ୍ପୁଡ଼ିର ଗତିବିଧିକୁ ଲୋକେ ପରିଦର୍ଶନ କରନ୍ତି ।·····ଦୁଃଖର କଥା, ସେହି ସମୟର ଚେତନାର କିଯଦଂଶ ବର୍ତ୍ତମାନ ସୁଦ୍ଧା ମୋ ମନ ତଳୁ ଲିଭିଯାଇ ନାହିଁ । ତେଣୁ ମୋର ପ୍ରଥମ ଜୀବନର ପରିପୂର୍ଣ୍ଣ ଆତ୍ମ-ସନ୍ତୋଷକୁ ମୁଁ କେବେହେଲେ ଫେରି ପାଇବି ବୋଲି ବିଶ୍ୱାସ କରି ପାରୁନାହିଁ । କିନ୍ତୁ ସେ ସମୟରେ ଏଥିଦ୍ୱାରା ମୋତେ ଆଦୌ ଦୁଃଖ ବୋଧ ହେଉ ନ ଥିଲା, କାରଣ ଏହି ଅସାଧାରଣ ପ୍ରତ୍ୟୟ ମୋ ମନରେ ଜାତ ହୋଇଥିଲା ଯେ, ବାସ୍ତବିକ, ମୁଁ ଯେପରି ମୋ ଛଡ଼ା ଅନ୍ୟ କେହି ନୁହେଁ ସେହିପରି ବେଡ଼୍‌ଫୋର୍ଡ ମଧ୍ୟ ନୁହେଁ । ମୁଁ କେବଳ ମହାଶୂନ୍ୟରେ ସ୍ଥିର ପ୍ରଶାନ୍ତ ମଧ୍ୟରେ ଭାସୁଥିବା ଗୋଟିଏ ଚକ୍ଷୁ ଛଡ଼ା ଆଉ କିଛି ନୁହେଁ । ଏହି ବେଡ଼୍‌ଫୋର୍ଡର ଭୁଲଭ୍ରାନ୍ତି ଯୋଗୁଁ ମୁଁ କାହିଁକି ବ୍ୟସ୍ତ ହେବି ? ମୁଁ ତା ପାଇଁ କିମ୍ବା ତାର ଭୁଲ ପାଇଁ ତ ଦାୟୀ ନୁହେଁ ।

କିଛି ସମୟ ପର୍ଯ୍ୟନ୍ତ ମୁଁ ଏହି କିମ୍ଭୂତକିମାକାର ଭ୍ରମ ବିରୁଦ୍ଧରେ ଲଢ଼ିଲି ' ଜୀବନର ଉଜ୍ଜ୍ୱଳ ମୁହୂର୍ତ୍ତ ଗୁଡ଼ିକର, ହୃଦୟର କୋମଳ ଓ ଗମ୍ଭୀର ପ୍ରବୃତ୍ତିଗୁଡ଼ିକର ସ୍ମୃତି ମନେ ପକାଇବାକୁ ଚେଷ୍ଟାକଲି; ମତେ ବୋଧହେଲା ଯେ, ମୁଁ ଯଦି ଗୋଟିଏ ମାତ୍ର ଅକୃତ୍ରିମ ଆବେଗମୟ ମୁହୂର୍ତ୍ତକୁ ସ୍ମରଣ କରିପାରନ୍ତି, ତେବେ ଏହି କ୍ରମବର୍ଦ୍ଧିତ ବ୍ୟବଧାନକୁ ଯୋଡ଼ିଦେଇ ଦେବି । କିନ୍ତୁ ମୁଁ ତାହା ପାରିଲି ନାହିଁ । ମୁଁ ଦେଖିଲି, ବେଡ଼୍‌ଫୋର୍ଡ ବିଶ୍ୱ-ବିଦ୍ୟାଳୟର ପରୀକ୍ଷା ଦେବା ପାଇଁ 'ଗ୍ରେଟ୍‌ହେଷ୍ଟ' ଗଳିବାଟେ ଦୌଡ଼ିଯାଉଛି, ତା'ର ଟୋପି ମୁଣ୍ଡ ପଛପଟେ ଲାଗିଛି ଏବଂ କୋଟ ଫର ଫର ହୋଇ ଉଡ଼ୁଛି । ମୁଁ ଦେଖିଲି, ସେହି ଲୋକଗହଳୀ ଗଳିରେ ଠିକ୍ ତାହାରି ପରି ଅନ୍ୟାନ୍ୟ କ୍ଷୁଦ୍ର ଜୀବମାନଙ୍କୁ ସେ ଏଡ଼େଇ, ଧକ୍‌କା ଦେଇ, ଏପରି କି ସଲାମ କରି ଦୌଡ଼ି ଚାଲିଛି । ସେ କିଏ ମୁଁ ? ମୁଁ ଦେଖିଲି, ସେହି ସନ୍ଧ୍ୟାରେ ବେଡ଼୍‌ଫୋର୍ଡ କୌଣସି ଏକ ମହିଳାଙ୍କର ବସିବାଘରେ ବସିଛି, ତା ପାଖରେ ଥିବା ଟେବୁଲ ଉପରେ ତାର ଟୋପି ଥୁଆହୋଇଛି,

(ଚୋପିରେ ଅନେକଙ୍କି ଦିନ ହେଲା ବୁରୁଶ ମସ୍କୁ ହୋଇ ନାହିଁ) ଏବଂ ତାର ଆଖିରୁ ଲୁହ ଝରୁଛି । ସେ କିଏ ? ମୁଁ ? ମୁଁ ବେଡ଼ଫୋର୍ଡ଼ଙ୍କୁ ସେହି ମହିଳାଙ୍କ ସହିତ ଅନେକ ପ୍ରକାର ଭଙ୍ଗୀ ଓ ଭାବାବେଶରେ ଦେଖିଲି—ତା ସହିତ ମୋର ବ୍ୟବଧାନ ଏତେ ବେଶୀ ବୋଲି ମୁଁ ଆଗେ ଅନୁଭବ କରି ନଥିଲି ।......ମୁଁ ଦେଖିଲି, ସେ ଗୋଟିଏ ନାଟକ ଲେଖିବା ପାଇଁ ଲମ୍ପଟଙ୍କୁ ପଳେଇଯାଉଛି, କେଭର ସହିତ ଆଳାପ କରୁଛି କୋଟ ଖୋଲିଦେଇ ଗୋଲକର କାମରେ ଲାଗିଯାଇଛି, ଏବଂ ଚନ୍ଦ୍ରକୁ ଯିବାକୁ ଭୟ କରି କେଣ୍ଟରବରୀକୁ ଚାଲି ଯାଉଛି ! ସେ କିଏ ମୁଁ ? ମୁଁ, ଏ କଥା ବିଶ୍ୱାସ କରିପାରିଲି ନାହିଁ ।

ମୁଁ ନିଜକୁ ବୁଝେଇବାକୁ ଚେଷ୍ଟା କଲି ଯେ, ମୋର ନିର୍ଜନତା ଯୋଗୁଁ ଏବଂ ମୋର ଓଜନ ଓ ପ୍ରତିରୋଧ-ଜ୍ଞାନ ସମ୍ପୂର୍ଣ୍ଣ ଲୋପ ପାଇ ଯାଇଥିବା ଯୋଗୁଁ ଏପରି ଭ୍ରମ ହେଉଛି । ଏହି ଜ୍ଞାନର ପୁନରୁଦ୍ଧାର ପ୍ରୟାସରେ ମୁଁ ଗୋଲକ ଦେହରେ ନିଜକୁ ବାଡ଼େଇବାକୁ ଲାଗିଲି, ମୋର ହାତକୁ ଚମୁଟିବାକୁ ଲାଗିଲି, ଏବଂ ଦୁଇ ହାତକୁ ଏକାଠି ଚାପିଧରିଲି । ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟରେ, ମୁଁ ଆଲୁଅ ଜଳେଇଲି, "ଲୟ୍‌ଡ଼ଙ୍କର" ସେହି କାଗଜ ଖଣ୍ଡିକ ଶୂନ୍ୟରୁ ଟାଣି ଆଣିଲି, ଏବଂ ସେହି ବିଶ୍ୱାସଯୋଗ୍ୟ ଅତି ବାସ୍ତବ ବିଜ୍ଞାପନ ଗୁଡ଼ିକ ପୁଣି ପଢ଼ିଲି, ଯଥା—କାଟ-ଆଲ୍‌ଫ୍ରେଡ଼ ସାଇକେଲ, ବ୍ୟକ୍ତିଗତ ସଙ୍ଗତ ସମ୍ପନ୍ନ ଭଦ୍ରବ୍ୟକ୍ତି ଏବଂ ସେହି "ଜଣ୍ଟାଗ୍ରାମଚ" ବାହିକାରିଣୀ ଅସ୍ୱଚ୍ଛଳ ଅବସ୍ଥାର ଭଦ୍ରମହିଳାଙ୍କ କଥା । ଏକଥା ନିଃସନ୍ଦେହ ଯେ, ସେମାନଙ୍କର ବାସ୍ତବିକ ଅସ୍ତିତ୍ୱ ଥିଲା । ତେଣୁ ମୁଁ କହିଲି, "ତୁମର ଦୁନିଆ ଏଇ, ତୁମେ ହେଉଛ ବେଡ଼ଫୋର୍ଡ଼, ଏବଂ ବାକି ଜୀବନଟା ଏଇପରି ବସ୍ତୁମାନଙ୍କ ଭିତରେ ରହିବା ପାଇଁ ତୁମେ ଫେରି ଯାଉଛ ।" କିନ୍ତୁ ମୋ ମନଭିତରେ ଥିବା ସଂଶୟ ତଥାପି ତର୍କ କରିବାକୁ ଲାଗିଲା । "ତୁମେ ଏହା ପଢ଼ୁନାହିଁ, ପଢ଼ୁଛି ବେଡ଼ଫୋର୍ଡ଼, କିନ୍ତୁ ତୁମେ ଜାଣ ତୁମେ ବେଡ଼ଫୋର୍ଡ଼ ନୁହଁ । ଠିକ୍ ଏଇ ବିଷୟରେ ତୁମେ ଭୁଲ କରି ବସିଛ ।

ମୁଁ ପାଟି କରି କହିଲି, "ଧେତ୍ ତେରିକା ! ମୁଁ ଯଦି ବେଡ଼ଫୋର୍ଡ଼ ନୁହେଁ, ତେବେ ମୁଁ କିଏ ?"

କିନ୍ତୁ ଏଇ ପ୍ରଶ୍ନର କୌଣସି ଉତ୍ତର ମୁଁ ଖୋଜି ପାଇଲି ନାହିଁ । କେବଳ ଅଦ୍ଭୁତ କଳ୍ପନା ସବୁ ମୋର ମସ୍ତିଷ୍କ ଭିତରେ ଭାସି ବୁଲିଲା, ଦୂରକୁ ଦେଖୁଥିବା ଭ୍ରମାତୁଲ୍ୟ ଅଦ୍ଭୁତ ଅସ୍ପଷ୍ଟ ସନ୍ଦେହ ସବୁ । ଜାଣେ କି, ମୋ ମନରେ ଏହିପରି ଖିଆଲ ଆସିଥିଲା ଯେ, ମୁଁ କେବଳ ଏହି ଜଗତଠାରୁ ଅଲଗା ନୁହେଁ, ଅନ୍ୟାନ୍ୟ ସମସ୍ତ ଜଗତଠାରୁ ମଧ୍ୟ ସମ୍ପୂର୍ଣ୍ଣ ଅଲଗା, ଏବଂ ସ୍ଥାନ କାଳ ବହିର୍ଭୂତ କୌଣସି ଏକ ବସ୍ତୁ ? ଏହି ବେଡ୍‌ଫୋର୍ଡ଼ ବିଚାରା କେବଳ ଗୋଟିଏ ଗବାକ୍ଷ, ଯାହା ଭିତର ଦେଇ ମୁଁ ଜୀବନକୁ ନିରୀକ୍ଷଣ କରୁଛି·········

ବେଡ୍‌ଫୋର୍ଡ ! ମୁଁ ତାକୁ ଯେତେ ଅସ୍ୱୀକାର କଲେ ମଧ୍ୟ, ନିଶ୍ଚିତ-ଭାବରେ ତାଁ ସହିତ ବିଜଡ଼ିତ ହୋଇପଡ଼ିଥିଲି । ମୁଁ ଜାଣିଥିଲି ଯେ, ମୁଁ ଯାହା ହେଲେ ବି ଏବଂ ଯେଉଁଠାରେ ଥିଲେ ବି, ତାର ଆକାଙ୍‌କ୍ଷାର ଗୁରୁତ୍ୱ ମୁଁ ଅନୁଭବ କରିବାକୁ ବାଧ୍ୟ, ଏବଂ ତାର ଜୀବନ ଶେଷ ହେବା ପର୍ଯ୍ୟନ୍ତ ତାର ସୁଖ ଦୁଃଖରେ ସମବେଦନା ବୋଧ କରିବାକୁ ବାଧ୍ୟ । ଏବଂ ବେଡ୍‌ଫୋର୍ଡ଼ର ମୃତ୍ୟୁ ଘଟିଲେ—ତାପରେ ?

ମୋର ଅଭିଜ୍ଞତାର ଏହି ଆଶ୍ଚର୍ଯ୍ୟ ଅବସ୍ଥା ବିଷୟ ମୁଁ ଯଥେଷ୍ଟ କହି-ସାରିଛି ! ଏ ବିଷୟ ଏଠି ଉଲ୍ଲେଖ କରିବାଦ୍ୱାରା ମୁଁ କେବଳ ଏଇ କଥା ଦେଖେଇ ଦେବାକୁ ଚାହେଁ ଯେ, ଏହି ଗ୍ରହରୁ ମଣିଷର ବିଚ୍ଛେଦ ଓ ପ୍ରସ୍ଥାନ ଦ୍ୱାରା କେବଳ ତାଁର ଶରୀରର ପ୍ରତ୍ୟେକ ଇନ୍ଦ୍ରିୟର କାର୍ଯ୍ୟରେ ଓ ଅନୁ-ଭବରେ ନୁହେଁ ଏପରି କି ତାର ମନର ଭିତ୍ତିରେ ମଧ୍ୟ ଅଦ୍ଭୁତ ଓ ଅସ୍ୱାଭାବିକ ବିଶୃଙ୍ଖଳା ସୃଷ୍ଟି ହୁଏ । ସେହି ବିରାଟ ମହାଶୂନ୍ୟରେ ଯାତ୍ରାର ଅଧିକାଂଶ ସମୟ ମୁଁ ଏହିପରି ଅଶରୀରୀ ଭାବନା ସବୁ ଭାବି ଭାବି ଶୂନ୍ୟରେ ଝୁଲି ରହିଲି, ବିଚ୍ଛିନ୍ନ ଭାବରେ ଓ ଅନୁଭବ-ବିହୀନ ଭାବରେ ଝୁଲି ରହିଲି, ମହାକାଶର ଶୂନ୍ୟତା ଭିତରେ ନକ୍ଷତ୍ର ଓ ଗ୍ରହମାନଙ୍କ ମଧ୍ୟରେ ଭାସି ଭାସି ଆତ୍ମ-ସମ୍ଭ୍ରମ ଉନ୍ମାଦ ମୁଁ, ନିଜକୁ ଗୋଟିଏ ମେଘପରି ମନେ କଲି । ମୁଁ ଯେଉଁ ଗ୍ରହକୁ ଫେରିଯାଉଥିଲି ତାହା, ତଥା ଗୃହାନ୍ତିକମାନଙ୍କର ନୀଳାଲୋକିତ ଭବର,

ସେମାନଙ୍କର ଶିରସ୍ତ୍ରାଣାବୃତ ମୁହଁ, ଏବଂ ହେନ୍ସ କରଡଙ୍କୁ ଅସହାୟ ଭାବରେ ଝୁଣା ହୋଇଯାଇଥିବା କେଭରର ଭାଗ୍ୟ, ଏ ସମସ୍ତ ମତେ ଅତୀବ କ୍ଷୁଦ୍ର ଏବଂ ସମ୍ପୂର୍ଣ୍ଣ ତୁଚ୍ଛ ବ୍ୟାପାର ବୋଲି ଜଣାଗଲା ।

ପରିଶେଷରେ ମୁଁ ମୋର ଶରୀର ଉପରେ ପୃଥିବୀର ଆକର୍ଷଣ ଅନୁଭବ କଲି । ତାହା ମତେ ମନୁଷ୍ୟମାନଙ୍କ ପକ୍ଷରେ ବାସ୍ତବ ସେହି ଜୀବନ ଆଡ଼କୁ ପୁଣି ଟାଣି ନେଉଥିଲା । ତାପରେ ହିଁ ମୁଁ କ୍ରମେ କ୍ରମେ ଅଧିକ ସ୍ପଷ୍ଟ ଭାବରେ ବୁଝିପାରିଲି ଯେ ପ୍ରକୃତରେ ମୁଁ ବେଡ଼୍‌ଫୋର୍ଡ଼ ଛଡ଼ା ଆଉ କେହି ନୁହେଁ । ଅନେକ ଅଦ୍ଭୁତ ଘଟଣା ପାର ହୋଇ ଆମର ଏଇ ଜଗତକୁ ମୁଁ ଫେରିଯାଉଛି, ଏବଂ ଯେଉଁ ଜୀବନ ନେଇ ଫେରିଯାଉଛି ହୁଏତ ଏହି ପ୍ରତ୍ୟାବର୍ତ୍ତନରେ ତାହାକୁ ମତେ ହରାଇବାକୁ ପଡ଼ିବ । କିପରି ଭାବରେ ମୁଁ ପୃଥିବୀ ଉପରକୁ ଖସିପଡ଼ିବା ଉଚିତ ତାହା ନିର୍ଣ୍ଣୟ କରିବାକୁ ମୁଁ ଚେଷ୍ଟା କଲି ।



# ୨୧

# ଲିଟ୍‌ଲ୍‌ଷ୍ଟୋନ୍‌ରେ ବେଡ୍‌ଫୋର୍ଡ୍

ମୁଁ ଉର୍ଦ୍ଧ୍ୱଗଗନର ବାୟୁରେ ପହଞ୍ଚିବାକ୍ଷଣି ମୋର ଗତି ରେଖା ଭୂପୃଷ୍ଠର ସମାନ୍ତର ରେଖାରେ ରହୁଛି ବୋଲି ଜାଣିପାରିଲି । ସଙ୍ଗେ ସଙ୍ଗେ ଗୋଲକର ଉତ୍ତାପ ବଢ଼ିବାକୁ ଆରମ୍ଭ କଲା । ମୁଁ ତତ୍‌କ୍ଷଣାତ୍ ତଳକୁ ଖସି ପଡ଼ିବାକୁ ବାଧ୍ୟ ବୋଲି ଜାଣିଥିଲି । ମୋର ଅନେକ ତଳେ, ଅନ୍ଧକାରାଚ୍ଛନ୍ନ ଗୋଧୂଳିରେ, ବିଶାଳ ସମୁଦ୍ର ବିସ୍ତୃତ ହୋଇଥିଲା । ମୁଁ ଯେତୋଟି ଝରକା ଖୋଲି ପାରିଲି, ଖୋଲିଦେଲି, ଏବଂ ଦିବାଲୋକରୁ ସନ୍ଧ୍ୟାକୁ, ପୁଣି ସନ୍ଧ୍ୟାରୁ ରାତିକୁ ଖସିପଡ଼ିଲି । ପୃଥିବୀ କ୍ରମେ କ୍ରମେ ବିଶାଳତର ହୋଇଉଠିଲା, ତାରାଗୁଡ଼ିକ ତା ପଛପଟେ ଲୁଚିଗଲେ, ଏବଂ ପୃଥିବୀ-ପରିବୃତ ରୂପେଲି ଉଜ୍ଜ୍ୱଳ ତାରକାଦୀପ୍ତ ମେଘାବଗୁଣ୍ଠନ ପ୍ରସାରିତ ହୋଇ ମତେ ଧରିବାକୁ ଆସିଲା । ଶେଷରେ ପୃଥିବୀ ଆଉ ଗୋଲାକାର ମନେ ହେଲା ନାହିଁ, କ୍ରମେ ସମତଳ ଓ ତାପରେ ଅବତଳ ମନେ ହେଲା । ତାହା ଆଉ ଆକାଶର ଗୋଟିଏ ଗ୍ରହ ହୋଇ ରହି ନଥିଲା, ମାନବ ଜାତିର ଦୁନିଆରେ ପରିଣତ ହୋଇଥିଲା । ମୁଁ ପୃଥିବୀ ଦିଗସ୍ଥ ଝରକାର ଇଞ୍ଚେ ଖଣ୍ଡେ ମେଲା ରଖି ବାକି ସବୁ ଝରକା ବନ୍ଦ କରିଦେଲି, ଏବଂ ମନ୍ଥରତର ବେଗରେ ଖସିବାକୁ ଲାଗିଲି । ବିସ୍ତାରିତ ଜଳରାଶି ମତେ ଭେଟିବାକୁ ମାଡ଼ି ଆସିଲା । ତାହା ଏତେ ପାଖକୁ ଆସି ଯାଇଥିଲା ଯେ ମୁଁ ଢେଉଗୁଡ଼ିକର ଅସ୍ପଷ୍ଟ ଝଟକ ବାରି ପାରୁଥିଲି । ଗୋଲକଟି ଖୁବ ଗରମ ହୋଇ ଉଠିଥିଲା । ମୁଁ ଝରକାର ଶେଷ ଫାଙ୍କଟି ବନ୍ଦ କରିଦେଲି, ଏବଂ ଭ୍ରୂକୁଟୀ ସହକାରେ ଆଙ୍ଗୁଠି କାମୁଡ଼ି ବସି ଜଳର ପ୍ରଚଣ୍ଡ ଧକ୍‌କାକୁ ଅପେକ୍ଷା କରି ରହିଲି……

ପ୍ରଚଣ୍ଡ ରାବରେ ପାଣି ଛିଞ୍ଚାଡ଼ି ଗୋଲକଟି ସମୁଦ୍ରରେ ନିମଗ୍ନ ହୋଇ ପଡ଼ିଲା; ଅନେକ ଫୁଟ ଉପରକୁ ବୋଧହୁଏ ପାଣି ଫିଙ୍ଗି ହୋଇଥିବ ।

କସୃତ ଢେଉ ପଡ଼ିବା ସଙ୍ଗେ ସଙ୍ଗେ ମୁଁ କେନ୍‌ଭାଇଙ୍ଗର ଖିଡ଼କୀଗୁଡ଼ିକ ଖୋଲି ଦେଲି । ମୁଁ ତଳକୁ ତଳ ବୁଡ଼ିଯିବାକୁ ଲାଗିଲି. କିନ୍ତୁ, କାଳ ଯେତେ ଗଭୀର ହୋଇ ଆସୁଥିଲା ମୋର ବୁଡ଼ିବାର ବେଗ ସେତେ ମନ୍ଥର ହୋଇଯାଉଥିଲା । ତାପରେ ମୁଁ ଅନୁଭବ କଲି ଯେ ମୋର ଗୋଡ଼ ଦୁଇଟି ଗୋଲକରେ ବାନ୍ଧ ହୋଇଯାଉଛି, ଏବଂ ପରମୁହୂର୍ତ୍ତରେ ଗୋଟିଏ ପାଣି ଫୋଟକା ଛୁଟିଲାପରି ମୁଁ ପୁଣି ଉପରକୁ ଉଠିବାକୁ ଲାଗିଲି । ଶେଷରେ ମୁଁ ସମୁଦ୍ର ପୃଷ୍ଠରେ ଦୋହଲି ଦୋହଲି ଭାସିବାକୁ ଲାଗିଲି ଏବଂ ମହାଶୂନ୍ୟରେ ମୋର ଯାତ୍ରା ସମାପ୍ତ ହେଲା ।

ରାତିଟି ଅନ୍ଧକାର ଓ ମେଘାଚ୍ଛନ୍ନ ଥିଲା । ଦୂରରେ ଦୁଇଟି ହଳଦିଆ ଆଲୋକବିନ୍ଦୁ କୌଣସି ଜାହାଜ ଯାଉଥିବାର ସୂଚନା ଦେଉଥିଲା, ଏବଂ ଅଜାଡ଼ ଦୂରରେ ଗୋଟିଏ ତୀବ୍ର ଲାଲ ଜ୍ୟୋତି ଥରକୁ ଥର ଜଳୁଥିଲା ଓ ଲିଭୁଥିଲା । ମୋର ଗ୍ଲୋ-ଲ୍ୟାମ୍ପର ବିଦ୍ୟୁତ୍-ଶକ୍ତି ଶେଷ ହୋଇଯାଇ ନ ଥିଲେ ମୁଁ ହୁଏତ ସେଇ ରାତିରେ କୌଣସି ଜାହାଜ ଦ୍ୱାରା ଉଦ୍ଧାର ପାଇପାରିଥାନ୍ତି । ମୁଁ ଅତ୍ୟନ୍ତ କ୍ଳାନ୍ତ ବୋଧ କରିବାକୁ ଆରମ୍ଭ କଲି, କିନ୍ତୁ ତା ସତ୍ତ୍ୱେ ମୁଁ ବର୍ତ୍ତମାନ ଉତ୍ତେଜିତ ହୋଇ ପଡ଼ିଲି, ଏବଂ କିଛି ସମୟ ଯାଏ ଧୈର୍ଯ୍ୟହୀନ ଅସ୍ଥିରତା ସହିତ ଆଶା କରିବାକୁ ଲାଗିଲି ଯେ ହୁଏତ ସତକୁ ସତ ଏହିପରି ଭାବରେ ହିଁ ମୋର ଜଳଯାତ୍ରା ଶେଷ ହେବ ।

କିନ୍ତୁ ଶେଷରେ ମୁଁ ଆଉ ହଲଚଲ ହେଲି ନାହିଁ, ଆଣ୍ଠୁ ଉପରେ ହାତ ଦେଇ ଦୂରସ୍ଥିତ ଲାଲ ଆଲୁଅଆଡ଼େ ଅନାଇ ରହିଲି । ତାହା ଥରକୁ ଥର ଉପରକୁ ତଳକୁ ହୋଇ ଦୋହଲୁଥିଲା । ମୋର ଉତ୍ତେଜନା ଚାଲିଗଲା । ମୁଁ ବୁଝିପାରିଲି ଯେ, ଅନ୍ତତଃ ଆଉ ଗୋଟିଏ ରାତି ମତେ ଗୋଲକ ଭିତରେ କଟାଇବାକୁ ପଡ଼ିବ । ମୋର ଦେହ ଅତ୍ୟନ୍ତ କ୍ଳାନ୍ତ ଓ ଭାରି ବୋଧ ହେଉଥିଲା । ତେଣୁ ମତେ ଶୀଘ୍ର ନିଦ ଲାଗିଗଲା ।

ମୋର ଛନ୍ଦୋମୟୀ ଗତିରେ କୌଣସି ପରିବର୍ତ୍ତନ ଘଟିବାରୁ ମୋର ନିଦ ଭାଙ୍ଗିଗଲା । ମୁଁ କାଚ ଭିତରଦେଇ ଉଙ୍କିମାରି ଦେଖିଲି, ମୁଁ ଗୋଟିଏ ବଡ଼ ବାଲିବନ୍ତାରେ ଲାଖିଯାଇଛି । ଅନେକ ଦୂରରେ ମୁଁ ଘର ଓ

ଗଛଗୁଡ଼ିକ ଅସ୍ପଷ୍ଟ ଭାବରେ ଦେଖିପାରୁଥିଲି, ଏବଂ ସମୁଦ୍ର ଆଡ଼େ ଗୋଟିଏ ଉଜ୍ଜ୍ୱଳ ରେଖା, ଜାହାଜର ଗୋଟିଏ ଚକ୍ରୁତ ଅସ୍ପଷ୍ଟ ଛବି ଆକାଶ ଓ ସମୁଦ୍ର ମଝିରେ ଭାସୁଥିଲା ।

ମୁଁ ଛିଡ଼ା ହୋଇପଡ଼ି ଟଳିବାକୁ ଲାଗିଲି । ଗୋଲକର ଭିତରୁ ବାହାରିବା ହିଁ ମୋର ଏକମାତ୍ର ଅଭିଳାଷ ଥିଲା । ଗଣ୍ଠିଟି ଉପର ଆଡ଼କୁ ଥିଲା, ମତେ ପେଞ୍ଚ ଫିଟାଇବାକୁ ଯାନ୍ତିମତ କସରତ କରିବାକୁ ପଡ଼ିଲା । ଧୀରେ ଧୀରେ ମୁଁ ତାହା ଫିଟେଇଲି । ଶେଷରେ ବାୟୁ ଗୁଞ୍ଜନକରି ଭିତରକୁ ପଶିଆସିଲା, ଯେପରି ତାହା ଗୁଞ୍ଜନ କରି ଥରେ ବାହାରକୁ ବାହାରିଯାଇଥିଲା । କିନ୍ତୁ ଏଥର ମୁଁ ବାୟୁର ଚାପ ଉପଯୋଗୀ ହେବା ପର୍ଯ୍ୟନ୍ତ ଅପେକ୍ଷା କରି ନାହିଁ । ପର ମୁହୂର୍ତ୍ତରେ ଝରକାକୁ ଦୁଇ ହାତରେ ଟେକିଧରିଲି, ଏବଂ ପୃଥିବୀର ପୁରାତନ ଚିର ପରିଚିତ ଆକାଶ ତଳେ ମୁକ୍ତି ଉପଭୋଗ କଲି ।

କିନ୍ତୁ ବାୟୁ ହଠାତ୍ ମୋର ଗ୍ରୀବା ଉପରେ ଧକ୍କା ଦେବାରୁ ମୋର ନିଃଶ୍ୱାସ ବନ୍ଦ ହୋଇଗଲାପରି ଲାଗିଲା । ମୁଁ ପେଞ୍ଚଲଗା କାଚ ଢାଙ୍କୁଣୀଟି ପକେଇଦେଲି । ଛାତିରେ ହାତ ଯାକି ଚିତ୍କାର କରି ଉଠିଲି ଓ ଲଥ୍‌କିନା ବସିପଡ଼ିଲି । କିଛି ସମୟ ପର୍ଯ୍ୟନ୍ତ ବେଦନାକ୍ଳିଷ୍ଟ ହୋଇପଡ଼ିଥିଲି । ତାପରେ ଲମ୍ବା ଲମ୍ବା ନିଃଶ୍ୱାସ ଟାଣିବାକୁ ଲାଗିଲି । ଶେଷରେ ମୁଁ ପୁଣି ଛିଡ଼ା ହେବାକୁ ଓ ଚାଲବୁଲ କରିବାକୁ ସକ୍ଷମ ହେଲି ।

ଚଢ଼ିବାଟେ ମୁଣ୍ଡ ଗଳେଇବାକୁ ମୁଁ ଚେଷ୍ଟା କଲି, ଫଳତଃ ଗୋଲକଟି ଗଡ଼ିଗଲା । ମନେ ହେଲା, ମୁଁ ମୁଣ୍ଡ ବାହାର କରିବା ସଙ୍ଗେ ସଙ୍ଗେ କେହି ମୋର ମୁଣ୍ଡକୁ ତଳକୁ ଭିଡ଼ି ଧରିଛି । ମୁଁ ତତ୍‌କ୍ଷଣାତ୍ ଭିତରକୁ ମୁଣ୍ଡ ଟାଣି ନେଲି ନହେଲେ ପାଣି ଭିତରେ ମୋର ମୁଣ୍ଡକୁ ଜାକି ଗୋଲକଟି ମୋ ଉପରେ ଚାପି ହୋଇ ପଡ଼ିଥାନ୍ତା । ଅନେକ ଭିଡ଼ା ଓଟରା ଠେଲା ପେଲା ପରେ ମୁଁ ଗୁରୁଣ୍ଡି ଗୁରୁଣ୍ଡି ବାଲି ଉପରକୁ ବାହାରି ଆସି ପାରିଲି । ଘୂର୍ଣ୍ଣି ଘୂର୍ଣ୍ଣି ଖାଉଥିବା ଢେଉ ଗୁଡ଼ିକ ସେପର୍ଯ୍ୟନ୍ତ ବାଲି ଉପରକୁ ମାଡ଼ି ଆସୁଥିଲେ, ପୁଣି ଫେରି ଯାଉଥିଲେ ।

ମୁଁ ଛୁଟା ହେବାକୁ ଚେଷ୍ଟା କଲି ନାହିଁ । ମୋର ମନେ ହେଲା, ମୋର ଦେହ ହଠାତ୍ ଆଘାତରେ ପରିଣତ ହୋଇଛି । ମୁଁ ବର୍ତ୍ତମାନ ପୃଥିବୀ ମାତାଙ୍କ ହାତ ମୁଠାରେ ପଡ଼ିଥିଲି—ମଝିରେ ଆଉ କୌଣସିଟି ବାଧା ଦେଉ ନଥିଲା । ମୋର ପାଦ ଉପରେ ଅଜାଡ଼ି ପଡ଼ୁଥିବା ପାଣିକୁ ଭ୍ରୂକ୍ଷେପ ନ କରି ମୁଁ ବସିପଡ଼ିଲି ।

ଭୋର ହୋଇ ଯାଇଥିଲା । ଘୃଣିଆଡ଼ ଧୂସର ଦିଶୁଥିଲା, ପ୍ରାୟ ଅନ୍ଧାରିଆ ଦିଶୁଥିଲା, କିନ୍ତୁ ଏଠି ସେଠି ସବୁଜ ମିଶ୍ରିତ ଧୂସରତାର ଲମ୍ବ ଲମ୍ବ ସ୍ତୂପ ଦେଖାଯାଉ ଥିଲା । କିଛି ଦୂରରେ ଗୋଟିଏ ଜାହାଜ ଲଙ୍ଗର ପକେଇଥିଲା— ଅସ୍ପଷ୍ଟ କଳା ସ୍ତୁଇରେ ଗୋଟିଏ ମାତ୍ର ହଳଦିଆ ଆଲୁଅ ଜଳୁଥିଲା । ପାଣିରେ ଛୋଟ ଛୋଟ ଲମ୍ବା ଢେଉ ଉଠି କୂଳ ଉପରେ ଭାଙ୍ଗି ପଡ଼ୁଥିଲା । ତାହା ଶ ପଟେ ଦୂରରେ ବନ୍ଧୁରଭାବେ ସ୍ଥଳଦେଶ ଲମ୍ବି ଯାଇଥିଲା । ସମୁଦ୍ରତଟ ଉପଲ-ଖଣ୍ଡଦ୍ୱାରା ଆଚ୍ଛାଦିତ ହୋଇଥିଲା ଏବଂ ତା ଉପରେ ଛୋଟ ଛୋଟ କୁଡ଼ିଆ ମୁଣ୍ଡ ଟେକିଥିଲେ । କିଛି ଦୂରରେ ଗୋଟିଏ ବଖରା ଘର, ଜାହାଜର ଢଙ୍ଗ ନକ୍ସାଯୁକ୍ତ ଗୁମ୍ଭ ଓ ଚନ୍ଦ୍ର ଥିଲା । ଆହୁରି ଦୂରକୁ ସମତଳ ବାଲିର ଆସ୍ତରଣ ବିସ୍ତୃତ ହୋଇଥିଲା । ତାର ମଝିରେ ମଝିରେ ପାଣି ଜମି ଯାଇଥିଲା । ମାଇଲିଏ ପର୍ଯ୍ୟନ୍ତ ସେହି ବାଲି ସ୍ତୂଇ ହୋଇଥିଲା, ଏବଂ ତାର ଶେଷାଂଶ ଛୋଟ ଛୋଟ କଣ୍ଟାବୁଦାରେ ପୂର୍ଣ୍ଣ ହୋଇଥଲା । ଉତ୍ତର-ପୂର୍ବ ଦିଗରେ ପୃଥକ୍ ଅବସ୍ଥିତ କେତେ ଟି ସ୍ୱାସ୍ଥ୍ୟ ନିବାସ ଦେଖାଯାଉଥିଲା । ଢେଙ୍ଗା ଢେଙ୍ଗା ସରେଇ ଘରର ଗୋଟିଏ ଧାଡ଼ି ଜ୍ୟୋତ୍ସ୍ନାଳ ଆକାଶରେ ମସୀବିନ୍ଦୁ ପରି ଚିହ୍ନିତ ହୋଇଥିଲା । ମୁଁ ସ୍ଥଳ ଦେଶରେ ଯାହା ଯାହା ଦେଖିଲି, ସେ ଘରସବୁ ସବୁଠୁଁ ଉଚ୍ଚ ଦେଖାଯାଉଥିଲା । ଏପରି ଯଥେଷ୍ଟ ଚଉଡ଼ା ଜାଗା ଥିବା ସତ୍ତ୍ୱେ କି ଅଦ୍ଭୁତ ଲୋକେ ସେପରି ଢେଙ୍ଗା ଢେଙ୍ଗା ଘର ତିଆରି କରଥିଲେ, ମୁଁ ବୁଝିପାରିଲି ନାହିଁ । ଇଂଲଣ୍ଡର ସୁଦୃଶ୍ୟ ବନ୍ଦର ବ୍ରାଇଟନ୍‌ର କେତେଖଣ୍ଡ ଘୋର କାଶ୍ମୀର ଭିତରେ ହଜିଗଲେ ଯେପରି ଦେଖାଯାନ୍ତା ସେହି ସ୍ଥାନଟି ସେହିପରି ଦେଖା ଯାଉଥିଲା ।

ଅନେକ ସମୟ ଯାଏଁ ସେଠି ବସି ରହି ମୁଁ ହାଇ ମାରିବାକୁ ଲାଗିଲି ଓ ମୋର ମୁହଁ ଘଷିବାକୁ ଲାଗିଲି ! ତେବେ ମୁଁ ଉଠିବାକୁ ଚେଷ୍ଟାକଲି ।

ମତେ ଜଣାଗଲା ଯେପରି କି ମୁଁ ଗୋଟିଏ ବୋଟ୍ ହଟାଉଛି ।' ମୁଁ ଛିଡ଼ା ହେଲି ।

' ମୁଁ ଦୂରର ଘରଗୁଡ଼ିକ ଆଡ଼େ ଅନାଇଲି । ଆଟେଣ୍ଟସଗିଶ ବନ୍ଦରରେ ଆମର କ୍ଷୁଧା ପରେ ମୁଁ ପ୍ରଥମଥର ପାଇଁ ପାର୍ଥିବ ଖାଦ୍ୟ ଲାଗି ବ୍ୟାକୁଳ ହେଲି । ମୁଁ ନିଜକୁ ନିଜେ ଫୁସ୍‌ଫୁସ୍ କରି କହିଲି, "ଶୂକର-ମାଂସ, ଅଣ୍ଡା ଭଲ ରୁଟି ଭଜା ଆଉ ଭଲ କଫି......ଏବଂ, ଏସବୁ ଜିନିଷ ମୁଁ କିମ୍ପିନେବି କେବେ କିପରି ସେଇ ହେଉଛି ମୁସ୍କିଲ ।" ମୁଁ କେଉଁଠି ଥିଲି, ଠିକ୍ କରି ପାରିଲି ନାହିଁ । ଅବଶ୍ୟ ଏହା ପୂର୍ବଦିଗର କୌଣସି ଉପକୂଳ, ଏବଂ ଖସି ପଡ଼ିବା ପୂର୍ବରୁ ମୁଁ ୟୁରୋପକୁ ଦେଖିପାରିଥିଲି ।

ବାଲି ଉପରେ କର୍ କର୍ କରୁଥିବା ପଦଧ୍ୱନି ମୁଁ ଶୁଣିପାରିଲି । ଗୋଟିଏ ଗୋଲ ମୁହଁ, ଅମାୟିକ ଚେହେରାର ଲୋକ ଗରମ ପେଣ୍ଟ୍ ପିନ୍ଧି, କାନ୍ଧ ଉପରେ ଗାଧୁଆ ତଉଲିଆ ପକେଇ, ଏବଂ ହାତରେ ଗାଧୁଆ ପୋଷାକ ନେଇ ସମୁଦ୍ର କୂଳରେ ପହଞ୍ଚିଲା । ମୁଁ ସାଙ୍ଗେ ସାଙ୍ଗେ ଜାଣି ପାରିଲି ଯେ ମୁଁ ନିଶ୍ଚୟ ଇଂଲଣ୍ଡରେ ଅଛି । ସେ ପ୍ରାୟ ଗଭୀର ଦୃଷ୍ଟିରେ ମତେ ଓ ଗୋଲକଟିକୁ ନିରୀକ୍ଷଣ କରୁଥିଲା । ବିସ୍ମାରିତ ଚକ୍ଷୁରେ ଅନେଇ ଅନେଇ ସେ ଆଗେଇ ଆସିଲା । ମୁଁ ନିଶ୍ଚୟ ଗୋଟିଏ ଅତି ଅସଭ୍ୟ ଜଙ୍ଗଲୀ ଲୋକପରି ଦିଶୁଥିଲି । ମୋର ଦେହ ଏପରି ଅପରିଷ୍କାର ଓ ଅପରିଚ୍ଛନ୍ନ ହୋଇଥିଲା ଯେ କଥାରେ କହି ହେବ ନାହିଁ । କିନ୍ତୁ 'ସେକଥା ସେତେବେଳେ ମୋର ମନେ ନଥିଲା । ସେ ପ୍ରାୟ କୋଡ଼ିଏ ଗଜ ଦୂରରେ ଛିଡ଼ା ହେଲା । ସନ୍ଦିଗ୍ଧ ସ୍ୱରରେ କହିଲା, "କି—ହୋ, ଭାଇ !"

ମୁଁ କହିଲି, "କିହୋ !"

ଏଇ କଥାଶୁଣି ଭରସା ପାଇ ସେ ପୁଣି ଆଗେଇଲା । ପଚାରିଲା "ସେଇ ଜିନିଷଟା କଣ କି ?"

ମୁଁ ପଚାରିଲି, "ମୁଁ କେଉଁଠି ଅଛି କହି ପାରିବ ?"

ସେ ଘରଗୁଡ଼ିକଆଡ଼େ ଆଙ୍ଗୁଠି ଦେଖାଇ କହିଲା, ହେଇଟି ଲିଟ୍‌ଲ୍ ଷ୍ଟୋନ୍, ଆଉ ସେପଟେ ଡନ୍‌ନେନେସ୍ ! ତୁମେ ସାଙ୍ଗେ ସାଙ୍ଗେ ଜାହାଜରୁ ଓହ୍ଲେଇଛ ? ତୁମର ସେଇ ଜିନିଷଟା କଣ ? ଏକପ୍ରକାର କଳ ?"

"ହଁ ।"

"ତୁମେ ଭସି ଭସି କୂଳକୁ ଆସିଛ ? ତୁମର ଜାହାଜ-ବୁଡ଼ି ହୋଇଥିଲା ନା କଣ ? କି ଘଟଣା ?"

ମୁଁ ଦ୍ରୁତ ଚିନ୍ତା କରିବାକୁ ଲାଗିଲି । ସେହି ଗ୍ରେଟିଆ ମଣିଷଟି ଆହୁରି ପାଖକୁ ଆସୁ ଆସୁ ମୁଁ ତାର ଚେହେରା ଦେଖି ତାକୁ ଚିହ୍ନିବାକୁ ଚେଷ୍ଟା କଲି । ସେ କହିଲା, "ଆରେ ବାଃ ! ତୁମେ ବେଶ୍ ମଜା ପାଇଥିବ ତ ! ମୁଁ ଭାବିଥିଲି ତୁମେ—ଆଚ୍ଛା—କେଉଁଠି ତୁମର ଜାହାଜ ବୁଡ଼ିଲା ? ସେଇଟା କଣ ଜୀବନ ବଞ୍ଚାଇବା ପାଇଁ ଭେଲା ପରି କୋଉଟିଏ ଜିନିଷ ?"

ବର୍ତ୍ତମାନ ପାଇଁ ଏଇ ସୂତ୍ରରେ ଗଳ୍ପ କରିବାକୁ ମୁଁ ଠିକ୍ କଲି । ମୁଁ କେତୋଟି ଅସ୍ପଷ୍ଟ, ସମ୍ମତି ସୂଚକ ଭଙ୍ଗୀ କଲି । ଭଙ୍ଗା ଗଳାରେ କହିଲି, "ମୋର ସାହାଯ୍ୟ ଦରକାର । ମୁଁ କେତେକ ଜିନିଷ କୂଳ ଉପରକୁ ନେଇ ଯିବାକୁ ଚାହେଁ—ସେ ସବୁ ଏଣେ ତେଣେ ପକେଇ ରଖିବା ଜିନିଷ ନୁହେଁ ।" ଆଉ ତିନିଜଣ ଖୁସ୍ ଚେହେରାର ଯୁବକ ଡଙ୍ଗଲିଆ, ଗରମକୋଟ ଓ ନଡ଼ା ତିଆରି ଟୋପି ଧରି ବାଲି ଉପର ଦେଇ ମୋଆଡ଼କୁ ଆସୁଥିବାର ମୁଁ ଦେଖିପାରିଲି । ସମ୍ଭବତଃ ଏମାନେ ଏହି ଲିଟଲ୍‌ଷ୍ଟୋନ୍‌ର ପହିଲି ସ୍ନାନାର୍ଥୀ ଥିଲେ ।

ଯୁବକଟି କହିଲା, "ସାହାଯ୍ୟ ! ନିଶ୍ଚୟ ।" ସେ ହଠାତ୍ ଅକାରଣରେ ବ୍ୟସ୍ତ ହୋଇ ପଡ଼ିଲା । "କଣ କଣ ତୁମର ଦରକାର ?" ଏଥି ପଛକୁ ବୁଲି ପଡ଼ି ଠାରିବାକୁ ଲାଗିଲା । ବାକି ତିନିଜଣ ଯୁବକ ସେମାନଙ୍କର ଗତି ଦ୍ରୁତତର କରିଦେଲେ । ମିନିଟକ ଭିତରେ ସେମାନେ ମତେ ବେଢ଼ିଯାଇ ଏପରି ସବୁ ପ୍ରଶ୍ନ ପଚାରିବାକୁ ଲାଗିଲେ, ଯାହାର ଉତ୍ତର ଦେବାକୁ ମୋର ଇଚ୍ଛା ନଥିଲା । ମୁଁ କହିଲି, "ସେ ସବୁ କଥା ପରେ କହିବି । ବର୍ତ୍ତମାନ ମୁଁ ଭାରି ହାଲିଆ ହୋଇ ପଡ଼ିଛି, ମୋର ବେଶ ଭୂଷା ଅତି କଦାକାର ହୋଇଛି ।"

ପଛରେ ଆସିଥିବା ବାଙ୍ଗରା ଲୋକଟି କହିଲା, "ହୋଟେଲକୁ ଚାଲିଆସ ଆମେ ସେଇ ଜିନିଷଟିକୁ ଜଗିବାର ବ୍ୟବସ୍ଥା କରିଦେବୁ ।"

ମୁଁ ଇତଃସ୍ତତଃ କଲି । କହିଲି, "ନା, ମୁଁ ଯାଉନାହିଁ । ସେହି ହୋଟେଲ ଭିତରେ ସୁନାର ଦୁଇଟି ବଡ଼ ଛଡ଼ ଅଛି ।"

ସେମାନେ ପ୍ରତ୍ୟେକ ଘୃଣ ଦୃଷ୍ଟିରେ ପରସ୍ପରକୁ ଚାହିଁଲେ, ତାପରେ ଆଖିରେ ନୂତନ ପ୍ରଶ୍ନ ଭରି ମୋ ଆଡ଼େ ଚାହିଁଲେ । ମୁଁ ହୋଟେଲ ନିକଟକୁ ଗଲି, ନଇଁ ପଡ଼ି ଭିତରକୁ ପଶିଲି, ଏବଂ ପର ମୂହୂର୍ତ୍ତରେ ଗୃହ କମାଣ୍ଡର ଶାବଳ ଦୁଇଟି ଓ ଚୁଣ୍ଡା ଶୀକୁଳଟି ସେମାନଙ୍କ ଆଗରେ ଉପସ୍ଥାପିତ କଲି । ମୁଁ ଯଦି ଏପରି ଭୀଷଣ ଭାବରେ କ୍ଲାନ୍ତ ହୋଇ ପଡ଼ି ଥାନ୍ତି, ତାହା ହେଲେ ସେମାନଙ୍କର ବ୍ୟବହାର ଦେଖି ହସରେ ଗଡ଼ିଯାଇଥାନ୍ତି । ଗୋବର ପୋକ ଗୁରୁପଟେ ବଗୁଡ଼ିମାନେ ଯେଉଁରୂପରେ ସେମାନେ ଠୁଲ୍ଲା ହୋଇ ଥିଲେ । ଜିନିଷଟି ନେଇ କଣ କରିବେ ସେମାନେ ବୁଝିପାରୁ ନଥିଲେ । ମୋଟା ବାଙ୍ଗର ଲୋକଟି ନଇଁପଡ଼ି ଗୋଟିଏ ଶାବଳର ଗୋଟେ ପାଖ ଉଠେଇଲା, ଏବଂ ତାପରେ "ଉଃ" କରି, ତଳେ ପକେଇ ଦେଲା । ବାକି ସମସ୍ତେ ବି ସେପରି କଲେ ।

ଜଣେ କହିଲା, "ଏଇଟା ସୀସା, ନା ସୁନା !"

ଆଉ ଜଣେ କହିଲା, "ହୁଁ, ସୁନା ତ !"

ତୃତୀୟ ଜଣକ କହିଲା, "ଅଲବତ୍ ସୁନା ।"

ସେମାନେ ସମସ୍ତେ ବଡ଼ ବଡ଼ ଆଖି କରି ପ୍ରଥମେ ମୋ ଆଡ଼େ ଅନେଇଲେ, ତାପରେ ଲଙ୍ଗର ପକେଇଥିବା ଜାହାଜ ଆଡ଼େ ଅନେଇଲେ ।

ବାଙ୍ଗର ଲୋକଟି କହିଲା, "ହେଇଟି, ତୁମେ ଏସବୁ କେଉଁଠୁ ପାଇଲ ?"

ମୁଁ ଏତେଦୂର କ୍ଲାନ୍ତ ହୋଇ ପଡ଼ିଥିଲି ଯେ ବରାବର ମିଛ କହି ଚାଲିବାକୁ ମୋର ଶକ୍ତି ନ ଥିଲା । କହିଲି "ଚନ୍ଦ୍ରରୁ ପାଇଲି ।"

ସେମାନେ ପରସ୍ପର ଆଡ଼େ ବିସ୍ମିତ ଭାବରେ ଅନାଇଲେ ।

ମୁଁ କହିଲି, "ଦେଖ ! ମୁଁ ବର୍ତ୍ତମାନ ତର୍କ କରିବାକୁ ଚାହୁଁ ନାହିଁ । ଏଇ ସୁନାମୁଣ୍ଡା ସବୁ ହୋଟେଲକୁ ବୋହିନେବା ପାଇଁ ମତେ ସାହାଯ୍ୟ କର—ମୁଁ ଭାବୁଛି ମଝିରେ ମଝିରେ ବିଶ୍ରାମନେଇ ତୁମ ଭିତରୁ ଦୁଇଜଣ-

ଲୋକେ ଏଥିରୁ ଗୋଟିଏ ବୋନ୍ଧ ନେଇ ପାରିବ, ଏବଂ ମୁଁ ଏଇ ଶିକୁଳିଟି ଟାଣି ଟାଣି ନେବ—ଏବଂ କିଛି ଖାଇସାଇଲା ପରେ ମୁଁ ଏ ବିଷୟରେ ଆହୁରି ଅଧିକା କହିବ।”

“ଆଚ୍ଛା, ସେଇ ଜନ୍ତୁଟି ବିଷୟରେ କଣ କହିବ ?”

ମୁଁ କହିଲି, “ସେଇଟା ସେଠି ଥିଲେ କହାକୁ ଖାଇ ପକାଇବନି। ଯାହାହେଉ—ତୁମ୍ଭେ ଯାଅ !—ବର୍ତ୍ତମାନ ପାଇଁ ତାକୁ ସେଠି ରହିବାକୁ ପଡ଼ିବ। ଯଦି କୁଆର ଆସେ, ତାହା ଠିକ ଭସି ରହିବ।”

ତାପରେ ଏଇ ଯୁବକମାନେ ବିରାଟ ବିସ୍ମୟରେ ଅଭିଭୂତ ହୋଇ ମୋର ମହାର୍ଘ ସମ୍ପଦକୁ ଅଭାବ ବଶ୍ୟତା ସହିତ ତାଙ୍କ କାନ୍ଧ ଉପରକୁ ଉଠେଇନେଲେ, ଏବଂ ମୁଁ ହୀସାପରି ଲାଗୁଥିବା ଅଙ୍ଗପ୍ରତ୍ୟଙ୍ଗ ନେଇ ଦୂରସ୍ଥ ସେଇ ଉପକୂଳବର୍ତ୍ତୀ ବିଚ୍ଛିନ୍ନ “ସହର” ଆଡ଼କୁ ଏକ ପ୍ରକାର ଶୋଭାଯାତ୍ରାର ଶୀର୍ଷରେ ଅଗ୍ରସର ହେଲି। ଅଧାବାଟ ଗଲାପରେ, କୋଡ଼ି ଧରିଥିବା ଦୁଇଜଣ ଶ୍ରେଷ୍ଠ ବାଳକା ସମ୍ଭ୍ରମଜନିତ ଭୟରେ ଜଡ଼ି ଆମ ଦଳରେ ଆସି ଯୋଗ ଦେଲେ ଏବଂ କିଛି ସମୟ ପରେ ଗୋଟିଏ କ୍ଷୀଣକାୟ ବାଳକ ତୀକ୍ଷ୍ଣ ଭାବରେ ଗନ୍ଧ ବାର ବାର ଆସି ପହଞ୍ଚିଲା। ମୋର ଠିକ୍ ମନେ ଅଛି ସେ ଗୋଟିଏ ସାଇକେଲ ଗଡ଼େଇ ଗଡ଼େଇ ଆସୁଥିଲା, ଏବଂ ଦଳର ଡାହାଣ ପାର୍ଶ୍ୱର ପ୍ରାୟ ଶହେଗଜ ଦୂରରେ ଆମ ସଙ୍ଗେ ସଙ୍ଗେ ଆସିଲା। ତାପରେ ବୋଧହୁଏ ଆମଠୁ ବିଶେଷ କିଛି ମଜା ନ ପାଇ, ଦଳ ଛାଡିଦେଲା, ଏବଂ ସାଇକେଲ ଚଢ଼ି ସମତଳ ବାଲି ଉପରେ ଦେଇ ଗୋଲ୍‌କ ଆଡ଼କୁ ଅଗ୍ରସର ହେଲା।

ମୁଁ ମୁହଁ ବୁଲେଇ ତା ପଛେ ପଛେ ଗ୍ରହିଲି।

ମୋଟା ଯୁବକଟି ମତେ ଭରସା ଦେଇ କହିଲା, “ସେ ତାକୁ ଛୁଇଁବନି।” ମୁଁ ମଧ୍ୟ ନିଶ୍ଚିନ୍ତ ହେବାକୁ ଖୁବ୍ ରାଜି ହୋଇ ରହିଥିଲି।

ସକାଳଟା ଯେପରି ଧୂଆଁଳିଆ ଦିଶୁଥିଲା। ମୋ ମନ ମଧ୍ୟ ପ୍ରଥମେ ସେହିପରି ଧୂଆଁଳିଆ ହୋଇଥିଲା। କିନ୍ତୁ କିଛିକ୍ଷଣ ପରେ ସୂର୍ଯ୍ୟ ଉଜ୍ଜ୍ୱଳରୂପରେ ମେଘସ୍ତର କବଳରୁ ମୁକ୍ତି ଲାଭକରି ପୃଥିବୀକୁ ଆଲୋକିତ କଲା, ଏବଂ ସହୀମସ୍ଥ ସମୁଦ୍ର ବକ୍ଷକୁ ଝଲସାଇ ଦେଲା। ସେଥି ସଙ୍ଗେ ସଙ୍ଗେ ମୋର ମନ ମଧ୍ୟ

ସତେଜ ହୋଇ ଉଠିଲି । ଢବାଲୋକ ସଙ୍ଗେ ସଙ୍ଗେ ଏଇ ଜ୍ଞାନ ମୋର ଚିତ୍ତରେ ସଞ୍ଚାରିତ ହେଲା ଯେ, ମୁଁ ଯାହା ଯାହା କରିଛି ଏବଂ ଯାହା କରିବାକୁ ଏପର୍ଯ୍ୟନ୍ତ ବାକିଅଛି, ସେ ସମସ୍ତ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟ । ମୋର ସୁନାରି ଘର ତଳେ ସର୍ବପ୍ରଥମ ଲୋକଟି ଟଳି ଟଳି ଚାଲୁଥିବାର ଦେଖି ମୁଁ ଜୋରରେ ହସିଉଠିଲି । ମୁଁ ବାସ୍ତବିକ ଯେତେବେଳେ ଦୁନିଆରେ ମୋର ଉପଯୁକ୍ତ ଆସନ ଗ୍ରହଣ କରିବି ସେତେବେଳେ ଦୁନିଆ କେତେ ଆଶ୍ଚର୍ଯ୍ୟ ହୋଇଯିବ !

ମୁଁ ଯଦି ଏପରି ଅତିରିକ୍ତ ଭାବରେ କ୍ଳାନ୍ତ ହୋଇ ପଡ଼ି ନ ଥାନ୍ତି ତେବେ ଲିଟ୍ଲ୍‌ଷ୍ଟୋନ୍ ହୋଟେଲର ମାଲିକର ବ୍ୟବହାର ଦେଖି ନିଶ୍ଚୟ କୌତୁକ ବୋଧ କରିଥାନ୍ତି । କାରଣ, ଏକ ପକ୍ଷରେ ମୋର ସୁନା ଓ ଭଦ୍ର ସାଙ୍ଗସାଥୀ ଏବଂ ଅନ୍ୟ ପାଖରେ ମୋର ଅସନା ଚେହେରା, ଏଇ ଦୁଇଟି ଅବସ୍ଥା ମଝିରେ ପଡ଼ି ସେ ଇତସ୍ତତଃ କରିବାକୁ ଲାଗିଲା । ଯାହାହେଉ, ଶେଷରେ ମୁଁ ପୁଣିଥରେ ଏଇ ପୃଥିବୀର ଗୋଟିଏ ଗାଧୁଆ ଘରେ ଗାଧୋଇବା ପାଇଁ ଗରମ ପାଣି ଏବଂ ପାଲଟିବା ପାଇଁ ଲୁଗା ପାଇଲି । ସେଇ ଲୁଗାପଟା ଅବଶ୍ୟ ଅତିଶୟ ଖ୍ରାପ ଥିଲା, କିନ୍ତୁ ଯାହାହେଉ ସଫା ଥିଲା । ସେଗୁଡ଼ିକ ସେଇ ଅମାୟିକ ବାଙ୍ଗରା ଲୋକଟି ମତେ ଧାର ଦେଇଥିଲା । ସେ ମତେ ଷୁରଟିଏ ବି ଧାର ଦେଲା, କିନ୍ତୁ ବହଳ ଦାଢ଼ିରେ ମୋର ମୁହଁ ଏପରି ଭାବରେ ଘୋଡ଼ି ହୋଇ ଯାଇଥିଲା ଯେ, ଦାଢ଼ି ତ ଦାଢ଼ି, ଦାଢ଼ିର ଅଗକୁ ବି ଛୁଇଁବାକୁ ମୋର ମନ ବଳିଲା ନାହିଁ ।

ଇଂରେଜଜାତି ସୁଲଭ ପ୍ରାତଃଭୋଜନ ଖାଇବାକୁ ମୁଁ ବସିପଡ଼ିଲି, ଏବଂ ଏକ ପ୍ରକାର ଅଳସ କ୍ଷୁଧା ସହିତ ଖାଇବାକୁ ଲାଗିଲି । ସେ କ୍ଷୁଧା ଅନେକ ସପ୍ତାହ ହେଲା ତୃପ୍ତ ହୋଇ ନ ଥିଲା, ଓ ଅତି କ୍ଷୀଣ ହୋଇ ଯାଇଥିଲା । ଖାଉ ଖାଉ ମୁଁ ସେଇ ଚାରିଜଣ ଯୁବକଙ୍କ ପ୍ରଶ୍ନର ଉତ୍ତର ଦେବାକୁ ନିଜକୁ ପ୍ରସ୍ତୁତ କରିନେଲି । ଏବଂ, ସତକଥାହିଁ ମୁଁ ସେମାନଙ୍କୁ କହିଲି ।

ମୁଁ କହିଲି, "ହଉ, ନ ଶୁଣି ଯେବେ ଛାଡ଼ିବନି, ତେବେ ଶୁଣ—ମୁଁ ଏହାକୁ ଚନ୍ଦ୍ରରେ ପାଇଲି ।"

"ଚନ୍ଦ୍ର ?"

"ହିଁ, ଆକାଶର ଚନ୍ଦ୍ର ।"

"କିନ୍ତୁ, ତୁମ କଥାର ମାନେ କଣ ?"

"ଯେତ୍‌ତେଲଶକା ! ମୁଁ ଯାହା କହୁଛି ସେଇଆ ମାନେ ।"

"ମାନେ, ତୁମେ ଏଇ ହାଙ୍ଗେ ହାଙ୍ଗେ ଚନ୍ଦ୍ରକୁ ଆସୁଛ ?"

"ଠିକ୍ ! ମହାଶୂନ୍ୟ ଭିତର ଦେଇ—ସେଇ ପେଣ୍ଡୁ ଭିତରେ ବସି ।" ଏତିକି କହି ମୁଁ ଆଗ୍ରହରେ ଅଣ୍ଡାକୁ ପୁଳାଏ ପାଟିରେ ଭରଣ୍ଡ କରିଦେଲି । ମୁଁ ମନେ ମନେ ଟିପି ରଖିଲି ଯେ, ମୁଁ ପୁଣି ଯେତେବେଳେ ଚନ୍ଦ୍ରକୁ ଫେରିଯିବାକୁ ହେଉଥିବ ବାକ୍ସେ ଅଣ୍ଡା ନେଇଯିବି ।

ମୁଁ ସ୍ପଷ୍ଟ ବୁଝି ପାରିଲି ଯେ ମୋର କଥାର ଗୋଟିଏ ଶବ୍ଦ ବି ସେମାନେ ବିଶ୍ୱାସ କରି ନାହାନ୍ତି । କିନ୍ତୁ ସେମାନଙ୍କର ହାବଭାବରୁ ଜଣା ପଡ଼ୁଥିଲା, ମୁଁ ଦୁନିଆର ସର୍ବଶ୍ରେଷ୍ଠ ଭଦ୍ର ମିଛୁଆ ବୋଲି ସେମାନେ ବିଚାରୁଛନ୍ତି । ସେମାନେ ପରସ୍ପର ଆଡ଼େ ଚାହିଁଲେ, ତାପରେ ସେମାନଙ୍କର ସମ୍ମିଳିତ ତୀକ୍ଷ୍ଣ ଦୃଷ୍ଟିବାଣ ମୋ ଉପରେ ନିବଦ୍ଧ କଲେ । ମୋର ଲୁଣ ଚାଖିବା ଢଙ୍ଗରୁ ମୋର ସ୍ୱରୂପ ବିଷୟରେ କୌଣସି ସନ୍ଧାନ ମିଳିପାରେ ବୋଲି ସେମାନେ ବୋଧହୁଏ ଆଶା କରୁଥିଲେ । ମୋର ଅଣ୍ଡା ଉପରେ ଗୋଲମରିଚ ଗୁଣ୍ଡ ପକାଇବା ଧରଣରେ ସେମାନେ ବୋଧ ହୁଏ କୌଣସି ବିଶେଷ ଅର୍ଥ ଆବିଷ୍କାର କରି ପାରୁଥିଲେ । ସେମାନେ ଯେଉଁ ଅଦ୍ଭୁତ ଆକୃତିର ସୁନାମୁଣ୍ଡାଗୁଡ଼ିକ ବୋହି ଟେକି ଟେକି ଆଣିଥିଲେ, ସେଇ ସୁନା କଥା ସେମାନଙ୍କ ମନ ଭିତରେ ଆଉଟି ପାଉଟି ହେଉଥିଲା । ସେଇଠି ସୁନାମୁଣ୍ଡାତକ ମୋ ଆଗରେ ଜମା ହୋଇଥିଲା—ପ୍ରତ୍ୟେକର ଦାମ୍ ହଜାର ହଜାର ପାଉଣ୍ଡ ହେବ—ଏବଂ ଗୋଟିଏ ଘର କି ଖଣ୍ଡିଏ ଜମି ଘେଞ୍ଚେଇବା ଯେପରି ଅସମ୍ଭବ, ସେଇ ସୁନାକୁ ବି ନେଇ ଘେଞ୍ଚେଇ ନେବା ସେହିପରି ଅସମ୍ଭବ ଥିଲା । କଫି ପିଆଲି ଉହାଡ଼ରୁ ସେମାନଙ୍କର କୌତୂହଳୀ ମୁହଁ ଆଡ଼େ ଚାହିଁ ଚାହିଁ ମୁଁ ଏକଥା ଉପଲବ୍ଧି କରିପାରିଲି ଯେ, ମୁଁ ଯଦି ପୁଣି ନିଜକୁ ବୋଧଗମ୍ୟ କରିବାକୁ ଚେଷ୍ଟା କରିବି, ତାହାହେଲେ ବ୍ୟାଖ୍ୟାର ନିବିଡ଼ ଅରଣ୍ୟ ମଧ୍ୟରେ ଭୁଆଁ ବୁଲିବାକୁ ପଡ଼ିବ ।

ସବା କନିଷ୍ଠ ଯୁବକଟି ଆରମ୍ଭ କଲା, "ତୁମେ କଣ ପ୍ରକୃତରେ କହୁଚାକୁ ଯିବୁ ଯେ—" ଅବୁଝା ଶିଶୁକୁ ବୁଝାଇଲା ପରି କଣ୍ଠସ୍ୱରରେ ସେ ଏହା କହିଲା ।

"ପାଉଁରୁଟୀ ଆଜିଆଡ଼ି ଇଆଡ଼େ ବଢ଼େଇ ଦିଅନ୍ତୁ," ବୋଲି କହି ମୁଁ ହାତ ପାତି ଏକଦମ୍ ବୁଜି ଦେଲି ।

ଆଉ ଜଣେ କହିଲା, "କିନ୍ତୁ, ଦେଖ ! ତୁମେ ଜାଣ, ଆମେ ତୁମ କଥା ବିଶ୍ୱାସ କରିବାକୁ ଯାଉନୁଁ ।"

"ଆଚ୍ଛା, ବେଶ୍" ବୋଲି କହି ମୁଁ ବେପରୁଆ ଭଙ୍ଗୀରେ କାନ୍ଧ ଝୁଲାଇଲି ।

ନାଟକର ଜନାନ୍ତିକେ କହିଲାପରି ସବା ସାନ ଯୁବକଟି କହିଲା, "ଆମକୁ କହିବାକୁ ତାଙ୍କର ଇଚ୍ଛା ନାହିଁ ।" ତାପରେ ଅତି ଉଦ୍‌ବେଗ ଜନକ ପରିସ୍ଥିତିରେ ଅସୀମ ଧୈର୍ଯ୍ୟଧାରଣ କଲାପରି ଚେହେରା କରି କହିଲା, "ମୁଁ ଗୋଟେ ସିଗ୍ରେଟ ଖାଇଲେ ତୁମର ଆପତ୍ତି ନାହିଁ ବୋଧେ ?"

ମୁଁ ଖୁବ୍ ଆନ୍ତରିକତା ସହିତ ଇଙ୍ଗିତରେ ସମ୍ମତି ଜଣାଇ ମୋର ଭୋଜନରେ ବ୍ୟସ୍ତ ରହିଲି ସେମାନଙ୍କ ମଧ୍ୟରୁ ଅନ୍ୟ ଦୁଇଜଣ ଯୁବକ ଦୂରର ଝରକା ନିକଟକୁ ଯାଇ ବାହାରକୁ ଚାହିଁଲେ ଏବଂ ପରସ୍ପର ସହିତ ଫୁସ୍‌ଫାସ୍ କରି କଥାବାର୍ତ୍ତା ହେଲେ । ମୋ ମନରେ ହଠାତ୍ ଗୋଟିଏ ଭାବନା ଆସିଲା । ମୁଁ ପଚାରିଲି, "ଜୁଆର କମି କମି ଯାଉଛି କି ?"

କିଛି ସମୟ ଯାଏ କେହି ଜବାବ ଦେଲେ ନାହିଁ, କିଏ ଜବାବ ଦେବା ଉଚିତ ସେ କଥା ସେମାନେ ଠିକ କରିପାରୁନଥିଲେ । ଶେଷରେ ମୋଟା ବାଙ୍ଗରା ଲୋକଟି କହିଲା, "ପ୍ରାୟ ଭଟ୍ଟା ପଡ଼ିବା ଉପରେ ।"

ମୁଁ କହିଲି, "ଆଚ୍ଛା, ଯାହାହେଉ, ବେଶୀଦୂର ଯାଏ ତାହା ଲୁଚିଯିବ ନାହିଁ ।"

ମୋର ଭୁକ୍ତାବଶିଷ୍ଟ ଅଣ୍ଡାଟିର ମୁଣ୍ଡ କାଟି ନେଇ ମୁଁ ଗୋଟିଏ କ୍ଷୁଦ୍ର ବକ୍ତୃତା ଆରମ୍ଭ କଲି । କହିଲି "ଦେଖ, ଭାବନାହିଁ ମୁଁ ବଡ଼ ମିଜାଜ ଦେଖାଉଛି କିମ୍ବା କଥା ମିଛ ଗପୁଛି ବା ଏଇ ରକମ ବ୍ୟବହାର ଦେଖାଉଛି । ବିଷୟଟିକୁ ଆଂଶିକ ଭାବରେ ଗୋପନ ରଖିବାକୁ ଓ ରହସ୍ୟାଚ୍ଛନ୍ନ କରିବାକୁ ମତେ ପ୍ରାୟ ବାଧ୍ୟ ହେବାକୁ ପଡ଼ୁଛି । ମୁଁ ବେଶ ବୁଝି ପାରୁଛି ଯେ ବ୍ୟାପାରଟି ଅତି

ଅଦ୍ଭୁତ ଏବଂ ତୁମେମାନେ ଅନେକ ଅସମ୍ଭବ କଳ୍ପନା କରୁଥିବ । ମୁଁ ତୁମମାନଙ୍କୁ ନିଶ୍ଚିତରୂପେ କହିପାରେ, ଗୋଟିଏ ସ୍ମରଣୀୟ କାଳରେ ତୁମେମାନେ ଉପସ୍ଥିତ ହୋଇଛ । କିନ୍ତୁ ଏ ବିଷୟ ପରିଷ୍କାରରୂପେ ତୁମକୁ ବର୍ତ୍ତମାନ ମୁଁ ବୁଝେଇ ପାରିବିନି—ଏହା ଅସମ୍ଭବ । ମୁଁ ତୁମକୁ ସମ୍ପୂର୍ଣ୍ଣ ସତ କଥାହିଁ କହୁଛି, ମୁଁ ଚନ୍ଦ୍ରରୁ ଆସୁଛି । ଏହାଠୁଁ ବେଶି ମୁଁ ଆଉ କହି ପାରିବି ନାହିଁ ......ସେ ଯାହା ହେଉ, ମୁଁ ତୁମମାନଙ୍କ ନିକଟରେ ଅତ୍ୟନ୍ତ ଋଣୀ, ଅଶେଷ ଋଣୀ । ମୋର ଆଶା ମୋର ବ୍ୟବହାର ତୁମମାନଙ୍କ ମନରେ କୌଣସି ପୀଡ଼ା ଦେଇ ନାହିଁ ।"

ସବୁଠୁଁ ସାନ ଯୁବକଟି ସୌଜନ୍ୟ ଦେଖେଇ କହିଲା, "ନା, ନା, ଆଦୌ ନୁହେଁ! ଆମେ କଣ ଆଉ ଏତିକ ବୁଝିପାରୁନୁ !" ଏହା କହି, ସେ ବରାବର ସ୍ଥିର ଦୃଷ୍ଟିରେ ମୋ ଆଡ଼େ ଅନେଇ ଅନେଇ ତାର ଚଉକୀକୁ ପଛକୁ ଠେଲିବାକୁ ଲାଗିଲା, ଏବଂ ଫଳରେ ଚଉକୀଟି ଓଲଟିପଡ଼ି ସେ ପ୍ରାୟ ଚିତ୍‌ପଟାଙ୍ଗ ହେବା ଉପରେ ବସିଥିଲା, କିନ୍ତୁ ଭାଗ୍ୟକୁ ସମ୍ଭାଳି ନେଲା । ମୋଟା ଯୁବକଟି ମୋ କଥାର ଉତ୍ତର ଦେଲା, "ଭଲେ ବି ନୁହେଁ ! ତୁମେ ସେମିତ ଭାବନା ।" ଏବଂ ତାପରେ, ସେମାନେ ଉଠିପଡ଼ି ଅଲଗା ଅଲଗା ହୋଇଗଲେ, କୋଠରୀର ଏଣେ ତେଣେ ବୁଲି ବୁଲି ସିଗାରେଟ୍ ଟାଣିବାକୁ ଲାଗିଲେ ଏବଂ ତାଙ୍କର ହାବଭାବ ଦ୍ୱାରା ଦେଖେଇବାକୁ ଚେଷ୍ଟା କଲେ ଯେ ସେମାନେ ସମ୍ପୂର୍ଣ୍ଣ ସୌହାର୍ଦ୍ଦ୍ୟପୂର୍ଣ୍ଣ ଓ ଭାବନାମୁକ୍ତ ଏବଂ ମୋ ବିଷୟରେ କିମ୍ବା ଗୋଳକ ବିଷୟରେ ଟିକିଏ ବି କୌତୂହଳ ସେମାନଙ୍କର ନାହିଁ । ସେମାନଙ୍କ ମଧ୍ୟରୁ ଜଣେ ନିମ୍ନକଣ୍ଠରେ କହିବାର ମୁଁ ଶୁଣିପାରିଲି, "ଯାହା-ହେଉ, ମୁଁ ସେଇ ଜାହାଜ ଉପରେ ବରାବର ନଜର ରଖିବି ।" ଯଦି ସେମାନେ ନିଜର ମନକୁ ବାଧ୍ୟକରି ପାରିଥାନ୍ତେ, ତାହେଲେ ବୋଧହୁଏ ମୋତେ ଛାଡ଼ି ବାହାରକୁ ବି ବୁଲି ଯାଇଥାନ୍ତେ । ମୁଁ ମୋର ତୃତୀୟ ଅଣ୍ଡାଟିରେ ପୁଣି ମନ ଦେଲି ।

କିଛିକ୍ଷଣ ପରେ ମୋଟା ବାଙ୍ଗର ଲୋକଟି ମନ୍ତବ୍ୟ କଲା, "ପାଗଟି ବେଶ ଚମତ୍କାର ହୋଇଛି, ନା ? ଏପରି ଖରା ଆଉ କେବେ ହୋଇଥିଲା ବୋଲି ମନେ ପଡୁନି ....."

ଫୁ-ଉ-ଉ—ହୁଇଇଇ ! ପ୍ରକାଣ୍ଡ ହ୍ୱାବେଲୀ ଗୁଡ଼ିଲ ପଶି ଗୋଟିଏ ଶଢ !

ଏବଂ କୌଣସିଠାରେ ଗୋଟିଏ ଝରକା ଝଣ ଝଣ କରି ଭାଙ୍ଗି ପଡ଼ିଲା........

ମୁଁ କହିଲି, "ସେ କଣ ?"

"ସେ କଣ ସେଇ—?" ବୋଲି କହି ବାଙ୍ଗାଲୀ ଲୋକଟି କୋଣ ପଟିଆ ଝରକା ଆଡ଼କୁ ଦୌଡ଼ିଗଲା ।

ଅନ୍ୟମାନେ ବି ତାପରେ ଝରକା ଆଡ଼କୁ ଦୌଡ଼ିଗଲେ । ମୁଁ ସେମାନଙ୍କ ଆଡ଼େ ଅନେଇ ବସିରହିଲି ।

ହଠାତ୍ ମୁଁ ଚଉକୀରୁ ଡେଇଁ ପଡ଼ିଲି, ମୋର ଭୂତପୂର୍ବ ଅଣ୍ଟାଟିକୁ ଫୋପାଡ଼ି ଦେଲି, ଏବଂ ଝରକା ଆଡ଼କୁ ଦୌଡ଼ିଗଲି । ଗୋଟିଏ କଥା ହଠାତ୍ ମୋର ମନେ ପଡ଼ି ଯାଇଥିଲା । ବାଙ୍ଗାଲୀ ଲୋକଟି ଦୁଆର ଆଡେ ଦୌଡ଼ି ଦୌଡ଼ି କହିଲା, ସେଠି ତ କିଛି ଦେଖାଯାଉନି ।"

ମୁଁ ଦୁଃଖ ଓ କ୍ରୋଧରେ ଚିତ୍କାର କରି ଉଠିଲି "ସେ ସେଇ ଟୋକାର କାଣ୍ଡ ! ସେଇ ସଇତାନ ଟୋକାର କାଣ୍ଡ !" ଏବଂ ଗୁଲପଡ଼ି ପରଷୁଣିଆକୁ ଠେଲି ବାଟରୁ ଆଡ଼େଇଦେଲି—ସେ ମୋ ପାଇଁ ଆଉ ଥୋଡ଼ାଏ ପାଉଁରୁଟି ଭଜା ଆଣୁଥିଲା—ଏବଂ ପ୍ରଚଣ୍ଡ ବେଗରେ କୋଠରୀରୁ ଦୌଡ଼ି ବାହାରିଯାଇ ତଳକୁ ଓହ୍ଲାଇଗଲି ଏବଂ ତାପରେ ହୋଟେଲ ସାମନାରେ ଥିବା ଅଦ୍ଭୁତ ଚେହେରାର ପକ୍କା ସଡ଼କଟିରେ ପହଞ୍ଚିଲି ।

କିଛିକ୍ଷଣ ପୂର୍ବରୁ ଯେଉଁ ସମୁଦ୍ର ଶାନ୍ତଥିଲା, ତାହା ବର୍ତ୍ତମାନ କ୍ଷୁଦ୍ର କ୍ଷୁଦ୍ର ଢେଉରେ ବନ୍ଧୁର ହୋଇ ଉଠିଥିଲା, ଏବଂ ଯେଉଁ ସ୍ଥାନରେ ପୂର୍ବେ ଗୋଲକଟି ଥିଲା ସେହି ସ୍ଥାନର ଜଳ ଚହଲି ଉଠିଥିଲା—ଜାହାଜ ଚାଲିଗଲେ ତା ପଛେ ପଛେ ଜଳ ଯେପରି ଚହଲି ଉଠେ । ଊର୍ଦ୍ଧ୍ୱରେ ମେଘର ଗୋଟିଏ କୁଣ୍ଡଳୀ ବିକ୍ଷିପ୍ତ ଧୂମ୍ରପରି ବିଘୂର୍ଣ୍ଣିତ ହେଉଥିଲା, ଏବଂ ବେଳାଭୂମି ଉପରେ ଛିଡ଼ା ହୋଇଥିବା ତିନି ଚାରିଜଣ ଲୋକ ସେହି ଅପ୍ରତ୍ୟାଶିତ ଆବାଜର କେନ୍ଦ୍ରସ୍ଥଳ ଆଡ଼କୁ ପ୍ରଶ୍ନଭରା ଦୃଷ୍ଟିରେ ମୁହଁଟେକି ଅନଉଥିଲେ । ସେମାନଙ୍କ

ମାତ୍ର । ଷ୍ଟୋଟେଲଜି ଗୃହର, ପରିଷ୍କୃତିଶୀଳ ଏବଂ ଗରମ କୋଟ ପିନ୍ଧିଥିବା ଯୁବକ ସୈନ୍ୟଗଣ ମୋ ପଛେ ପଛେ ଦୌଡ଼ି ବାହାରିଆସିଲେ । ଝରକା ଓ ଦୁଆରମାନଙ୍କରୁ ଚିତ୍କାର ଶୁଭିଲା, ଏବଂ ଚିନ୍ତାନ୍ୱିତ ମୁଖରେ ଅନେକ ଲୋକ ଉଚ୍ଚସ୍ୱରେ ମୁଖ ବ୍ୟାଦାନ କରି ସେଠି ପହଞ୍ଚିଗଲେ ।

କିଛି ସମୟ ପର୍ଯ୍ୟନ୍ତ ମୁଁ ସେଠି ଛିଡ଼ାହୋଇ ରହିଲି । ମୁଁ ଏଇ ନୂତନ ଘଟଣାଦ୍ୱାରା ଏତେଦୂର ଅଭିଭୂତ ହୋଇପଡ଼ିଥିଲି ଯେ ସେହି ଲୋକମାନଙ୍କ କଥା ଭାବିବାର ଅବସର ମୋର ନ ଥିଲା ।

ପ୍ରଥମେ ମୁଁ ଏପରି ବୁଦ୍ଧିବଣା ହୋଇପଡ଼ିଥିଲି ଯେ ଏଇ ବିଷୟରୁ କୌଣସି ବିଶେଷ ଦୁର୍ଘଟଣାର ପରିଚୟ ପାଇପାରୁ ନ ଥିଲି—ହଠାତ୍ ପ୍ରଚଣ୍ଡ ଆଘାତ ପାଇଲେ ମଣିଷ ଯେପରି ବିମୂଢ଼ ହୋଇଯାଏ ମୁଁ ସେହିପରି ହୋଇଯାଇଥିଲି । ଅନେକ ପରେ ହିଁ ସେ ତାର ପ୍ରକୃତ ସ୍ଥିତିର ପରିଚୟ ପାଇପାରେ ।

"ହାୟ ଭଗବାନ !"

ମତେ ବୋଧହେଲା, ଯେପରିକି କେହି ଆତଙ୍କର ପ୍ରବାହ ମୋର ମେରୁଦଣ୍ଡ ଭିତରକୁ କୌଣସି ପାଖରୁ ଢାଳି ଦେଉଛି । ମୋର ଗୋଡ଼ ଦୁର୍ବଳ ହୋଇ ଆସିଲା । ଦୁର୍ଘଟଣାର ପ୍ରକୃତ ସ୍ୱରୂପ ମୁଁ ବୁଝିବାକୁ ଆରମ୍ଭ କରିଥିଲି । ସେଇ ସଇତାନ ଟୋକା ବର୍ତ୍ତମାନ ଆକାଶର ବହୁ ଊର୍ଦ୍ଧ୍ୱକୁ ଉଠିଗଲାଣି ! ଏବଂ ମୁଁ ସମ୍ପୂର୍ଣ୍ଣରୂପେ ପରିତ୍ୟକ୍ତ ହୋଇପଡ଼ିଛି । ଭୋଜନ କକ୍ଷରେ ମୋର ସୁନାତକ ପଡ଼ିରହିଛି—ପୃଥିବୀରେ ତାହା ମୋର ଏକମାତ୍ର ନିଜସ୍ୱ ବସ୍ତୁ । ଏ ସବୁର ଶେଷ ପରିଣତି କଣ ହେବ ? କେବଳ ଗୋଟିଏ ବିରାଟ ଗଣ୍ଡଗୋଳିଆ ଅବସ୍ଥା ଛଡ଼ା ମୁଁ ଆଉ କୌଣସି ପରିଣତି କଥା ଭାବି ପାରିଲି ନାହିଁ ।

ଦାଙ୍ଗରା ଲୋକଟିର କଣ୍ଠସ୍ୱର ପଛରୁ ଶୁଭିଲା, "ଶୁଣ, ହେଇଟି, ଶୁଣ !"

ମୁଁ ପଛକୁ ଘୂରି ପଡ଼ିଲି ଏବଂ ଦେଖିଲି, ପ୍ରାୟ କୋଡ଼ିଏ କି ତିରିଶ ଜଣ ଲୋକ ଗୋଟିଏ ଶୃଙ୍ଖଳାହୀନ ଦଳବାନ୍ଧି ସେମାନଙ୍କର ମୂକ ପ୍ରଶ୍ନ ମୋ ଉପରେ ମୂଷଳ ଧାରାରେ ବୃଷ୍ଟି କରୁଛନ୍ତି । ସେମାନଙ୍କ ଚକ୍ଷୁରେ ଅସୀମ

ସନ୍ଦେହ ଓ ସଂଶୟ । ମୋ ପକ୍ଷରେ ସେମାନଙ୍କର ଦୃଷ୍ଟିଶର ବାଧିଲା । ଅସହ୍ୟ ହୋଇ ଉଠିଲି । ମୁଁ ବଡ଼ ପାଟିରେ "ହୁଃ" ବୋଲି କହି ଉଠିଲି ।

ମୁଁ ଚିତ୍କାର କରି କହିଲି, "ନା, ମୁଁ ପାରିବିନି ! କହୁଛି, ମୁଁ ପାରିବିନି ! ସେ ଶକ୍ତି ମୋର ନାହିଁ ! ତମେ ଡାକ୍ତର ହଜ ଖଚୁଆ ବସି; ଆଉ—ଆଉ ଚାଲିଯାଅ !"

ମୁଁ ଅସ୍ଥିର ଭାବରେ ଅଙ୍ଗଭଙ୍ଗୀ କରିବାକୁ ଲାଗିଲି । ମୁଁ ତାକୁ ମାରିବାକୁ ଭୟ ଦେଖାଉଛି ଭାବି ସେ ପାଦେ ପଛକୁ ଘୁଞ୍ଚିଗଲା । ମୁଁ ସେଇ ଦଳ ଭିତରେ ଠେଲିପେଲି ହୋଇ ହୋଟେଲ ଆଡ଼କୁ ଦୌଡ଼ିଲି । ଭୋଜନ କକ୍ଷରେ ପଶି ଭୀଷଣ ଭାବରେ ଘଣ୍ଟା ବଜାଇବାକୁ ଲାଗିଲି । ପରଷୁଣିଆ ଆସିବା ସଙ୍ଗେ ସଙ୍ଗେ ମୁଁ ତାର କାନ୍ଧକୁ ଦାବି ଧରିଲି । ଚିତ୍କାର କରି କହିଲି, "ଶୁଣୁଛ ? କାହାର ସାହାଯ୍ୟରେ ଏଇ ଛଡ଼ ସିଁକୁ ସାଙ୍ଗେ ସାଙ୍ଗେ ମୋ କୋଠରୀକୁ ନେଇଆସ ।"

ସେ ମୋ କଥା ବୁଝିପାରିଲା ନାହିଁ । ମୁଁ ଉନ୍ମତ୍ତ ପରି ତା କାନରେ ଚିତ୍କାର କରିବାକୁ ଲାଗିଲି । ପେଟ ଉପରେ ଟଙ୍କେ ଶାଗୁଆ କନା ଗୁଡ଼େଇ ଗୋଟିଏ ଭୟଙ୍କର ବହଳ ବାଙ୍ଗରା ବୁଢ଼ା ସେଠି ପହଞ୍ଚିଲା, ଏବଂ ତା ପଛେ ପଛେ ସେଇ ଯୁବକମାନଙ୍କ ଭିତରୁ ଦୁଇଜଣ ଗରମ ପେଣ୍ଟ ପିନ୍ଧି ଦେଖା ଦେଲେ । ମୁଁ ସେମାନଙ୍କ ଆଡ଼କୁ ଚାହିଁଗଲି ଏବଂ ଜବରଦସ୍ତି ଏ କାମରେ ଲଗେଇଲି । ସୁନାତକ ମୋ କୋଠରୀରେ ହାଜର ହେବା ମାତ୍ରକେ ମୁଁ ଉଷ୍ଟିନ୍ତରେ ଖଜଆ କରିବାପାଇଁ ତିଆରି ହେଲି । ମୁଁ ଚିତ୍କାର କରିକହିଲି, "ବାହାରି ଯାଅ ଏଠୁ ସମସ୍ତେ ! ତମ ଆଖି ସାମନାରେ ଗୋଟେ ଲୋକ ପାଗଳ ହେଇଯାଉଛି ବୋଲି ଯଦି ନ ବୁଝ, ତେବେ ସାଙ୍ଗେ ସାଙ୍ଗେ ଏଠୁ ବାହାରି ଯାଅ !" ପରଷୁଣିଆ ଜଣକ ଦୁଆର ପାଖରେ ଲଙ୍ଗର ପଙ୍ଗର ହେବାରୁ ମୁଁ କାନ୍ଧ ଧରି କୋଠରୀରୁ ବାହାର କରିଦେଲି । ଏବଂ ତାପରେ ମୁଁ ଦୁଆରଟି ବନ୍ଦ କରି ଚାବି ପକେଇ ଦେଲି, ବାଙ୍ଗରା-ନେକ ଧାରି ଦେଇଥିବା ଲୁଗାପଟା ଖଣ୍ଡ ଖଣ୍ଡ କରି ଚିରି ପକେଇ ଏଣେ ତେଣେ ଫିଙ୍ଗିଦେଲି, ଓ ତତ୍‌କ୍ଷଣାତ୍ ବିଛଣାରେ ଚିତ୍ ହୋଇ ପଡ଼ିଲି । ସେଇଠାରେ ପଡ଼ିରହି ମୁଁ ଅନେକ ବେଳଯାଏ ମନକୁ ମନ ଅଭିସମ୍ପାତ

ଉଦ୍ଧାରଣ କରିବାକୁ ଲାଗିଲି, ଫଁ ଫଁ କରି ନିଶ୍ୱାସ ନେବାକୁ ଲାଗିଲି, ଓ କ୍ରମେ କ୍ରମେ ଅସ୍ଥିର ହେବାକୁ ଲାଗିଲି ।

ଶେଷରେ ମୁଁ ଯେତେବେଳେ ଯଥେଷ୍ଟ ପରିମାଣରେ ଶାନ୍ତ ହୋଇ ଆସିଲି, ଖଟରୁ ଉଠି ଘଣ୍ଟା ବଜାଇଲି, ଏବଂ ବିଷ୍ମାଣ୍ଡଭାଷ ପରିଷ୍କୃତିଆଙ୍କୁ ପରିମର ଗ୍ରହିବାସ, ସୋଡ଼ା ଓ ହୁଇସ୍କି, ଏବଂ କେତୋଟି ଭଲ ଚୁରଟ୍ ପାଇଁ ଆଦେଶ ଦେଲି । ଏହି ଜିନିଷଗୁଡ଼ିକ ଆସିବା ପାଇଁ ଏତେ ଡେରି ହେଲା ଯେ ମତେ ବିରକ୍ତିଭାବରେ ଅରକୁ ଅର ଘଣ୍ଟା ବଜାଇବାକୁ ପଡ଼ିଲା । ଶେଷରେ ତାହା ଆସିଗଲା ପରେ ମୁଁ ପୁଣି ଦୁଆରରେ ଭିତରୁ ଖିଲି ପକେଇଦେଲି, ଏବଂ ସମସ୍ତ ପରିସ୍ଥିତିକୁ ଧୀର ଭାବରେ ବିବେଚନା କରି ଦେଖିବାକୁ ଚେଷ୍ଟା କଲି ।

ଏହି ବିରାଟ ପରୀକ୍ଷାର ମୋଟ ଫଳ ସମ୍ପୂର୍ଣ୍ଣରୂପେ ଅକୃତକାର୍ଯ୍ୟ ହୋଇଛି ବୋଲି ମନେ ହେଲା । ଏହି ପ୍ରତିଷ୍ଠିତ ଉପଗ୍ରହଟି ପରେ ଏକମାତ୍ର ମୁଁ ବଞ୍ଚି ରହିଛି । ଏହି ନଷ୍ଟିତ ପତନର ଶେଷ ଦୁର୍ଘଟଣା ବର୍ତ୍ତମାନ ଘଟିଯାଇଛି । ଏହାପରେ କେବଳ ନିଜକୁ ରକ୍ଷା କରିବା ଛଡ଼ା ଅନ୍ୟ ପନ୍ଥା ନାହିଁ, ଏବଂ ଏହି ଧ୍ୱଂସସ୍ତୂପରୁ ଯାହାକିଛି ମୂଲ୍ୟବାନ ପଦାର୍ଥ ରକ୍ଷା କରାଯାଇ ପାରେ ତାହା ମଧ୍ୟ ରକ୍ଷା କରିବାକୁ ହେବ । ଏହି ଶେଷ ପ୍ରଚଣ୍ଡତମ ଆଘାତଦ୍ୱାରା ମୋର ଫେରିଯିବାର ଓ ପୁନରୁଦ୍ଧାର କରିବାର ସମସ୍ତ ଅସ୍ପଷ୍ଟ ସଙ୍କଳ୍ପ ବିଲୁପ୍ତ ପାଇଛି । ଚନ୍ଦ୍ରକୁ ପ୍ରତ୍ୟାବର୍ତ୍ତନ କରିବାର, ଗୋଲକ-ଭର୍ତ୍ତି ସୁନା ଆଣିବାର, ଏବଂ ପରେ କେଭରାଇଟରୁ ଖଣ୍ଡିଏ ପରୀକ୍ଷା କରାଇ ତାର ବିରାଟ ଗୁପ୍ତତଥ୍ୟର ପୁନରୁଦ୍ଧାର କରିବାର—ହୁଏତ ଶେଷରେ କେଭରର ଦେହକୁ ମଧ୍ୟ ଉଦ୍ଧାର କରିବାର ସମସ୍ତ ଆଶା ସମ୍ପୂର୍ଣ୍ଣ ତିରୋହିତ ହେଲା ।

କେବଳ ମୁଁ ରକ୍ଷା ପାଇଁ ଯାଇଛି ଏବଂ ସେଇଠି ବ୍ୟାପାରଟି ଶେଷ ହୋଇଛି ।"

ସଙ୍କଟ ସମୟରେ ଖଟରେ ଶୋଇପଡ଼ିବା ଦ୍ୱାରା ମୁଁ ବୋଧହୁଏ ଖୁବ୍ ବୁଦ୍ଧିମାନର କାର୍ଯ୍ୟ କରେଁ । ମୋର ବିଶ୍ୱାସ, ମୁଁ ହୁଏତ ପାଗଳ ହୋଇ

ଯାଇଥାନ୍ତି କିମ୍ବା କୌଣସି ସାଙ୍ଘାତିକ ଅନ୍ୟାୟ କାମ କରି ଖୁନକରିଥାନ୍ତି । କିନ୍ତୁ, ସେଠାରେ ଖୁବ ବନ୍ଦ ହୋଇ ଓ ସମସ୍ତ ବ୍ୟାଘାତରୁ ନିରାପଦ ରହି ମୁଁ ପରିସ୍ଥିତିଟିକୁ ସବୁ ଦିଗରୁ ବିଚାର କରି ଦେଖି ପାରୁଥିଲି ଓ ଅବସ୍ଥାର ଅନୁଯାୟୀ ମୋର କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରି ପାରିଲି ।

ସେଇ ଝୋହାର କଣ ଘଟିଲା ସେ କଥା ଅବଶ୍ୟ ମୁଁ ସ୍ପଷ୍ଟରୂପେ ବୁଝିପାରୁଥିଲି । ସେ ଗୋଲକ ଭିତରକୁ ଗୁରୁଣ୍ଡି ଯାଇଥିବ, ଦୋହାମ ଗୁଡ଼ିକ ଅଣ୍ଡାଳି ଥିବ, କେଉଁସାଇଟ୍ ଝରକାଗୁଡ଼ିକ ବନ୍ଦକରି ଦେଇଥିବ, ଏବଂ ତତ୍‌କ୍ଷଣାତ୍ ଉପରକୁ ଉଡ଼ି ଯାଇଥିବ । ସେ ଗର୍ତ୍ତର ଠିପି ବନ୍ଦ କରିଥିବ ବୋଲି ମନେ ହୁଏନା, ଏବଂ ଯଦିବା କରିଥିବ, ତାର ଫେର ଆସିବାର ସମ୍ଭାବନା ହଜାରେ ଭାଗରୁ ଭାଗେ । ଏ କଥା ନିଃସନ୍ଦେହ ଯେ, ସେ ଅନୁକମ୍ପିତ ହୋଇ ମୋର ଗଣ୍ଠିଗୁଡ଼ିକ ସହିତ ଗୋଲକର ପ୍ରାୟ ମଧ୍ୟସ୍ଥଳକୁ ଉଠି ଯାଇଥିବ । ଏବଂ ସେହିଠାରେ ସେହିପରି ରହିଥିବ । ଫଳତଃ, ପୃଥିବୀର ଜୀବ ବୋଲି ଆଉ ପରିଗଣିତ ହେବ ନାହିଁ, ଯଦିବା ମହାଶୂନ୍ୟର କୌଣସି ବହୁଦୂରସ୍ଥ ଅଞ୍ଚଳର ବାସିନ୍ଦାମାନଙ୍କ ଦୃଷ୍ଟିରେ ସେ ଅତି ଚମତ୍କାର ବସ୍ତୁରୂପେ ପରିଗଣିତ ହୋଇପାରେ । ଏ କଥାଟା ମୁଁ ସାଙ୍ଗେ ସାଙ୍ଗେ ବୁଝି ପାରିଲି । ଆଉ ଏ ସମ୍ପର୍କରେ ମୋର କୌଣସି ଦାୟିତ୍ୱ କଥା ବିଚାର ନକରି ମୁଁ ସ୍ପଷ୍ଟରୂପେ ବୁଝି ପାରିଲି ଯେ ମୁଁ ଯଦି କୌଣସି କଥା ପଦାକୁ ନ ଫିଟାଏ ତାହାହେଲେ ମୋର ଚିନ୍ତିତ ହେବାର ଆଦୌ କାରଣ ରହିବ ନାହିଁ । ଯଦି ଶୋକାକୁଳ ପିତାମାତା ସେମାନଙ୍କର ହୃତ ପୁଅକୁ ଫେରାଇ ଦେବାକୁ ମୋ ନିକଟରେ ଦାବୀ କରନ୍ତି, ତେବେ ମୁଁ ତତ୍‌କ୍ଷଣାତ୍ ମୋର ହୃତ ଗୋଲକକୁ ଫେରାଇ ଦେବାକୁ ସେମାନଙ୍କର ନିକଟରେ ଦାବୀ କରିବି—କିମ୍ବା ପଚାରିବି ସେମାନଙ୍କର କଥାର ଅର୍ଥ କଣ । ପ୍ରଥମେ ମୁଁ କ୍ରନ୍ଦନରତ ପିତାମାତା ଓ ଅଭିଭାବକ, ଏବଂ ଅନ୍ୟାନ୍ୟ ଜଟିଳ ଉପସ୍ଥିତିର ଦୃଶ୍ୟ କଳ୍ପନା ଚକ୍ଷୁରେ ଦେଖିଲି; କିନ୍ତୁ ବର୍ତ୍ତମାନ ମୁଁ ବୁଝିପାରିଲି ଯେ ମୁଁ କେବଳ ମୋର ପାଟି ବୁଜି ରହିଲେ ହିଁ ସେ ସବୁ କିଛି ଘଟିବାର ଆଶଙ୍କା ନାହିଁ । ବାସ୍ତବିକ, ମୁଁ ଶୋଇରହି ସେଇଠି

ବେଶୀ ସିଗାରେଟ୍ ଟାଣିବାକୁ ଲାଗିଲି ଓ ଖାଇବାକୁ ଲାଗିଲି ସେତେ ସ୍ପଷ୍ଟ ଭାବରେ ବୁଝିପାରିଲି ଯେ ମୂକତା ହିଁ ପ୍ରକୃତ ବୁଦ୍ଧିମାନଙ୍କ କାର୍ଯ୍ୟ ।

ପ୍ରତ୍ୟେକ ବ୍ରିଟିଶ ନାଗରିକର ଏହି ଅଧିକାର ଅଛି ଯେ, ସେ ଯେଉଁଠି ଇଚ୍ଛା ସେଠି ହଠାତ୍ ଆବିର୍ଭୂତ ହୋଇପାରେ, ତାର ଯେତେବେଳେ ଇଚ୍ଛା ସେତେବେଳେ ମଇଳା ଓ ଛିଣ୍ଡା କନା ପିନ୍ଧି ଏବଂ ଯେତେ ଖୁସି ସେତେ କଞ୍ଚା ସୂତାରେ ବୋଝେଇ ହୋଇ, ଏବଂ ଯଦି ସେ କୌଣସି ଷଣ୍ଢ କିମ୍ବା ଅସଙ୍ଗତ ଆଚରଣ ନ କରେ, ତାହାହେଲେ କାହାରି ଅଧିକାର ନାହିଁ ଯେ ତାକୁ ଏପରି ଅବସ୍ଥାରେ ବାଧା ଦେବ କିମ୍ବା ଅଟକ କରିବ । ଏହି ନୀତିକୁ ଗ୍ରହଣ କରି ମୋର ସ୍ୱାଧୀନତାର ଏକ ବ୍ୟକ୍ତିଗତ "ମାଗ୍ନା କାର୍ଟା" ରୂପେ ତାକୁ ମୁଁ ମନେ ମନେ ଆବୃତ୍ତି କରିନେଲି ।

ଏ ବିଷୟରେ ନିଶ୍ଚିନ୍ତ ହୋଇ ସାରିଲା ପରେ ମୁଁ ଅନ୍ୟ କେତୋଟି ବିଷୟକୁ ମଧ୍ୟ ସମାନ ସୂତ୍ରରେ ଚିନ୍ତା କରିବାକୁ ପ୍ରସ୍ତୁତ ହେଲି । ଏହା ପୂର୍ବେ ସେସବୁ ଚିନ୍ତାରେ ରତ ହେବାକୁ ମୁଁ ସାହସ କରି ପାରୁ ନ ଥିଲି । ସେସବୁ ଥିଲା ମୋର ଦେଉଳିଆ-ଅବସ୍ଥା ଘଟିତ ସମସ୍ୟା । କିନ୍ତୁ ବର୍ତ୍ତମାନ ଧୀର ଭାବରେ ଓ ସଂଯତମତେ ଏ ବିଷୟକୁ ଚିନ୍ତାକରି ମୁଁ ବୁଝି ପାରିଲି ଯେ ଯଦି ମୁଁ ସାମୟିକ ଭାବରେ କୌଣସି କମ ଜଣାଶୁଣା ନାମ ଗ୍ରହଣ କରି ମୋର ପରିଚୟକୁ ଗୋପନ କରି ପାରେଁ, ଏବଂ ଦୁଇମାସ ହେଲା ବଢ଼ୁଥିବା ମୋର ଦାଢ଼ିକୁ ଯଦି କାଟି ନ ପକାଏଁ, ତାହାହେଲେ ପୂର୍ବୋଲ୍ଲିଖିତ ସେହି ହିଂସାପରାୟଣ ସାହୁକାର ମତେ ବିରକ୍ତ କରି ପାରିବାର କୌଣସି ଆଶଙ୍କା ରହିବ ନାହିଁ । ଏହା ପରେ କୌଣସି ଯୁକ୍ତିଯୁକ୍ତ ସାଂସାରିକ କର୍ମର ନିର୍ଦ୍ଦିଷ୍ଟ ପନ୍ଥା ଅବଲମ୍ବନ କରିବା ଅତି ସହଜ କଥା । ଏସବୁ ଅବଶ୍ୟ ନିତାନ୍ତ ନଗଣ୍ୟ କାର୍ଯ୍ୟ, କିନ୍ତୁ ଏହାଛଡ଼ା ମୋର କରିବାର ଆଉ କଣ ବା ଥିଲା ?

ମୁଁ ସଙ୍କଳ୍ପ କଲି ଯେ ମୁଁ ଯାହା ବି କରେଁ ବରାବର ନ୍ୟାୟସଙ୍ଗତ ଓ ସୁଦୃଶ୍ୟ ଭାବରେ ତାହା କରିବି ।

ମୁଁ ଆଦେଶ ଦେଇ ଲେଖା ସରଞ୍ଜାମ ଅଣାଇଲି, ଏବଂ "ନିଉ ରୋମନି ବ୍ୟାଙ୍କ"କୁ ଗୋଟିଏ ଚିଠି ଲେଖିଲି । ପରଷୁଣିଆ ମତେ କହିଥିଲା ଯେ ସେହି ବ୍ୟାଙ୍କଟି ସର୍ବନିକଟ ବ୍ୟାଙ୍କ । ମ୍ୟାନେଜରଙ୍କୁ ମୁଁ ଲେଖିଲି ଯେ ସେହି ବ୍ୟାଙ୍କରେ ମୁଁ ସମ୍ପତ୍ତି ଗଚ୍ଛିତ ରଖିବାକୁ ଚାହେଁ, ଏବଂ ତାଙ୍କୁ ଅନୁରୋଧ କଲି ଯେ ନିୟମାନୁଯାୟୀ କ୍ଷମତାପ୍ରାପ୍ତ ଦୁଇଜଣ ବିଶ୍ୱାସୀ ଲୋକଙ୍କୁ ସେ ପଠାଇ ଦେନ୍ତୁ । ତାଙ୍କୁ ଜଣାଇଦେଲି ଯେ ସେମାନେ ଭଲ ଘୋଡ଼ା ଯୋଚା ହୋଇ-ଥିବା ଗୋଟିଏ ଗାଡିରେ ଆସିବେ, କାରଣ ମୋ ପାଖରେ ଥିବା କେତେ ହଜାର ସୁନା ସେମାନଙ୍କୁ ନେଇଯିବାକୁ ହେବ । ମୁଁ ଚିଠିତଳେ "ବ୍ଲେକ" ବୋଲି ଦସ୍ତଖତ କଲି । ସେଇଟି ବେଶ୍ ସମ୍ଭ୍ରାନ୍ତ ନାମ ବୋଲି ମୋର ମନେ ହେଲା । ଏତକ କରିସାରି ମୁଁ ଫକ୍‌ଷ୍ଟୋନ୍ ସହରର ଗୋଟିଏ ବିବରଣ-ପୁସ୍ତିକା ଅଣାଇଲି ଏବଂ ସେଥିରୁ ଜଣେ ଦରଜୀର ନାମ ବାହାର କରି, ତାଙ୍କୁ ଲେଖି ପଠାଇଲି ଯେ ଗୋଟିଏ ଫିକା ରଙ୍ଗର ପଶମ-ସୁଟ୍ ତିଆରି କରିବା ପାଇଁ ମାପ ନେବାକୁ ସେ ଜଣେ ଲୋକ ପଠାଇ ଦେନ୍ତୁ ଏବଂ ଗୋଟିଏ ଚମଡ଼ା ହାତ-ବ୍ୟାଗ୍, ପରିଚ୍ଛଦ ସାମଗ୍ରୀ ପାଇଁ ଗୋଟିଏ ବାକ୍ସ, ହଳେ ମାଟିଆ ଯୋତା, କାମିଜ କେଇଖଣ୍ଡ, ଗୋଟିଏ ଟୋପି (ଠିକ୍‌ମାପର) ଇତ୍ୟାଦି ମଧ୍ୟ ପଠାଇ ଦେନ୍ତୁ । ଗୋଟିଏ ଘଣ୍ଟା ନିର୍ମାତାଙ୍କଠାରୁ ମୁଁ ଘଣ୍ଟାଟିଏ ମଧ୍ୟ ମଗାଇଲି । ଏସବୁ ଚିଠି ପଠାଇସାରି ମୁଁ ହୋଟେଲର ସର୍ବଶ୍ରେଷ୍ଠ ପୂର୍ବାହ୍ନ-ଭୋଜନ ଉଦରସ୍ଥ କଲି, ଏବଂ ତା ପରେ ଯେତେଦୂର ସମ୍ଭବ ଶାନ୍ତ ଓ ସ୍ୱାଭାବିକ ଭାବରେ ଗୋଟିଏ ଚୁରୁଟ ଟାଣି ଟାଣି ଶୋଇ ରହିଲି । କିଛି ସମୟ ପରେ ମୋର ଉପଦେଶ ଅନୁଯାୟୀ ବ୍ୟାଙ୍କରୁ ଦୁଇଜଣ ସମ୍ୟକ୍-ଅଧିକାରପ୍ରାପ୍ତ କିରାଣୀ ଆସିଲେ ଏବଂ ମୋର ସୁନାକୁ ଓଜନ କରି ନେଇ-ଗଲେ । ତାପରେ ମୁଁ ଗୁଦଡ଼ିକୁ କାନ ଉପରକୁ ଟାଣିଦେଲି—ଦୁଆର ଉପରେ କୌଣସି କରାଘାତ-ଶବ୍ଦ କାନରେ ନ ପଶିବ ବୋଲି—ଏବଂ ମହା ଆରାମରେ ନିଦ୍ରାଗଲି ।

ନିଘୋଡ଼ ନିଦରେ ମୁଁ ଶୋଇପଡ଼ିଲି । ପ୍ରଥମ ଚନ୍ଦ୍ର-ଫେରନ୍ତା ମନୁଷ୍ୟ ପକ୍ଷରେ ଏହା ନିହାତି ଉଦ୍ୟମସ୍ତ କାର୍ଯ୍ୟଥିଲା, ସନ୍ଦେହ ନାହିଁ, ଏବଂ ତରୁଣ

କଳ୍ପନା-ପ୍ରବିଣ ପାଠକ ମୋର ବ୍ୟବହାରକୁ ଯେ ନାପସନ୍ଦ କରୁଥିବେ ଏକଥା ମୁଁ ବୁଝିପାରୁଛି । କିନ୍ତୁ ମୁଁ ଭୀଷଣ ଗର୍ବରେ କ୍ଳାନ୍ତ ଓ ବିରକ୍ତ ହୋଇ ପଡ଼ିଥିଲି, ଏବଂ—ତୁମ୍ଭେ କହ ! —ଆଉ କଣ ବା କରିବାର ଥିଲା ? ସେତେବେଳେ ମୋର ଉପାଖ୍ୟାନ ବର୍ଣ୍ଣନା କରିଥିଲେ ମୋ କଥା କେହି ବିଶ୍ୱାସ କରିବାର ଟିକେ ମାତ୍ର ସମ୍ଭାବନା ନ ଥିଲା, ଏବଂ ଏକଥା ନିଶ୍ଚିତ ଯେ ଏଥିଦ୍ୱାରା ମୁଁ ଅସହ୍ୟ ବିରକ୍ତି-ଜନକ ଅବସ୍ଥାରେ ପଡ଼ିଆନ୍ତି । ତେଣୁ ମୁଁ ନିଦ୍ରାର ଆଶ୍ରୟ ନେଲି । ଶେଷରେ ଯେତେବେଳେ ମୋର ନିଦ ଭାଙ୍ଗିଲା ମୁଁ ଦୁନିଆର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହୋଇ ଯାଇଥିଲି । ମୋର ହୃତାହୃତ ବସ୍ତୁର କରିବାରେ ବ୍ୟସ୍ତ ହେବା ଦିନଠାରୁ ମୁଁ ଏହିପରି ଭାବରେ ହିଁ ଦୁନିଆର ସମ୍ମୁଖୀନ ହେବାକୁ ଅଭ୍ୟସ୍ତ ହୋଇ ଆସିଥିଲି । ଏହାପରେ ମୁଁ ଇଟାଲୀକୁ ଚାଲିଗଲି, ଏବଂ ସେହିଠାରୁ ହିଁ ଏହି ଉପାଖ୍ୟାନ ଲେଖୁଛି । ଯଦି ଦୁନିଆ ଏହାକୁ ସତ୍ୟ ବୋଲି ଗ୍ରହଣ ନ କରେ, ତେବେ ଗଳ୍ପ ବୋଲି ଗ୍ରହଣ କରୁ । ମୋର କିଛି ଯାଏ ଆସେ ନାହିଁ ।

ବର୍ତ୍ତମାନ ଆଖ୍ୟାନ ଶେଷ ହେଲା ପରେ ମୁଁ ଭାବି ଅବାକ୍ ହେଉଛି, ଏହି ଆଶ୍ଚର୍ଯ୍ୟ ଘଟଣା କିପରି ସମ୍ପୂର୍ଣ୍ଣ ରୂପେ ବିସ୍ମୃତ ଓ ବିଲୁପ୍ତ ହୋଇଛି । ସମସ୍ତେ ମନେ କରନ୍ତି ଯେ କେଭର ଆଦୌ ବିଚକ୍ଷଣ ବୈଜ୍ଞାନିକ-ଗବେଷକ ନଥିଲା, କାରଣ ଲିମ୍ପନେଠାରେ ତାର ଘରକୁ ଓ ନିଜକୁ ସେ ବିସ୍ଫୋରଣ ଦ୍ୱାରା ଧ୍ୱଂସ କରି ଦେଇଥିଲା । ଲିଟଲ୍‌ଷ୍ଟୋନରେ ମୋର—ଆବିର୍ଭାବ ପରେ ଯେଉଁ ପ୍ରଚଣ୍ଡ ଶବ୍ଦ ଉତ୍ଥିତ ହେଲା, ତାହାର କାରଣ ନିର୍ଦ୍ଦେଶ କରିବାକୁ ଯାଇ ସେମାନେ କହନ୍ତି ଯେ ଦୁଇ ମାଇଲ ଦୂରସ୍ଥ ଲାଇଡ୍‌ରେ ଥିବା ସରକାରୀ ଅନୁଷ୍ଠାନରେ ଦିନ ରାତି ଯେଉଁ ବିସ୍ଫୋରକ-ଗବେଷଣା ଚାଲିଛି ତାହାରି ଯୋଗୁଁ ଏପରି ଘଟିଲା । ମୁଁ ମାନୁଛି ଯେ, ଶ୍ରୀମାନ୍ ଟମି ସାଇମନ୍ସ୍ (ସେହି ଶ୍ରେଷ୍ଠ ବାଳକଟି) ନିରୁଦ୍ଦିଷ୍ଟ ହେବାର କାରଣ ସହିତ ମୁଁ କି ପରିମାଣରେ ଜଡ଼ିତ, ତାହା ମୁଁ ଏ ପର୍ଯ୍ୟନ୍ତ ସ୍ୱୀକାର କରି ନାହିଁ । କାରଣ ମୋ କଥାକୁ ପ୍ରମାଣ ଦ୍ୱାରା ସାବ୍ୟସ୍ତ କରିବାକୁ ଗଲେ ସେହି ଘଟଣାକୁ ସହଜରେ ଉଡ଼େଇ ଦେଇହେବ ନାହିଁ । ବୁଲଟି ଅସଲି ସୁନା ଛଡ଼ି ହାତରେ ଛୁଆ କନା ପିନ୍ଧି ଲିଟ୍‌ଲ୍‌ଷ୍ଟୋନ୍‌ର ସମୁଦ୍ର

ଉଟରେ ମୋର ଆବର୍ଭାବର କାରଣ ନର୍ଦ୍ଦେଶ କରବାକୁ ଯାଇଁ ସେମାନେ ଅନେକ ଅସାଧାରଣ ତଥ୍ୟ ବାଢ଼ୁଛନ୍ତି । କନ୍ତୁ ସେମାନେ 'ମୋ' ବିଷୟରେ ଯାହା ପଛେ ଭାବନ୍ତୁ, ମୁଁ ସେଥିପାଇଁ ଚନ୍ତତ ନୁହେଁ । ସେମାନେ କହୁଛନ୍ତି ଯେ, ମୋର ଧନର ଉତ୍ସ ବିଷୟରେ କୌଣସି ଅଖାଡୁଆ ପ୍ରଶ୍ନର ଜବାବ ଦେବାକୁ ଯାଇ କାଳେ ମୁଁ ଧରା ପଡ଼ିଯିବି, ଏଇ ଭୟରେ ଏ ସବୁ ଗୁଳ୍ପଖଟି ଗପ ଯୋଡ଼ୁଛି । କନ୍ତୁ ମୁଁ ଦେଖିବାକୁ ଚାହେଁ, କିଏ ଏମିତି ଏକ ଗପ ଯୋଡ଼ି ଦେଇ ପାରବ ଯାହା ମୋର ଏଇ ଉପାଖ୍ୟାନ ପରି ସୁସଙ୍ଗତ ମନେ ହେବ । ଆଚ୍ଛା, ସେମାନେ ଏହାକୁ ଗଳ୍ପ ବୋଲି ମନେ କରନ୍ତୁ—ବେଶ୍ କଥା ।

ମୁଁ ମୋର ବୃତ୍ତାନ୍ତ ଶେଷ କରୁଛି—ବର୍ତ୍ତମାନ ମତେ ପୁଣି ଏଇ ପାର୍ଥିବ ଜୀବନର ଦୁଃଖ ସୁଖରେ ଲିପ୍ତ ହେବାକୁ ପଡ଼ୁଛି । ଚନ୍ଦ୍ର-ସେଲନ୍ନା ଲୋକଙ୍କୁ ବ ବଞ୍ଚିବା ପାଇଁ ଅନ୍ନ ଯୋଗାଡ଼ କରିବାକୁ ହୁଏ । ତେଣୁ ଏଠି ଏ ମାଲ୍ ଫରେ ମୁଁ ପୁଣି ମୋର ସେଇ ନାଟକଟିର ଦୃଶ୍ୟ-ସଂଯୋଜନାରେ ମନୋନିବେଶ କରୁଛି, କେଭର୍ ମୋର ଜଗତକୁ ପ୍ରବେଶ କରିବା ପୂର୍ବରୁ ଯେଉଁ ନାଟକର ମୂଳଦୁଆ ମୁଁ ଗଠନ କରୁଥିଲି ଏବଂ ତାକୁ ଦେଖିବା ପୂର୍ବରୁ ମୋର ଜୀବନ ଯେପରି ଥିଲା ପୁଣି ସେହିପରି ଭାବରେ ଜୀବନକୁ ଗଢ଼ିବାର ଚେଷ୍ଟା କରୁଛି । କନ୍ତୁ ମଝିରେ ମଝିରେ ଚନ୍ଦ୍ରାଲୋକ ମୋର କୋଠରୀ ଭିତରକୁ ପଶିଆସିଲେ ନାଟକରେ ମନ ଦେବା କାଠିକର ପାଠ ହୋଇପଡ଼ୁଛି । ଏଠି ବର୍ତ୍ତମାନ ପୂର୍ଣ୍ଣିମୀ ଏବଂ ଗତ ରାତିରେ ମୁଁ ଉଦ୍ୟାନ କୁଞ୍ଜରେ ଘଣ୍ଟା ଘଣ୍ଟା ଧରି ବସି ଏତେ ଜନସଙ୍କୁ ଗୋପନ କରି ରଖିଥିବା ସେହି ସମୁଜ୍ଜ୍ୱଳ ଶୂନ୍ୟତା ଆଡ଼କୁ ଅନାଇ ରହିଥିଲି । ଭାବ ଦେଖ ! ଟେବୁଲ୍, ଚଉକି, ମେଜର ଗୋଡ଼, ଛାତ—ସବୁ ସୁନାରେ ତିଆରି ! ଓଃ ! ମୁଁ ଯଦି ପୁଣି ଥରେ ସେଇ କେଭର୍‌ଲାଇଟ୍ ପାଆନ୍ତି ! କନ୍ତୁ ସେପରି ଜନିଷ ଜୀବନରେ ଦୁଇଥର ଆସେ ନା । ମୁଁ ଲିମ୍ପନେଠାରେ ଯେପରି ଥିଲି, ଏଠି ତା ଅପେକ୍ଷା ଟିକେ ସ୍ୱଚ୍ଛଳ ଅବସ୍ଥାରେ ଅଛି—ସେତିକି ମାତ୍ର । ଆଜି ପର୍ଯ୍ୟନ୍ତ ଆତ୍ମହତ୍ୟା କରିଥିବା ଅନ୍ୟାନ୍ୟ ମନୁଷ୍ୟମାନଙ୍କ ଅପେକ୍ଷା ବୃହତ୍ତର ଆତ୍ମୋଜନ ଭିତ୍ତି କେଭର୍ ଆତ୍ମହତ୍ୟା କରିଛି । ଏଇଠି ଉପାଖ୍ୟାନଟି ଶେଷ ହେଲା—

ସ୍ୱପ୍ନ ପରି ତୃପ୍ତିକର ଭାବରେ ଓ ପୂର୍ଣ୍ଣ ରୂପେ । ଯେଣୁ, ଜୀବନର ଅନ୍ୟାନ୍ୟ କଥା ସହିତ ଏହାର ଏତେ ଅଳ୍ପ ସାମଞ୍ଜସ୍ୟ ଅଛି ଏବଂ ସମସ୍ତ ମାନବୀୟ ଅଭିଜ୍ଞତା ଠାରୁ ଏହାର ଅଧିକାଂଶ ଏତେ ସୁଦୂରବର୍ତ୍ତୀ ଯଥା, ସେହିପରି ଡେଇଁବା, ସେହିପରି ଖାଇବା, ସେହିପରି ନିଃଶ୍ୱାସନେବା, ଏବଂ ସେହି ଓଜନ ଶୂନ୍ୟ କାଳ—ତେଣୁ ମୋର ଦୃଢ଼ ସୂନା ସତ୍ତ୍ୱେ, କୌଣସି କୌଣସି ମୁହୂର୍ତ୍ତରେ ମୁଁ ମଧ୍ୟ ବାରପଣ ବିଶ୍ୱାସ କରେଁ ଯେ, ସମସ୍ତ ବ୍ୟାପାରଟି କେବଳ ଗୋଟିଏ ସ୍ୱପ୍ନ·······



## ୨୨

# ଜୁଲିୟସ୍ ଓ୍ୱେଣ୍ଡିଜୀଙ୍କର ଆଶ୍ଚର୍ଯ୍ୟଜନକ ସମ୍ବାଦ ଜ୍ଞାପନ

ଲିଟିଲ୍‌ଷ୍ଟୋନ୍ ଠାରେ ପୃଥିବୀକୁ ମୋର ପ୍ରତ୍ୟାବର୍ତ୍ତନର ବିବରଣୀ ଲିପିବଦ୍ଧ କରିସାରି ମୁଁ "ସମାପ୍ତ" ବୋଲି ଲେଖିଦେଲି, ତା ତଳେ ଗୋଟିଏ ଗାର ଟାଣିଦେଲି, ଏବଂ କଲମଟି ଫୋପାଡିଦେଲି— ମୁଁ ଭାବିଥିଲି ଯେ, ଚନ୍ଦ୍ରଲୋକରେ ପ୍ରଥମ ମଣିଷର ଉପାଖ୍ୟାନ ଶେଷ ହେଲା । ଏତକ କରି ସାରି ମୁଁ ପାଣ୍ଡୁଲିପିଟି ଜଣେ ସାହିତ୍ୟଚୁକ୍ତର ପ୍ରତିନିଧିଙ୍କ ହାତରେ ସମର୍ପଣ କରି ଦେଇଥିଲି, ତାହା ବିକ୍ରୟ କରିବାକୁ ଅନୁମତି ପ୍ରଦାନ କରିଥିଲି, "ଷ୍ଟ୍ରାଣ୍ଡ ମ୍ୟାଗେଜିନ"ରେ ତାର ବାରପଣ ବାହାରି ଥିବାର ଦେଖି ସାରିଥିଲି, ଏବଂ ଲିମ୍ପନେ ଠାରେ ଆରମ୍ଭ କରିଥିବା ମୋର ନାଟକଟିର ଦୃଶ୍ୟ-ସଂଯୋଜନାରେ ପୁଣି ହାତ ଦେବାକୁ ଯାଉଥିଲି, ଏପରି ସମୟରେ ମୁଁ ଜାଣିପାରିଲି ଯେ ଏପର୍ଯ୍ୟନ୍ତ ଏହି ବ୍ୟାପାରର ସମାପ୍ତି ଘଟିନାହିଁ । ଏମାଲ୍‌ଫଠାରୁ ଆଲ୍‌ଜିୟରସ୍ ପର୍ଯ୍ୟନ୍ତ ମତେ ଅନୁସରଣ କରି, (ଆଜିଠାରୁ ଛ ମାସ ପୂର୍ବେ), ଗୋଟିଏ ଅଜ୍ଞାତ ବିସ୍ମୟଜନକ ପତ୍ର ମୋ ନିକଟରେ ପହଞ୍ଚିଲା । ସଂକ୍ଷେପରେ ତାହା ମତେ ଜଣାଇ ଦେଲା ଯେ ଜୁଲିୟସ୍ ଓ୍ୱେଣ୍ଡିଜୀ ନାମକ ଜଣେ ଓଲନ୍ଦାଜ ବିଦ୍ୟୁତଜ୍ଞ (ମଙ୍ଗଳ ଗ୍ରହ ସହିତ ସମାଚାର ବିନିମୟର କୌଣସି ଉପାୟ ଆବିଷ୍କାର କରିବା ଆଶାରେ ସେ ଆମେରିକା ମିଷ୍ଟର ଟେସ୍‌ଲାଙ୍କ ବ୍ୟବହୃତ ଯନ୍ତ୍ରପାତି ତୁଲ୍ୟ କୌଣସି ଯନ୍ତ୍ରପାତି ନେଇ ପରୀକ୍ଷା ଚଳାଉଥିଲେ ) ଦିନ ପରେ ଦିନ ଇଂରାଜୀରେ ଗୋଟିଏ ଗୋଟିଏ ଅଦ୍ଭୁତ ଖଣ୍ଡବାର୍ତ୍ତା ପାଉଛନ୍ତି ଏବଂ ଏଥିରେ ସନ୍ଦେହ ନାହିଁ ଯେ ତାହା ଚନ୍ଦ୍ରର ମିଷ୍ଟର କେଭରଙ୍କ ଠାରୁ ଆସୁଛି ।

ପ୍ରଥମେ ମୁଁ ଭାବିଲି ଯେ ମୋର ଆଖ୍ୟାନର ପାଣ୍ଡୁଲିପି ପଢ଼ିଥିବା କୌଣସି ବ୍ୟକ୍ତି ମୋ ସହିତ ନିପୁଣ ଚାଲ୍‌ରେ ତାମସା ଖେଳୁଛି । ତେଣୁ ଓ୍ୱେଣ୍ଡିଜୀ ସାହେବଙ୍କୁ ମୁଁ ପରିହାସ ଛଳରେ ଗୋଟିଏ ଉତ୍ତର ପଠେଇଲି ।

କିନ୍ତୁ ସେ ଏପରି ଭାବରେ ତାର ପ୍ରତ୍ୟୁତ୍ତର ଦେଲେ ଯେ ତଦ୍ଦ୍ୱାରା, ମୋର ସମସ୍ତ ସନ୍ଦେହର ସମ୍ପୂର୍ଣ୍ଣ ଅବସାନ ଘଟିଲା, ଏବଂ ମୁଁ ଅତ୍ୟନ୍ତ ଉତ୍ତେଜନା ସହିତ ଆଲକଜାଣ୍ଡରସ୍‌ଠାରୁ ସେଣ୍ଟ ଗୋଥାର୍ଡ଼ରେ ସେ ଯେଉଁ ମାନମନ୍ଦିରରେ କାମ କରୁଥିଲେ ସେଠାକୁ ଗଲି । ତାଙ୍କର ଯନ୍ତ୍ରପାତି ଓ ନଥିପତ୍ର ଦେଖି, ସର୍ବୋପରି କେଭରଠାରୁ ଆସୁଥିବା ବାର୍ତ୍ତା ସମୂହ ଦେଖି ମୋର ଅବଶିଷ୍ଟ ସନ୍ଦେହ ବଦୂରିତ ହେଲା । ସେ ପ୍ରସ୍ତାବ କଲେ ଯେ ମୁଁ ତାଙ୍କ ସାଙ୍ଗରେ ରହିବି, ପ୍ରତିଦିନର ବାର୍ତ୍ତାଗୁଡିକ ଟିପି ରଖିବାରେ ତାଙ୍କୁ ସାହାଯ୍ୟ କରିବି ଏବଂ ଚନ୍ଦ୍ରକୁ ବାର୍ତ୍ତା ପ୍ରତିପ୍ରେରଣ କରିବାର ପ୍ରୟାସରେ ତାଙ୍କ ସହିତ ସହଯୋଗ କରିବି । ମୁଁ ତତ୍‌କ୍ଷଣାତ୍ ଏହି ପ୍ରସ୍ତାବରେ ରାଜିହୋଇଗଲି । ଆମେ ଜାଣିପାରିଲୁଁ ଯେ କେଭର କେବଳ ବଞ୍ଚିରହିନାହିଁ, ମୁକ୍ତ ହୋଇ ରହିଛି ମଧ୍ୟ ଏବଂ ଚନ୍ଦ୍ର ଗୁମ୍ଫାର ନୀଳ ଅନ୍ଧାରରେ ସେହି ଅସଂଖ୍ୟ ପିମ୍ପୁଡ଼ି ସମ୍ପ୍ରଦାୟ ମଝିରେ—ସେହି ପିମ୍ପୁଡ଼ି-ମଣିଷମାନଙ୍କ ମଝିରେ—ବାସ କରୁଛି । ଆମେ ଜାଣିଲୁଁ ଯେ, ତାର ଗୋଡ଼ ଗ୍ରୋଣ୍ଡା ହୋଇଯାଇଛି, କିନ୍ତୁ ଏତଦ୍ ବ୍ୟତୀତ ସେ ଚମତ୍କାର ସ୍ୱାସ୍ଥ୍ୟରେ ଅଛି, ବରଂ ପୃଥିବୀରେ ତାର ସ୍ୱାସ୍ଥ୍ୟ ଯେପରି ଥାଏ ତା ଅପେକ୍ଷା ସେଠି ତାର ସ୍ୱାସ୍ଥ୍ୟ ଭଲ ଅଛି ବୋଲି ସେ ପରିଷ୍କାର ଭାବରେ କହିଲା । ଅବଶ୍ୟ ତାକୁ ଜର ହୋଇଥିଲା, କିନ୍ତୁ ତାହା କୌଣସି ମନ୍ଦ ଫଳ ରଖିଯାଇ ନାହିଁ । କିନ୍ତୁ କୌତୁକର କଥା ଏହି ଯେ, ସେ ସମ୍ପୂର୍ଣ୍ଣ ବିଶ୍ୱାସ କରୁଥିଲା, ହୁଏତ, ମୁଁ ଚନ୍ଦ୍ରର ଆଗ୍ନେୟଗିରି ଗହ୍ୱରରେ ମରିଯାଇଛି କିମ୍ବା ମହାଶୂନ୍ୟର ଗଭୀରତା ଭିତରେ ହଜିଯାଇଛି ।

ମିଷ୍ଟର ଓଣ୍ଡେଣ୍ଟିଜା ଗୋଟିଏ ସମ୍ପୂର୍ଣ୍ଣ ଭିନ୍ନ ଅନୁସନ୍ଧାନରେ ବ୍ୟାପୃତ ଥିଲାବେଳେ କେଭର-ପ୍ରେରିତ ବାର୍ତ୍ତା ପାଇବାକୁ ଆରମ୍ଭ କଲେ । ବିଦ୍ୟୁତ୍ ବିଜ୍ଞାନରେ ପ୍ରସିଦ୍ଧି ଲାଭ କରିଥିବା ଆମେରିକାବାସୀ ନିକୋଲା ଟେସ୍‌ଲା ଏହି ଶତାବ୍ଦୀର ଆରମ୍ଭରେ ଯେତେବେଳେ ଘୋଷଣା କଲେ ଯେ, ସେ ମଙ୍ଗଳ ଗ୍ରହରୁ ଗୋଟିଏ ବାର୍ତ୍ତା ପାଇଛନ୍ତି, ସେତେବେଳେ ଚତୁର୍ଦ୍ଦିଗରେ ଯେଉଁ ଉତ୍ତେଜନା ଖେଳିଯାଇଥିଲା ତାହା ବୋଧହୁଏ ପାଠକ ସ୍ମରଣ କରିପାରୁଛନ୍ତି । ତାଙ୍କର ଘୋଷଣା ବିଜ୍ଞାନବିତ୍‌ମାନଙ୍କର ବହୁକାଳ ପରିଚିତ ଗୋଟିଏ ବିଷୟ

ସ୍ତିତ ସୂଚୀ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା । ସେହି ବିଷୟଟି ଏହି ଯେ, ମହାଶୂନ୍ୟର କୌଣସି ଅଜ୍ଞାତ ସ୍ଥାନରୁ ବରାବର ତରଙ୍ଗ ପରେ ତରଙ୍ଗ ବୈଦ୍ୟୁତିକ ଚୁମ୍ବକର ଧକ୍‌କା ପୃଥିବୀରେ ପହଞ୍ଚୁଛି । ସିନର ମାର୍କୋନିଙ୍କର ବେତାର ସମ୍ବାଦ ପ୍ରେରଣ ପାଇଁ ବ୍ୟବହୃତ ହେଉଥିବା ତରଙ୍ଗ ସହିତ ସେହି ତରଙ୍ଗର ସମ୍ପୂର୍ଣ୍ଣ ସାଦୃଶ୍ୟ ଅଛି । ମିଷ୍ଟର ଟେସ୍‌ଲାଙ୍କ ଛଡ଼ା ଅନ୍ୟାନ୍ୟ କେତେକ ପର୍ଯ୍ୟବେକ୍ଷଣକାରୀ ମଧ୍ୟ ଏହି କମ୍ପନକୁ ଗ୍ରହଣ କରିବା ପାଇଁ ଓ ଲିପିବଦ୍ଧ କରିବାପାଇଁ ଉପଯୁକ୍ତ ଯନ୍ତ୍ରପାତି ତିଆରି କରିବାରେ ବ୍ୟାପୃତ ରହିଛନ୍ତି, କିନ୍ତୁ ସେମାନଙ୍କ ମଧ୍ୟରୁ ଅତ୍ୟଳ୍ପ ଲୋକେ ବିଶ୍ୱାସ କରନ୍ତି ଯେ ପ୍ରକୃତରେ ଏଗୁଡ଼ିକ କୌଣସି ପାର୍ଥିବେତର ପ୍ରେରକର ବାର୍ତ୍ତା । ଅବଶ୍ୟ ଏଇ ଅତ୍ୟଳ୍ପ ଲୋକଙ୍କ ଭିତରେ ମିଷ୍ଟର ଓସ୍‌ଭେଣ୍ଡ୍ରିଜୀ ଯାଆନ୍ତି । ୧୮୯୮ ଖ୍ରୀଷ୍ଟାବ୍ଦରୁ ଆରମ୍ଭକରି ଆଜିପର୍ଯ୍ୟନ୍ତ ସେ ପ୍ରାୟ ସମ୍ପୂର୍ଣ୍ଣ ରୂପେ ଏହି ବିଷୟରେ ଲିପ୍ତ ରହିଛନ୍ତି, ଏବଂ ସେ ଖୁବ୍ ବିତ୍ତଶାଳୀ ହୋଇଥିବାରୁ ମଣ୍ଟେ ଗ୍ରେଜୀ ପାହାଡ଼ ଧାରରେ ଗୋଟିଏ ମାନ ମନ୍ଦିର ସ୍ଥାପନ କରିଛନ୍ତି —ଏବଂବିଧ ପର୍ଯ୍ୟବେକ୍ଷଣ ପକ୍ଷରେ ସେହି ମାନମନ୍ଦିରଟି ପରିସ୍ଥିତି ସମ୍ପୂର୍ଣ୍ଣ ଉପଯୋଗୀ ଅଟେ ।

ମୁଁ ସ୍ୱୀକାର କରୁଛି ଯେ, ବିଜ୍ଞାନରେ ମୋର ଯଥେଷ୍ଟ ବ୍ୟୁତ୍ପତ୍ତି ନାହିଁ, କିନ୍ତୁ ମିଷ୍ଟର ଓସ୍‌ଭେଣ୍ଡିଜୀଙ୍କର କାର୍ଯ୍ୟକଳାପକୁ ବିଚାର କରିବାରେ ତାହା ମତେ ଯେତିକି ସାହାଯ୍ୟ କରିଛି ସେତିକିରୁ ମୁଁ ବୁଝିପାରିଛି ଯେ ମହାଶୂନ୍ୟର ବୈଦ୍ୟୁତିକ ଚୁମ୍ବକୀୟ ଅବସ୍ଥାରେ କୌଣସି ବିପର୍ଯ୍ୟୟ ଘଟିଲେ ତାହା ଧରିବାପାଇଁ ଓ ଟିପି ରଖିବାପାଇଁ ସେ ଯେଉଁ ଉପାୟ ବାହାର କରିଛନ୍ତି ତାହା ଅତୀବ ମୌଳିକ ଓ ଅପୂର୍ବ । ସୌଭାଗ୍ୟବଶତଃ ଘଟଣାର ଏପରି ସମନ୍ୱୟ ଘଟିଲା ଯେ, କେଭରଦ୍ୱାରା ପୃଥିବୀକୁ ବାର୍ତ୍ତା ପ୍ରେରଣ ପ୍ରଚେଷ୍ଟାର ଦୁଇମାସ ପୂର୍ବରୁ ସେହି ଯନ୍ତ୍ରପାତି ଖଞ୍ଜାଯାଇ କାର୍ଯ୍ୟକାରୀ ହୋଇସାରିଥିଲା । ତେଣୁ, ମୂଳରୁ ଆମେ ତାର ଖଣ୍ଡ ଖଣ୍ଡ ବାର୍ତ୍ତା ପାଇବାକୁ ସକ୍ଷମ ହୋଇଅଛୁଁ । ଦୁର୍ଭାଗ୍ୟତଃ, ସେଗୁଡ଼ିକ କେବଳ ଖଣ୍ଡ ବାର୍ତ୍ତା ଏବଂ କେଭର ମାନବ ଜାତିକୁ ଯାହା ଯାହା କହିବାକୁ ଚାହୁଁଥିଲା ସେଥିମଧ୍ୟରୁ ଯାହା ସର୍ବପ୍ରଧାନ,

ଅର୍ଜିତ କୈଭରଙ୍କର ତିଆରି କରିବାର ପ୍ରଣାଳୀ— ଅବଶ୍ୟ, ଯନ୍ତ୍ର ପ୍ରକୃତରେ କେଭର ଏହି ପ୍ରଣାଳୀ ପ୍ରେରଣ କରିଥାଏ—ତାହା ମହାଶୂନ୍ୟରେ ଲୁପ୍ତ ହୋଇଛି, ଆମେ ତାହା ପାଇ ନାହୁଁ । କେଭର ପାଖକୁ ଉତ୍ତର ପଠାଇବାକୁ ଆମେ ଆଦୌ କୃତକାର୍ଯ୍ୟ ହୋଇପାରିଲୁ ନାହିଁ । ତେଣୁ ଆମେ ଜଣ ପାଇଛୁଁ ଓ ଜଣ ପାଇ ନାହୁଁ, ତାହା ସେ ଜାଣିପାରିଲା ନାହିଁ । ଏପରିକି, ତାର ପୃଥିବୀ ସହିତ ସଂଯୋଗ-ସ୍ଥାପନ-ପ୍ରୟାସ ବିଷୟ ପୃଥିବୀରେ କେହି ଅବଗତ ହୋଇଛନ୍ତି କି ନା ତାହାମଧ୍ୟ ସେ ଜାଣି ନଥିଲା । ଏହା ସତ୍ତ୍ୱେ ପୃଥିବୀକୁ ଘୋଟିକି ପରେ ଗୋଟିଏକରି ଅଠରଟି ଦୀର୍ଘ ଚନ୍ଦ୍ରବ୍ୟାପାର-ବିବରଣୀ ( ଆମେ ଯଦି ସବୁ ବାର୍ତ୍ତା ପାଇ ପାରିଥାନ୍ତୁ, ତାହାହେଲେ ତାହା ସମ୍ପୂର୍ଣ୍ଣ ବିବରଣୀ ହୋଇଥାନ୍ତା ) ପଠାଇବାରେ ତାର ଏକାଗ୍ରତା ଦେଖି ଜଣା ପଡୁଥିଲା, ଦୁଇବର୍ଷ ତଳେ ତାର ପୃଥିବୀତ୍ୟାଗ ଇଚ୍ଛାରୁ ତାର ମନ ଆପଣା ଉପ୍ରହ ଦେଇତି ବେଶୀ ଆକୃଷ୍ଟ ହୋଇପଡ଼ିଛି ।

ମିଷ୍ଟର ଓଏଣ୍ଡ୍ରିଙ୍କଙ୍କର ବୈଦ୍ୟୁତିକ ଚୁମ୍ବକୀୟ ବୃଶ୍ଚଳର ଉଲ୍ଲେଖନ ଅରେ ହଠାତ୍ କେଭରର ପରିଷ୍କାର ଇଂରେଜ ଚିହ୍ନିତ ହେବାର ଦେଖିପାରି ସେହି ଭଦ୍ରଲୋକ ଅବାକ ହୋଇ ଯାଇଥିବେ, ତାହା ତୁମେ ଅନୁମାନ କରି ପାରୁଥିବ । ଚନ୍ଦ୍ରକୁ ଆମର ଅଦ୍ଭୁତ ଯାତ୍ରା ବିଷୟରେ ଓଏଣ୍ଡ୍ରିଙ୍କ ସାହେବ କିଛି ଜାଣି ନଥିଲେ, ଏପରି ଅବସ୍ଥାରେ ହଠାତ୍—ମହାଶୂନ୍ୟ ଭିତରୁ ବାହାରି ଆସିଲା ଇଂରେଜ !

କିପରି ଅବସ୍ଥାରେ ଏଇ ବାର୍ତ୍ତାଗୁଡ଼ିକ ପଠା ହୋଇଥିବା ସମ୍ଭବ ତାହା ପାଠକଙ୍କ ଜାଣିବା ଉଚିତ । ଚନ୍ଦ୍ରର ଅଭ୍ୟନ୍ତରସ୍ଥ କୌଣସି ସ୍ଥାନରେ କେଭର ନିଶ୍ଚୟ କିଛିକାଳ ପର୍ଯ୍ୟନ୍ତ ଅନେକଗୁଡ଼ିଏ ବୈଦ୍ୟୁତିକ ସରଞ୍ଜାମ ହାତ ପାଖରେ ପାଇଥିଲା ଏବଂ ବୋଧହୁଏ ସେ ମାର୍କୋନିଙ୍କର ଷ୍ଟେରିଓ ତୁଲ୍ୟ ବାର୍ତ୍ତା ପ୍ରେରଣର ଗୋଟିଏ ଯନ୍ତ୍ର ଖଞ୍ଜା ଖଞ୍ଜି କରି ଛିଡ଼ା କରାଇଥିଲା । ଏହାକୁ ସେ ଅସମ ସମୟର ବ୍ୟବଧାନରେ ବେଳେବେଳେ ଚାଳିତ କରିପାରୁଥିଲା; କେତେବେଳେ ଜମା ଅଧଘଣ୍ଟା ପାଇଁ, ଅନ୍ୟ କେତେବେଳେ ବା ଅବିରତ ଭାବରେ ତିନି ଚାରି ଘଣ୍ଟା ପାଇଁ । ଚନ୍ଦ୍ରର ଏବଂ ପୃଥିବୀ ପୃଷ୍ଠସ୍ଥ ବିଭିନ୍ନ ବିନ୍ଦୁର ପାରସ୍ପରିକ ଅବସ୍ଥିତି ବରାବର ବଦଳୁଛି, ଅଥଚ ଏ ବିଷୟ

ପ୍ରତି ଖିଆଲ୍ ନ ଦେଇ ସେ ତାର ବାର୍ତ୍ତାଗୁଡ଼ିକ ପୃଥିବୀକୁ ପଠାଉଥିଲା। ଏହି କାରଣରୁ ଏବଂ ଆମର ବାର୍ତ୍ତା ଗ୍ରହଣ କରିବାର ଯନ୍ତ୍ରଗୁଡ଼ିକର ଅବଶ୍ୟମ୍ଭାବୀ ଅପୂର୍ଣ୍ଣତା ଯୋଗୁଁ ତାର ବାର୍ତ୍ତା ନିତାନ୍ତ ଖାମଖିଆଲ୍ ଭାବରେ ଆମ ନିକଟରେ ପହଞ୍ଚୁଥିଲା, ଅତଏବ ବିରକ୍ତିଜନକ ଭାବରେ ଓ ରହସ୍ୟ-ଜନକ ଭାବରେ ତାହା ଅସ୍ପଷ୍ଟ ହୋଇଯାଉଥିଲା, ଅଦୃଶ୍ୟ ହୋଇଯାଉଥିଲା। ଏହା ଉପରେ ପୁଣି, ବାର୍ତ୍ତା ପ୍ରେରଣରେ ସେ ବିଶେଷ ପଟୁ ନଥିଲା; ସର୍ବ-ସାଧାରଣରେ ବ୍ୟବହୃତ ସଙ୍କେତର ଧାରାକୁ ସେ ହୁଏତ ଆଂଶିକ ଭାବରେ ଭୁଲିଯାଇଥିଲା, କିମ୍ବା ସମ୍ପୂର୍ଣ୍ଣରୂପେ କେବେହେଲେ ଆୟତ୍ତ କରିପାରି ନ ଥିଲା, ଏବଂ ସେ ଯେତେବେଳେ କ୍ଳାନ୍ତ ହୋଇ ପଡ଼ୁଥିଲା ମଝିରେ ମଝିରେ ଶବ୍ଦସବୁ ଛାଡ଼ିଯାଉଥିଲା ଓ ଅତି ଅଦ୍ଭୁତ ଭାବରେ ବନାନ ଭୁଲ କରୁଥିଲା।

ମୋଟ ଉପରେ ସେ ପଠାଇଥିବା ବାର୍ତ୍ତାଗୁଡ଼ିକର ପ୍ରାୟ ଅଧା ଅଧି ଆମେ ପାଇ ନାହୁଁ ଏବଂ ଯାହା ପାଇଛୁଁ ସେଥିରୁ ଅଧିକାଂଶ ବିକୃତ ହୋଇ, ଖାପ ଛଡ଼ା ହୋଇ ଓ ଆଂଶିକ ଭାବରେ ବିଲୁପ୍ତ ହୋଇ ଏଠି ପହଞ୍ଚିଛି। ତେଣୁ ଏହାପରେ ଦିଆଯାଇଥିବା ସଂକ୍ଷିପ୍ତସାରରେ ଅନେକ ଗୁଡ଼ିଏ ଖାପ ଛଡ଼ା କଥା, ଦୁଇଟି ବାକ୍ୟ ମଝିରେ ଫାଙ୍କ, ଏବଂ ବିଷୟର ପରିବର୍ତ୍ତନ ପାଇଁ ପାଠକଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ। କେଭର ପ୍ରେରିତ ବାର୍ତ୍ତାସମୂହର ଗୋଟିଏ ସମ୍ପୂର୍ଣ୍ଣ ଓ ସଠିକ ସଂସ୍କରଣ ପ୍ରସ୍ତୁତ କରିବାରେ ଓଏଣ୍ଡ୍ରିଜୀ ସାହେବ୍ ଓ ମୁଁ ସହଯୋଗ କରୁଛୁଁ, ଏବଂ ଏଥିରେ ବ୍ୟବହୃତ ଯନ୍ତ୍ରପାତିର ସୂକ୍ଷ୍ମ ବିବରଣ ସହିତ ତାହା ପ୍ରକାଶ କରିବାକୁ ଆଶା କରୁଛୁଁ। ତାହାର ପ୍ରଥମ ଖବର ଆସନ୍ତା ଜାନୁଆରୀ ମାସରେ ପ୍ରକାଶିତ ହେବ। ତାହା ପରିପୂର୍ଣ୍ଣ ଓ ବିଜ୍ଞାନ ତଥ୍ୟ ସମ୍ମତ ବିବରଣ ହେବ। ଏଠାରେ ଯାହା ଲେଖା ଯାଉଛି, ତାହା କେବଳ ସର୍ବସାଧାରଣଙ୍କ ପାଇଁ ଲିଖିତ ପ୍ରଥମ ଅନୁଲିପି। କିନ୍ତୁ, ଅନ୍ତତଃ ମୋର ଉପାଖ୍ୟାନକୁ ସମ୍ପୂର୍ଣ୍ଣ କରିବା ପକ୍ଷରେ ଯଥେଷ୍ଟ କଥା ଆମେ ଏଠି କହୁଛୁଁ। ଆଉ ମଧ୍ୟ, ସେହି ଅପର ଜଗତ୍, ଯାହା ସହିତ କି ଆମ ଜଗତର ଏତେ ନୈକଟ୍ୟ ଅଛି, ଏତେ ସମାନତା ଅଛି, ତଥାପି ଏତେ ପାର୍ଥକ୍ୟ ଅଛି, ସେହି ଜଗତର ଅବସ୍ଥା ବିଷୟରେ ମୋଟାମୋଟି ଧାରଣା ଦେବା ପକ୍ଷରେ ଏହା ଯଥେଷ୍ଟ।

---

୨୩

# କେଭରଠାରୁ ମିଳିଥିବା ପ୍ରଥମ ଛଅଟି ବାର୍ତ୍ତାର ସଂକ୍ଷିପ୍ତସାର

କେଭରର ପ୍ରଥମ ଦୁଇଟି ବାର୍ତ୍ତା ଏହି ପୁସ୍ତକର ଗ୍ରନ୍ଥରେ ସନ୍ନିବେଶ କରିବା ପାଇଁ ରଖିଦେବା ଉଚିତ । ସେହି ଦୁଇଟିରେ କେବଳ ଗୋଲକ ନିର୍ମାଣ ଓ ପୃଥିବୀରୁ ଆମର ପ୍ରସ୍ଥାନ ବିଷୟକ ମୋଟାମୋଟି ଘଟଣା ଅଧିକତର ସଂକ୍ଷେପରେ ଓ ଅନେକ ସୂକ୍ଷ୍ମ—ବିବରଣର ବୈସାଦୃଶ୍ୟ ସହିତ ବର୍ଣ୍ଣନା କରାଯାଇଛି । ସେହି ବୈସାଦୃଶ୍ୟ କୌତୂହଳଜନକ ହେଲେ ମଧ୍ୟ ତାହାର କୌଣସି ବିଶେଷ ଗୁରୁତ୍ୱ ନାହିଁ । ମୋ କଥା କେଭର ଯେଉଁଠି କହିଛି ବରାବର ମୃତ ବ୍ୟକ୍ତି ବିଷୟରେ କହିଲାପରି କହିଛି । କିନ୍ତୁ ଚନ୍ଦ୍ର ପୃଷ୍ଠରେ ଆମର ଅବତରଣ ବିଷୟ ଉଲ୍ଲେଖ କରିବାକୁ ଗଲାବେଳେ ତାର ମାନସିକ ଭାବ ଅଦ୍ଭୁତ ଭାବରେ ପରିବର୍ତ୍ତିତ ହୋଇଛି । ମୋ ସମ୍ବନ୍ଧରେ ସେ କହିଛି "ବିଚାରୀ ବେଡ଼ଫୋର୍ଡ", ଆଉ "ଏଇ ଯୁବକ ବିଚାରା"; ଏବଂ "ଏଇ ଦୁଃସାହସିକ ଅଭିଯାନ ପାଇଁ ଯଥେଷ୍ଟ ରୂପେ ପ୍ରସ୍ତୁତି ନ ହୋଇଥିବା" ଗୋଟିଏ ଯୁବକକୁ ସେ ଯେଉଁ ଗ୍ରହରେ "କୃତକାର୍ଯ୍ୟ ହେବା ପାଇଁ ସମ୍ପୂର୍ଣ୍ଣ ଉପଯୁକ୍ତ ସେହି ଗ୍ରହ ତ୍ୟାଗ କରି ଏପରି ବିପଦସଙ୍କୁଳ ଯାତ୍ରାରେ ଯିବାପାଇଁ ଭୁଲେଇଥିବା ଯୋଗୁଁ ସେ ନିଜକୁ ଗାଳି ଦେଇଛି । କିନ୍ତୁ ତାର କଳ୍ପିତ ଗୋଲକକୁ ବାସ୍ତବ ବସ୍ତୁରୂପେ ତିଆରି କରାଇବାରେ ମୋର ଉତ୍ସାହ ଏବଂ କାର୍ଯ୍ୟକାରୀ କ୍ଷମତା ଯେଉଁ ପରିମାଣରେ ସାହାଯ୍ୟ କରିଥିଲା ତାର ଯଥେଷ୍ଟ ମୂଲ୍ୟ ସେ ଦେଇ ନାହିଁ । ମହାଶୂନ୍ୟ ଭିତର ଦେଇ ଆମର ଯାତ୍ରା ବିଷୟରେ କୌଣସି ବର୍ଣ୍ଣନା ନ ଦେଇ ସେ କହିଛି, "ଆମେ ପହଞ୍ଚିଲୁଁ", ସତେ ଯେମିତି ଗୋଟିଏ ରେଳଗାଡ଼ିରେ ଆମେ ନିତ ଘଟୁଥିବା ଗୋଟିଏ ଯାତ୍ରା ସମ୍ପନ୍ନ କରିଥିଲୁଁ ।

ଏହାପରେ ସେ କ୍ରମେ କ୍ରମେ ମୋ ପ୍ରତି ଅଧିକତର ଅବିଚାର କରିଛି । ଏତେଦୂର ଅବିଚାର କରିଛି ଯେ ତାପରି ସତ୍ୟାନୁସନ୍ଧାନରେ ଅଭ୍ୟସ୍ତଥିବା ବ୍ୟକ୍ତିଠାରୁ ମୁଁ ଏହା ଆଶା କରି ନଥିଲି । ଏ ସବୁ ବିଷୟରେ ମୋର ପୂର୍ବର ବର୍ଣ୍ଣନାଗୁଡ଼ିକକୁ ପୁଣି ଥରେ ପଢ଼ି ଦେଖି ମୁଁ ଜୋର ସହିତ କହୁଛି ଯେ ମୋଟ ଉପରେ କେଭର ମୋ ପ୍ରତି ଯେପରି ବିଚାର କରିଛି ମୁଁ ତଦପେକ୍ଷା ତା ପ୍ରତି ନ୍ୟାୟତର ବିଚାର କରିଛି । ମୁଁ ଅତି କମ ବିଷୟ କମେଇକରି କହୁଛି ଏବଂ ଆଦୌ କିଛି ଲୁଚେଇ ନାହିଁ । କିନ୍ତୁ ସେ କଣ କହୁଛି ଶୁଣ ।

“ଶୀଘ୍ର ଏହା ପରିସ୍ଫୁଟ ହେଲା ଯେ ଆମର ପରିସ୍ଥିତି ଓ ପରିବେଷ୍ଟନୀର ସମ୍ପୂର୍ଣ୍ଣ ଅଲୌକିକତା—ଓଜନର ବିପୁଳ ହ୍ରାସ, ବାୟୁର ସ୍ୱଳ୍ପତା ଅଥଚ ଅମ୍ଳଜାନାଧିକ୍ୟ, ସୁତରାଂ ମାଂସପେଶୀ ସଞ୍ଚାଳନଜନିତ ଫଳର ଆତିଶଯ୍ୟ, ଗାଛଗୁଡ଼ିକରୁ ଭୌତିକ ଉଦ୍ଭିଦମାନଙ୍କର ଦ୍ରୁତ ବୃଦ୍ଧି, ଭୟଙ୍କର ଆକାଶ—ମୋର ସାଥୀକୁ ଅତିରିକ୍ତ ମାତ୍ରାରେ ଉତ୍ତେଜିତ କରୁଛି । ତଦ୍ ଉପରେ ତାର ଚରିତ୍ରର ଅବନତି ଘଟୁଛି ବୋଲି ମନେ ହେଲା । ସେ ଆବେଗଗ୍ରସ୍ତ, ଅପରିଣାମଦର୍ଶୀ ଓ କଳହପ୍ରିୟ ହୋଇପଡ଼ିଲା । ଅଳ୍ପ ସମୟ ମଧ୍ୟରେ କେତେଗୁଡ଼ିଏ ବିଶାଳକାୟ ରବର-ଫୋଟକା ପରି ଜିନିଷ ଉଦରସାତ୍ କରି ସେ ଯେଉଁ ବୋକାମୀ କଲା ତା ଫଳରେ ମାତାଲ ହୋଇପଡ଼ିଲା, ଏବଂ ଏଥିଯୋଗୁଁ ଆମେ ଚାନ୍ଦ୍ରିକମାନଙ୍କ ହାତରେ ଧରାପଡ଼ିଲୁଁ—ସେମାନଙ୍କର ଚାଲିଚଳଣିକୁ ଭଲଭାବରେ ଲକ୍ଷ୍ୟ କରିବାର ସାମାନ୍ୟ ସୁଯୋଗ ପାଇବା ପୂର୍ବରୁ......”

(ତୁମେ ଲକ୍ଷ୍ୟ କରୁଥିବ, ଏଇ “ରବର-ଫୋଟକା ପରି ଜିନିଷ” ପ୍ରତି ତାର ନିଜର ଦରଦ ବିଷୟରେ ସେ କିଛି କହୁ ନାହିଁ ।)

ଏହା ପରେ ସେ କହୁଛି, “ସେମାନଙ୍କ ସହିତ ଆମେ ଗୋଟିଏ ଦୁର୍ଗମ ସ୍ଥାନରେ ପହଞ୍ଚିଲୁଁ, ଏବଂ ବେଡ଼ଫୋର୍ଡ଼ ସେମାନଙ୍କର କେତୋଟି ଇଙ୍ଗିତକୁ ଭୁଲ୍ ବୁଝି”—ଆହା, କି ଚମତ୍କାର ଇଙ୍ଗିତ ରେ !—“ଆତଙ୍କିତ ହୋଇ ମାଡ଼ଗୋଳ ଆରମ୍ଭ କରିଦେଲା । ସେ କ୍ରୋଧୋନ୍ମତ୍ତ ହୋଇ ତନ

ଜଣଙ୍କୁ ମାରିଦେଲି, ଏବଂ ଏହି ହତ୍ୟାକାଣ୍ଡ ପରେ ମତେ ବାଧ୍ୟ ହୋଇ ତା ସହିତ ପଳାଇଯିବାକୁ ପଡ଼ିଲା । ଏହାପରେ ଆମର ପଥରୋଧ କରିବାକୁ ଚେଷ୍ଟା କରୁଥିବା ଆଉ ଦଳେ ଗ୍ରହ୍କଙ୍କ ସହିତ ଆମେ ଯୁଦ୍ଧ କଲୁ, ଏବଂ ଆହୁରି ସାତ କି ଆଠଜଣଙ୍କୁ ମାରି ପକେଇଲୁ । ମୁଁ ଧରା ପଡ଼ିବା ପରେ ସେମାନେ ଯେ ମତେ ସାଙ୍ଗେ ସାଙ୍ଗେ ମାରିପକେଇ ନାହାନ୍ତି, ଏଥିରୁ ଜଣାପଡ଼ୁଛି ଏମାନେ କେଡ଼େ ସହିଷ୍ଣୁ । ଆମେ ଯାଇ ଯାଇ ଚନ୍ଦ୍ରର ବହିର୍ଭାଗରେ ପହଞ୍ଚିଲୁ ଏବଂ ଗୋଲକଟିକୁ ଖୋଜିବାର ସୁବିଧା ହେବ ବୋଲି ଆଗ୍ନେୟଗିରି ଗହ୍ବରରୁ ଅଲଗା ଅଲଗା ହୋଇଗଲୁ । କିନ୍ତୁ ଅଳ୍ପ କ୍ଷଣ ପରେ ମୁଁ ଦଳେ ଗ୍ରହ୍କଙ୍କ ସମ୍ମୁଖୀନ ହେଲି । ସେମାନଙ୍କୁ ପରିଚାଳିତ କରୁଥିବା ଗ୍ରହ୍କ ଦୁଇଜଣ ଅନ୍ୟମାନଙ୍କ ଅପେକ୍ଷା ଆକୃତିରେ ମଧ୍ୟ ଆଶ୍ଚର୍ଯ୍ୟଜନକ ଭାବରେ ଭିନ୍ନ । ସେ ଦୁଇଜଣଙ୍କର ମୁଣ୍ଡ ବଡ଼ ଓ ଦେହ ସାନ, ଏବଂ ଅନ୍ୟମାନଙ୍କ ଅପେକ୍ଷା ସେମାନେ ଅଧିକ ଜାକଜମକରେ ପୋଷାକ ପିନ୍ଧିଥିଲେ । ସେମାନଙ୍କ କବଳରୁ କିଛି ସମୟ ପର୍ଯ୍ୟନ୍ତ ଲୁଚିଲୁଚି ଶେଷରେ ମୁଁ ଗୋଟିଏ ବରଫ-ଫାଟକ ଭିତରେ ପଡ଼ିଗଲି, ଫଳରେ ମୋ ମୁଣ୍ଡର ଠାଏ କଟିଗଲା ଏବଂ ଆଣ୍ଠୁହାଡ଼ ଖସିଗଲା । ଗୁରୁଣ୍ଡିବାକୁ ଅତିଶୟ କଷ୍ଟ ହେବାରୁ ମୁଁ ଆତ୍ମ ସମର୍ପଣ କରିବାକୁ ସ୍ଥିର କଲି—ଅବଶ୍ୟ, ଯଦି ବର୍ତ୍ତମାନ ଏଥିରେ ସେମାନେ ସମ୍ମତ ହୁଅନ୍ତି । ସେମାନେ ଏଥିରେ କୌଣସି ବ୍ୟାଘାତ ସୃଷ୍ଟି କଲେ ନାହିଁ, ଏବଂ ମୋର ଅସହାୟ ଅବସ୍ଥା ଦେଖି ମତେ ଟେକି ନେଇ ପୁଣି ଚନ୍ଦ୍ର ଭିତରକୁ ପଶିଲେ । କେଭ୍‌ରିଫୋର୍ଡ଼କୁ ମୁଁ ଆଉ ଦେଖି ନାହିଁ । କିମ୍ବା ତା ସମ୍ପର୍କରେ କିଛି ଶୁଣି ନାହିଁ ଏବଂ ମୁଁ ଯେତେ ଦୂର ବୁଝି ପାରୁଛି କୌଣସି ଗ୍ରହ୍କ ବି ତାକୁ ଆଉ ଦେଖି ନାହିଁ କିମ୍ବା ତା କଥା ଶୁଣିନାହିଁ । ହୁଏତ ଆଗ୍ନେୟଗିରି ଗହ୍ବରରେ ପଡ଼ି ତାକୁ ଗ୍ରାସ କରିଛି, କିମ୍ବା—ଯାହା ଅଧିକ ସମ୍ଭବ ସେ ଗୋଲକଟି ପାଇଛି, ଏବଂ ମତେ ଲୁଚେଇ ଆସ୍ତେ ଚାଲିଯିବା ପାଇଁ, ଗୋଲକଟି ଧରି ପଳେଇଛି—କିନ୍ତୁ ମୋର ଭୟ ହୁଏ, ସେ ଗୋଲକକୁ ଆୟତ୍ତ କରିପାରି ନାହିଁ ଏବଂ ମହାଶୂନ୍ୟରେ ଢଳେ ଢଳେ କରି ତାର ମୃତ୍ୟୁ ଘଟିଛି ।”

ଏହା ପରେ କେଭରଙ୍କ ମତେ ବାଦ ଦେଇ ଅଧିକ ଚିତ୍ତାକର୍ଷକ ବିଷୟ ପ୍ରତି ମନ ଦେଉଛି । ତାର ସମ୍ପାଦକ ରୂପେ ମୋର ପଦକୁ ମୁଁ ନିଜର ସ୍ୱାର୍ଥ ଉଦ୍ଦେଶ୍ୟରେ ବ୍ୟବହାର କରିବା ପାଇଁ ତାର ଆଖ୍ୟାୟିକା ଗୁଡ଼ିକ ଅନ୍ୟ କଥା ପକେଇବାକୁ ଚାହେଁ ନା, କିନ୍ତୁ ଏଇ ଘଟଣାଗୁଡ଼ିକକୁ ସେ ଯେପରି ବିକୃତ ଭାବରେ ଚିତ୍ରିତ କରିଛି ଏହା ବିରୁଦ୍ଧରେ ମୁଁ ଏଠି ପ୍ରତିବାଦ କରିବାକୁ ବାଧ୍ୟ ହେଉଛି । ରକ୍ତବୋଳା କାଗଜ ଉପରେ ଲୁଚ ଭାବରେ ଲିଖିତ ସେହି ବାର୍ତ୍ତା ବିଷୟରେ ସେ କିଛି କହୁ ନାହିଁ, କିନ୍ତୁ ସେଥିରେ ସେ ସମ୍ପୂର୍ଣ୍ଣ ଭିନ୍ନ କଥା ଲେଖିଥିଲି କିମ୍ବା ଲେଖିବାକୁ ଚେଷ୍ଟା କରିଥିଲି । ସହସ୍ମାନ ଆତ୍ମସମର୍ପଣ କଥାଟି ଘଟଣାର ଏକ ସମ୍ପୂର୍ଣ୍ଣ ନୂତନ ତର୍ଜମା । ମୁଁ ଜୋରଦେଇ କହିପାରେଁ, ଏ ତର୍ଜମାଟି ପରେ ତା ମୁଣ୍ଡକୁ ଆସିଥିଲା, ଯେତେବେଳେ ସେ ଗ୍ରନ୍ଥ ଅଧିବାସୀମାନଙ୍କ ମଧ୍ୟରେ ନିରାପଦ ବୋଧ କରିବାକୁ ଆରମ୍ଭ କଲା ଏବଂ "ଲୁଚେଇ ଆଗେ ପକେଇବା" ଧାରଣା ବିଷୟରେ ମୁଁ କେବଳ ଏତିକି କହିବାକୁ ଚାହେଁ, ପାଠକଙ୍କ ଆଗରେ ଥିବା ପ୍ରମାଣଗୁଡ଼ିକରୁ ସେ ନିଜେ ଏ କଥା ବିଚାର କରନ୍ତୁ । ମୁଁ ଜାଣେ, ମୁଁ ଜଣେ ଆଦର୍ଶ ମାନବ ନୁହେଁ—ଏ ରକମ ଛଳନା କରିବାକୁ ମଧ୍ୟ ଚେଷ୍ଟା ମୁଁ କରି ନାହିଁ । କିନ୍ତୁ ମୁଁ କଣ ସେଇଆ ?

ଯାହା ହେଉ, ଏତିକି ମାତ୍ର ମୋର ତୋଟର ବ୍ୟାଖ୍ୟାନ । ଏହାପରେ ମୁଁ ମୁକ୍ତ ଚିତ୍ତରେ କେଭରର ସମ୍ପାଦକ କାର୍ଯ୍ୟ କରିବି, କାରଣ ମୋ କଥା ସେ ଆଉ ପକେଇ ନାହିଁ ।

କେଭରକୁ ଭେଟିଥିବା ଗ୍ରନ୍ଥକମାନେ ତାକୁ ଅଭ୍ୟନ୍ତରସ୍ଥ କୌଣସି ସ୍ଥାନକୁ "ଗୋଟିଏ ପ୍ରକାଣ୍ଡ ଗହ୍ୱର-ପଥ" ବାଟେ ନେଇଗଲେ । ସେ କହୁଛି ଯେ ଗୋଟିଏ ବେଲୁନ ଭଳି ପଦାର୍ଥ ସାହାଯ୍ୟରେ ସେମାନେ ତାକୁ ଏଇ ବାଟେ ନେଲେ । ସେ ଯେଉଁ ଗୋଳମାଳିଆ ବାକ୍ୟଗୁଡ଼ିକରେ ଏହାର ବର୍ଣ୍ଣନା କରିଛି, ସେଥିରୁ ଏବଂ ଏହାପରେ ଆସିଥିବା ଅନ୍ୟାନ୍ୟ ବାର୍ତ୍ତାରେ ଥିବା ଇଙ୍ଗିତ ଓ ନିର୍ଦ୍ଦେଶଗୁଡ଼ିକରୁ ଆମେ ଅନୁମାନ କରିପାରିଲୁ ଯେ ଏହି "ପ୍ରକାଣ୍ଡ ଗହ୍ୱର-ପଥ" ଏତାଦୃଶ ଅନ୍ୟାନ୍ୟ କୃତ୍ରିମ ଗହ୍ୱର-ପଥ ଭିତରୁ

ଗୋଟିଏ । ଏହି ବିରାଟ ଗହ୍ୱର-ପଥ-ବ୍ୟବସ୍ଥାର ପ୍ରତ୍ୟେକ ଗହ୍ୱର ପଥ ଗୋଟିଏ ଲେଖାଏଁ ତଥା-କଥିତ "ଆଗ୍ନେୟଗିରି ଗହ୍ୱର"କୁ ଉତ୍ପନ୍ନ ହୋଇ ପ୍ରାୟ ଶହେ ମାଇଲ ପର୍ଯ୍ୟନ୍ତ ତଳକୁ ଯାଇ ଚନ୍ଦ୍ରର କେନ୍ଦ୍ରସ୍ଥଳରେ ପହଞ୍ଚିଛି । ଏହି ଗହ୍ୱର-ପଥଗୁଡ଼ିକ ଛକାଛକ ହୋଇଥିବା ସୁଡ଼ଙ୍ଗମାନଙ୍କଦ୍ୱାରା ସଂଯୁକ୍ତ ହୋଇଛନ୍ତି । ସ୍ଥାନେ ସ୍ଥାନେ ସେମାନଙ୍କ ଦେହରୁ ପାଣିପାଳ ପରି ଗଣ୍ଠିର ବିବର ଫିଟିଛି, ଏବଂ ସେମାନେ ପ୍ରସାରିତ ହୋଇ କୌଣସି କୌଣସି ସ୍ଥାନରେ ବିରାଟ ବର୍ତ୍ତୁଳାକାର ହୋଇଛନ୍ତି । ବାସ୍ତବିକ, ଚନ୍ଦ୍ରର ଦେହ ଶହେ ମାଇଲ ଭିତର ପର୍ଯ୍ୟନ୍ତ ଗୋଟିଏ ପଥରର ସ୍ତମ୍ଭ ଛଡ଼ା ଆଉ କିଛି ନୁହେଁ ! ଲେଭିନ କହୁଛନ୍ତି, "କେତେକାଂଶରେ ଏହି ସ୍ତମ୍ଭ ପରି ଛିଦ୍ରଯୁକ୍ତ ହେବା ଅବସ୍ଥା ପ୍ରାକୃତିକ ଅଟେ, କିନ୍ତୁ ଅଧିକାଂଶରେ ଅଜ୍ଞାତ ବୁଦ୍ଧିକ ମାନଙ୍କର ବିପୁଳ ଅଧ୍ୟବସାୟ ଯୋଗୁଁ ଏପରି ଘଟିଛି । ଏହି ଗହ୍ୱର-ପଥ ଗୁଡ଼ିକର ବହିର୍ଭାଗରେ ଥିବା ବିଶାଳ ବୃତ୍ତଗୁଡ଼ିକ ଆଗ୍ନେୟ-ଗିରି-ଗହ୍ୱର ବୋଲି (କୃତ୍ରିମ ସାଦୃଶ୍ୟରେ ଭୁଲିଯାଇ) ପୃଥିବୀର ଜ୍ୟୋତିର୍ବିଦ୍‌ମାନେ ମନେ କରନ୍ତି, କିନ୍ତୁ ପ୍ରକୃତରେ ଏଗୁଡ଼ିକ ଭିତରୁ ଖୋଳାଯାଇଥିବା ପଥର ଓ ମାଟିର ପ୍ରକାଣ୍ଡ ଗୋଲାକାର ସ୍ତୂପ ।"

ଏହି ଗହ୍ୱର ପଥ ଭିତରେ ଏକପ୍ରକାର ବେଲୁନରେ ପ୍ରଥମେ ଗୋଟିଏ ନିବିଡ଼ ଅନ୍ଧକାରାଚ୍ଛନ୍ନ ସ୍ଥାନକୁ ସେମାନେ ତାକୁ ନେଲେ । ତାପରେ ସେମାନେ ଯେଉଁ ସ୍ଥାନ ଦେଇ ଚଲେ ତାହାର ଫସଫରସ୍ ଜାତ ଆଲୋକ କ୍ରମେ କ୍ରମେ ଉଜ୍ଜ୍ୱଳତର ହେବାକୁ ଲାଗିଲା । ଲେଭିନର ବାର୍ତ୍ତାଗୁଡ଼ିକ ବିଜ୍ଞାନବିତ୍ ପକ୍ଷରେ ଆଶ୍ଚର୍ଯ୍ୟଜନକ ଭାବରେ ସୂକ୍ଷ୍ମ ବିବରଣହେତୁ ଅଟେ, କିନ୍ତୁ ତଥାପି ଆମେ ଅନୁମାନ କରିପାରିଲୁଁ ଯେ ଏହି ଆଲୋକ କେନ୍ଦ୍ର ସମୁଦ୍ରଆଡ଼କୁ ନିମ୍ନଗାମୀ ହୋଇ କ୍ରମେ କ୍ରମେ ପ୍ରଚୁରତର ଭାବରେ ବହି-ଯାଉଥିବା ଜଳସ୍ରୋତ ଓ ଜଳପ୍ରପାତର ପାଣିରୁ ବାହାରୁଥିଲା । "ସେହି ପାଣିରେ ନିଶ୍ଚୟ କୌଣସି ଫସ୍‌ଫରସ୍ ଜାତୀୟ ଜୈବ ପଦାର୍ଥ ଥିଲା ।" ସେ କହୁଛି ଯେ, ତଳକୁ ଗିବା ସମୟରେ "ବୁଦ୍ଧିକମାନେ ବି ଉଜ୍ଜ୍ୱଳ ହୋଇଗଲେ ।" ପରିଶେଷରେ ତାର ଅନେକ ନିମ୍ନରେ ସେ ଉତ୍ତପ୍ତପଙ୍କ

ଅଗ୍ନିର ହ୍ରଦ ପରି ଦେଖାଯାଉଥିବା କେନ୍ଦ୍ର ସମୁଦ୍ରର ଜଳ ଦେଖିପାରିଲି । ତାହା ଅଦ୍ଭୁତ ଶୃଙ୍ଖଳା ସହିତ ଦୀପ୍ତିମାନ ହେଉଥିଲା ଏବଂ ଊର୍ଦ୍ଧ୍ୱ ଖେଳୁଥିଲା, "ଫୁଟିବାକୁ ଆରମ୍ଭ କରୁଥିବା ଉଜ୍ଜ୍ୱଳ ନୀଳ ଦୁଗ୍ଧ ପରି ।"

ପରବର୍ତ୍ତୀ ଗୋଟିଏ ବର୍ଣ୍ଣନାରେ କେଭର୍ କହୁଛି, "ଏହି ଚନ୍ଦ୍ରସମୁଦ୍ର ଗୋଟିଏ ନିଶ୍ଚଳ ସାଗର ନୁହେଁ, ସୌର ଜୁଆରଦ୍ୱାରା ଏହା ଚନ୍ଦ୍ର ଅକ୍ଷଦଣ୍ଡର ଚତୁର୍ଦ୍ଦିଗରେ ଅବିରାମ ଭାବରେ ପ୍ରବାହିତ ହେଉଛି । ଏହାର ଜଳରେ ଅଦ୍ଭୁତ ଝଡ଼, ଫୋଟନ ଓ ଖରସ୍ରୋତ ସଂଘଟିଏ ତ ହୁଏ, ଏବଂ ବେଳେବେଳେ ଶୀତଳ ପବନ ଓ ଘଡ଼ଘଡ଼ି ଶବ୍ଦ ଏହାର ବକ୍ଷରୁ ଉତ୍ଥିତ ହୋଇ ଊର୍ଦ୍ଧ୍ୱସ୍ଥ ସୁଙ୍ଗାର ବ୍ୟସ୍ତ ପଥ ଗୁଡ଼ିକ ଭିତରକୁ ଧାଇଁଯାଏ । କେବଳ ଜଳ ସଞ୍ଚାଳିତ ହେଲେ ଆଲୋକଜାତ ହୁଏ; ଏହାର ନିଶ୍ଚଳ ଅବସ୍ଥା ଅତ୍ୟନ୍ତ ବିରଳ, କିନ୍ତୁ ସେ ସମୟରେ ଜଳ କାଳିମାମୟ ହୋଇଥାଏ । ସାଧାରଣତଃ ଏହାର ଜଳ ତେଲାକ୍ତ ସ୍ଥିତିରେ ରହିଥାଏ ଏବଂ ଉଜ୍ଜ୍ୱଳ ବୁଦ୍‌ବୁଦ୍‌ଯୁକ୍ତ ଫେଣର କ୍ଷୁଦ୍ର କଣିକା ଓ ବୃହତ୍ ଖଣ୍ଡଗୁଡ଼ିକ ଏହାର ଅଳସ, କ୍ଷୀଣୋଜ୍ଜ୍ୱଳ ସ୍ରୋତ ସହିତ ବହିଯାଉଥିବାର ଦେଖାଯାଏ । ଏହାର ଗୁହାମୟ ଜଳ-ପ୍ରଣାଳୀ ଓ କ୍ଷୁଦ୍ର ହ୍ରଦ ଗୁଡ଼ିକରେ ଗୋଟିଏ ବୃକ୍ଷର ଗଣ୍ଡିରେ ତିଆରି ହୋଇ-ଥିବା 'କେନୋ' ନୌକାପରି ଗହିରା ନୌକା ନେଇ ଚନ୍ଦ୍ରିକମାନେ ଯା ଆସ କରନ୍ତି । ଚନ୍ଦ୍ରର କର୍ତ୍ତା ମହାଚନ୍ଦ୍ରିକଙ୍କୁ ବେଢ଼ି ରହିଥିବା ସୁଡ଼ଙ୍ଗ-ପଥ ଆଡ଼େ ଯାତ୍ରା କରିବା ପୂର୍ବରୁ ମଝି ମୁଁ ଏହାର ଜଳରେ ଅଳ୍ପକ୍ଷଣ ପାଇଁ ନୌକା ବିହାର କରିବାକୁ ଅନୁମତି ପାଇଥିଲି ।

"ବିବର ଓ ସୁଡ଼ଙ୍ଗଗୁଡ଼ିକ ପ୍ରାକୃତିକ ଭାବରେ ଅତ୍ୟନ୍ତ ମୋଡ଼ି ମୋଡ଼ି ହୋଇଯାଇଛନ୍ତି । ଏହି ପଥଗୁଡ଼ିକରୁ ଅଧିକାଂଶ କେଉଁଃମାନଙ୍କ ମଧ୍ୟରୁ କେବଳ ନିପୁଣ ନାବିକମାନଙ୍କୁ ଜଣାଅଛି । ବେଳେବେଳେ ଚନ୍ଦ୍ରିକ-ମାନେ ସେହି ଗୋଲକଧନ୍ଦା ଗୁଡ଼ିକ ଭିତରେ ଚିରକାଳ ପାଇଁ ହଜିଯାନ୍ତି । ମୁଁ ଶୁଣିଛି, ସେହି ପଥଗୁଡ଼ିକର ବହୁଦୂରସ୍ଥ ଗୁପ୍ତସ୍ଥାନମାନଙ୍କରେ ଅଦ୍ଭୁତ ଜୀବମାନେ ବିଚରଣ କରନ୍ତି । ସେମାନଙ୍କ ଭିତରୁ କେତେକ ଅତି ଭୟଙ୍କର ଓ ସାଂଘାତିକ ଜୀବ ଏବଂ ଚନ୍ଦ୍ରର ସମସ୍ତ ବିଜ୍ଞାନ ଏକତ୍ରିତ ହୋଇ ମଝି

ସେମାନଙ୍କୁ ଧ୍ୱଂସ କରିପାରି ନାହିଁ । ଏମାନଙ୍କ ମଧ୍ୟରୁ 'ସର୍ବାପେକ୍ଷା ଭୟଙ୍କର "ଗ୍ରଫା" ଓ "କ୍ଲୀ" । ଗ୍ରଫା ନବଡ଼ ଭାବରେ ଛିନ୍ନ ହୋଇଥିବା ଆଙ୍ଗୁଠି ପରି ଶୁଣ୍ଢବିଶିଷ୍ଟ ଗୋଟିଏ ଜୀବ । ତାହାର ଶୁଣ୍ଢଗୁଡ଼ିକୁ ଯେତେ ଖଣ୍ଡ ଖଣ୍ଡ କରି କାଟିବ ତାହା ସେତେ ବହୁଗୁଣିତ ହୋଇ ଯାଉଥିବ । କ୍ଲୀ ବଳୁଲ ପରି ହରିଡ଼୍ ଗାତରେ ଲମ୍ବି ହୋଇଥିବା ଗୋଟିଏ ଜୀବ । ତାହା ଏପରି ଗୁପ୍ତ ଭାବରେ ଆସି ଆଖି ପିଛୁଳାକେ ହତ୍ୟା କରି ଚାଲିଯାଏ ଯେ ତାକୁ କେହି ଦେଖି ପାରନ୍ତି ନାହିଁ ........"

ଏହାପରେ ସେ କିଛିକ୍ଷଣ ପର୍ଯ୍ୟନ୍ତ ଦୃଶ୍ୟ ବର୍ଣ୍ଣନାରେ ବ୍ୟାପୃତ ହୋଇଛି ।

ଆମେରିକାର "ମେମଥ କେଭ୍" ନାମକ ବିରାଟ ଗୁମ୍ଫା ବିଷୟରେ ମୁଁ ଯାହା ପଢିଛି, ଏହି ନୌକା-ଯାତ୍ରା ବେଳେ ତାହା ମୋରି ମନେ ପଡ଼ିଗଲା; ଯଦି ଡଗନ୍ତବସ୍ତ୍ରାଶି ନୀଳ ଆଲୋକ ପରିବର୍ତ୍ତେ ମୋ ପାଖରେ ଗୋଟିଏ ହଳଦିଆ ମଶାଲ ଜଳୁଥାନ୍ତା ଏବଂ 'କେନୋ'ର ପଶ୍ଚାତ୍ ଭାଗରେ ଇଞ୍ଜିନ ଚଳୁଥିବା ଫମ୍ପା-ମୁହଁ ଗୁଡ୍ରୁକ ପରିବର୍ତ୍ତେ ଜଦା ଚେହେରାର ଗୋଟିଏ ନାଉରୀ ଆହୁଲା ବାହୁଥାନ୍ତା, ତାହାହେଲେ ମୁଁ ମନେ କରିଥାନ୍ତି ଯେ ମୁଁ ହଠାତ୍ ପୃଥିବୀକୁ ଫେରିଆସିଛି । ଆମ ଚାରିପାଖରେ ଥିବା ଶୈଳ ଗୁଡ଼ିକର ଚେହେରା ବିଭିନ୍ନ ଥିଲା, କେତେବେଳେ କଳା ଦେଖାଯାଉଥିଲା, କେତେବେଳେ ବା ଅସ୍ପଷ୍ଟ ନୀଳ ଓ ଶୀରମଣ୍ଡିତ ହୋଇଥିଲା ଏବଂ ଥରେ ସେଗୁଡ଼ିକ ଏପରି ଭାବରେ ଉଜ୍ଜ୍ୱଳ ହୋଇ ଝଲସି ଉଠିଲା ଯେ ମନେ ହେଲା ଆମେ ନୀଳ ମଣିର ଗୋଟିଏ ଖଣିରେ ପହଞ୍ଚିଛୁ । ନିମ୍ନରେ ଫସ-ଫରସ୍ ପୂର୍ଣ୍ଣ ଗଭୀର ଜଳରେ ଫସଫରସବୋଳା ମାଛଗୁଡ଼ିକ ଡାହାଣୀ ଆଲୁଅ ପରି ଝଟକି, ଉଭେଇଯାଉଥିଲେ । ତା'ପରେ ସମୁଦ୍ରର ଅପର ପାର୍ଶ୍ୱସ୍ଥ ଗୋଟିଏ ସୁଦୀର୍ଘ ଏବଂ ସଂକୀର୍ଣ୍ଣ ଦୃଶ୍ୟ ଆମେ ଦେଖି ପାଇଲୁଁ । ନୌକା ଯାତାୟାତ ଉପଯୋଗୀ ଗୋଟିଏ ଖରସ୍ରୋତା ନାଳର ଶେଷରେ ସେହି ଦୃଶ୍ୟ ଦେଖାଯାଉଥିଲା । ଦୂରରେ ଗୋଟିଏ ନୌକା ଘାଟ ଦେଖାଯାଉଥିଲା, ଏବଂ ଆହୁରି ଦୂରକୁ ଜନାକୀର୍ଣ୍ଣ ଊର୍ଦ୍ଧ୍ୱମୁଖୀ ଟହ୍ଲର ପଥର ଦୃଶ୍ୟ କ୍ଷଣକାଳଟି ଦେଖାଗଲା ।

"ପଥର ଦେହକୁ ଝୁଲୁଥିବା ଉଜ୍ଜ୍ୱଳ ଅଙ୍ଗାମ୍ଳକଚୂନ-ସ୍ଫଣିକା-ପୂର୍ଣ୍ଣ ଗୋଟିଏ ବିସ୍ତୃତ ସ୍ଥାନରେ ଅନେକଗୁଡ଼ିଏ ଡଙ୍ଗା ମତ୍ସ୍ୟଶିକାର କରୁଥିଲେ। ସେଥି ଭିତରୁ ଗୋଟିଏ ଡଙ୍ଗା ପାଖ ଦେଇ ଆମେ ଗଲୁଁ, ଏବଂ ଲମ୍ବାହାତ-ବାଲା ଗୃଧ୍ରକ କେଉଟମାନେ ଜାଲ ଟାଣୁଥିବାର ଦେଖିଲୁଁ । ସେମାନେ ଥିଲେ କ୍ଷୁଦ୍ରକାୟ, କୁଜା, ପୋକପରି ଜୀବ । ସେମାନଙ୍କର ହାତ ବେଶ ମଜଭୁତ ଥିଲା, ଗୋଡ ଖର୍ବ ଓ ବଙ୍କ ଥିଲା, ଏବଂ ମୁଖାବରଣ କୁଞ୍ଚିତ ହୋଇ-ଥିଲା। ସେମାନେ ଜାଲ ଧରି ଟାଣୁଥିଲାବେଳେ ମୋର ମନେ ହେଲା, ମୁଁ ଚନ୍ଦ୍ରରେ ଦେଖିଥିବା ଜନ୍ତମାନଙ୍କ ମଧ୍ୟରେ ତାହା ସର୍ବାପେକ୍ଷା ଖରାପ । ତାହା ବଟକରା ଦ୍ୱାରା ବୋଝେଇ ହୋଇଥିଲା—ନିଶ୍ଚୟ ସୁନାର ବଟକରା—ଏବଂ ତାହା ଟାଣି ଆଣିବାକୁ ଅନେକ ବେଳ ଲାଗିଲା, କାରଣ ସେହି ଜଳରେ ଅଧିକ ବଡ଼ ଓ ସୁସ୍ୱାଦୁ ମାଛମାନେ ଖୁବ ଗଭୀରରେ ରହନ୍ତି । ଜାଲ ବୋଝେଇ ମାଛମାନେ ନୀଳ ଚନ୍ଦ୍ରୋଦୟ ସଦୃଶ ଉପରକୁ ଉଠିଆସିଲେ—ଛଟପଟ କରୁଥିବା', ଫକ୍ ଫକ୍ ହେଉଁଥିବା ନାଳମାର ପ୍ରଦୀପ୍ତି ।

"ସେମାନଙ୍କ ଶିକାର ଭିତରେ ଗୋଟିଏ ବହୁଶୁଣ୍ଡଧାରୀ, କ୍ରୂରଚକ୍ଷୁ-ବିଶିଷ୍ଟ କଳା ଜନ୍ତ ହିଂସ୍ର ଭାବରେ ଛଟପିଟି ହେଉଥିଲା । ତାକୁ ଦେଖିଲା କ୍ଷଣି ଗୃଧ୍ରକମାନେ ଭୟଜନିତ ଚିତ୍କାର ଓ କେଁ କଟର କରିବାକୁ ଲାଗିଲେ। ସେମାନେ ଛୋଟ ଛୋଟ କ୍ଷୁରଟୀ ଧରି ଭୟ କମ୍ପିତ ହସ୍ତରେ ତାକୁ ଗଡ ଗଡ଼ କରି ଚଞ୍ଚଳ କାଟି ପକେଇଲେ। ତାର କଟା ଅଙ୍ଗ ପ୍ରତ୍ୟଙ୍ଗ ଗୁଡ଼ିକ ମଧ୍ୟ ଭୟାନକ ଭାବରେ ଛଟପିଟି ହେବାକୁ ଲାଗିଲା। ମୋଡ଼ ମୋଡ଼ି ହେବାକୁ ଲାଗିଲା । କିଛିଦିନ ପରେ, ମୁଁ ଯେତେବେଳେ ଜରରେ ପଡ଼ିଥିଲି, ସେତେ-ବେଳେ ଥରକୁ ଥର ଏହି ସ୍ୱପ୍ନ ଦେଖିଲି ଯେ, ସେହି ନୂଆ ଜନ୍ତୁ ସେହି ଅଜ୍ଞାତ ସମୁଦ୍ର ଭିତରୁ ପ୍ରଚଣ୍ଡ ବିକ୍ରମ ସହିତ ଉଠିଆସୁଛି। ଚନ୍ଦ୍ରର ଅଭ୍ୟନ୍ତରସ୍ଥିତ ଜଗତରେ ମୁଁ ଯେତେ ଜୀବନ୍ତ ବସ୍ତୁ ଦେଖିଛି, ସେହି ଜନ୍ତୁ ସର୍ବାପେକ୍ଷା ସକ୍ରିୟ ଓ ହିଂସ୍ର ......

"ଏହି ସମୁଦ୍ର ଚନ୍ଦ୍ରର ବହିର୍ଭାଗରୁ ଅନ୍ତତଃ ପକ୍ଷେ ଦୁଇଶହ ମାଇଲ ତଳେ ହେବ। ମୁଁ ଶୁଣିଲି ଯେ ଚନ୍ଦ୍ରର ସମସ୍ତ ସହର ଏହି କେନ୍ଦ୍ର

ସମୁଦ୍ରର ଠିକ ଉପରେ ଅଛନ୍ତି । ସେଗୁଡ଼ିକ ମୁଁ ବର୍ଣ୍ଣନା କରିଥିବା ପ୍ରଶସ୍ତ ବନ୍ଦର ଓ କୃତ୍ରିମ ସୁଡ଼ଙ୍ଗ ଗୁଡ଼ିକ ସ୍ଥାନମାନଙ୍କରେ ଅବସ୍ଥିତ । ପ୍ରକାଣ୍ଡ ଉର୍ଦ୍ଧ୍ୱମୁଖୀ ଗହ୍ୱର-ପଥମାନଙ୍କ ଦ୍ୱାରା ସେଗୁଡ଼ିକ ବହିର୍ଜଗତ ସହିତ ସଂଯୁକ୍ତ । ପୃଥିବୀର ଜ୍ୟୋତିର୍ବିଦ୍‌ମାନେ ଯାହାକୁ ଚନ୍ଦ୍ରର ଆଗ୍ନେୟଗିରି ଗହ୍ୱର କହନ୍ତି ଏହି ଗହ୍ୱର-ପଥ ଗୁଡ଼ିକ ତୁଷେହି ସ୍ଥାନରେ ଉନ୍ମୁକ୍ତ ହୋଇଛନ୍ତି । ଏହି ଖୋଲାସ୍ଥାନରେ ମୁହଁକୁ ଢାଙ୍କିଥିବା ଢାଙ୍କୁଣୀକୁ ଗୋଟିଏ ମୁଁ ଆଗରୁ ଦେଖିଛି —ମୁଁ ଧରାପଡ଼ିବାର ପୂର୍ବାବସ୍ଥାରେ ବୁଲୁଥିବା ସମୟରେ ।

"ଚନ୍ଦ୍ରର ଅଭ୍ୟନ୍ତର କେନ୍ଦ୍ରୀୟ ସ୍ଥାନମାନଙ୍କ ବିଷୟରେ ମୁଁ ଏ ପର୍ଯ୍ୟନ୍ତ ସଠିକ ଜ୍ଞାନ ଲାଭ କରିପାରି ନାହିଁ । ଚନ୍ଦ୍ରଗୋରୁମାନେ ରାତିରେ ଆଶ୍ରୟ ନେବାପାଇଁ ବଡ଼ ବଡ଼ କେତୋଟି ବିବରର ବ୍ୟବସ୍ଥା କରାଯାଇଛି; ଏବଂ କେତୋଟି କଂସେଇଖାନା ଓ ଆନୁସଙ୍ଗିକ ସ୍ଥାନ ମଧ୍ୟ ଅଛି—ଏହିପରି ଗୋଟିଏ ସ୍ଥାନରେ ମୁଁ ଓ ବେଡ଼୍‌ଫୋର୍ଡ଼ ବୃନ୍ଦ୍ରଙ୍କ କଂସେଇମାନଙ୍କ ସହିତ ଯୁଦ୍ଧ କରିଥିଲୁ—ଏବଂ ଉପରର ଅନ୍ଧକାର ଭିତରୁ ମାଂସରେ ବୋଝେଇ ହୋଇ ବେଲୁନ ଖସିଆସୁଥିବାର ମୁଁ ସ୍ୱୀ ଭିତରେ ଦେଖିଛି । ଏହି ଅଳ୍ପ ସମୟ ଭିତରେ ଇଂଲଣ୍ଡର ଶସ୍ୟ ସରବରାହ ବିଷୟରେ ଲଣ୍ଡନରେ ଥିବା କୌଣସି ଜୁଲୁ ଆଫ୍ରିକାର ଆଦିମ ଅଧିବାସୀ ଯେତିକି ଜାଣିପାରିବ ମୁଁ ଏସବୁ ବିଷୟରେ ତାଠୁଁ ମଧ୍ୟ କମ ଜାଣିପାରିଛି । ଯାହାହେଉ, ଏକଥା ପରିଷ୍କାର ବୁଝାଯାଉଛି ଯେ ଏହି ଉର୍ଦ୍ଧ୍ୱମୁଖୀ ଗହ୍ୱରପଥ ଗୁଡ଼ିକ ଏବଂ ଚନ୍ଦ୍ର-ପୃଷ୍ଠସ୍ଥ ଉଦ୍ଭିଦମାନେ ଚନ୍ଦ୍ରର ବାୟୁମଣ୍ଡଳକୁ ପରିଷ୍କାର ରଖିବାପାଇଁ ଏବଂ ମୁକ୍ତବାୟୁ ଯୋଗାଇବାପାଇଁ ଏକାନ୍ତ ଆବଶ୍ୟକୀୟ । ପ୍ରଥମେ ବିଶେଷତଃ ମୁଁ ଜେଲଖାନାରୁ ମୁକୁଳିବାର ଠିକ୍ ପରେ, ଗହ୍ୱର-ପଥବାଟେ ତଳଆଡ଼କୁ ଥଣ୍ଡା ପବନର ସ୍ରୋତ ବହିଆସୁଥିବାର ମୁଁ ଅନୁଭବ କରିଛି, ଏବଂ ପରେ ମତେ ଜର ହୋଇଥିବା ସମୟରେ ଜଳକଣା-ବିଶିଷ୍ଟ ଗରମ ପବନ ଉପର ଆଡ଼କୁ ବହିଯାଉଥିଲା । ଏଠାକୁ ଆସିବାର ତିନି-ସପ୍ତାହ ପରେ ମୁଁ ନାମ-ହୀନ ଏକ ପ୍ରକାର ଜ୍ୱରରେ ଆକ୍ରାନ୍ତ ହେଲି । ଭାଗ୍ୟବଶତଃ ମୁଁ ସାଙ୍ଗରେ କେତୋଟି କୁଇନାଇନ୍ ବଟିକା ପକେଟରେ ନେଇଆସିଥିଲି । କିନ୍ତୁ ତା ସତ୍ତ୍ୱେ ଏବଂ ଯଥେଷ୍ଟ ନିଦ୍ରାସତ୍ତ୍ୱେ ମୁଁ ଅନେକ ଦିନଯାଏ ବେମାର ରହି

ଯନ୍ତ୍ରଣାରେ ଛଟପଟ କରିବାକୁ ଲାଗିଲି । ଚନ୍ଦ୍ରମାଲିକ ,ମହାଲୁନାର୍‌ଙ୍କ ଦରବାରକୁ ମତେ ନଆହେବା ସମୟ ପର୍ଯ୍ୟନ୍ତ ମୋର ଏଇ ଜର ସ୍ଥାୟୀ ହୋଇଥିଲା ।"

କେଭର କହୁଛି, "ସେଇ କ୍ଳାନ୍ତିକର ଦିନଗୁଡ଼ିକ ଭିତରେ ମୋର କଷ୍ଟ କଥା ମୁଁ ବର୍ଣ୍ଣନା କରିବ ନାହିଁ ।" କିନ୍ତୁ ଠିକ୍ ତା ପରେ ପରେ ବିସ୍ତାରିତ ଭାବରେ ତାହା ବର୍ଣ୍ଣନା କରିଛି । ସେସବୁ ସୂକ୍ଷ୍ମ ବିବରଣୀ ମୁଁ ଏଠି ବାଦ ଦେଉଛି । ତାର ବର୍ଣ୍ଣନା ସେ ଏଇ କଥାରେ ଶେଷ କରିଛି, "ଅନେକ ଦିନ ପର୍ଯ୍ୟନ୍ତ ମୋର ଦେହର ଉତ୍ତାପ ଖୁବ୍ ବେଶୀ ହୋଇ ରହିଥିଲା । ଆଦୌ କିଛି ଖାଇବାକୁ ଇଚ୍ଛା ହେଲା ନାହିଁ । ମୁଁ ଯେତେବେଳେ ଚେଇଁ ରହୁଥିଲି, ଘଡ଼ି ଘଡ଼ି କାଳ ଚେତା ଶୂନ୍ୟ ଭାବରେ ମୁହଁରହୁଥିଲି ଏବଂ ଶୋଇଲେ ଦୁଃସ୍ୱପ୍ନ ଦେଖୁଥିଲି । ମୁଁ ଏକ ସମୟରେ ଏତେଦୂର ଦୁର୍ବଳ ହୋଇପଡ଼ିଲି ଯେ ପୃଥିବୀକୁ ଦେଖିବାପାଇଁ ବ୍ୟାକୁଳ ଓ ପ୍ରାୟ ଉନ୍ମାଦ ହୋଇ ଉଠିଲି । ଚରଣନ ମାଳମାନେ ପରିବର୍ତ୍ତନ ଆଣିବାପାଇଁ ବର୍ଣ୍ଣ ବୈଚିତ୍ର୍ୟ ଲାଗି ଅଧୀର ହୋଇଉଠିଲି·····"

ଏହି ସ୍ୱପ୍ନତୁଲ୍ୟ ଚନ୍ଦ୍ରର ବାୟୁମଣ୍ଡଳ ବିଷୟକ ଆଲୋଚନାକୁ ସେ ପୁଣି ପ୍ରତ୍ୟାବର୍ତ୍ତନ କରିଛି । ଜ୍ୟୋତିର୍ବିଦ୍ ଓ ପଦାର୍ଥବିଜ୍ଞାନବିଦ୍‌ମାନଙ୍କଠାରୁ ମୁଁ ଶୁଣିଛି ଯେ ଚନ୍ଦ୍ରର ଅବସ୍ଥା ବିଷୟରେ ଏ ପର୍ଯ୍ୟନ୍ତ ଯାହା ଜଣାଯାଇଛି ତା ସହିତ କେଭରର କଥା ଠିକ୍ ଖାପ ଖାଉଛି । ମିଷ୍ଟର ଓଏଣ୍ଡିଙ୍ଗ କହନ୍ତି ଯଦି ସାହସ ସହିତ ଅନୁମାନ କରିବାପାଇଁ ପୃଥିବୀର ଜ୍ୟୋତିର୍ବିଦ୍‌ମାନଙ୍କର ଯଥେଷ୍ଟ ଦମ୍ଭ ଓ କଳ୍ପନାଶକ୍ତି ଥାଆନ୍ତା, ତେବେ ଚନ୍ଦ୍ରର ସାଧାରଣ ଗଠନ ବିଷୟରେ କେଭର ଯାହା ଯାହା କହିଛି ସେମାନେ ପ୍ରାୟ ସମସ୍ତ କଥା ପୂର୍ବରୁ ଅନୁମାନ କରିପାରିଥାଆନ୍ତେ । ସେମାନେ ବର୍ତ୍ତମାନ ନିଶ୍ଚିତରୂପେ ଜାଣନ୍ତି, ଯେ ଚନ୍ଦ୍ର ଓ ପୃଥିବୀ ଯେତେ ପରିମାଣରେ ଉପଗ୍ରହ ଓ ମୂଳଗ୍ରହ ନୁହନ୍ତି ସେତେ ପରିମାଣରେ ସମଜାତୀୟ କ୍ଷୁଦ୍ର ଓ ବୃହତ୍ ଗ୍ରହ ଅଟନ୍ତି । ସେମାନେ ଏକ ଜଡ଼ ପିଣ୍ଡରୁ ନିର୍ମିତ । ତେଣୁ ସମାନ ଉପାଦାନରୁ ନିର୍ମିତ ହୋଇଥିବା ସୁନିଶ୍ଚିତ । ଏବଂ ଯେଣୁ ଚନ୍ଦ୍ରର ସାନ୍ଦ୍ରତା ପୃଥିବୀର ସାନ୍ଦ୍ରତାର ଏକ-ପଞ୍ଚମାଂଶ, ତେଣୁ ଏକମାତ୍ର ସ୍ୱାଭାବିକ କଥା ଏହି ଯେ ଚନ୍ଦ୍ରର ଅଭ୍ୟନ୍ତରରେ

ଅସଂଖ୍ୟ ବିବର ଖୋଳାହୋଇଥିବା ଯୋଗୁଁ ତାହା ଫମ୍ପା ହୋଇଯାଇଛି । ସାର୍ ଜାବେଜ୍ ଫ୍ଲ୍ୟାଙ୍ଗ୍, ଏଫ୍. ଆର୍. ଏସ୍ — ସେ କ ନକ୍ଷତ୍ରମାନଙ୍କର କୌତୁକ-ଜନକ ଦାଗଟା, ଦେଖେଇ ଅନେକ ମଜା ମଜା କଥା କହିଛନ୍ତି — କହିଲେ ଯେ, ଯାହା ଏପରି ସହଜ ଭାବରେ ଅନ୍ଦାଜ କରାଯାଇପାରେ ତାହା ଜାଣିବା ପାଇଁ ଆମର ଚନ୍ଦ୍ରକୁ ଯିବାର କୌଣସି ଆବଶ୍ୟକତା ନ ଥିଲା । ତାଙ୍କର ଉକ୍ତିକୁ ସୁବୋଧ କରିବାକୁ ଯାଇଁ ସେ ସୁଇଜରଲାଣ୍ଡର ଛିଦ୍ର-ଯୁକ୍ତ ଚଟାଣ ପିଠାପ୍ରତି ଇଙ୍ଗିତ କରିଛନ୍ତି । କିନ୍ତୁ ଚନ୍ଦ୍ର ପୋଲ ବୋଲି ସେ ଯଦି ଆଗରୁ ଜାଣିଥିଲେ ତେବେ ଏତେଦିନ ଯାଏଁ ସେ କଥା କହି ନଥିଲେ କିଆଁ ? ଚନ୍ଦ୍ର ଯଦି ପୋଲ ହୁଏ, ତାହାହେଲେ ଅବଶ୍ୟ ସହଜରେ ବୁଝାଇ ଦେଇ ହେବ ତାର ବାହ୍ୟାଂଶରେ ଜଳ କିମ୍ବା ବାୟୁ କାହିଁକି ନାହିଁ । ତାର ଅଭ୍ୟନ୍ତରରେ ବିବରମାନଙ୍କର ତଳ ଦେଶରେ ସମୁଦ୍ର ରହିଛି, ଏବଂ ସୁଡ଼ଙ୍ଗମୟ ଛିଦ୍ର ଭିତରଦେଇ ବାୟୁ ବହିଯାଉଛି । ଏହା ପଦାର୍ଥ ବିଜ୍ଞାନର ସହଜ ନିୟମ, ସାଧାରଣତଃ ଚନ୍ଦ୍ରର ବିବରମାନ ଖୁବ୍ ମୋଡ଼ମୋଡ଼ିକିଆ । ଯେତେବେଳେ ସୂର୍ଯ୍ୟାଲୋକ ଚନ୍ଦ୍ରର ଗୋଟିଏ ପାର୍ଶ୍ୱରେ ପଡ଼େ, ସେହିପଟେ ଥିବା ବାହ୍ୟ ସୁଡ଼ଙ୍ଗଗୁଡ଼ିକର ବାୟୁ ଉତ୍ତପ୍ତ ହୋଇଉଠେ, ତାହାର ଚାପ ବଢ଼ିଯାଏ, ସେହି ବାୟୁର କେତେକାଂଶ ବାହାରକୁ ବହିଯାଏ ଏବଂ ଆଗ୍ନେୟ-ଗିରି ଗହ୍ୱରର ବାଷ୍ପୀଭୂତ ବାୟୁ ସଙ୍ଗେ ମିଶିଯାଏ । (ସେଠାରେ ଉଦ୍ଭିଦ ଗୁଡ଼ିକ ତାର ଅଙ୍ଗାରକାମ୍ଳକୁ ଗ୍ରହଣ କରନ୍ତି,) କିନ୍ତୁ ଅଧିକାଂଶ ବାୟୁ ସୁଡ଼ଙ୍ଗ-ଗୁଡ଼ିକ ବାଟେ ଭିତରକୁ ବହିଯାଇ ଅପରପାର୍ଶ୍ୱକୁ ଯାଏ, ଏବଂ ସେଠାରେ (ସୂର୍ଯ୍ୟ ଅସ୍ତ ହୋଇଯାଇଥିବା ଯୋଗୁଁ) ଘନୀଭୂତ ହୋଇଯାଉଥିବା ବାୟୁର ସ୍ଥାନ ପୂରଣ କରେ । ତେଣୁ ବାହ୍ୟ ସୁଡ଼ଙ୍ଗଗୁଡ଼ିକରେ ବରାବର ପୂର୍ବାଭି-ମୁଖରେ ପବନ ବହୁଥାଏ ଏବଂ ଦିନବେଳେ ଗହ୍ୱର ପଥବାଟେ ଉପର-ଆଡ଼କୁ ପବନ ବହେ । ଅବଶ୍ୟ ସୁଡ଼ଙ୍ଗଗୁଡ଼ିକର ବିଭିନ୍ନ ଆକୃତି ଯୋଗୁଁ ଏବଂ ଗୁହାମାନଙ୍କର ଅସାଧାରଣ କୌଶଳପୂର୍ଣ୍ଣ ନିର୍ମାଣ ଗୁଡ଼ିକ ଯୋଗୁଁ ଏହି ପବନ ପ୍ରବାହ ଅତିଶୟ ଜଟିଳ ପ୍ରକ୍ରିୟାରେ ଗତିକରେ······



# ୨୪

## ଚାନ୍ଦ୍ରିକମାନଙ୍କର ପ୍ରାକୃତିକ ବୃତ୍ତାନ୍ତ

ଷଷ୍ଠରୁ ଷୋଡ଼ଶ ପର୍ଯ୍ୟନ୍ତ କେଭରର ବାର୍ତ୍ତାଗୁଡ଼ିକ ଏପରି ଭଙ୍ଗାଭଙ୍ଗା ହୋଇଆସୁଛି ଓ ସେଥିରେ ଏତେ ପୁନରୁକ୍ତି ଅଛି ଯେ ସେଗୁଡ଼ିକୁ ଗୋଟିଏ ଧାରାବାହିକ ବିବରଣ କୁହାଯାଇପାରିବ ନାହିଁ । ଅବଶ୍ୟ ସେଗୁଡ଼ିକ ବୈଜ୍ଞାନିକ ରିପୋର୍ଟରେ ସମ୍ପୂର୍ଣ୍ଣରୂପେ ସ୍ଥାନ ପାଇଥିବ, କିନ୍ତୁ ପୂର୍ବ ପରିଚ୍ଛେଦରେ ଯେପରି କରାଯାଇଛି ଏହି ପରିଚ୍ଛେଦରେ ମଧ୍ୟ ସେହିପରି କେତେକାଂଶ ଉଲ୍ଲେଖ କରି ଓ ସଂକ୍ଷେପ କରି କହିଲେ ସୁବିଧା ହେବ । ଆମେ ପ୍ରତ୍ୟେକ ଶବ୍ଦକୁ ଯତ୍ନସହକାରେ ପରୀକ୍ଷା କରି ଦେଖିଛୁଁ, ଏବଂ ଗ୍ରନ୍ଥ ବ୍ୟାପାରରେ ମୋର ଯନ୍ତ୍ରକର୍ଷିତ ସ୍ମରଣ ଓ ଧାରଣା ବାର୍ତ୍ତାଗୁଡ଼ିକକୁ ତର୍ଜମା କରିବାରେ ଆମକୁ ଅନେକ ସାହାଯ୍ୟ କରିଛି, ନତୁବା ସେଗୁଡ଼ିକର ଅର୍ଥ ଗ୍ରହଣ କରିବା ସମ୍ପୂର୍ଣ୍ଣ ଅସାଧ୍ୟ ହୋଇପଡ଼ିଥାନ୍ତା । ପ୍ରାଣୀ ବିଶେଷରୂପେ ସ୍ୱଭାବତଃ ଆମର ମନ ଚନ୍ଦ୍ରଜଗତର ପ୍ରାକୃତିକ ଗଠନ ଅପେକ୍ଷା ସେଠାରେ ଥିବା ଅଦ୍ଭୁତ କୀଟ ସମ୍ପ୍ରଦାୟ ପ୍ରତି ଅଧିକତର ଆକୃଷ୍ଟ ହେବା କଥା । କେଭରର୍ କଥାରୁ ଜଣାପଡ଼ୁଥିଲା, ସେ ସେମାନଙ୍କ ମଧ୍ୟରେ ମହାମାନ୍ୟ ଅତିଥିରୂପେ ବାସ କରୁଥିଲା ।

ମୁଁ ଏକଥା ଆଗରୁ ବୁଝାଇଦେଇଛି ଯେ, ଯେଣୁ ଚାନ୍ଦ୍ରିକମାନେ ଚତୁଃହସ୍ତପଦ ବିଶିଷ୍ଟ ଅଟନ୍ତି ଏବଂ ସଳଖ ଭାବରେ ଛିଡ଼ାହୁଅନ୍ତି, ତେଣୁ ଏହି କ୍ଷେତ୍ରରେ ମନୁଷ୍ୟମାନଙ୍କ ସହିତ ସେମାନଙ୍କର ସାଦୃଶ୍ୟ ଅଛି । କିନ୍ତୁ ସେମାନଙ୍କର ମସ୍ତକର ସାଧାରଣ ଆକୃତି ଏବଂ ଶ୍ୱନ ଭାଗ ହୋଇ ଯୋଡ଼ାହୋଇଥିବା ହସ୍ତପଦ, କୀଟମାନଙ୍କ ସହିତ ତୁଳନୀୟ ଅଟେ । ସେମାନଙ୍କର ସହଜ ଭଙ୍ଗୁର ଦୁର୍ବଳ ଦେହ ଉପରେ ଚନ୍ଦ୍ରର କ୍ଷୀଣତର ଅଭିକର୍ଷୀ ଶକ୍ତିର କି ବିଚିତ୍ର ପ୍ରତିକ୍ରିୟା ଘଟେ ତାହା ମଧ୍ୟ ମୁଁ

କହିପାରିଛୁ । ଏ ବିଷୟରେ ମୁଁ ଯାହା ଯାହା କହୁଛି କେଭର ସେ ସମସ୍ତ କଥା ସମର୍ଥନ କରିଛି । ସେ ସେମାନଙ୍କୁ "କଣ୍ଟ୍ରୁ" ନାମରେ ଅଭିହିତ କରିଛି, କିନ୍ତୁ ପ୍ରକୃତରେ ସେମାନେ ପୃଥିବୀର ଜୀବମାନଙ୍କରୁ କୌଣସି ଶ୍ରେଣୀର ଅନ୍ତର୍ଗତ ନୁହନ୍ତି । ସେ କହିଛି, "ମନୁଷ୍ୟମାନଙ୍କର ସୌଭାଗ୍ୟ ଯେ ପୃଥିବୀର କୀଟ-ଜାତୀୟ ଜୀବମାନଙ୍କର ଶରୀରର ଆକାର ବଢ଼ିବା ଅତି କ୍ଷୁଦ୍ର ହୋଇ ରହିଛି ।" ବାସ୍ତବିକ ପୃଥିବୀର ସର୍ବବୃହତ କୀଟ—ଅବଲୁପ୍ତ କମ୍ପା ଜୀବନ—ପ୍ରାୟ ଛ ଇଞ୍ଚ ବି ଲମ୍ବା ନୁହେଁ । "କିନ୍ତୁ ଏଠି, ଚନ୍ଦ୍ରର କ୍ଷୀଣତର ଅଭିକର୍ଷୀ ଶକ୍ତି ଯୋଗୁଁ, ଗୋଟିଏ ଜୀବ—ତାହା ଯେତିକି ପରିମାଣରେ, କୀଟ ସେତିକି ପରିମାଣରେ ମେରୁଦଣ୍ଡ ବିଶିଷ୍ଟ ଜୀବ ମଧ୍ୟ—ମନୁଷ୍ୟୋଚିତ ଓ ମନୁଷ୍ୟୋତ୍ତର ପରିସର ଲାଭ କରିବାକୁ ସକ୍ଷମ ହୋଇଛି ।"

କେଭର ସିମ୍ଭୁଜର ଉଲ୍ଲେଖ କରି ନାହିଁ, କିନ୍ତୁ ଗ୍ରନ୍ଥିକମାନଙ୍କ ବିଷୟରେ ତାର ବର୍ଣ୍ଣନା କ୍ରମାଗତ ଏହି ସିମ୍ଭୁଜ କଥା ମୋ ମନ ସମ୍ମୁଖରେ ଉପସ୍ଥାପନ କରୁଛି—ଏହାର ଅବିଶ୍ରାନ୍ତ କାର୍ଯ୍ୟମଗ୍ନତା, ବୁଦ୍ଧି ଓ ସାମାଜିକ ସଂଗଠନ, ଦେହର ଗଠନ, ବିଶେଷତଃ ଏହାର ସମାଜରେ ପୁରୁଷଜାତି ଓ ସ୍ତ୍ରୀଜାତି (ଯାହାକି ପ୍ରାୟ ସବୁ ପ୍ରାଣୀଙ୍କ ସମାଜରେ ବିଦ୍ୟମାନ) ଏହି ଦୁଇଟି ଲିଙ୍ଗ ବିଭାଗ ଛଡ଼ା ଅନ୍ୟ ଅନେକ ଲିଙ୍ଗହୀନ ଜୀବମାନଙ୍କର ଅସ୍ତିତ୍ୱ, ଯଥା ଶ୍ରମିକ, ସୈନ୍ୟ ଇତ୍ୟାଦି, ଯେଉଁମାନେ କି ପରସ୍ପରଠାରୁ ଗଠନ, ପ୍ରକୃତି, ଶକ୍ତି ଓ ବ୍ୟବହାରରେ ପୃଥକ୍ ଅଥଚ ସମସ୍ତେ ଏକ ବର୍ଗର ଅନ୍ତର୍ଗତ । ଏ ସମସ୍ତ ବିଷୟରେ ଗ୍ରନ୍ଥିକମାନଙ୍କ ସହିତ ସିମ୍ଭୁଜର ସାଦୃଶ୍ୟ ଅଛି । ଗ୍ରନ୍ଥିକ-ମାନଙ୍କ ମଧ୍ୟରେ ବି ଆକୃତିଗତ ଭେଦ ଅତି ବହୁଳ ଅଟେ । ଅବଶ୍ୟ, ସେମାନେ କେବଳ ସିମ୍ଭୁଜଠାରୁ ଆକାରରେ ତେର ବଡ଼ ନୁହନ୍ତି, ବୁଦ୍ଧି, ସାମାଜିକ ଜ୍ଞାନ, ଓ ଚରିତ୍ରରେ ମନୁଷ୍ୟଠାରୁ ମଧ୍ୟ ତେର ବଡ଼ (ଅନ୍ତତଃ, କେଭରର ତାହା ମତ) । ତାଛଡ଼ା, ସିମ୍ଭୁଜମାନଙ୍କ ମଧ୍ୟରେ କେବଳ ତିନି ଚାରି ପ୍ରକାର ବିଭିନ୍ନ ଚେହେରାର ସିମ୍ଭୁଜ ଦେଖାଯାନ୍ତି, କିନ୍ତୁ ଗ୍ରନ୍ଥିକମାନଙ୍କ ମଧ୍ୟରେ ଚେହେରାର ବିଭିନ୍ନତା ସଂଖ୍ୟାତୀତ । ଚନ୍ଦ୍ରର ବାହ୍ୟତ୍ୱକ୍‌ରେ ମୁଁ ଯେଉଁ ଗ୍ରନ୍ଥିକମାନଙ୍କୁ ଦେଖିଥିଲି, ସେମାନଙ୍କର ପରସ୍ପର ସହିତ କେତେ

ବଡ଼ ପାର୍ଥକ୍ୟ ଥିଲା ତାହା ମୁଁ ବୁଝାଇବାକୁ ଚେଷ୍ଟାକରୁଛି; ଅତି ବ୍ୟାପକ ଭାବରେ ଭିନ୍ନ ଜାତିର ମନୁଷ୍ୟମାନେ ପରସ୍ପରଠାରୁ ଯେତିକି ପୃଥକ୍, ସେହି ଗ୍ରିନ୍ଦ୍ରିକମାନଙ୍କର ଆକାରଗତ ଓ ଅନୁପାତଗତ ବିଭିନ୍ନତା ଅନ୍ତତଃ ସେତିକି ବ୍ୟାପକ ଭାବରେ ପୃଥକ। କିନ୍ତୁ କେଉଁ ଯେଉଁ ବିରାଟ ବିଭିନ୍ନତା କଥା କହୁଛି, ତା ତୁଳନାରେ ମୁଁ ଯେଉଁ ପାର୍ଥକ୍ୟ ଲକ୍ଷ୍ୟ କରିଥିଲି ତାହା କିଛି ନୁହେଁ କହିଲେ ଚଳେ। ମୁଁ ବାହାର ପଟର ଯେଉଁ ଗ୍ରିନ୍ଦ୍ରିକମାନଙ୍କୁ ଦେଖିଥିଲି ସେମାନେ ପ୍ରକୃତରେ ସମଜାତୀୟ ବୃତ୍ତି ଅନୁସରଣ କରୁଥିଲେ, ଯଥା: ଗ୍ରିନ୍ଦ୍ର-ଗୋରୁ ଚରାଇବା, କଂସେଇ କାମ କରିବା, ଗ୍ରାଲ୍ ଛଡ଼ାଇବ, ଇତ୍ୟାଦି। କିନ୍ତୁ ଚନ୍ଦ୍ର ଭିତରେ ମୋରି ଅଗୋଚରରେ ଅନ୍ୟ ଅନେକ ଧରଣର ଗ୍ରିନ୍ଦ୍ରିକ ବି ଥିଲେ। ସେମାନଙ୍କର ଆକାର ଭିନ୍ନ, ଭିନ୍ନ ଭିନ୍ନ ଅଙ୍ଗର ପରସ୍ପର ସହିତ ଆକାରଗତ ପାର୍ଥକ୍ୟରେ ବି ସେମାନେ ଭିନ୍ନ, କ୍ଷମତା ଓ ରୂପରେ ଭିନ୍ନ, କିନ୍ତୁ ତଥାପି ସେମାନେ ବିଭିନ୍ନ ବର୍ଗର ଜୀବ ନୁହନ୍ତି, ସେମାନେ ଏକ ବର୍ଗର ବିଭିନ୍ନ ଚେହେରାର ଜୀବ, ଏବଂ ସେମାନଙ୍କର ସମସ୍ତ ପ୍ରଭେଦ ସତ୍ତ୍ୱେ ଏପରି ଗୋଟିଏ ସାଦୃଶ୍ୟ ସମସ୍ତଙ୍କଠି ଅଛି, ଯାହାକି ସେମାନଙ୍କର ବିଶିଷ୍ଟ ଏକତା କଥା ଜଣାଇଦିଏ। ଚନ୍ଦ୍ର ପ୍ରକୃତରେ ଗୋଟିଏ ବିରାଟ ପିମ୍ପୁଡ଼ି-ହୁଙ୍କା ପରି, କିନ୍ତୁ କେବଳ ଚାରି ପାଞ୍ଚ ପ୍ରକାରର ପିମ୍ପୁଡ଼ି ରହିବା ପରିବର୍ତ୍ତେ ସେଠାରେ ଶହ ଶହ ବିଭିନ୍ନ ପ୍ରକାରର ପିମ୍ପୁଡ଼ି ବାସକରନ୍ତି, ଏବଂ ଗୋଟିଏ ପ୍ରକାରରୁ ଅନ୍ୟ ପ୍ରକାର ମଧ୍ୟରେ ସବୁ ସାହ୍ୟା ଦେଖାଯାଏ।

ଏସବୁ କଥା କେଉଁର ଖୁବ୍ ଶୀଘ୍ର ଆବିଷ୍କାର କରିପାରିଲି। କେଉଁର ପରିଷ୍କାର ରୂପେ ନ ଜଣେଇଲେ ମଧ୍ୟ ମୁଁ ଅନୁମାନ କରିପାରୁଛି ଯେ, "ବୃହତ୍ତର ମସ୍ତିଷ୍କ-ଆବରଣ (ମୁଣ୍ଡ ?) ଏବଂ କ୍ଷୁଦ୍ରତର ଗୋଡ଼"ଥିବା ସେଇ ଅନ୍ୟ ଦୁଇ ଜଣ ଗ୍ରିନ୍ଦ୍ରିକଙ୍କ ଆଦେଶ କ୍ରମେ ଗ୍ରିନ୍ଦ୍ର ପହିଡ଼ମାନେ ତାକୁ ଧରିଲେ। ଅଙ୍କୁଶ କେଞ୍ଚା ଖାଇ ମଧ୍ୟ ସେ ଚାଲି ନ ପାରିବାର ଦେଖି ସେମାନେ ତାକୁ ଅନ୍ଧକାର ଭିତରକୁ ଟେକିନେଇଗଲେ, ଗୋଟିଏ ସରୁ ତକ୍ତାଭଳି ପୋଲ (ମୁଁ ଯେଉଁ ପୋଲ ଉପରେ ଯିବାକୁ ନାରାଜ ହୋଇଥିଲି ତାହା ସେହି ପୋଲ ହେବା ସମ୍ଭବ) ପାରହେଲେ। ତାପରେ ତାକୁ ଯେଉଁ

ଜନୈଷ ଦୂର୍ଗରେ ଥୋଇଦେଲେ ତାହା ପ୍ରଥମେ ଗୋଟିଏ ଲଣ୍ଠନ ବୋଲି ବୋଧ ହେଲା, କିନ୍ତୁ ପ୍ରକୃତରେ ତାହା ଥିଲା ଗୋଟିଏ ବେଲୁନ (ଅବଶ୍ୟ ଅନ୍ଧକାର ଯୋଗୁଁ ଏହା ଆଦୌ ଆମର ଦୃଷ୍ଟିଗୋଚର ହୋଇ ନଥିଲା), ଏବଂ ଯାହା ମତେ ଡଙ୍ଗା ଉପରେ ଶୂନ୍ୟ ଭିତରକୁ ଯିବାପରି ମନେ ହୋଇଥିଲା ତାହା ଥିଲା ପ୍ରକୃତରେ ବନ୍ଦରଭିତରକୁ ଯାତ୍ରା । ବେଲୁନରେ ବସି ସେ କ୍ରମାଗତ ଉଜ୍ଜ୍ୱଳତର ହୋଇଉଠୁଥିବା ଗୁନ୍ଦ୍ର ବନ୍ଦର ଭିତରକୁ ଓହ୍ଲାଇଲା । ପ୍ରଥମେ ସେମାନେ ନିଃଶବ୍ଦରେ ଓହ୍ଲାଉଥିଲେ—ଅବଶ୍ୟ ଗୃଦ୍ଧ କମାନ୍ଙ୍କର କେଁ କଣ୍ଠର କଥା ନ ଧରିଲେ— ତାପରେ ପବନରେ ମର୍ମର ଧ୍ୱନି ଭିତରେ ଓହ୍ଲାଇବାକୁ ଲାଗିଲେ । ଅଳ୍ପକ୍ଷଣ ପରେ ଗାଢ଼ ଅନ୍ଧାରରେ ତାର ଆଖି ଏତେ ଦୂର ଅଭ୍ୟସ୍ତ ହୋଇଗଲା ଯେ ସେ କ୍ରମେ କ୍ରମେ ତାର ଚତୁର୍ଦ୍ଦିଗର ପଦାର୍ଥ ଗୁଡ଼ିକୁ ସ୍ପଷ୍ଟତର ରୂପେ ଦେଖିପାରିଲା, ପ୍ରଥମେ ଯାହା ଝାପସା ଥିଲା ଶେଷରେ ତାହା ରୂପ ଲାଭ କଲା ।

କେଭର ତାହାର ସପ୍ତମ ବାକ୍ୟରେ କହୁଛି, "ଗୋଟିଏ ଅନ୍ଧ ବିଶାଳ ଜଳାକୃତ ସ୍ଥାନ କଳ୍ପନା କର, ତାହା ମାଇଲର ଗୁରୁ ଭାଗରୁ ଭାଗେ ଚଉଡ଼ା ହେବ, ପ୍ରଥମେ ତାହା କ୍ଷୀଣାଲୋକିତ ହୋଇଛି, ପରେ ଉଜ୍ଜ୍ୱଳତର ହୋଇ ଉଠିଛି, ତାର କଡ଼ରେ ବଡ଼ ବଡ଼ ମଞ୍ଚସବୁ ମୋଡ଼ି ମୋଡ଼ି ହୋଇ ତଳକୁ ଆସିଛନ୍ତି ଏବଂ ଶେଷରେ ଖୁବ ତଳେ ବିପୁଳ ଜାଲମାନରେ ଅଦୃଶ୍ୟ ହୋଇ ଯାଇଛନ୍ତି । କ୍ରମେ ତାହା ଆହୁରି ଉଜ୍ଜ୍ୱଳ ହୋଇଉଠିଛି, କିନ୍ତୁ କିପରି ଓ କାହିଁକି ଜଣାଯାଉ ନାହିଁ । କୌଣସି ପ୍ରକାଣ୍ଡ ଗିରିର କୂପ କିମ୍ବା ଲଣ୍ଠନର ଗହ୍ୱର ଭିତରକୁ ତୁମେ ଯେପରି ଉପରୁ ଅନାଇ ଦେଖୁଛ, ତାକୁ ଶହେ ଗୁଣ ବଡ଼ କରି କଳ୍ପନା କର । ମନେ କର, ତୁମେ ଗୋଧୂଳି ସମୟରେ ନେଳିଆ ଚଷମା ଭିତର ଦେଇ ତାହାକୁ ଦେଖୁଛ । ସେହି କୂପ ବା ଗହ୍ୱର ଭିତରକୁ ତୁମେ ଅନାଉଛ ବୋଲି କଳ୍ପନା କର; ଏବଂ ତା ସଙ୍ଗେ ସଙ୍ଗେ କଳ୍ପନା କର ଯେ ତୁମର ଦେହ ଅସାଧାରଣ ଭାବେ ହାଲୁକା ହୋଇ ଯାଇଛି, ଏବଂ ପୃଥିବୀରେ ଯେପରି ମୁଣ୍ଡ ବୁଲାଇବା ସେପରି କିଛି ହେଉ ନାହିଁ —ତାହାହେଲେ ମୋର ଦର୍ଶନର ପ୍ରଥମ ଧାରଣା ତୁମେ ଉପଲବ୍ଧି କରିପାରିବ ।

କଳ୍ପନା କର, ଏହି ପ୍ରକାଣ୍ଡ ଗହ୍ୱରକୁ ଯେଉଁ ଗୋଟିଏ ଚଉଡ଼ା ଝୁଲ-ରାସ୍ତା ମୋଡ଼ି ମୋଡ଼ି ହୋଇ ତଳକୁ ଯାଇଛି; କିନ୍ତୁ ତାହା ଏତେ ବେଶି ଗର୍ତ୍ତାଣି ହୋଇଛି ଯେ ପୃଥିବୀରେ ସେପରି ସମ୍ଭବ ହୁଅନ୍ତା ନାହିଁ । ଏହି ଗର୍ତ୍ତାଣି ରାସ୍ତାର ଧାରରେ କେବଳ ଗୋଟିଏ ଗ୍ରେଟ ପାଚେରୀ ରହି ତାକୁ ଗହ୍ୱରରୁ ରକ୍ଷାକରିଛି, ଏବଂ ଦୁଇ ମାଇଲ ତଳ ପର୍ଯ୍ୟନ୍ତ ଏକାଧ ଯାଇ ତାପରେ ଅଦୃଶ୍ୟ ହୋଇଯାଇଛି ।

"ଉପରକୁ ମୁଣ୍ଡ ଟେକି ମୁଁ ଠିକ ତଳ ଦୃଶ୍ୟର ପ୍ରତିରୂପ ଦେଖିପାରିଲି । ଅବଶ୍ୟ ଗୋଟିଏ ଉଭ୍ଙ୍ଗ ଶୁଣ୍ଡାକୃତି ପଦାର୍ଥ ଭିତରକୁ ଚାହିଁଲେ ଯେପରି ଦେଖାଯାନ୍ତା, ସେହି ଦୃଶ୍ୟ ସେହିପରି ଦେଖାଯାଉଥିଲା । ଗହ୍ୱର ଭିତରକୁ ପବନର ସ୍ରୋତ ବହିଆସୁଥିଲା, ଏବଂ ଖୁବ ଉପରେ ମୁଁ ଗୃଧ୍ରଟାମାନଙ୍କର ହମ୍ବାରଡ଼ି ଶୁଣିପାରିଲି । ସେହି ରଡ଼ି କ୍ରମଶଃ କ୍ଷୀଣତର ହୋଇ ଯାଉଥିଲା । ବାହାରପଟେ ସେମାନଙ୍କର ଚରିବା ଶେଷ ହୋଇଥିବାରୁ ସେମାନଙ୍କୁ ସନ୍ଧ୍ୟାରେ ପୁଣି ଭିତରକୁ ଅଡ଼େଇ ଅଣାହେଉଥିଲା । ମୋଡ଼ି ମୋଡ଼ିକିଆ ଝୁଲ-ରାସ୍ତା ଗୁଡ଼ିକର ତଳେ ଉପରେ ବହୁସଂଖ୍ୟକ ବିବର୍ଣ୍ଣ ଗୃଧ୍ରକ ଆପଣା ଦେହରୁ କ୍ଷୀଣ ଆଲୋକ ବିଚ୍ଛୁରିତ କରି ଏଣେ ତେଣେ ଯା ଆସ କରୁଥିଲେ । କେହି କେହି ଆମର ଆବିର୍ଭାବକୁ ଲକ୍ଷ୍ୟ କରୁଥିଲେ, ଅନ୍ୟମାନେ ନିଜ ନିଜ କାମରେ ବ୍ୟସ୍ତ ଭାବରେ ଚାଲିଯାଉଥିଲେ ।

"ହିମ ଶୀତଳ ପବନ ସ୍ରୋତରେ ଗୋଟିଏ ତୁଷାର କଣିକା ପ୍ରକୃତରେ ଭାସିଆସିଲା, କିମ୍ବା ଭାସି ଆସିବା ପରି ମତେ ଲାଗିଲା । ଏବଂ ତାପରେ ତୁଷାର ଖଣ୍ଡ ଖସିପଡ଼ିଲା ପରି ଗୋଟିଏ କ୍ଷୁଦ୍ର ଆକୃତି, ଗୋଟିଏ ଗ୍ରେଟ ମାନବ-କୀଟ ପାରାସୁଟ୍ ଧରି ଓହ୍ଲାଇ ଖୁବ ଦ୍ରୁତଗତିରେ ଚନ୍ଦ୍ରର କେନ୍ଦ୍ରସ୍ଥାନ ଆଡ଼କୁ ଖସିପଡ଼ିବାକୁ ଲାଗିଲା ।

"ମୁଁ କୌଣସି ଜିନିଷକୁ ଚାହିଁଲି ପରି ଭଙ୍ଗୀରେ ମୋର ମୁଣ୍ଡ ଘୂରେଇଲି, ତାହା ଦେଖି ମୋ ପାଖରେ ବସିଥିବା ବଡ଼ ମୁଣ୍ଡିଆ ଗୃଧ୍ରକ ତାର ଯୋଡ଼ପାହାର ଭଳିଆ 'ହାତ' ଦ୍ୱାରା ନିର୍ଦ୍ଦେଶ କଲା ଏବଂ ଅନେକ ତଳେ ଘାଟ ପରି ଗୋଟିଏ ଜିନିଷ କ୍ରମେ କ୍ରମେ ଦୃଷ୍ଟିଗୋଚର ହେଉଥିବାର

ଦେଖାଉଥିଲା; ଗୋଟିଏ ଓଲ୍ଟାଇବାର ଯାନ୍ତ୍ରି ଶୂନ୍ୟରେ ଝୁଲିଲା ପରି ମନେହେଉଥିଲା । ତାହା ଯେତେ ନିକଟେଇ ଆସିଲା ଆମର ଗତି ସେତେ ମନ୍ଥର ହୋଇଗଲା, ଏବଂ ଅଳ୍ପ କେତେକ ମୁହୂର୍ତ୍ତ ପରେ ତାର ସମାନ୍ତରାଳରେ ପହଞ୍ଚିଗଲୁ ଏବଂ ଆମର ଗତି ରୁଦ୍ଧ ହେଲା । ଗୋଟିଏ ଦଉଡ଼ି ଫୋପାଡ଼ିଦିଆଗଲା ଏବଂ ତଳେ କେହି ଜଣେ ତାକୁ ଧରିଲା, ତାପରେ ମୁଁ ଦେଖିଲି, ବିରାଟ ସୃନ୍ଦ୍ର ଜନତା ନିକଟକୁ ମୁଁ ଟଣାହୋଇ ଯାଉଛି । ସେମାନେ ମୋତେ ଦେଖିବା ପାଇଁ ଠେଲି ପେଲି ହେଉଥିଲେ ।

"ସେହି ଜନତା ଦେଖିବାକୁ ଏପରି ଅଦ୍ଭୁତ ଥିଲା ଯେ ନିଜ ଆଖିକୁ ବିଶ୍ୱାସ କରି ହେଉ ନ ଥିଲା । ସୃନ୍ଦ୍ର ଜୀବମାନଙ୍କର ବିରାଟ ବିଭିନ୍ନତା ହଠାତ୍ ପ୍ରଚଣ୍ଡ ଭାବରେ ମୋର ଦୃଷ୍ଟି ଆକର୍ଷଣ କଲା ।

"ବାସ୍ତବିକ ସେହି ବ୍ୟସ୍ତ ଜନତା ଭିତରେ ସମାନ ଚେହେରାର ଜୀବ ଦୁଇଜଣ ବି ନ ଥିଲେ, ସେମାନେ ଆକୃତିରେ ବିଭିନ୍ନ ଥିଲେ, ଆକାରରେ ବିଭିନ୍ନ ଥିଲେ; ସୃନ୍ଦ୍ରଙ୍କ ଚେହେରାରେ ଯେଉଁ ବିଭିନ୍ନ ବିଶେଷିକାମୟ ପରିବର୍ତ୍ତନ ଘଟିଛି ସେ ସମସ୍ତର ଦୃଷ୍ଟାନ୍ତ ସେମାନଙ୍କ ମଧ୍ୟରେ ବିଦ୍ୟମାନ ଥିଲା । କାହାର କାହାର କୌଣସି ଅଙ୍ଗ ଫୁଲିଉଠି ଓହଳି ପଡ଼ିଥିଲା, କେହି କେହି ବା ସେମାନଙ୍କର ସାଥୀ ଭାଇଙ୍କର ଗୋଡ଼ ସନ୍ଧିରେ ଗଳିଯାଉଥିଲେ । ସମସ୍ତଙ୍କଠାରୁ କୀଟର କିମ୍ଭୂତ କିମାକାର ଓ ବିଚିତ୍ରକର ରୂପର ଆଭାସ ମିଳୁଥିଲା, କିନ୍ତୁ ଏପରି ଗୋଟିଏ କୀଟ ଯାହାକି କୌଣସି ପ୍ରକାରେ ମାନବ ରୂପକୁ ଉପହାସ କରିବାର କୌଶଳ ଲାଭ କରିପାରିଛି; ଏବଂ ପ୍ରତ୍ୟେକ ସୃନ୍ଦ୍ରଙ୍କର ବିଶେଷ ବିଶେଷ ଅଙ୍ଗ ଅବିଶ୍ୱାସ ଭାବରେ ଅତି ବର୍ଦ୍ଧିତ ହୋଇ ଉଠିଥିଲା, ଜଣକର ଥିଲା ଗୋଟିଏ ବିରାଟ ଦକ୍ଷିଣ ଭୁଜ, ଗୋଟିଏ ପ୍ରକାଣ୍ଡ ନାହୁଡ଼ ପରି; ଜଣକର କେବଳ ଗୋଡ଼ଚଢ଼ା ଆଉ କିଛି ଜଣା ପଡ଼ୁ ନ ଥିଲା. ଲମ୍ବା ଲମ୍ବା ବାଉଁଶ ଗୋଡ଼ ଉପରେ ଛିଡ଼ା ହେଲାପରି ସେ ଦିଶୁଥିଲା; ଆଉ ଜଣଙ୍କର ମୁଖାବରଣର ଶେଷଭାଗ ସାମନାକୁ ଟେକିହୋଇ ନାକପରି ଦେଖାଯାଉଥିଲା, ତେଣୁ ତାକୁ ଦେଖି ପ୍ରଥମେ ଅବିକଳ ମଣିଷ ବୋଲି ଭ୍ରମ ହେଉଥିଲା । କିନ୍ତୁ ତାର ହାବଭାବହୀନ ମେଲା ପାଟି ଦେଖିଲେ ସେହି ଭ୍ରମ

ଦୂର ହୋଇଯାଉଥିଲା । ସୃଷ୍ଟ ଓଗାରୁ ଜଗାନ୍ମାନଙ୍କର ଅବିକଳ ପ୍ରତିରୂପ୍ୟ (ଅବଶ୍ୟ କୀଟର ଦଂଶୋନୋଷ୍ଠ ଓ ସ୍ପର୍ଶକ ବାଦ ଦେଇ ) ମସ୍ତକ ପଶ୍ଚବର୍ତ୍ତୀ ବର୍ତ୍ତିମାନ ସମ୍ପୂର୍ଣ୍ଣ ଭିନ୍ନ ଧରଣର ମୁଣ୍ଡମାନ ଦେଖିବାକୁ ମିଳିଲା; କେଉଁ ମୁଣ୍ଡ ଚଉଡ଼ା ଓ ଚିକ୍କଣ, କେଉଁଟା ବା ଉଚ୍ଚ ଓ ସରୁ; କେଉଁ ମୁଣ୍ଡର ଚମଡ଼ା ଜୁଳୁଜୁଳା ଶିଙ୍ଗ ପରି ଗୋଜା ଗୋଜା ହୋଇ ଅଦ୍ଭୁତ ଦିଶୁଥିଲା, କେଉଁ ମୁଣ୍ଡରେ ଜଣ ଉଠି ଦୁଇଭାଗ ହୋଇଥିଲା, କେଉଁଟା ବା କମ୍ଭୂତ କିମାକାର ମଣିଷର ମୁଣ୍ଡ ପରି ଦିଶୁଥିଲା । ଗୋଟିଏ ମୁଣ୍ଡ ଏପରି ବିରୂପ ଦିଶୁଥିଲା ଯେ ତାହା ସହଜରେ ବାରି ହୋଇ ଯାଉଥିଲା । କାହାର କାହାର ମସ୍ତିଷ୍କ-ଖୋଳପା ରବର ଫୋଟବାପରି ଫୁଲି ଉଠି ବିଶାଳ ଆକାର ଧାରଣ କରିଥିଲା, ତାର ଅନୁପାତରେ ମୁଖାବରଣ ଅତି କ୍ଷୁଦ୍ର ହୋଇଯାଇଥିଲା । କେତେକଙ୍କର ଚେହେରା ଅତି ଆଶ୍ଚର୍ଯ୍ୟଜନକ ଥିଲା, ଦେହ ଗୋଲ ହୋଇ ଫୁଲି ଯାଇ ମୁଣ୍ଡ ତା ଅନୁପାତରେ ଛୁଞ୍ଚିପରି ସାନ ହୋଇଯାଇଥିଲା; କୌଣସି କୌଣସି ବିଚିତ୍ର, ସୂକ୍ଷ୍ମ ଜୀବଙ୍କର ତଳ ପାଟି ପେଟହେଁକାଳୀ ଭଳିଆ ଏଡ଼େ ଲମ୍ବା ହୋଇ ଯାଇଥିଲା ଯେ ମନେ ହେଉଥିଲା ସେମାନଙ୍କର ଦେହ ତିଆରି ହୋଇଛି କେବଳ ତା ଉପରେ ଏହି ପେଟହେଁକାଳୀ ଥୁଆଯିବ ବୋଲି । କିନ୍ତୁ ଗୋଟିଏ ମୁହୂର୍ତ୍ତିପାଇଁ ମତେ ଯାହା ସବୁଠୁଁ ଅଦ୍ଭୁତ ବୋଧ ହେଲା, ତାହା ଏହି ଯେ ସେହି ଭୂଗର୍ଭସ୍ଥ ଜଗତର, ବହୁ ମାଇଲବ୍ୟାପୀ ପଥରସ୍ତରଦ୍ୱାରା ଖରା କିମ୍ବା ବର୍ଷାରୁ ଆଚ୍ଛାଦିତ ହୋଇଥିବା ସେହି ଜଗତର ଦୁଇତିନି ଜଣ ଭୌତିକ ବାସିନ୍ଦା ସେମାନଙ୍କର ଶୁଣ୍ଢପରି ହାତରେ ଛତା ଧରିଥିଲେ !—ଅବିକଳ ପୃଥିବୀର ଛତା ପରି ଛତା ? ତାପରେ, ମୁଁ ଯେଉଁ ପାରାସୁଟ୍ ଧାରୀଙ୍କୁ ଓହ୍ଲାଉଥିବାର ଦେଖିଥିଲି, ସେମାନଙ୍କ କଥା ମୋର ମନେପଡ଼ିଗଲା ।

"ଏପରି ଅବସ୍ଥାରେ ପୃଥିବୀର ଜନତା ଯେପରି ବ୍ୟବହାର କରନ୍ତି ଏହି ଚନ୍ଦ୍ରର ବାସିନ୍ଦାମାନେ ଠିକ୍ ସେହିପରି ବ୍ୟବହାର କରୁଥିଲେ । ସେମାନେ ଠେଲାପେଲା ହୋଇ ପରସ୍ପରକୁ ଧକ୍କାମାରି ଆଡ଼େଇଦେଉଥିଲେ । ଏପରିକି ପରସ୍ପରର କାନ୍ଧ ଉପରେ ଚଢ଼ି ମତେ ଦେଖିବାକୁ ଚେଷ୍ଟା କରୁଥିଲେ । ପ୍ରତି ମୁହୂର୍ତ୍ତିରେ ସେମାନଙ୍କର ସଂଖ୍ୟା ବଢ଼ି ଯାଉଥିଲା, ଏବଂ ସେମାନେ ଅଂହୁଙ୍କ

ବ୍ୟଗ୍ରସ୍ୱରରେ ମୋର ରକ୍ଷୀମାନଙ୍କର ଚକିତ ଉପରେ ମାତ୍ର ପଡୁଥିଲେ”—ଏହାର ଅର୍ଥ ଜଣ, କେଉଁର ବୁଝାଇ କହୁନାହିଁ—“ପ୍ରତି ମୁହୂର୍ତ୍ତରେ ଅନ୍ଧାର ଭିତରୁ ନୂତନ ନୂତନ ଗ୍ଲୁବ୍‌ଙ୍କ ଆଗକୁ ଆସି ମୋର ବିସ୍ମୟ ବିସ୍ଫାରିତ ଦୃଷ୍ଟି ଆକର୍ଷଣ କରୁଥିଲେ । କିଛି କ୍ଷଣ ପରେ ରକ୍ଷୀମାନେ ମତେ ହାତ ଠାରିଲେ, ଧରାଧରି କରି ଏକପ୍ରକାର ଡୋଲି ଭିତରେ ବସେଇ ଦେଲେ, ଏବଂ ମଜଭୁତ ହାଡ଼ବାଲା ବାହକମାନେ ତାକୁ କାନ୍ଧରେ ବୋହିନେଲେ । ଏହାପରେ ଭାବରେ ବୁହା ହୋଇ ମୁଁ ମ୍ଳାନ ଆଲୋକରେ ବିଶାଳ ଜନ ସମୁଦ୍ର ଭିତର ଦେଇ ଚନ୍ଦ୍ରରେ ମୋପାଇଁ ନିର୍ଦ୍ଦିଷ୍ଟ କୋଠରୀଆଡ଼କୁ ଗଲି । ମୋର ଚତୁର୍ଦ୍ଦିଗରେ କେବଳ ଆଖି, ମୁହଁ, ମୁଖା, ଗୋବର ପୋକର ଡେଣା ଘଷି ହେଲାପରି ଚମତ୍କାର ମସ୍ ମସ୍ ଶବ୍ଦ, ଏବଂ ଗ୍ଲୁବ୍‌ଙ୍କ କଣ୍ଠର ଝିଙ୍କାରିସ୍ୱନ ଓ ମେଣ୍ଢା ବ୍ୟାପକ ବିପୁଳ ଧ୍ୱନି ·····

ଆମେ ବୁଝିପାରିଲୁ ଯେ ତାକୁ ଗୋଟିଏ “ଛକୋଣିଆ କୋଠରୀ”କୁ ନିଆଗଲା, ଏବଂ ସେଇଠାରେ କିଛିଦିନ ପର୍ଯ୍ୟନ୍ତ ତାକୁ ଅଟକ ରଖାଗଲା । ପରେ ତାକୁ ଅନେକ ବେଶୀ ସ୍ୱାଧୀନତା ଦିଆଗଲା; ପୃଥିବୀର କୌଣସି ସଭ୍ୟ ସହରରେ ଲୋକଙ୍କୁ ଯେତିକି ସ୍ୱାଧୀନତା ମିଳେ ତାକୁ ପ୍ରାୟ ସେତିକି ସ୍ୱାଧୀନତା ମିଳିଲା । ସେହି ରହସ୍ୟାଚ୍ଛନ୍ନ ବ୍ୟକ୍ତି, ଯେଉଁ ଚନ୍ଦ୍ରର ଶାସକ ଓ କର୍ତ୍ତା, ତାକୁ ପହରା ଦେବାପାଇଁ ଓ ପର୍ଯ୍ୟବେକ୍ଷଣ କରିବାପାଇଁ, ଏବଂ ଯେତେ ଦୂର ସମ୍ଭବ ତା ସହିତ ମାନସିକ ଯୋଗାଯୋଗ ସ୍ଥାପନ କରିବାପାଇଁ ଦୁଇଜଣ “ବଡ଼ମୁଣ୍ଡିଆ” ଗ୍ଲୁବ୍‌ଙ୍କୁ ନିଯୁକ୍ତ କଲେ । ଏବଂ, ଏହା ଆଶ୍ଚର୍ଯ୍ୟ ଓ ଅବିଶ୍ୱାସ୍ୟ ମନେ ହେଲେ ମଧ୍ୟ ଏଇ ଦୁଇଟି ଜୀବ, ଏହି ଦୁଇଟି କିମ୍ଭୂତ କିମାକାର ମାନବ-କୀଟ, ଗ୍ରହାନ୍ତରର ଏହି ଦୁଇଟି ପ୍ରାଣୀ, କିଛିଦିନ ପରେ ପୃଥିବୀର ଭାଷା ସାହାଯ୍ୟରେ କେଭରସହିତ କଥାବାର୍ତ୍ତା କଲେ ।

କେଭର କହୁଛି, ସେମାନଙ୍କର ନାମ ଫି-ଉ ଓ ସି-ପଫ୍ । ଫି-ଉ ପ୍ରାୟ ପାଞ୍ଚ ଫୁଟ ଉଚ୍ଚ; ତାର ୧୮ ଇଞ୍ଚ ଲମ୍ବର ସରୁ ଓ ଛୋଟ ଗୋଡ଼ ଯୋଡ଼ିଏ ଥିଲା, ଏବଂ ସାଧାରଣ ଚନ୍ଦ୍ରସ୍ଥ ଆକୃତିର କ୍ଷୁଦ୍ର ପାଦ ଯୋଡ଼ିଏ ଥିଲା । ତାହାର ଉପରେ ସ୍ଥାପିତ ତାର କ୍ଷୁଦ୍ର ଦେହ ହୃତ୍‌ପିଣ୍ଡର ସ୍ପନ୍ଦନରେ ଉଠୁଥିଲା ପଡୁଥିଲା । ତାର ଲମ୍ବା ନରମ, ବହୁଗଣ୍ଠିବିଶିଷ୍ଟ ହାତ ଦୁଇଟିର ଅଗ୍ରଭାଗ

ଶୁଣ୍ଡ଼ପରି ବୃତ୍ତବଦ୍ଧ ହୋଇଥିଲା, ଏବଂ ତାର ଦେହ ଅନ୍ୟମାନଙ୍କପରି ବହୁ ଗ୍ରନ୍ଥି ବିଶିଷ୍ଟ ହୋଇଥିଲେ ମଧ୍ୟ ଅତ୍ୟନ୍ତ ଖର୍ବ ଓ ମୋଟା ଥିଲା । ଲେଖକ କହୁଛନ୍ତି, "ତାର ମୁଣ୍ଡ ସାଧାରଣ ଚନ୍ଦ୍ରାସ୍ତ୍ର ଧରଣର ଥିଲା"—ଏହି କଥା ବୋଧହୁଏ ପୂର୍ବର କୌଣସି ବର୍ଣ୍ଣନାକୁ ନିର୍ଦ୍ଦେଶକରି ଲେଖକ କହୁଛନ୍ତି, କିନ୍ତୁ ସେ ବର୍ଣ୍ଣନା ମହାଶୂନ୍ୟରେ ହଜିଯାଇଛି—"କିନ୍ତୁ ଅଦ୍ଭୁତ ଭାବରେ ପରିବର୍ତ୍ତିତ ହୋଇଥିଲା । ତାର ହାବଭାବହୀନ ମୁହଁ ପାର୍ଶ୍ୱ ଅନ୍ୟମାନଙ୍କପରି ବରାବର ଆଁ ହୋଇ ରହୁଥିଲା । କିନ୍ତୁ ତାହା ଅତ୍ୟନ୍ତ କ୍ଷୁଦ୍ର ଥିଲା ଏବଂ ତଳଆଡ଼କୁ ନଇଁଥିଲା ଏବଂ ତାର ମୁଖାବରଣ କ୍ଷୁଦ୍ରାକୃତି ହୋଇ ଗୋଟିଏ ବଡ଼ ତୁଳନାଂକରେ ପରିଣତ ହୋଇଥିଲା । ତାର ଦୁଇ କଡ଼ରେ ଦୁଇଟି କ୍ଷୁଦ୍ର କ୍ଷୁଦ୍ର ଆଖି ଥିଲା ।

"ବାକି ମୁଣ୍ଡଟା ଫୁଲି ଉଠି ଗୋଟିଏ ପ୍ରକାଣ୍ଡ ପେଣ୍ଡୁର ରୂପ ଲାଭ କରିଥିଲା, ଏବଂ ବୃଦ୍ଧ ଗୋରୁ ଜଗାଳିମାନଙ୍କର ଲୋମଶ ଶୁଷ୍କ ଚର୍ମବସ୍ତୁ କୁଞ୍ଚିତ ପରିବର୍ତ୍ତେ ତାର ମୁଣ୍ଡର ଚମ ପତଳା ହୋଇ କେବଳ ଅତିସୂକ୍ଷ୍ମ ଝିଲ୍ଲିରେ ପରିଣତ ହୋଇଥିଲା । ସେହି ସୂକ୍ଷ୍ମ ଝିଲ୍ଲି ଭିତର ଦେଇ ତାର ସ୍ପନ୍ଦିତ ମସ୍ତିଷ୍କର ସଞ୍ଚରଣ ସ୍ପଷ୍ଟ ଦେଖାଯାଉଥିଲା । ପ୍ରକୃତରେ ସେ ଗୋଟିଏ ବିଶାଳ ଆକୃତିର ମସ୍ତିଷ୍କଧାରୀ ଜୀବ ଥିଲା, ଏବଂ ତାର ଶରୀରର ବାକି ଅଂଶ ମସ୍ତିଷ୍କ ତୁଳନାରେ କ୍ଷୁଦ୍ରାତି କ୍ଷୁଦ୍ର ଥିଲା ।"

ଅନ୍ୟ ଗୋଟିଏ ବର୍ଣ୍ଣନାରେ ଲେଖକ କହୁଛନ୍ତି ଯେ ଫି ଉକୁ ପଛ ପଟରୁ ଦେଖିଲେ ପୃଥିବୀକୁ ମୁଣ୍ଡେଇଥିବା ଆଟଲସ (ଗ୍ରୀକ୍ ବୀର) ପରି ଦେଖା ଯାଉଥିଲା । ସି-ପଫ୍‌ର ଚେହେରା ମଧ୍ୟ ଫି ଉ ପରି ଥିଲା, କିନ୍ତୁ ତାର ମୁହଁ ଅନେକ ପରିମାଣରେ ଓହ୍ଲାଇପଡ଼ିଥିଲା, ଏବଂ ତା'ର ବିଶାଳ ଆକୃତିର ମସ୍ତିଷ୍କ ଭିନ୍ନ ସ୍ଥାନରେ ସଂସ୍ଥାପିତ ହୋଇଥିବା ଯୋଗୁଁ ତାର ମୁଣ୍ଡ ଗୋଲାକାର ନ ହୋଇ, ନାସ୍ପାତିର ଆକାର ଲାଭ କରିଥିଲା—ଡେମ୍ଫ ତଳଆଡ଼କୁ ଥିଲା । ଏମାନଙ୍କ ଛଡ଼ା ଲେଖକର ସହଚରମାନଙ୍କ ମଧ୍ୟରେ ଡୋଲି ବାହକ-ମାନେ ଥିଲେ—ସେମାନଙ୍କର କାନ୍ଧ ବିଶାଳାକାର ଥିଲା ଏବଂ ସେମାନେ ସବୁବେଳେ ଗୋଟିଏ ପାଖକୁ ଅଣ୍ଟେଇ ହୋଇଥିଲେ—ମାକଡ଼ସା ପରି ସରୁ ଅଙ୍ଗପ୍ରତ୍ୟଙ୍ଗ ବିଶିଷ୍ଟ ବାଟ କଟାଳୀମାନେ ଥିଲେ, ଏବଂ ଗୋଟିଏ ମୋଟା ଗୋଡ଼ିଆ ଅନୁଚର ଥିଲା ।

ସେହି ଉପାୟରେ ଫି-ଭ ଓ ସି-ପଙ୍ଗ କଥାବାର୍ତ୍ତାର ସମସ୍ୟାକୁ ସମାଧାନ କରିବାକୁ ଚେଷ୍ଟା କଲେ ତାହା ଯଥେଷ୍ଟ ସ୍ପଷ୍ଟ । କେଭର ଯେଉଁ ଛ କୋଣିଆ କୋଠରୀରେ ଆବଦ୍ଧ ଥିଲା, ସେମାନେ ସେଠାକୁ ଆସିଲେ; ଏବଂ କାଗଜରୁ ଆରମ୍ଭ କରି କେଭର ଯାହା ଯାହା ଶବ୍ଦ କଲା ସେମାନେ ପ୍ରତ୍ୟେକ ଶବ୍ଦକୁ ଅନୁକରଣ କରିବାକୁ ଲାଗିଲେ । କେଭର ସେମାନଙ୍କର ଉଦ୍ଦେଶ୍ୟ ଖୁବ ଶୀଘ୍ର ବୁଝିପାରିଲା, ଏବଂ ଶବ୍ଦ ସବୁ ବାରମ୍ବାର ଉଚ୍ଚାରଣ କରି ସେଗୁଡ଼ିକର ଅର୍ଥବୋଧକ ପଦାର୍ଥମାନଙ୍କ ଆଡ଼କୁ ଆଙ୍ଗୁଠି ଦେଖେଇବାକୁ ଲାଗିଲା । ପ୍ରତ୍ୟେକ କ୍ଷେତ୍ରରେ ଏହି ରୀତି ଅନୁସୃତ ହେଲା । ଫି-ଭ କରୁ ସମସ୍ତେ ଯାଏ କେଭରର ଶବ୍ଦଗୁଡ଼ିକକୁ ଧ୍ୟାନଦେଇ ଶୁଣେ, ଏବଂ ତାପରେ ଆଙ୍ଗୁଠି ନିର୍ଦ୍ଦେଶ କରି ସେ ଶୁଣିଥିବା ଶବ୍ଦଟି ଉଚ୍ଚାରଣ କରେ ।

ସବ ପ୍ରଥମେ ଫି-ଭ "ମଣିଷ" ଶବ୍ଦଟି ଆୟତ୍ତ କରିପାରିଲା ଏବଂ ତାପରେ "ଜହ୍ନୀ" ଶବ୍ଦଟି ଆୟତ୍ତ କଲା । (କେଭରର କଣ ମନେ ହେଲା କେଜାଣି, ସେ ଚନ୍ଦ୍ରର ବାସିନ୍ଦାମାନଙ୍କୁ "ଚାନ୍ଦ୍ରକ" ବୋଲି ନ କହି ହଠାତ୍ "ଜହ୍ନୀ" ବୋଲି କହି ପକେଇଲା, କାରଣ ଜହ୍ନର ବାସିନ୍ଦା ହୋଇଥିବାରୁ ସେମାନେ ଜହ୍ନୀ) । ଗୋଟିଏ ଶବ୍ଦର ଅର୍ଥ ବିଷୟରେ ନିଶ୍ଚିତ ହେଲାକ୍ଷଣି ଫି-ଭ ସେହି ଶବ୍ଦଟି ସି-ପଙ୍ଗକୁ କହିଦିଏ, ଏବଂ ସି-ପଙ୍ଗ ବରାବର ତାହା ମନେରଖେ । ଆଉ ଭୁଲେ ନାହିଁ । ପ୍ରଥମ ଦିନରେ ସେମାନେ ଶହେରୁ ଅଧିକ ବିଶେଷ୍ୟ ଆୟତ୍ତ କରିପାରିଲେ ।

ଛବି ଓ ନକ୍‌ସା ସାହାଯ୍ୟରେ ବୁଝେଇବା କାମକୁ ସହଜ କରିବା ପାଇଁ ସେମାନେ ପରେ ଜଣେ ଚିତ୍ରକରକୁ ସାଙ୍ଗରେ ନେଇ ଆସିଲେ— କାରଣ କେଭର ଚିତ୍ରବିଦ୍ୟାରେ ଅପକ୍ୱ ଥିଲା । କେଭର କହୁଛି, "ସେଇ ଜୀବର ହାତ ଖୁବ ତତ୍ପର ଥିଲା ଏବଂ ଦୃଷ୍ଟି ଅତି ତୀକ୍ଷ୍ଣ ଥିଲା" ଏବଂ ସେ ଆଶ୍ଚର୍ଯ୍ୟଜନକ କ୍ଷିପ୍ରତା ସହିତ ଚିତ୍ର ଆଙ୍କି ଯାଉଥିଲା ।

ଏକାଦଶତମ ବାର୍ତ୍ତା ଗୋଟିଏ ଲମ୍ବା ସମାଚାରର ଏକାଂଶ ମାତ୍ର । ଅନେକ ଗୁଡ଼ିଏ ଭଙ୍ଗା ଭଙ୍ଗା ଅବୋଧ ବାକ୍ୟ ପରେ ସେ କହୁଛି—

"କେନ୍ତ, ଆମେ ଯେଉଁ ଧାରାବାହିକ ଶବ୍ଦାବଳୀ ଅତି ଆଗ୍ରହ ସହିତ ଆଦାନ ପ୍ରଦାନ କଲୁଁ ସେଗୁଡ଼ିକର ବିଶେଷ ବିବରଣ ଜ୍ଞାପନ କଲେ

କେବଳ ଭାଷାବିତ୍‌ମାନେ ସେଥିରୁ ରସ ଗ୍ରହଣ କରିପାରିବେ, କିନ୍ତୁ ଏଥିଦ୍ୱାରା ମୋର ଅଭିଶାପ ନେଶ ହୋଇଯିବ । ମୁଁ ଯେତିକି କହୁଛି, ତାହା ସେହି କଥାବାର୍ତ୍ତାର ଆରମ୍ଭ ମାତ୍ର । ତାଛଡ଼ା, ଆମେ ଭାବର ଆଦାନ ପ୍ରଦାନ ଚେଷ୍ଟାରେ ଯେଉଁ ଭାଷାଗତ କୁସ୍ତି କସରତ କରିବାକୁ ଲାଗିଲୁ ସେସବୁକୁ ଠିକ୍ ସମୟରେ ଉଲ୍ଲେଖ କରି ପାରିବି ବୋଲି ମୋର ବିଶ୍ୱାସ ହେଉନାହିଁ । କ୍ରିୟା ଗୁଡ଼ିକ ବୁଝେଇବା ଖୁବ ଶୀଘ୍ର ସହଜ ହୋଇଗଲା—ବିଶେଷତଃ ଯେଉଁ କ୍ରିୟା ଗୁଡ଼ିକକୁ ମୁଁ ଚିତ୍ର ସାହାଯ୍ୟରେ ଆଙ୍କିଦେଇ ପାରିଲି । କେତୋଟି ବିଶେଷଣ ମଧ୍ୟ ସହଜ ଥିଲା, କିନ୍ତୁ ଯେତେବେଳେ ଭାବ-ବାଚକ ବିଶେଷ୍ୟ, ଅବ୍ୟୟ, ଏବଂ ସେହିପରି ବହୁ ବ୍ୟବହୃତ ଆଳଙ୍କାରିକ ପ୍ରୟୋଗ-ଗୁଡ଼ିକ (ଯାହାଦ୍ୱାରା ପୃଥିବୀରେ ଅନେକ ଭାବ ବ୍ୟକ୍ତ କରାଯାଏ) ବୁଝେଇବାକୁ ପଡ଼ିଲା, ସେତେବେଳେ ସେ ଲବିଡ଼ା ଧରି ପାଣିରେ ବୁଡ଼ିବାକୁ ଚେଷ୍ଟାକଲା ପରି ଲାଗିଲା । ବସ୍ତୁତଃ, ଷଷ୍ଠ ଦିନରେ ଚତୁର୍ଥ ସାହାଯ୍ୟକାରୀ ଆସିବା ପର୍ଯ୍ୟନ୍ତ ଏହି ଅସୁବିଧା ଗୁଡ଼ିକ ଲଙ୍ଘନ କରିବା ଆମର ଅସାଧ୍ୟ ଥିଲା । ସେହି ବୃଦ୍ଧ୍‌କର ଗୋଟିଏ ପ୍ରକାଣ୍ଡ ଫୁଟବଲ ଆକୃତିର ମୁଣ୍ଡ ଥିଲା । ଜଟିଳ ଉପମା ଗୁଡ଼ିକର ଅର୍ଥ ଗ୍ରହଣ କରିବାରେ ସେ ବିଶେଷ ପାରଙ୍ଗମ ଥିଲା । ଅନ୍ୟମନସ୍କ ଭାବରେ ସେ ପ୍ରବେଶ କଲା । ଗୋଟିଏ ଟୁଲ ଉପରେ ଝୁଙ୍କିଲା, ଏବଂ ଆମର ସମସ୍ୟା ଗୁଡ଼ିକ ତାର ବୋଧଗମ୍ୟ କରିବା ପାଇଁ ଅନେକ ହଲା, ଠେଲା, ଓ ଫୋଡ଼ାଫାଡ଼ି ପରେ ଯାଇ ସେଗୁଡ଼ିକ ତାର ମଗଜରେ ପଶୁଥିଲା । କିନ୍ତୁ, ଥରେ ସେଥିରେ ହାତ ଦେଲା ମାତ୍ରକେ, ସମସ୍ୟାର ମର୍ମଭେଦ କରିବାର ଯେଉଁ ଶକ୍ତି ସେ ଦେଖେଇଲା ତାହା ଅତି ଆଶ୍ଚର୍ଯ୍ୟଜନକ ଥିଲା । ଫି-ଢର ଚିନ୍ତାଶକ୍ତି ଅଗାଧ ହେଲେ ମଧ୍ୟ ଯଦି ତାର ଶକ୍ତିର ଅତିରିକ୍ତ ଚିନ୍ତାର ଆବଶ୍ୟକତା ପଡ଼ୁଥିଲା ତେବେ ଏହି ବୃହତ୍ ମୁଣ୍ଡିଆ ବ୍ୟକ୍ତିର ଶରଣ ନେବାକୁ ହେଉଥିଲା, କିନ୍ତୁ ତାର ମୀମାଂସା କାଳେ ଭୁଲ ହୋଇଯିବ ବୋଲି ତାହା ବରାବର ସେ ଫି-ଫଙ୍କୁ କହି ଦେଉଥିଲା, ଫି ଫଙ୍ ଥିଲା ସୁନ୍ଦର ଖଣି ! ଏହିପରି ଭାବରେ ଆମେ ପୁଣି ଅଗ୍ରସର ହେଲୁଁ ।

"ଅଳ୍ପ କେତେଦିନ ଭିତରେ ଯଦିଓ ତାହା ଅନେକ କାଳ ବୋଲି ମନେ ଲାଗିଲା—ମୁଁ ଏହି ବୃଦ୍ଧ୍‌କମାନଙ୍କ ସହିତ ସୁସ୍ପଷ୍ଟ କଥାବାର୍ତ୍ତା

ଚଳେଇପାରନ୍ତି । ଅବଶ୍ୟ, ପ୍ରଥମେ ଏହି କଥାବାର୍ତ୍ତା ଅତ୍ୟନ୍ତ ବିରକ୍ତିକର ଓ ଉତ୍କ୍ଲାନ୍ତିଜନକ ମନେ ହେଉଥିଲା, କିନ୍ତୁ ଅଲକ୍ଷ୍ୟ ଭାବରେ ଏହା ମୋର ସୁଖଜବୋଧ ହୋଇ ଉଠିଛି । କ୍ରମେ କ୍ରମେ ଏହା ମୋର ଅଭ୍ୟସ୍ତ ହୋଇଗଲାଣି । ସବୁ କଥାବାର୍ତ୍ତା ସେ ଯାକ ଫିଙ୍ଗ କରେ । କଥା ମଝିରେ ସେ ଅନେକଗୁଡ଼ିଏ ଚିନ୍ତା ସୂଚକ 'ହୁଁ—ହୁଁ' ଯୋଡ଼ିଦିଏ, ଏବଂ ଗୋଟିଏ ଦୁଇଟି ବଚନ ଖଣ୍ଡ ମଧ୍ୟ ସେ ଶିଖିପକେଇଛି, ଯଥା:—'ଅର୍ଥାତ୍ ମାନେ', 'ବୁଝିଲ ତ' ଇତ୍ୟାଦି । ତାର ବକ୍ତବ୍ୟ ସହିତ ଏଗୁଡ଼ିକ ଗୁନ୍ଥି ସେ କଥା କହେ ।

"ତାର ଆଳାପର ନମୁନା ଏହିପରି । ମନେକର ସେ ଚାହିଁ କରର ପରିଚୟ ଦେଉଛି ।

"ହୁଁ—ହୁଁ—ସେ—ଅର୍ଥାତ୍ ମାନେ—ଆଙ୍କିବା । ଖାଇବା କାମ—ପିଇବା କାମ—ଆଙ୍କିବା । ଭଲପାଇବା ଆଙ୍କିବା । ଆଉ କିଛି ନାହିଁ । ଯିଏ ଆଙ୍କିବ । ତାପର ନାହିଁ—ତାକୁ ଘୃଣା । ରାଗ । ଯିଏ ଆଙ୍କିବ ତାଠୁ ଭଲ—ତାକୁ ଘୃଣା । ଅଧିକାଂଶ ଘୃଣା । ଯିଏ ଭାବିବା ନାହିଁ ସଂସାରଯାକ ଆଙ୍କିବାକୁ ପାଇଁ—ତାକୁ ଘୃଣା । ରାଗ । ହୁଁ—ହୁଁ । ସବୁ କଥା ବାଜେ ତା ପାଇଁ—ଖାଲି ଆଙ୍କିବା । ସେ ତୁମେ ପର ·····ବୁଝିଲ ତ । ······ନୂଆ ନୂଆ ଜିନଷ ଆଙ୍କିବା । କଦର୍ଯ୍ୟ—ଚମତ୍କାର ନା ?'

"ହି—ପଙ୍କୁ ଦେଖେଇ କହେ, 'ସେ ଭଲପାଇଛା—ଶବ୍ଦ ମନେ ରଖିବା । ମନେରଖିବା ଅନ୍ୟଠାରୁ ଚମତ୍କାର ବେଶି । ଭାବିବା ନାହିଁ, ଆଙ୍କିବା ନାହିଁ—ମନେ ରଖିବା । କହିବା'—ଏଇଠି ସେ ତାର ବିଞ୍ଚ ପଢ଼ିକାଗ୍କୁ ଗୋଟିଏ ଶବ୍ଦ ପଗ୍ଚାରିଲା—'ଇତିହାସ—ସବୁ କଥା । ସେ ଅରେ ଶୁଣିବା—ବରାବର କହିବା ।'

"ମୁଁ ସ୍ୱପ୍ନରେ ଯେତେ ଆଶ୍ଚର୍ଯ୍ୟ କଥା ଦେଖିଥିଲି ତାଠାରୁ ମଧ୍ୟ ଅଧିକ ଆଶ୍ଚର୍ଯ୍ୟ ମନେ ହେଉଥିଲା, ଏହି ଚିରନ୍ତନ ତମସାଚ୍ଛନ୍ନ ସ୍ଥାନରେ ଏହି ଅଦ୍ଭୁତ ଜୀବମାନଙ୍କର ବାକ୍ୟାଳାପ । ଏମାନଙ୍କୁ ଦେଖି ଦେଖି ମୋର ଅଭ୍ୟାସ ହୋଇ-ଯାଉଥିଲେ ମଧ୍ୟ ଏମାନଙ୍କର ଚେହେରାର ଅମାନବିକତା କଥା ମୁଁ ଭୁଲିପାରୁ

ନଥିଲି । ତେଣୁ ଏମାନଙ୍କର ଅବିରତ ଭାବରେ ଚିଁ ଚିଁ କରି ମାନବସୁଲଭ ଭାଷାରେ ନକଲ କରିବାର ଚେଷ୍ଟା ଦେଖି, ଏମାନଙ୍କର ପ୍ରଶ୍ନ ଓ ଉତ୍ତର ଶୁଣି ମୁଁ ଅବାକ୍ ହୋଇଯାଉଥିଲି । ମୋରି ମନେ ହେଉଥିଲା ଯେ ମୁଁ ବାଲ୍ୟ-କାଳର ରୂପକଥା ଶୁଣିବାର ସମୟକୁ ଫେରିଆସିଛି, ଯେତେବେଳେ ପିମ୍ପୁଡ଼ି ଓ ଝିଣ୍ଟିକା କଥୋପକଥନ କରୁଥିଲେ ଓ ଭଅଁରି ସେଥିରେ ସ୍ୱାଗତ କରୁଥିଲା ।......"

ଏହି ଭାବାଗତ ସମ୍ପର୍କ ଗଢ଼ୁଥିବା ଭିତରେ କେଭର ତାର ବନ୍ଦୀ ଜୀବନରେ ଅନେକ ସ୍ୱାଧୀନତା ପାଇବାକୁ ଆରମ୍ଭ କରିଥିଲା । ସେ କହୁଛି, "ଦୁର୍ଭାଗ୍ୟବଶତଃ ଆମ ଭିତରେ ଯେଉଁ ସଂଘର୍ଷ ଘଟିଥିଲା, ସେଥିଯୋଗୁଁ ଜାତ ହୋଇଥିବା ଭୟ ଓ ଅବିଶ୍ୱାସ ମୋର ବର୍ତ୍ତମାନ କାର୍ଯ୍ୟକଳାପର ସ୍ପଷ୍ଟ ବିବେକଶୀଳତା ଫଳରେ କ୍ରମେ କ୍ରମେ ଦୂର ହୋଇଯାଉଛି ।" ...."ମୁଁ ବର୍ତ୍ତମାନ ମୋର ଇଚ୍ଛା ଅନୁସାରେ ଚଲାବୁଲା କରିପାରୁଛି, କିମ୍ବା ମୋର ନିଜର ହାତ ଦୃଷ୍ଟିରୁ ସେମାନେ ସେଥିରେ ବାଧା ଦିଆଯାଉଛି । ଏବଂ କେବଳ ଏହାରି ଫଳରେ ହିଁ ମୁଁ ଏହି ଯନ୍ତ୍ରରେ ହାତ ଦେଇପାରୁଛି । ପ୍ରକାଣ୍ଡ ଗୋଦାମ-ଗୁମ୍ଫାରେ ଜମାହୋଇଥିବା ଜିନିଷ ପତ୍ର ଭିତରେ ଭାଗ୍ୟବଶତଃ କେତୋଟି ସରଞ୍ଜାମ ପାଇ ଯାଇ ମୁଁ ଏହି ବାର୍ତ୍ତାମାନ ପଠାଇବାର ଉପାୟ ଖଞ୍ଜିପାରିଛି । ଏପର୍ଯ୍ୟନ୍ତ ସେମାନେ ଏଥିରେ ବାଧା ଦେବାର କୌଣସି ଚେଷ୍ଟା କରିନାହାନ୍ତି, ଯଦିଓ ମୁଁ ସେମାନଙ୍କୁ ସ୍ପଷ୍ଟ ଭାବରେ ବୁଝେଇ ଦେଇଛି ଯେ ମୁଁ ପୃଥିବୀକୁ ସଙ୍କେତ ପଠାଉଛି ।

"ସେ ଏହା ଲକ୍ଷ୍ୟକରି ଜଣେ ମତେ ପଚାରିଲା,'ତୁମେ ଅନ୍ୟମାନେ କିଏ ?"

"ମୁଁ ସଂଶୋଧନ କରିଦେଲି, 'ଅନ୍ୟମାନଙ୍କୁ ।'

"ସେ କହିଲା, 'ଅନ୍ୟମାନଙ୍କୁ । ଓ, ଠିକ ଠିକ୍ । ମନୁଷ୍ୟମାନଙ୍କୁ ?'

"ମୁଁ ସଙ୍କେତ ପଠେଇ ଚାଲିଲି ।".....

ଗ୍ରହ କିମାନଙ୍କ ବିଷୟରେ ତାର ପୂର୍ବର ବର୍ଣ୍ଣନାକୁ କେଭର ବରାବର ସଂଶୋଧନ କରୁଥିଲା, କାରଣ ତାର ଧାରଣାକୁ ପରିବର୍ତ୍ତନ କରିବାପାଇଁ ନୂତନ ନୂତନ ତଥ୍ୟ ତାର ଦୃଷ୍ଟିଗୋଚର ହେଉଥିଲା । ତେଣୁ ତଳଲିଖିତ ଉଦ୍ଧୃତିକୁ କିଞ୍ଚିତ ସତର୍କତା ସହିତ ଆମକୁ ଉଲ୍ଲେଖ କରିବାକୁ ପଡୁଛି । ଏହା

ନବମ, ତ୍ରୟୋଦଶ ଓ ଷୋଡ଼ଶ ବାର୍ତ୍ତାକୁ ଉଦ୍ଧାର କରାଯାଇଛି, ଏବଂ ଏହା ଅତ୍ୟନ୍ତ ଅସ୍ପଷ୍ଟ ଓ ଅସଂଲଗ୍ନ ହେଲେ ମଧ୍ୟ ଏହି ଅଦ୍ଭୁତ ଜୀବମାନଙ୍କର ସାମାଜିକ ଜୀବନ ବିଷୟରେ ଏହାଠାରୁ ଅଧିକ ନିଖୁଣ ପ୍ରତିଛବି ପାଇବାକୁ ବୋଧହୁଏ ମାନବଜାତି ଆଉ ଅନେକ କାଳଯାଏ ଆଶା କରିପାରିବ ନାହିଁ ।

କେଭର କହୁଛି, "ଚନ୍ଦ୍ରର ପ୍ରତ୍ୟେକ ନାଗରିକ ସମାଜରେ ତାର ଯଥାର୍ଥ ସ୍ଥାନ କଥା ମୂଳରୁ ଜାଣିପାରେ । ସେହି ସ୍ଥାନ ପାଇଁ ତାର ଜନ୍ମ, ଏବଂ ଶିକ୍ଷା, ଦୀକ୍ଷା ଓ ଅସ୍ତ୍ରୋପଚାର ଦ୍ୱାରା ତାକୁ ଯେପରି ପରିପାଟୀ ସହିତ ସୁସଂଗତ କରାଯାଏ ତଦ୍ୱାରା ପରିଶେଷରେ ସେ ସେହି ସ୍ଥାନରେ ଏପରି ନିର୍ଦ୍ଧାର୍ଯ୍ୟ ଭାବରେ ଖାପ ଖାଇଯାଏ ଯେ ଅନ୍ୟ କୌଣସି ବୃତ୍ତି ପାଇଁ ତାର ଧାରଣା ନ ଥାଏ କି ଉପାୟ ନଥାଏ । ଫି-ଉ କହେ; 'କାହିଁକି ବା ଥିବ ?' ଉଦାହରଣ ସ୍ୱରୂପ, ଯଦି କୌଣସି ଚନ୍ଦ୍ରିକ ଭବିଷ୍ୟତରେ ଗଣିତଜ୍ଞ ହେବ ବୋଲି ନିର୍ଦ୍ଧାରିତ ହୋଇଥାଏ ତେବେ ତାର ଶିକ୍ଷକ ଓ ଅଧ୍ୟାପକମାନେ ତତ୍‌କ୍ଷଣାତ୍ ସେହି ଲକ୍ଷ୍ୟ ଉଦ୍ଦେଶ୍ୟରେ ଲାଗିପଡ଼ନ୍ତି । ଅନ୍ୟ କୌଣସି ବୃତ୍ତି ପ୍ରତି ଆରମ୍ଭରୁ ସେ ଢଳିବାର ଦେଖିଲେ ସେମାନେ ସେଥିରେ ବାଧାଦିଅନ୍ତି, ଏବଂ ଗଣିତ ପ୍ରତି ତାର ପକ୍ଷପାତିତାକୁ ମନସ୍ତତ୍ତ୍ୱର ଗୂଢ଼ କୌଶଳ ସହିତ ଉତ୍ସାହିତ କରନ୍ତି । ତାର ମସ୍ତିଷ୍କ ବଢ଼େ, ଅନ୍ତତଃ ତାର ମସ୍ତିଷ୍କର ଗାଣିତିକ କ୍ଷମତା ବଢ଼େ, ଏବଂ ଶରୀରର ଅନ୍ୟାନ୍ୟ ଅଂଶଗୁଡ଼ିକ ଏହି ବିଶିଷ୍ଟ ଅଂଶକୁ ରକ୍ଷା କରିବା ଦିଗରେ ଯେତିକି ବଢ଼ିବା ଉଚିତ କେବଳ ସେତିକି ବଢ଼େ, ଶେଷରେ ଏପରି ଘଟେ ଯେ, କେବଳ ଖାଦ୍ୟ ଓ ବିଶ୍ରାମ ବ୍ୟତୀତ, ତାର ଏହି କ୍ଷମତାକୁ ଅନୁଶୀଳନ କରିବା ଓ ପ୍ରଦର୍ଶନ କରିବାହିଁ ତାର ଏକମାତ୍ର ଆନନ୍ଦ ହୁଏ, ଏହାକୁ ନିୟୋଜିତ କରିବାହିଁ ତାର ଏକମାତ୍ର ଉଦ୍ଦେଶ୍ୟ ହୁଏ, ଏବଂ ଏହି ବୃତ୍ତିର ଅନ୍ୟାନ୍ୟ ବିଶେଷଜ୍ଞମାନେ କେବଳ ତାର ସାଥୀ ହୁଅନ୍ତି । ତାର ମସ୍ତିଷ୍କ—ଅନ୍ତତଃ ମସ୍ତିଷ୍କର ଯେଉଁ ଅଂଶ ଗଣିତ ଚର୍ଚ୍ଚାରେ ନିୟୋଜିତ ହୁଏ—ଦିନକୁ ଦିନ ବଢ଼ୁଥାଏ; ବିଶେଷତଃ ସେହି ଅଂଶ ଅଧିକତର ଫୁଲିଉଠେ, ଏବଂ ତାର ଶରୀରର ଅନ୍ୟାନ୍ୟ ପ୍ରତ୍ୟଙ୍ଗ ଗୁଡ଼ିକରୁ ସମସ୍ତ ଜୀବନୀଶକ୍ତି ଓ ସାମର୍ଥ୍ୟ ଶୋଷି ନେଇଥିଲାପରି ମନେହୁଏ । ତାର ଅଙ୍ଗପ୍ରତ୍ୟଙ୍ଗ ଶୁଖି ସଙ୍କୁଚିତ

ହୋଇଯାଏ, ତାର ହୃତପିଣ୍ଡ ଓ ପରିପାକଯନ୍ତ୍ର କ୍ଷୁଦ୍ର ହୋଇଯାଏ, ତାର କାଠ ତୁଲ୍ୟ ସ୍ଫୀତ ମସ୍ତିଷ୍କ ତଳେ ଢାଙ୍କିହୋଇଯାଏ । କେବଳ ଗଣିତର ସୂତ୍ର ଆପନ୍ନ କରିବା ପାଇଁ ତାରକଣ୍ଠରୁ ଗୋଟିଏ କ୍ଷୀଣ ଚିଁ ଚିଁ ଶବ୍ଦ ବାହାରେ; ଉପଯୁକ୍ତ ଭାବରେ ବ୍ୟକ୍ତ ଗାଣିତିକ ସମସ୍ୟା ଛଡ଼ା ସେ ଅନ୍ୟ କୌଣସି କଥା ଶୁଣି-ପାରେ ନାହିଁ । କୌଣସି ଆପାତବିରୁଦ୍ଧ ତଥ୍ୟ ଆବିଷ୍କାର କରିପାରିଲେ ସେ ହସେ, ଅନ୍ୟ ସମୟରେ ତାର ହସିବାର କ୍ଷମତା ଲୁପ୍ତ ହୋଇଥାଏ । କୌଣସି ଅତି ନୂତନ ଅଙ୍କ କଷିବାକୁ ପାଇଲେ ସେ ଯେପରି ଗଭୀର ଉତ୍ତେଜନା ଅନୁଭବ କରେ ଅନ୍ୟ କୌଣସି କାର୍ଯ୍ୟରେ ସେପରି ଅନୁଭବ କରେ ନାହିଁ । ଏହିପରି ଭାବରେ ହିଁ ତାର ଜୀବନର ଲକ୍ଷ୍ୟ ସାଧିତ ହୁଏ ।

"କିମ୍ବା, ଯଦି ଗୋଟିଏ ବୃଦ୍ଧ୍ରକଙ୍କୁ ଗଉଡ଼ ରୂପେ ଗଢ଼ିବାକୁ ସ୍ଥିର କରାଯାଏ, ତେବେ ବାଲ୍ୟକାଳରୁ ଗୁନ୍ଦ୍ରଗୋରୁମାନଙ୍କ କଥା ଭାବିବାକୁ, ସେମାନଙ୍କ ସହିତ ବାସ କରିବାକୁ, ସେମାନଙ୍କର ଗଳାରେ ଆନନ୍ଦ ଲାଭ କରିବାକୁ ଏବଂ ସେମାନଙ୍କର ଯତ୍ନ ନେବାରେ ଓ ଅନୁଧାବନ କରିବାରେ ନିଜର ଶରୀରଚର୍ଚ୍ଚା କରାଯାଉଛି ବୋଲି ମନେ କରିବାକୁ ତାକୁ ପ୍ରରୋଚନା ଦିଆଯାଏ । ତାକୁ ଶ୍ରମସହିଷ୍ଣୁ ଓ କର୍ମଠ ହେବାକୁ ଶିକ୍ଷା ଦିଆଯାଏ । ଚହଟ ଚକ୍‌କଣ ଗୁନ୍ଦ୍ରଗୋରୁର ସୁଦୃଢ ମାଂସ ଓ କୋଣ ସମନ୍ୱିତ ଚେହେରା ଦେଖି ତାର ଆଖି ଯେପରି ଲାଳାୟିତ ନ ହୋଇ ପଡ଼ିବ ସେଥିପାଇଁ ତାକୁ ଅଭ୍ୟସ୍ତ କରାଯାଏ । ଶେଷରେ ସେ ଜନ୍ତୁର ଶରୀରତତ୍ତ୍ୱର ଅଞ୍ଚଳଗୁଡ଼ିକ ପ୍ରତି ସମ୍ପୂର୍ଣ୍ଣ ନିର୍ଲିପ୍ତ ହୋଇପଡ଼େ । ଯେଉଁ ବୃଦ୍ଧ୍ରକମାନେ ତା ପରି ଗୁନ୍ଦ୍ରଗୋରୁ ବିଷୟରେ ବିଶାରଦ ନୁହନ୍ତି, ସେମାନଙ୍କୁ ସେ ଉଦାସୀନ, ବିଦ୍ରୂପପୂର୍ଣ୍ଣ, କିମ୍ବା ବୈରୀ ଦୃଷ୍ଟିରେ ଦେଖେ । ତାର ଚିନ୍ତା କେବଳ ଗୁନ୍ଦ୍ରଗୋରୁମାନଙ୍କର ଚରଭୂମି ସମ୍ବନ୍ଧୀୟ, ଏବଂ ତାର ଭାଷା କେବଳ ପାଣ୍ଡିତ୍ୟମୟ ଗୁନ୍ଦ୍ରଗୋରୁ ବିଷୟକ ପରିଭାଷା । ସେ ତାର କାମକୁ ମଧ୍ୟ ଖୁବ୍ ଭଲପାଏ, ଏବଂ ଯେଉଁ କର୍ତ୍ତବ୍ୟଲାଗି ତାର ସତ୍ତା ସାର୍ଥକ ହୋଇଛି, ସେହି କର୍ତ୍ତବ୍ୟକୁ ସମ୍ପୂର୍ଣ୍ଣ ଖୁସି ମନରେ ସମ୍ପାଦନ କରେ । ଅନ୍ୟାନ୍ୟ ପ୍ରକାରର ଓ ଅବସ୍ଥାର ବୃଦ୍ଧ୍ରକମାନଙ୍କ କ୍ଷେତ୍ରରେ ମଧ୍ୟ ଏହିପରି ଘଟେ—ସଂସାର ଯନ୍ତ୍ରର ପ୍ରତ୍ୟେକେ ଗୋଟିଏ ଗୋଟିଏ ଉପଯୁକ୍ତ ଅଂଶ...

"ଏହି ବଡ଼ମୁଣ୍ଡିଆ ଜୀବମାନେ, ଯାହାଙ୍କ ଉପରେ ବୁଦ୍ଧି ସହାନ୍ତ ପରିଶ୍ରମ ଗୁଡ଼ିକ ନ୍ୟସ୍ତହୁଏ, ଏହି ଅଦ୍ଭୁତ ସମାଜରେ ଏକ ପ୍ରକାର କୁଳୀନ ସଂପ୍ରଦାୟ ଅଟନ୍ତି, ଏବଂ ଏ ସମସ୍ତଙ୍କର ଶୀର୍ଷ ଦେଶରେ ଚନ୍ଦ୍ରର ସର୍ବ ପ୍ରଧାନ ବ୍ୟକ୍ତି, ଯେହି ଚମତ୍କାର, ବୃହତ୍ତମ ମସ୍ତିଷ୍କଧାରୀ, ସର୍ବ ଶକ୍ତିର କେନ୍ଦ୍ର ମହା-ଗ୍ରନ୍ଥିକ ଅଧିଷ୍ଠିତ। (ଏହାଙ୍କ ସମ୍ମୁଖରେ ପରିଶେଷରେ ମତେ ହାଜରହେବାକୁ ପଡ଼ିଥିଲା।) ଚନ୍ଦ୍ରୀୟ ଶାରୀରିକ ଗଠନରେ ଅସ୍ଥିମଯ୍ୟ ଖପୁରୀର ଅଭାବ ଯୋଗୁଁ ବୁଦ୍ଧିଜୀବି ଶ୍ରେଣୀର ମାନସିକ ଶକ୍ତିର ସୀମାହୀନ ଅଭିବୃଦ୍ଧି ସମ୍ଭବ ହୋଇ ପାରିଛି। ମନୁଷ୍ୟର ବର୍ତ୍ତମାନ ମସ୍ତିଷ୍କକୁ ଏହି ବଡିର ଅସ୍ଥିପେଡ଼ି ବାଧାଦିଏ, ତାହା ସମସ୍ତ ସମ୍ଭବନାର ପଥରୋଧ କରି ବ୍ୟସ୍ତଭାବରେ କହେ, 'ହେଲା ହେଲା, ଏଇପର୍ଯ୍ୟନ୍ତ, ଆଉ ନୁହେଁ।' ଏଇ ବୁଦ୍ଧିଜୀବୀମାନେ ତିନୋଟି ପ୍ରଧାନ ଶ୍ରେଣୀରେ ବିଭକ୍ତ। ପ୍ରଭାବ ଓ ପ୍ରତିପତ୍ତିରେ ଏହି ତିନୋଟି ଶ୍ରେଣୀ ପରସ୍ପରଠାରୁ ଅନେକ ପୃଥକ। ପ୍ରଥମେ ପରିଚାଳକ ଶ୍ରେଣୀ। ଫି—ଉ ଏହି ଶ୍ରେଣୀର ଅନ୍ତର୍ଗତ। ଏମାନେ ସବୁକାର୍ଯ୍ୟରେ ଅଗ୍ରଣୀ ଏବଂ ବହୁବିଦ୍ୟାପାରଦର୍ଶୀ। ଏମାନେ ପ୍ରତ୍ୟେକ ଚନ୍ଦ୍ରର ବିଭିନ୍ନ ଅଂଶ ପାଇଁ ଦାୟୀ। ଦ୍ୱିତୀୟ ଶ୍ରେଣୀରେ ଫୁଟବଲ ମୁଣ୍ଡିଆ ଗୁରୁକମାନଙ୍କ ପରି ବିଶେଷଜ୍ଞମାନେ ଅନ୍ତର୍ଭୁକ୍ତ। ଏମାନେ କେତୋଟି ବିଶେଷ କାର୍ଯ୍ୟ ସାଧନ କରିବା ପାଇଁ ତାଲିମ ପାଇଥାନ୍ତି। ଏବଂ ତୃତୀୟ ଶ୍ରେଣୀ ସର୍ବଜ୍ଞାନର ଭଣ୍ଡାର ପଣ୍ଡିତ ବ୍ୟକ୍ତିମାନଙ୍କୁ ନେଇ ଗଠିତ। ନରଲୋକର ଭାଷାର ପ୍ରଥମ ଚନ୍ଦ୍ରୀୟ ଅଧ୍ୟାପକ ସି ପଙ୍ଗ୍ ଏହି ଶେଷୋକ୍ତ ଶ୍ରେଣୀର ଅନ୍ତର୍ଭୁକ୍ତ। ଏହି ଶେଷୋକ୍ତ ଶ୍ରେଣୀ ସମ୍ପର୍କରେ ଗୋଟିଏ କୌତୁହଳ ଜନକ ବିଷୟ ଲକ୍ଷ୍ୟ କରାଯାଇପାରେ —ମସ୍ତିଷ୍କର ସ୍ମୃତିରେ ସାହାଯ୍ୟ କରିବା ପାଇଁ ଯେଉଁ ସବୁ କୃତ୍ରିମ ଉପାୟ ଉଦ୍ଭାବନ କରିବା ମାନବ ସଭ୍ୟତାର ବିଶେଷତ୍ୱ, ଚନ୍ଦ୍ରୀୟ ମସ୍ତିଷ୍କର ସୀମାହୀନ ଅଭିବୃଦ୍ଧି ଯୋଗୁଁ ଚନ୍ଦ୍ରରେ ସେ ସବୁ ଉପାୟର ଆବଶ୍ୟକତା ପଡ଼ୁନାହିଁ। ଏଠାରେ ପୁସ୍ତକ ନାହିଁ କୌଣସି ପ୍ରକାର ଲିଖିତ ନଥିପତ୍ର ନାହିଁ, ଲାଇବ୍ରେରୀ ନାହିଁ କିମ୍ବା ଖୋଦିତ ଲିପିନାହିଁ। ସମସ୍ତ ଜ୍ଞାନ ସ୍ଫୀତ ମସ୍ତିଷ୍କ ଗୁଡ଼ିକରେ ସଞ୍ଚିତ ହୋଇରହିଛି, ଠିକ ଯେପରି ଟେକ୍ସସ୍ (ଆମେରିକାର ପ୍ରଦେଶ) ର ମହୁ-ପିମ୍ପୁଡ଼ିମାନେ ସେମାନଙ୍କର ସ୍ଫୀତ ଉଦରରେ ମହୁ ସଞ୍ଚିତ କରି ରଖନ୍ତି।

ଇଂଲଣ୍ଡର ସମରସେଟ୍ ହାଉସ (ନଥି ପତ୍ରର ଭଣ୍ଡାର) କିମ୍ବା ବ୍ରିଟିଶ ମିଉଜିଅମ୍ ଲାଇବ୍ରେରୀର ଚନ୍ଦ୍ରାତପ ପ୍ରତିରୂପ କେତୋଟି ଜୀବନ୍ତ ମସ୍ତିଷ୍କର ସମଷ୍ଟି।......

"ମୁଁ ଲକ୍ଷ୍ୟ କରିଛି ଯେ କମ ବିଶେଷଜ୍ଞ ପରିଦର୍ଶକମାନେ ମତେ ଯେତେବେଳେ ଭେଟନ୍ତି ସାଧାରଣତଃ ମୋ ବିଷୟରେ ଖୁବ୍ ଆଗ୍ରହ ପ୍ରକାଶ କରନ୍ତି। ସେମାନେ ବାଟ ଭାଙ୍ଗି ମୋ ପାଖକୁ ଆସି ମତେ ଅନାନ୍ତି ଏବଂ ପ୍ରଶ୍ନ ପଚାରନ୍ତି। କିନ୍ତୁ ସେ ସବୁ ପ୍ରଶ୍ନର ଉତ୍ତର ଦିଏ। ସେମାନେ ବାହକ, ସେବକ, ନୂକର, ପାରିଚାରିକା ଇତ୍ୟାଦି ଅନୁଚର ବର୍ଗଙ୍କ ଗହଣରେ ଇଆଡ଼େ ସିଆଡ଼େ ଯାଉଥିବାର ମୁଁ ଦେଖିଛି। ସେହି ଦଳଗୁଡ଼ିକ ଦେଖିବାକୁ ଅତି ଅଦ୍ଭୁତ। ବିଶେଷଜ୍ଞମାନେ ସାଧାରଣତଃ ମତେ ଜମା ଖାତିର କରନ୍ତି ନାହିଁ—ସେମାନେ ପରସ୍ପରକୁ ମଧ୍ୟ ସେହିପରି ବେଖାତିର କରନ୍ତି—କିମ୍ବା ଯଦି ମୋ ପ୍ରତି ଆଗ୍ରହ ପ୍ରକାଶ କରନ୍ତି, ତାହା କେବଳ ସେମାନଙ୍କର ବିଶିଷ୍ଟ ବିଦ୍ୟାକୁ ହୋ ହୋ କରି ଜାହିର କରିବା ପାଇଁ। ପଣ୍ଡିତମାନେ ସାଧାରଣତଃ ଆଖିକାନ ବୁଜି, ବାହ୍ୟ ଚେତନା ହରେଇ, ଆତ୍ମସନ୍ତୋଷରେ ଭୋଳହୋଇ ରହିଥାନ୍ତି। ସେମାନଙ୍କର ପାଣ୍ଡିତ୍ୟକୁ ଅସ୍ୱୀକାର କରିବା ଛଡ଼ା ଅନ୍ୟ କୌଣସି ଉପାୟରେ ସେହି ଧ୍ୟାନ ଭାଙ୍ଗି ହେବ ନାହିଁ। ଅଧିକାଂଶ ସମୟରେ ସେମାନଙ୍କର ଟବକାୟ ପ୍ରହରୀ ଓ ସେବକମାନେ ସେମାନଙ୍କର ହାତ ଧରି ନେବାଆଣିବା କରନ୍ତି। ବେଳେ ବେଳେ କ୍ଷୁଦ୍ରକାୟ ଓ କର୍ମତତ୍ପର ଜୀବମାନେ, ସାଧାରଣତଃ କ୍ଷୁଦ୍ରକାୟା ସ୍ତ୍ରୀ ଜାତୀୟ ଜୀବମାନେ, ସେମାନଙ୍କୁ ଚଳେଇ ଚଳେଇ ନିଅନ୍ତି—ଏହି ସ୍ତ୍ରୀମାନେ ବୋଧହୁଏ ସେମାନଙ୍କର ଏକ ପ୍ରକାର ଜାୟା ହୁଅନ୍ତି। କିନ୍ତୁ କେତେଜଣ ମହାପଣ୍ଡିତଙ୍କର ପାଣ୍ଡିତ୍ୟର ଓଜନ ଏତେ ବେଶି ଯେ ସେମାନେ ସମ୍ପୂର୍ଣ୍ଣ ଚଳତ୍ଶକ୍ତି ରହିତ ହୋଇ ପଡ଼ନ୍ତି। ସେମାନଙ୍କୁ ଏକ ପ୍ରକାର ଖଟିଆରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବୋହି ନିଆଯାଏ। ଏହି ଜ୍ଞାନଗର୍ଭ ଅଲ ଅଲିଆ ମସ୍ତିଷ୍କ-ମୁଣ୍ଡମାନଙ୍କୁ ଦେଖି ମୋର ସନ୍ତ୍ରମପୂର୍ଣ୍ଣ ବିସ୍ମୟ ଜାତ ହୁଏ। ମୁଁ ଯେଉଁ ସ୍ଥାନରେ ଏହି ବୈଦ୍ୟୁତିକ ଖେଳନାଗୁଡ଼ିକ ନେଇ ମୋର ମନକୁ ଖୁସି ରଖିବାକୁ ଅନୁମତି ପାଇଛି ସେହି ସ୍ଥାନକୁ ଯିବା ବାଟରେ ଏଇକ୍ଷଣି ଏହିପରି ଗୋଟିଏ ପଣ୍ଡିତଙ୍କୁ ଭେଟିଲି।

ସେହି ବିରାଟ ଖଟିଆ ଉପରେ ଏହିପରି ଗୋଟିଏ ପ୍ରକାଣ୍ଡ, ମୁଣ୍ଡିତ, ପାଉଁଲା ଗୁଳିବାଲା, କମ୍ପମାନ ହାଙ୍ଗର ମୁଣ୍ଡ ଚୂର୍ଣ୍ଣ ହୋଇ ଯାଉଥିଲା। ତାର ସମ୍ମୁଖରେ ଓ ପଶ୍ଚାତ୍ତରେ ତାର ବାହକମାନେ ଗାଉଥିଲେ, ଏବଂ ସେହି କାଲି-ମୁହାଁ ଅଦ୍ଭୁତ ସମ୍ବାଦ ପ୍ରଚାରକମାନେ ଉଚ୍ଚ ଚିତ୍କାରରେ ତାର ଯଶ ଘୋଷଣା କରି କରି ଯାଉଥିଲେ।

"ଅଧିକାଂଶ ବୁଦ୍ଧିଜୀବୀଙ୍କ ସହିତ ଯେଉଁ ଅନୁଚରବର୍ଗ ଯାଆନ୍ତି, ସେମାନଙ୍କ କଥା ମୁଁ ଆଗରୁ କହିସାରିଛି। ଏହି ଅତିବଢ଼ିତ ମସ୍ତିଷ୍କମାନଙ୍କର ଅକାଳମୃତ୍ୟୁ ଦୈହିକ ଶକ୍ତିର ସ୍ଥାନ ପୂରଣ କରେ ସେହି ବାହ କଡ଼ାଳୀ, ବାହକ ଏବଂ ଭୃତ୍ୟମାନଙ୍କର ଅତିରିକ୍ତ ଶୁଣ୍ଡ ଓ ମାଂସପେଶୀ। କୁଲିମାନେ ପ୍ରାୟ ସଦାସର୍ବଦା ସେମାନଙ୍କ ସହିତ ଯାଆନ୍ତି। ତାଛଡ଼ା ପାଗ୍ସ୍ଥିତ୍ ଧରିବା ପାଇଁ 'ହାତ' ଏବଂ ମାକଡ଼ସାରୂପୀ ଗୋଡ଼ବାଲା ଦ୍ରୁତଗାମୀ ଡଗରମାନେ ଯାଆନ୍ତି, ଏବଂ ଏପରି ବଡ଼ ପାଟିଆ ପାର୍ଶ୍ୱଚରମାନେ ଯାଆନ୍ତି, ଯେଉଁମାନଙ୍କର ଚିତ୍କାର ମୃତ ବ୍ୟକ୍ତିର ମଧ୍ୟ ମହାନିଦ୍ରା ଭାଙ୍ଗିଦେଇ ପାରିବ। ଏମାନଙ୍କର ତତ୍ତ୍ୱାବଧାନ କରିବାର ବୁଦ୍ଧି ବ୍ୟତିରେକେ ଏହି ଅଧସ୍ତନ କର୍ମଚାରୀମାନେ କାର୍ଯ୍ୟରେ ତେଣିକି ହୋଇଥିବା ଛତାପରି ହିଁ ପଙ୍ଗୁ ଓ ଅସହାୟ। ସେମାନଙ୍କୁ ଯେଉଁ ଆଦେଶ ଦିଆଯାଏ ଏବଂ ସେମାନଙ୍କ ପାଇଁ ଯେଉଁ କର୍ତ୍ତବ୍ୟ ନିର୍ଦ୍ଧାରିତ ହୋଇଛି କେବଳ ସେହିଗୁଡ଼ିକ ସମ୍ପର୍କରେ ହିଁ ସେମାନଙ୍କର ବୁଝିବାର ସାର୍ଥକତା ଅଛି।

"କିନ୍ତୁ, ଏହି କୀଟମାନଙ୍କର ବୃହତ୍ତମ ଭାଗ, ଅର୍ଥାତ୍ ଯେଉଁମାନେ ମୋଡ଼ ମୋଡ଼ିକିଆ ରାସ୍ତାରେ ଯା ଆସ କରୁଥାନ୍ତି, ବେଲୁନ ଗୁଡ଼ିକରେ ଭର୍ତ୍ତି ହୋଇ ଉପରକୁ ଉଠୁଥାନ୍ତି, ଏବଂ ସୂକ୍ଷ୍ମ ପାଗ୍ସ୍ଥିତ୍‌ରେ ଓହ୍ଲାଇ ମୋ ପାଖ ଦେଇ ଖସିପଡ଼ୁଥାନ୍ତି, ସେମାନେ ଶ୍ରମିକ ଶ୍ରେଣୀର ଅନ୍ତର୍ଗତ। ବାସ୍ତବିକ, କେବଳ ଆଳଙ୍କାରିକ ଅର୍ଥରେ ନୁହେଁ, ପ୍ରକୃତରେ ମଧ୍ୟ ଏମାନେ ଯନ୍ତ୍ରର ଗୋଟିଏ ଅଂଶ। ଗୁଡ଼ିଏ ଗୋଟିଏ କରାଲୀମାନଙ୍କର ଏକକ-ଶୁଣ୍ଡ ଧରିବା ପାଇଁ, ଉଠେଇବା ପାଇଁ ଏବଂ ଗୋଡ଼ୁ ଅଡ଼େଇବା ପାଇଁ ଉପଯୁକ୍ତରୂପେ ଗଠନ କରାଯାଇଥାଏ। ସେମାନଙ୍କର ଶରୀରର ବାକି ଅଂଶ ଏହି ବିଶିଷ୍ଟ ପ୍ରତ୍ୟଙ୍ଗର କେବଳ ଆବଶ୍ୟକୀୟ ଅଧସ୍ତନ ସଂଯୋଜକ।

ଯେଉଁମାନେ ଘଣ୍ଟାପିଟିବା ଯନ୍ତ୍ରରେ କାମ କରନ୍ତି ସେମାନଙ୍କର ଶ୍ରବଣ ଇନ୍ଦ୍ରିୟର ଆକାର ଅତି ବିଶାଳ । ଯେଉଁମାନେ ସୂକ୍ଷ୍ମ ଉପାଦାନ ଘଟିତ କାର୍ଯ୍ୟରେ ଲିପ୍ତ ସେମାନଙ୍କର ଗୋଟିଏ ପ୍ରକାଣ୍ଡ ଘ୍ରାଣେନ୍ଦ୍ରିୟ ଲମ୍ବିଥାଏ; ଯେଉଁମାନେ ଗୋଡ଼ରେ କଳ ଚଳେଇବା କାମ କରନ୍ତି ସେମାନଙ୍କର ପାଦ ଚେପ୍ଟା ହୋଇଯାଇଥାଏ ଏବଂ ଗଣ୍ଠିସବୁ ଏକାଠି ଯୁକ୍ତ ହୋଇ ଯାଇଥାଏ; ଏବଂ ଯେଉଁମାନେ କାଚନଳୀ ଫୁଙ୍କିବା କାମ କରନ୍ତି, ସେମାନଙ୍କର ଫୁସଫୁସ କମାରର ଜନ୍ତମୁଣି ପରି ପ୍ରକାଣ୍ଡ ହୋଇ ଶରୀରର ବାକି ଅଂଶକୁ ଢାଙ୍କି ଦେଇଥାଏ । ମୁଁ ଲକ୍ଷ୍ୟକରିଛି, ଏହି ଗୃଧ୍ରମାନଙ୍କ ଉପରେ ସମାଜର ଯେଉଁ କାର୍ଯ୍ୟ ନ୍ୟସ୍ତ କରାଯାଇଥାଏ, ସେମାନେ ସେହି କାର୍ଯ୍ୟର ସମ୍ପୂର୍ଣ୍ଣ ଉପଯୋଗୀ ହୋଇପଡନ୍ତି । ସୂକ୍ଷ୍ମକାର୍ଯ୍ୟ ସବୁ ସୂକ୍ଷ୍ମଆକାରର ଶ୍ରମିକମାନଙ୍କ ଦ୍ୱାରା ସମ୍ପାଦିତ ହୁଏ । ସେମାନେ ଅତ୍ୟନ୍ତ ଖର୍ବ ଓ ମୁଦଆ ହୋଇଥାନ୍ତି । ସମାନଙ୍କ ମଧ୍ୟରୁ କେତେଜଣ ଏତେ କ୍ଷୁଦ୍ର ଯେ ମୁଁ ସେମାନଙ୍କୁ ପାପୁଲି ଉପରେ ଥୋଇପାରିବ । ଏକ ପ୍ରକାର ଘଣପେଲି ଗୃଧ୍ରଙ୍କ ମଧ୍ୟ ବହୁତ ଦେଖାଯାଆନ୍ତି, କେତୋଟି ଶ୍ରେଷ୍ଠ ଶ୍ରେଷ୍ଠ କଳର ଚଳନ ଶକ୍ତି ଯୋଗାଇବା ହିଁ ସେମାନଙ୍କର କର୍ତ୍ତବ୍ୟ ଓ ଏକମାତ୍ର ଆନନ୍ଦ । ଏବଂ ଏହି ଶ୍ରମିକମାନଙ୍କୁ ଶାସନ କରିବାପାଇଁ ଓ କୌଣସି ଅଳସୁଆ ପ୍ରକୃତିର ଗୃଧ୍ରଙ୍କ କର୍ତ୍ତବ୍ୟରେ ଅବହେଳା କଲେ ତାକୁ ଦମନ କରିବାପାଇଁ ଏକ ପ୍ରକାର ଗୃଧ୍ର ପୁଲିସ ଅଛନ୍ତି । ସେମାନଙ୍କର ମାଂସପେଶୀ ଅନ୍ୟମାନଙ୍କ ଅପେକ୍ଷା ତେର ଶକ୍ତ । ସେମାନେ ପିଲାଦିନରୁ ଫୁଲ୍ଲ ମୁଣ୍ଡିଆମାନଙ୍କୁ ସମ୍ମାନ ଓ ବଶ୍ୟତା ଦେଖେଇବା ପାଇଁ ଶିକ୍ଷା ପାଇଥାନ୍ତି ।

"ଏହି ବିଭିନ୍ନ ଧରଣର ଶ୍ରମିକମାନଙ୍କୁ ତିଆରି କରିବାର ପ୍ରଣାଳୀ ଖୁବ କୌତୂହଳପ୍ରଦ ଓ ଚମତ୍କାରକର୍ଷକ ହୋଇଥିବ, ସନ୍ଦେହ ନାହିଁ । ମୁଁ ବର୍ତ୍ତମାନ ସୁଦ୍ଧା ଏ ବିଷୟରେ ବିଶେଷ କିଛି ଜାଣେ ନାହିଁ, କିନ୍ତୁ ଅଳ୍ପଦିନ ତଳେ ସାମାନ୍ୟ ଆଭାସ ପାଇଥିଲି ମାତ୍ର । ଗୋଟିଏ ସ୍ଥାନରେ ମୁଁ ଦେଖିଲି, କେତେ ଜଣ ପିଲାଗୃଧ୍ରଙ୍କୁ ବଡ଼ବଡ଼ ବୋତଲରେ ଭର୍ତ୍ତି କରାଯାଇଛି, କେବଳ ସେମାନଙ୍କର ହାତ ବାହାରକୁ ବାହାରିଛି । ସେମାନଙ୍କୁ ଏକ ବିଶେଷ ଶ୍ରେଣୀର ଯନ୍ତ୍ରଚାଳକ ରୂପେ ଗଢ଼ିବାପାଇଁ ସଙ୍କୁଚିତ କରାଯାଉଥିଲା ।

ବୈଜ୍ଞାନିକ ଶିକ୍ଷାର ଏହି ଅତି ଉନ୍ନତ ପ୍ରଣାଳୀରେ ବାହାରକୁ ବାହାରିଥିବା ହାତକୁ ହିଂଶୈଳିକ ଦ୍ରବ୍ୟ ଦ୍ୱାରା ଉଜ୍ଜୀବିତ କରାଯାଏ, ଏବଂ ଇଞ୍ଜେକ୍ସନ୍ ଦ୍ୱାରା ସାର ଯୋଗେଇ ଦିଆଯାଏ, କିନ୍ତୁ ଶରୀରର ବାକି ଅଂଶକୁ ଉପାସ ରଖାଯାଏ । ସି-ହ ବୁଝେଇଦେଲେ ଯେ ପ୍ରଥମେ ପ୍ରଥମେ ଏହି ଅଦ୍ଭୁତ କ୍ଷୁଦ୍ର ଜୀବଗୁଡ଼ିକ ସେମାନଙ୍କର ବିଭିନ୍ନ ଅବରୁଦ୍ଧ ଅବସ୍ଥାରେ ଯନ୍ତ୍ରଣାର ଲକ୍ଷଣ ପ୍ରକାଶ କରିବା ସ୍ୱାଭାବିକ, କିନ୍ତୁ ସହଜରେ ଏହା ସେମାନଙ୍କର ଦହସହା ହୋଇଯାଏ । ଆଉ ଗୋଟିଏ ସ୍ଥାନରେ ନମନୀୟ ଅଙ୍ଗ ବିଶିଷ୍ଟ ଓଡରମନଙ୍କୁ ବୋତଲରୁ ବାହାର କରାଯାଉଥିଲା ଏବଂ ଭର୍ତ୍ତି କରାଯାଉଥିଲା । ସି-ହ ତାହା ମତେ ଦେଖେଇ ଦେଲା । ଅବଶ୍ୟ ମୁଁ ଜାଣେ, ଏହା ଯୁକ୍ତିସଙ୍ଗତ ନୁହେଁ, ତଥାପି ଏବଂବିଧ ଶିକ୍ଷାପ୍ରଣାଳୀ ଦେଖିଲେ ମତେ ବଡ଼ ଖରାପ ଲାଗେ । ଯାହାହେଉ, ମୁଁ ଆଶା କରୁଛି, ମୋର ଏଇ ଅନୁଭବ କ୍ରମେ କ୍ରମେ ଚାଲି-ଯିବ ଏବଂ ମୁଁ ଏମାନଙ୍କର ଏପରି ଆଶ୍ଚର୍ଯ୍ୟଜନକ ସାମାଜିକ ସ୍ତରର ଆହୁରି ଅନେକ ଦୃଷ୍ଟାନ୍ତ ଦେଖିପାରିବି । ମୋର ମନେହୁଏ, ବୋତଲରୁ ବାହାରିଥିବା ସେହି କରୁଣ ଚେହେରାର ହାତ ଶୁଣ୍ଢ ତାର ହୃତ ସମ୍ଭାବନ ଗୁଡ଼ିକ ପ୍ରତି ବ୍ୟର୍ଥ ଭାବରେ ସମସ୍ତଙ୍କର ଦୃଷ୍ଟି ଆବେଦନ କରୁଛି, ବର୍ତ୍ତମାନ ସୁଦ୍ଧା ସେହି ଦୃଶ୍ୟ ବାରମ୍ବାର ମୋର ଚକ୍ଷୁ ସମକ୍ଷରେ ଭାସିଉଠେ । ତଥାପି, ଏହା ସତ୍ୟ ଯେ, ଆମ ପୃଥିବୀରେ ଯେପରି ଶିଶୁମାନଙ୍କୁ ପୂର୍ଣ୍ଣାଙ୍ଗ ମନୁଷ୍ୟ ରୂପେ ବଢ଼ିବାକୁ ଛାଡ଼ିଦେଇ ତାପରେ ସେମାନଙ୍କୁ କଳ ବନେଇ ଦିଆଯାଏ, ତା ଅପେକ୍ଷା ଏହି ପ୍ରଣାଳୀ ଢେର ବେଶି ଉଦାର ।

"ଖୁବ ଅଳ୍ପଦିନ ତଳେ—ଏହି ବାର୍ତ୍ତାପ୍ରେରକ ଯନ୍ତ୍ରକୁ ମୋର ଏକାଦଶତମ କିମ୍ବା ଦ୍ୱାଦଶତମ ପରିଦର୍ଶନ ଦିନ—ମୁଁ ଏହି ଶ୍ରମିକମାନଙ୍କର ଜୀବନ ପ୍ରଣାଳୀ ବିଷୟରେ ଗୋଟିଏ କୌତୂହଳଜନକ ତଥ୍ୟ ଆବିଷ୍କାର କରିପାରିଲି । ଗୋଟିଏ ସଂକ୍ଷିପ୍ତ ରାସ୍ତା ଦେଇ ମତେ ଏଠାକୁ ଅଣାଯାଉ-ଥିଲା । ଗହ୍ୱରର ପଥର କୁଣ୍ଡଳୀ ବାଟେ ଓହ୍ଲେଇ ତାପରେ କେନ୍ଦ୍ରସମୁଦ୍ରର ଘାଟ ଦେଇଯିବା ଅପେକ୍ଷା ଏଇବାଟେ ଗଲେ ପାଖ ପଡ଼େ । ଗୋଟିଏ ଲମ୍ବା ଅନ୍ଧାରିଆ ସୁଡ଼ଙ୍ଗର ବଙ୍କାଟଙ୍କା ଘୁରାଣିରୁ ବାହାରି ଆମେ ଗୋଟିଏ ପ୍ରକାଣ୍ଡ କୁଆଁଣିଆ ବିବର ଭିତରକୁ ପଶିଲୁଁ । ସେଠାରୁ ମାଟିର ଗନ୍ଧ ବାହାରୁଥିଲା,

ଏବଂ ଅନ୍ୟାନ୍ୟ ସ୍ଥାନ ତୁଳନାରେ ତାହା ଉଜ୍ଜ୍ୱଳ ଭାବରେ ଆଲୋକିତ ହୋଇଥିଲା ବୋଲି କୁହାଯାଇପାରେ । ବିଶୃଙ୍ଖଳ ଭାବରେ ପଡ଼ିଥିବା ଏକ ପ୍ରକାଶ ବଦଶୁଣିଛତରୁ ଉଦ୍ଭିଦମାନଙ୍କରୁ ସେହି ଆଲୁଅ ବାହାରୁଥିଲା । ସେହି ଛତୁଗୁଡ଼ିକରୁ କେତେକ ଅବିକଳ ଆମର ପୃଥିବୀର ଛତୁପରି ଦିଶୁଥିଲେ, କିନ୍ତୁ ସେଗୁଡ଼ିକର ଉଚ୍ଚତା ମଣିଷ ଭଳି ଲମ୍ବା ମଣିଷଠାରୁ ଅଧିକ ଥିଲା ।

"ମୁଁ ଫି-ଉକୁ ପଚାରିଲି, 'ଜହ୍ନୀମାନେ ଏହା ଖାଆନ୍ତି ?'

"ସେ କହିଲା, 'ହଁ, ଖାଦ୍ୟ ।'

"ହଠାତ୍ ମୁଁ କହି ଉଠିଲି, 'ବାପ୍‌ରେ ! ସେଇଟା କଣ ?'

"ଗୋଟିଏ ଅନ୍ଧକାର ଓ କଦାକାର ଗୁଳ୍ମ ଛତୁଜାତୀୟ ଗୁଳ୍ମ ମଧ୍ୟରେ ମୁହଁମାଡ଼ି ନିଶ୍ଚଳ ଭାବରେ ପଡ଼ିଥିବାର ମୁଁ ହଠାତ୍ ଦେଖିପାରିଥିଲି । ଆମର ଗତିରୁଦ୍ଧ ହେଲା ।

"ମୁଁ ପଚାରିଲି, 'ମରିଯାଇଛି ?' (କାରଣ ଚନ୍ଦ୍ରରେ ଏ ପର୍ଯ୍ୟନ୍ତ ମୁଁ ମଲାଲୋକ ଦେଖିନାହିଁ, ଏବଂ ଏ ବିଷୟରେ ଅତ୍ୟନ୍ତ କୌତୂହଳୀ ହୋଇ ଉଠିଛି ।)

"ଫି-ଉ କହିଲା, 'ନା ! ସେ—ଶ୍ରମିକ—ଉଛି କାମ ନାହିଁ, ଟିକେ ନିଶା ପିଏଇ ଦେଉ—କହିଲା—ଶୁଏଇ ଦେଉ—ଯେ ପର୍ଯ୍ୟନ୍ତ ଆମେ ଦରକାର କରୁଁ ତାକୁ ପୁଣି । କଣ ଲାଭ ସେ ଚେଇଁ, ଏଁ ? ଆମେ ଚାହୁଁନା ସେ, ଏଣେତେଣେ ବୁଲିବା ।'

"ମୁଁ କହିଲି, 'ହେଇଟି, ପୁଣି ଆଉ ଗୋଟେ !

"ବାସ୍ତବିକ ସେଇ ବିସ୍ତୀର୍ଣ୍ଣ ଛତୁକାନନ ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ଚନ୍ଦ୍ରବାସୀମାନଙ୍କ ପଡ଼ିଥିବା ଏହି ଗୁଳ୍ମମାନଙ୍କ ଦ୍ୱାରା ଲୁଚି ହୋଇଯାଇ ଥିଲା । ତୁରନ୍ତ ସେମାନଙ୍କର ଆବଶ୍ୟକତା ଅନୁଭବ କରିବା ପର୍ଯ୍ୟନ୍ତ ସେମାନଙ୍କୁ ନିଶାଖୁଏଇ ଶୁଏଇ ରଖା ହୋଇଥିଲା । ସେଠି ବିଭିନ୍ନ ଆକୃତିର ଅସଂଖ୍ୟ ଗୁଳ୍ମ ପଡ଼ିଥିଲେ, ଆମେ କେତେଜଣଙ୍କୁ ଓଲଟେଇ ପାଲଟେଇ ଦେଖିପାରିଲୁଁ, ପୂର୍ବାପେକ୍ଷା ଅଧିକ ତନ୍ନ ତନ୍ନ କରି ମୁଁ ସେମାନଙ୍କୁ ପରୀକ୍ଷା କରିପାରିଲି । ମୁଁ ସେମାନଙ୍କୁ ଓଲଟେଇବା ସମୟରେ ସେମାନେ ସଶବ୍ଦରେ ଘୁଙ୍ଗୁଡ଼ି ମାରୁଥିଲେ, କିନ୍ତୁ ଚେଇଁ ଉଠୁ ନ ଥିଲେ । ଜଣକର କଥା ମୋର

ପରିଷ୍କାର ଖବରରେ ମିଳେ ଅଛୁ ; ସେ ମୋ ରାସ୍ତରେ ଗୋଟିଏ ଗଣ୍ଡାର ଚାହାଣି ଅଙ୍କି ଦେଇଥିଲି, କାରଣ ଆଲୁଅର କୌଣସି ଛନ୍ଦଯୋଗୁଁ ଏବଂ ତାର ଶୋଇବାର ଭଙ୍ଗୀ ଯୋଗୁଁ ସେ ଜାଙ୍ଗିଳ୍କ ଯୋଗୁଁ ଶୋଇଥିବା ମଣିଷ ପରି ଦିଶୁଥିଲା । ତାର ହାଁକ ଦୁଇଟି ଥିଲା ଯୋଡ଼ିଏ ଲମ୍ବ କୋମଳ ଶୁଣ୍ଢ—ସେ ବୋଧହୁଏ ଏକପ୍ରକାରର ଉଦ୍ଭକାଣ୍ଡୀୟ ଶ୍ରମିକ ଥିଲା—ଏବଂ ତାର ଶୋଇବାର ଭଙ୍ଗୀରୁ ସୂଚନା ମିଳୁଥିଲା ଯେପରିକି ତାର ଦୁଃଖ କଷ୍ଟକୁ ସେ ମୁଣ୍ଡପାତି ସହି ଯାଉଛି । ଅବଶ୍ୟ ତାର ଖବରକୁ ଏପରି ଅର୍ଥ କରିଲା ମୋର ଭୁଲ, କିନ୍ତୁ ତଥାପି ମୁଁ ସେପରି ଅର୍ଥ କଲି । ଏବଂ ଟର୍-ଚ୍ଚ ତାକୁ ବିବର୍ଣ୍ଣ ମାଂସଳ ଛତୁ ଗୁଡ଼ିକର ଅନ୍ଧକାର ଭିତରକୁ ପୁଣି ଗଡ଼େଇ ଦେଲିବେଳେ ମୋର ଦେହରେ ଗୋଟିଏ ଅପ୍ରୀତିକର ଶିହରଣ ଖେଳିଗଲା—ଯଦିଓ ସେ ଗଡ଼ଗଡ଼ ଯିବାସମୟରେ ତା ଭିତରେ ଥିବା କୀଟ ସ୍ପଷ୍ଟରୂପେ ଆତ୍ମପ୍ରକାଶ କଲା ।

"ଭଲରୂପେ ବିବେଚନା ନ କରି ଲୋକେ କିପରି ଅନୁଭବର ଅଭ୍ୟାସ ଲାଭ କରନ୍ତି ଏହା ମଧ୍ୟ ତାହାର ପ୍ରକୃଷ୍ଟ ଉଦାହରଣ । ଅଦରକାରୀ ଶ୍ରମିକଙ୍କୁ କାରଖାନାରୁ ତଡ଼ି ଉପୋସରେ ପଥ ଆଶ୍ରୟ କରିବାକୁ ବାଧ୍ୟ କରିବା ଅପେକ୍ଷା ତାକୁ କଣା ଖୁଆଇ ପକେଇ ଦେବା ଢେର ଭଲ । ପ୍ରତ୍ୟେକ ଜଟିଳ ସାମାଜିକ ସମ୍ପ୍ରଦାୟରେ ବିଶେଷ କାର୍ଯ୍ୟରେ ତାଲିମ ପାଇଥିବା ଶ୍ରମିକମାନେ ମଝିରେ ମଝିରେ ବେକାର ହୋଇପଡ଼ିବା ସ୍ୱାଭାବିକ, ତେଣୁ ଏହି ଉପାୟରେ ଭବିଷ୍ୟତର 'ବେକାର ସମସ୍ୟା' ପାଇଁ ମୂଳରୁ ପ୍ରତିବିଧାନ କରାଯାଏ । କିନ୍ତୁ ତଥାପି, ବୈଜ୍ଞାନିକ ଶିକ୍ଷା ଲାଭ କରିଥିବା ମନ ମଧ୍ୟ ଏପରି ଅବୁଝା ଯେ, ବର୍ତ୍ତମାନ ପୁଚ୍ଛା ଯେଉଁ ସରସ ଉଦ୍ଭିଦମୟ ଉଜ୍ଜ୍ୱଳ ନଗ୍ରଟିଆ ପଥୁରିଆ ସ୍ଥାନର ସ୍ମୃତି ମତେ କଷ୍ଟ ଦିଏ, ତେଣୁ ସେହି ସଂକ୍ଷିପ୍ତ ରାସ୍ତା ବର୍ଜନ କରି ମୁଁ ସମସ୍ତ ଅସୁବିଧା ସତ୍ତ୍ୱେ, ଅଧିକତର ଲମ୍ବା, କୋଳାହଳପୂର୍ଣ୍ଣ ଓ ଗହଳି ରାସ୍ତାବାଟେ ଯାଏ ।

"ଏହି ରାସ୍ତା ଗୋଟିଏ ଗ୍ରୁମ୍ବାଚ୍ଛନ୍ନ ପ୍ରକାଣ୍ଡ ବିବର ବାଟେ ଦେଇ ଯାଇଛି । ସେହି ସ୍ଥାନ ଅତ୍ୟନ୍ତ ଗହଳି ଓ ଗୋଳମାଳ ପୂର୍ଣ୍ଣ । ଏଇଠି ମୁଁ ଚନ୍ଦ୍ର-କଟତର ମାତୃଜାତିକୁ ଦେଖେଁ । ସେମାନଙ୍କୁ ମହୁମାଛି ପରିଚ ରାଣୀମହୁମାଛି କୁହାଯାଇପାରେ । ସେମାନେ ଏକପ୍ରକାର ମଧୁଚକ୍ର ତୁଲ୍ୟ କାଚର

ଛଟିକାଣିଆ ଛିଦ୍ରବାଟ ଦେଇ ଅନାଉଥାନ୍ତି, କିମ୍ବା ବାହାର ପଛପଟରି ବିସ୍ତୀର୍ଣ୍ଣ ଖୋଲା ସ୍ଥାନରେ ବୁଲୁଥାନ୍ତି, କିମ୍ବା ନିମ୍ନସ୍ଥ ଅଣ-ଓସାରିଆ ଘର ଗୁଡ଼ିକରେ କାମ କରୁଥିବା ଜନ୍ତୁରକ୍ଷୀମାନେ ସେମାନଙ୍କର ପସନ୍ଦ ମତେ ଯେଉଁ ଖେଳନା ଓ ବାଦ୍ୟଯନ୍ତ୍ର ଗୁଡ଼ିକ ତିଆରି କରିଥାନ୍ତି ସେମାନେ ସେଗୁଡ଼ିକ ବାଜୁଥାନ୍ତି । ସେମାନଙ୍କର ଚେହେରା ଦେଖିବାକୁ ବେଶ୍ ଜାକଜମକ । ସେମାନେ ଅତି ବିଚିତ୍ର ଭାବରେ ଏବଂ ବେଳେବେଳେ ବେଶ ସୁନ୍ଦର ଭାବରେ ଭୂଷିତ ହୋଇଥାନ୍ତି । ସେମାନଙ୍କର ଚାଲି ଦାମ୍ଭିକତା ପୂର୍ଣ୍ଣ, ଏବଂ ସେମାନଙ୍କର ପାତି ଛଡ଼ା ବାକି-ମୁଣ୍ଡଟା କ୍ଷୁଦ୍ରାତିକ୍ଷୁଦ୍ର ।

"ଚନ୍ଦ୍ରର ଯୌନ ଜୀବନ ବିଷୟରେ, ଅର୍ଥାତ ଗୃଧ୍ରକମାନଙ୍କର ବିବାହ କରିବା ଓ ବିବାହ ଦେବାର ରୀତିନୀତି, ସେମାନଙ୍କର ଜନ୍ମ ଇତ୍ୟାଦି ବିଷୟରେ ଏ ପର୍ଯ୍ୟନ୍ତ ମୁଁ ଅତି ଅଳ୍ପ ଜ୍ଞାନଲାଭ କରିପାରିଛି । ଯାହାହେଉ, ଫି-ହର ପାର୍ଥିବ ଭାଷାରେ ଦକ୍ଷତା କ୍ରମେ କ୍ରମେ ବଢ଼ିବା ସଙ୍ଗେ ସଙ୍ଗେ ମୋର ଅଜ୍ଞାନତା ମଧ୍ୟ କ୍ରମେ କ୍ରମେ ଦୂର ହୋଇଯିବ । ମୋର ବିଶ୍ୱାସ, ସିମ୍ପାଞ୍ଜି ଓ ମନୁଷ୍ୟମାନଙ୍କର ସମାଜରେ ଯେପରି ଏମାନଙ୍କର ସମାଜରେ ମଧ୍ୟ ସେହିପରି କ୍ଳୀବଲିଙ୍ଗୀ ଜୀବମାନେ ସଂଖ୍ୟାଗରିଷ୍ଠ । ଅବଶ୍ୟ ପୃଥିବୀରେ ଆମର ସହରମାନଙ୍କରେ ଆଜିକାଲି ଅନେକେ ମନୁଷ୍ୟର ସ୍ୱାଭାବିକ ଜୀବନ ଅର୍ଥାତ୍ ବୈବାହିକ ଜୀବନ ଯାପନ କରନ୍ତି ନାହିଁ । କିନ୍ତୁ, ଏଠି, ସିମ୍ପାଞ୍ଜି ସମାଜପରି ଏମାନଙ୍କ ସମାଜରେ ମଧ୍ୟ ଅବୈବାହିକ ଜୀବନ ସ୍ୱାଭାବିକ ଅବସ୍ଥା ହୋଇଗଲାଣି । ତେଣୁ ବଂଶବୃଦ୍ଧି କରିବାର ସମସ୍ତଭାର ଏହି ଅଳ୍ପ ସଂଖ୍ୟକ ବିଶେଷ ଶ୍ରେଣୀର ଜନନୀମାନଙ୍କ ଉପରେ ନ୍ୟସ୍ତ ହୁଏ । ଗ୍ରହ ସଂସାରର ଏହି ମାତୃଜାତି ବିଶାଳକାୟା ଓ ହୃଷ୍ଟା, ଏବଂ ଗୃଧ୍ରକ-ଶୃକଗୁଡ଼ିକ ଧାରଣ କରିବା ପାଇଁ ଏମାନେ ସମ୍ପୂର୍ଣ୍ଣ ଉପଯୁକ୍ତ । ଫି-ହର କଥାରୁ ମୁଁ ବୁଝିଲି, ଏମାନେ ଯେଉଁ ଛୁଆ ଜନ୍ମ କରନ୍ତି ତାକୁ ପାଳନ କରିବା ପାଇଁ ଏମାନେ ସମ୍ପୂର୍ଣ୍ଣ ଅକ୍ଷମ । କେତେବେଳେ ଅତି ଖେଳ କରିବାକୁ ଯାଇଁ ବୋକାମିର ପରିଚୟ ଦିଅନ୍ତି । କେତେବେଳେ ବା ରାଗିଉଠି ଛୁଆମାନଙ୍କୁ ଆକ୍ରମଣ କରନ୍ତି । ତେଣୁ ସେହି ନରମ ମାଂସଳ ପାଣ୍ଡୁବର୍ଣ୍ଣର ଛୁଆଙ୍କୁ ଯେତେ ଶୀଘ୍ର ସମ୍ଭବ ଚାରକୁମାସ ସ୍ତ୍ରୀ

ମାନଙ୍କ ରଂ କମା ହୋଇ ଦିଆଯାଏ । ସେମାନେ ଏକପ୍ରକାର ସ୍ତ୍ରୀ 'ଶ୍ରମିକ' ଏବଂ ସେମାନଙ୍କ ମଧ୍ୟରୁ କାହାର କାହାରି ମସ୍ତିଷ୍କ ପୁରୁଷ ବୃଦ୍ଧଙ୍କର ମସ୍ତିଷ୍କ ପରି ବଡ଼ ।

ଦୁର୍ଭାଗ୍ୟ ବଶତଃ ଠିକ୍ ଏଇଠି ବାର୍ତ୍ତାଟି ଛିଡ଼ିଯାଇଛି । ଏହି ପରିଚ୍ଛେଦରେ ଥିବା ବିଷୟଗୁଡ଼ିକ ଖଣ୍ଡ ଖଣ୍ଡ ହୋଇଥିଲେ ମଧ୍ୟ ଏବଂ ଆମର କୌତୂହଳ ଉଦ୍ଦୀପନ କରି ତାପରେ ନିରାଶ କରିଥିଲେ ମଧ୍ୟ, ଏହି ଅଦ୍ଭୁତ ଓ ଆଶ୍ଚର୍ଯ୍ୟଜନକ ଜଗତ ବିଷୟରେ ଅସ୍ପଷ୍ଟ ମୋଟାମୋଟି ଧାରଣା ଏଥିରୁ ମିଳୁଛି । କିଏ ଜାଣେ କେତେ ଶୀଘ୍ର ଏହି ଜଗତ ସହିତ ଆମର ଜଗତର ସଂଘର୍ଷ ଘଟିବ । ମଝିରେ ମଝିରେ ଖସି ଆସୁଥିବା ଏହି ବାର୍ତ୍ତା, ପାହାଡ଼ ତଳର ନିସ୍ତବ୍ଧତା ଭିତରେ ରେକର୍ଡ କଣ୍ଟାର ଏହି ଗୁଞ୍ଜନ ମନୁଷ୍ୟର ପରିସ୍ଥିତିରେ ଏପରି ଗୋଟିଏ ପରିବର୍ତ୍ତନର ପ୍ରଥମ ସୂଚନା ଦେଉଛି ଯେପରି ପରିବର୍ତ୍ତନ ବିଷୟରେ କି ମାନବ ଜାତି କେବେ କଳ୍ପନା ସୁଦ୍ଧା କରି ନଥିଲା । ଆମର ଗ୍ରହର ଏହି ଉପଗ୍ରହରେ ନୂତନ ମୌଳିକ ବସ୍ତୁମାନ ଅଛି, ନୂତନ କଳକବଜା ଅଛି, ନୂତନ ଘାତମାତ ଅଛି, ନୂତନ ନୂତନ ସଂଯୋଗିତ ଧାରଣା ଅଛି ଯାହାକି ମନୁଷ୍ୟଙ୍କୁ ଅଭିଭୂତ କରି ଦେଇପାରେ । ଲୁହା କମ୍ବା କାଠ ପରି କୁଚି କୁଚି ହୋଇ ସୁନା ଜମା ହୋଇଛି, ଏବଂ ଯେଉଁ ଅଦ୍ଭୁତ ଜାତି ସେଠାରେ ବାସ କରନ୍ତି, କର୍ତ୍ତୃତ୍ୱ ଲାଭପାଇଁ ଦିନେ ନା ଦିନେ ତାଙ୍କ ସହିତ ଆମର ସଂଗ୍ରାମ ଘଟିବା ଅନିବାର୍ଯ୍ୟ .....



## ୨୫

# ମହା ଗ୍ରନ୍ଥିକ

ସର୍ବଶେଷ ବାର୍ତ୍ତାର ପୂର୍ବ ବାର୍ତ୍ତାଟି କେଉଁଠୁ ମହାନ ଚନ୍ଦ୍ରର ଶାସକ ଓ କର୍ତ୍ତା ମହାଗ୍ରନ୍ଥଙ୍କ ଭେଟ କଥା ବ କରିଛି । ଏହି ବାର୍ତ୍ତାର ଅଧିକାଂଶ କେଉଁଠୁ ବିନା ବାଧାରେ ପଠେଇ ପାରିଛି, କିନ୍ତୁ ଶେଷଭାଗରେ ତାକୁ ବାଧା ଦେବାର ଚେଷ୍ଟା କରାଯାଇଛି ବୋଲି ମନେ ହୁଏ । ଦ୍ୱିତୀୟ ବାର୍ତ୍ତାଟି ଏକବର୍ଷପ୍ରାୟର ବ୍ୟବଧାନରେ ଆସିଛି ।

ପ୍ରଥମ ବାର୍ତ୍ତାଟି ଏହିପରି ଆରମ୍ଭ ହୋଇଛି "ପରିଶେଷରେ ମୁଁ ଏହା ପୁଣି ପଠେଇବାକୁ ସକ୍ଷମ ହୋଇଛି—" ତାପରେ ଏହା କିଛି ଦୂରଯାଏ ସମ୍ପୂର୍ଣ୍ଣ ଅସ୍ପଷ୍ଟ ହୋଇଯାଇଛି ଏବଂ କିଛି ସମୟ ପରେ ପୁଣି ବାକ୍ୟର ମଝିରୁ ଆରମ୍ଭ ହୋଇଛି ।

ନିମ୍ନଲିଖିତ ବାକ୍ୟରୁ ହଜି ଯାଇଥିବା ଶବ୍ଦଟି ବୋଧହୁଏ "ଜନତା" ତାହାପରେ ଖୁବ ସ୍ପଷ୍ଟ ଭାବରେ ବୁଝି ହେଉଛି; "କ୍ରମେ କ୍ରମେ ବଢ଼ିବାକୁ ଲାଗିଲା । ଆମେ ମହାଗ୍ରନ୍ଥଙ୍କର ରାଜପ୍ରାସାଦର—ଯାହ କେତେଗୁଡ଼ିଏ ସମାନ୍ତରାଳ ଭୂଖଣ୍ଡକୁ ରାଜପ୍ରାସାଦ କୁହାଯାଏ—ଯେତେ ନିକଟକୁ ଆସିଲୁଁ ଆମର ଚତୁର୍ଦ୍ଦିଗରେ ସେତେ ବେଶୀ ଗହଳି ହେବାକୁ ଲାଗିଲା । ଚତୁର୍ଦ୍ଦିଗରେ ଅସଂଖ୍ୟ ମୁଖ ମତେ ନିରୀକ୍ଷଣ କରୁଥିଲା—ଗୋବରପୋକର ଡେଣାପରି ପଦାର୍ଥରେ ନିର୍ମିତ, ହାଡ଼କଙ୍କାଳହୀନ ମେଲା ପାଟି ଓ ମୁଖା, ବୃହତ ଘ୍ରାଣେନ୍ଦ୍ରିୟ ଉପରୁ ଉଙ୍କି ମାରୁଥିବା ଆଖି, କଦାକାର କପାଳ ହାଡ଼ ତଳୁ ମିଟି ମିଟି ଚାହୁଁଥିବା ଆଖି । ଆମ ପାଦପାଖରେ ସାଲୁବାଲୁ ହେଉଥିବା କ୍ଷୁଦ୍ରକାୟ ଜୀବଗୁଡ଼ିକ 'କ୍ୟାଙ୍କ୍' ଶବ୍ଦ କରି ସାମନାରୁ ଦୌଡ଼ି ପଳାଉଥିଲେ, ଏବଂ ବହୁ ପରବିଶିଷ୍ଟ ମୋଡ଼ ମୋଡ଼ିକିଆ ବେକ ଉପରେ ଝୁଲନ୍ତା ହୋଇଥିବା ଶିର-ଭୂଷଣାବୃତ ମୁଣ୍ଡମାନ ଅନ୍ୟମାନଙ୍କର କାନ୍ଧ ପଛପଟୁ ଓ କାଖତଳୁ ଉଙ୍କି

ମରୁଥିଲେ । ମୋର ପୃଷ୍ଠପଟେ ଯେଉଁ ସମ୍ଭ୍ରାନ୍ତ ଜନକ ବ୍ୟବଧାନରେ ଫମ୍ପା ମୁଣ୍ଡିଆ ଗମ୍ଭୀର ଦେହରକ୍ଷୀମାନେ ଅଗ୍ରସର ହେଉଥିଲେ । "କେନ୍ଦ୍ର ସମୁଦ୍ରର ପ୍ରଣାଳୀରେ ଆମେ ଯେଉଁ ନୌକାରେ ବସି ଆସିଥିଲୁଁ ସେହି ନୌକାରୁ ଆମେ ଓହ୍ଲାଇବାର ଠିକ୍ ପରେ ଏହି ଦେହରକ୍ଷୀମାନେ ଆମର ଦଳରେ ଯୋଗ ଦେଇଥିଲେ । ତୀକ୍ଷ୍ଣ-ଚକ୍ଷୁ ବିଶିଷ୍ଟ କ୍ଷୁଦ୍ରମସ୍ତିଷ୍କ ଆରୀ ଚାକର ମଧ୍ୟ ଆମ ଦଳରେ ଯୋଗ ଦେଇଥିଲା । ମୋର ପଦମର୍ଯ୍ୟାଦା ରକ୍ଷା କରିବାପାଇଁ ଯେଉଁସବୁ ଆବଶ୍ୟକୀୟ ପଦାର୍ଥ ସାଙ୍ଗରେ ନଆସିବା ଉଚିତ ବୋଲି ବିବେଚିତ ହୋଇଥିଲା ସେହି ସବୁ ଅସଂଖ୍ୟ ସାମଗ୍ରୀ ବୋହି କୃଶକାୟ କୁଲୀ କାଠଦଳ ଝଲ ଝଲ କଷ୍ଟରେ ଚାଲୁଥିଲେ । ଆମର ଯାତ୍ରାର ଶେଷଭାଗରେ ମତେ ଗୋଟିଏ ଡୋଲିରେ ବସେଇ ନଆଗଲା । ଏହି ଡୋଲି ଯେଉଁ ନରମ ଧାତୁରେ ନିର୍ମିତ ହୋଇଥିଲା ତାହାର ବର୍ଣ୍ଣ ଗାଢ ଦେଖାଯାଉଥିଲା, ତାହା ଜାଲପରି ବୁଣା ହୋଇଥି, ଏବଂ ତାର ଖୁଣ୍ଟ ଗୁଡ଼ିକ ଫିକା ବର୍ଣ୍ଣର ଧାତୁରେ ନିର୍ମିତ ହୋଇଥିଲା । ମୁଁ ଅଗ୍ରସର ହେଉଁ ହେଉଁ ମୋର ପୃଷ୍ଠଦେଶରେ ଗୋଟିଏ ଲମ୍ବା ଓ ଜଟିଳ ଶୋଭାଯାତ୍ରା ଗଢି ଉଠିଲା ।

"ମୋର ସମ୍ମୁଖରେ ରାଜାଙ୍କର ଆଗମନ ଘୋଷଣାକାରୀ ଘୃଚଣପର ଘୃତଜଣ ଭେଣ୍ଟିମୁହାଁ ଘୃଦ୍ଧ୍ରଙ୍କ ବିକଟ ଚିତ୍କାର କରି କରି ଯାଉଥିଲେ । ତା'ପରେ ସମ୍ମୁଖରେ ଓ ପାର୍ଶ୍ୱ ଭାଗରେ ମୋଟା ଗେଡ଼ା ବାଟ କଡ଼ାକିମାନେ ଦୃଢ଼ ପଦବିକ୍ଷେପରେ ଅଗ୍ରସର ହେଉଥିଲେ; ଏବଂ ମୋର ଉଭୟ ପାର୍ଶ୍ୱରେ ଚାଲୁଥିଲେ ମାଳ ମାଳ ବଙ୍କମୁଣ୍ଡ—ଏକପ୍ରକାର ସୈନ୍ୟ ଅବଧାନ । ଫି-ଉ ବୁଝେଇ ଦେଲା ଯେ, ମହାବୃଦ୍ଧ୍ରଙ୍କୁ ତଥ୍ୟ ଯୋଗାଇବା ପାଇଁ ଏହି ବଙ୍କମୁଣ୍ଡମାନେ ତାଙ୍କ ପୃଷ୍ଠପଟେ ଯେଉଁ ଚୁଡ଼ା ହେବେ । (ଗୃହୀସ୍ଥ ବିଜ୍ଞାନରେ ଏପରି କୌଣସି ଜିନିଷ ନାହିଁ, ଏପରି କୌଣସି ଚଳ୍ତାପ୍ରଣାଳୀ ଆବିଷ୍କାର ନାହିଁ ଯାହାକି ଏହି ଆଶ୍ଚର୍ଯ୍ୟଜନକ ଜୀବମାନେ ସେମାନଙ୍କ ମୁଣ୍ଡ ଭିତରେ ସଞ୍ଚିତ କରି ରଖି ନାହାନ୍ତି !) ଏମାନଙ୍କ ପଛେ ପଛେ ରକ୍ଷୀ ଓ କୁଲୀମାନେ ଯାଉଥିଲେ, ଏବଂ ତାପରେ ଫି-ଉର ଷ୍ଫୁଟିତ ମସ୍ତିଷ୍କ ଗୋଟିଏ ଡୋଲିରେ ବୁହାହୋଇ ଯାଉଥିଲା । ତା ପଛକୁ ସି ଫସ୍ ଗୋଟିଏ କମ୍ ଜାକଜମକ ଡୋଲିରେ ଯାଉଥିଲା; ତା'ପରେ ମୁଁ ସର୍ବାପେକ୍ଷା ଅଧିକ

ଜାକଜମକ ଡୋଲିରେ ବସି ଯାଉଥିଲି, ଏବଂ ମୋର ଚାରିପଟେ ଖାଦ୍ୟ ଓ ପାନୀୟ ବାହକମାନେ ବେଢ଼ିଥିଲେ । ମୋ ପଛରେ ବିକଟ ଚିତ୍କାରରେ କାନ ଫଟେଇ ଆତୁର ଭେରୀମୁଖା ଆସୁଥିଲେ ଏବଂ ତା ପରେ ଆସୁଥିଲେ ଅନେକଗୁଡ଼ିଏ ବଡ଼ମୁଣ୍ଡିଆ, ସେମାନଙ୍କୁ ସ୍ୱତନ୍ତ୍ର ସମ୍ବାଦଦାତା ବା ଇତିହାସ ଲେଖକ ବୁଝି ଯାଇପାରେ । ଏହି ଯୁଗ ପ୍ରବର୍ତ୍ତକ ମହା ସାକ୍ଷାତର ପ୍ରତ୍ୟେକ ସୂକ୍ଷ୍ମ ବିବରଣୀ ଲିପିକରି ମନେ ରଖିବାର କାର୍ଯ୍ୟଭାର ସେମାନଙ୍କ ଉପରେ ନ୍ୟସ୍ତ ହୋଇଥିଲା । ମେଞ୍ଚା ମେଞ୍ଚା ସୁବାସିତ ଛତ୍ର ବୋହି ଏବଂ ପତାକା ଓ ବିଚିତ୍ର ପ୍ରତୀକମାନ ଧରି ଆସୁଥିବା ଦଳେ ଭୃତ୍ୟ ପଶ୍ଚାତ୍ ଭାଗରେ ଅନ୍ଧକାରରେ ମିଶି ଯାଉଥିଲେ । ରାସ୍ତାର ଦୁଇ କଡ଼ରେ ବାଟ କଙ୍ଗାଳୀ ଓ ଚକଚକିଆ ପୋଷାକପିନ୍ଧା କର୍ମଚାରୀଗଣ ଧାଡ଼ିବାନ୍ଧି ଚାଲୁଥିଲେ, ଏବଂ ସେହି ଧାଡ଼ିର ପଛରେ ମୋର ଆଖି ଯେତେଦୂର ଯାଉଥିଲା ମୁଁ ବିରାଟ ଜନତାର ଅଗଣିତ ମସ୍ତକ ଦେଖି ପାରୁଥିଲି ।

ମୁଁ ସ୍ୱୀକାର କରୁଛି ଯେ ଏପର୍ଯ୍ୟନ୍ତ ମୁଁ ସ୍ୱାଧୀନ ଚେତନାର ଅଭିଜ୍ଞତା ପ୍ରତି ସମ୍ପୂର୍ଣ୍ଣ ଅଭ୍ୟସ୍ତ ହୋଇନାହିଁ । ତେଣୁ ଏହି ଉଚ୍ଛ୍ୱସିତ ବିରାଟ ଜନତାର ବିସ୍ତୀର୍ଣ୍ଣ ସାଗରରେ ଭାସିଯିବାକୁ ମତେ ପ୍ରୀତିକର ବୋଧ ହେଉ ନ ଥିଲା । କ୍ଷଣକପାଇଁ ମତେ ଲାଗିଲା, ଯେପରିକି ମୁଁ ବିଭୀଷିକା ଦେଖୁଛି । ଏହି ଚନ୍ଦ୍ର ବିବରମାନଙ୍କରେ ପୂର୍ବେ ମଧ୍ୟ ମୋର ଏହି ଅନୁଭବ ଜାତ ହୋଇ-ଥିଲା, ଯେତେବେଳେ ମୁଁ ଅସ୍ତ୍ରହୀନ ଭାବରେ ଏବଂ ମୋର ପଛପଟେ କୌଣସି ଆଚ୍ଛାଦନ ନ ଥାଇ ଅସହାୟ ହୋଇପଡ଼ିଥିଲି । କିନ୍ତୁ ସେତେବେଳେ ଏପରି ତୀବ୍ର ଭାବରେ ମୁଁ ତାହା ଅନୁଭବ କରି ନ ଥିଲି । ଏହା ଅବଶ୍ୟ ଅତି ନିର୍ବୋଧ ଅନୁଭବ, ଏବଂ ମୁଁ ଆଶା କରୁଛି କ୍ରମେ କ୍ରମେ ଏହା ଦମନ କରି ପାରିବି । କିନ୍ତୁ ଯେତେବେଳେ ସେହି ବିରାଟ ବିଶୃଙ୍ଖଳ ଜନତା ଭିତରକୁ ମୁଁ ପଶିଗଲି ମୁହୂର୍ତ୍ତିକପାଇଁ ମତେ ଏପରି ବୋଧ ହେଲା ଯେ କେବଳ ଡୋଲିକୁ ଜୋରରେ ଜାକିଧରି ଏବଂ ମୋର ସମସ୍ତ ଇଚ୍ଛାଶକ୍ତି ଏକତ୍ରିତ କରି ମୁଁ ଭୀତ ଚିତ୍କାର କିମ୍ବା ଏବଂବିଧ କୌଣସି ବ୍ୟବହାରକୁ ନିବାରଣ କରିପାରିଲି । ଏହି ଅନୁଭବ ବୋଧହୁଏ ତିନିମିନିଟ ପର୍ଯ୍ୟନ୍ତ ସ୍ଥାୟୀ ହୋଇ-ଥିଲା; ତା ପରେ ମୁଁ ପୁଣି ନିଜକୁ ଆୟତ୍ତ କରିପାରିଲି ।

କିଛି ସମୟ ପର୍ଯ୍ୟନ୍ତ ଆମେ ଗୋଟିଏ ଉର୍ଦ୍ଧ୍ୱମୁଖୀ ମୋଡ଼ମୋଡ଼ିକିଆ ପଥ ଆରୋହଣ କରିବାକୁ ଲାଗିଲୁଁ ଏବଂ ତାପରେ ଗୋଟିକପରେ ଗୋଟିଏ ଅନେକଗୁଡ଼ାଏ ପ୍ରକାଣ୍ଡ ପ୍ରକାଣ୍ଡ ହଲ ଘର ପାରି ହେଲୁଁ । ସେହି ହଲ ଘର ଗୁଡ଼ିକର ଛାତ ଗମ୍ବୁଜପରି ଏବଂ ପରିପାଟୀ ସହିତ ସଜ୍ଜିତ ହୋଇଥିଲା । ମହାବୃଦ୍ଧଙ୍କ ଦରବାରର ପ୍ରବେଶ ପଥ ବାସ୍ତବିକ ଏପରି ଭାବରେ ନିର୍ମିତ ହୋଇଥିଲା ଯେପରିକି ଦର୍ଶକ ସେଥିରୁ ତାଙ୍କର ବଡ଼ିମା ବିଷୟରେ ପୂର୍ଣ୍ଣ ଭାବରେ ଅବହିତ ହୋଇପାରିବ । ଆମେ ଯେତେ ଭିତରକୁ ପଶିବାକୁ ଲାଗିଲୁଁ ପ୍ରତ୍ୟେକ ହଲର ତାର ପୂର୍ବର ହଲର ଅପେକ୍ଷା ପ୍ରଶସ୍ତ ହୋଇ ଯାଉଥିଲା ଏବଂ ତାର ଶିଳ୍ପ ଅଧିକ ସୁଦୃଶ୍ୟ ହୋଇ ଉଠୁଥିଲା । କ୍ଷୀଣ ଫସ୍‌ଫରସ୍‌ର ନୀଳ ଧୂପରୁ ନିର୍ଗତ ପାତଳା ଧୂଆଁର କୁହୁଡ଼ି କ୍ରମେ କ୍ରମେ ବଢ଼ିଲା ହୋଇ ଯାଉଥିବାରୁ ମନେ ହେଉଥିଲା ସ୍ଥାନଟି ଅଧିକତର ପ୍ରଶସ୍ତ ହୋଇ ଉଠୁଛି । ଏଥିଯୋଗୁଁ ଆମର ନିକଟତମ ପଦାର୍ଥଗୁଡ଼ିକ ମଧ୍ୟ ଅସ୍ପଷ୍ଟ ଦେଖା ଯାଉଥିଲେ । ମୋର ମନେ ହେଉଥିଲା ମୁଁ କ୍ରମଶଃ କୌଣସି ବିଶାଳତର ଅସ୍ପଷ୍ଟତର ଏବଂ ଅବାସ୍ତବ ବସ୍ତୁ ଆଡ଼କୁ ଅଗ୍ରସର ହେଉଛି ।

"ମୁଁ ସ୍ୱୀକାର କରୁଛି ଯେ ଏହି ବିରାଟ ଜନତା ସମ୍ମୁଖରେ ମୁଁ ନିଜକୁ ଅତ୍ୟନ୍ତ ଅପରିଷ୍କାର ଓ ଅନୁପଯୁକ୍ତ ମନେ କରିଥିଲି । ମୁଁ ସ୍ଥିର ହୋଇ ନଥିଲି ଓ ମୋର ବେଶ ଅତି ଅବିନ୍ୟସ୍ତ ଥିଲା—ମୁଁ ଯାହାରେ କ୍ଷୁର ନ ଆଣି ଚନ୍ଦ୍ରକୁ ଆସିଥିଲି—ମୋର ମୁହଁ ଉପରେ ବହଳ ଦାଢ଼ି ଗଜେଇ-ଥିଲା । ପୃଥିବୀରେ ମୁଁ କେବଳ ପରିଷ୍କାର ରହିବାଛଡ଼ା ମୋର ବେଶଭୂଷା ପ୍ରତି ବରାବର ଅବହେଳା ପ୍ରଦର୍ଶନ କରି ଆସିଛି; କିନ୍ତୁ ବର୍ତ୍ତମାନ ଯେଉଁ ଅସାଧାରଣ ପରିସ୍ଥିତିରେ ମୁଁ ପଡ଼ିଥିଲି, ମୋର ଗ୍ରହର ଏବଂ ମାନବ ଜାତିର ପ୍ରତିନିଧିରୂପେ ମୁଁ ଉପସ୍ଥିତ ହୋଇଥିଲି, ଏବଂ ଉପଯୁକ୍ତ ଅଭ୍ୟର୍ଥନା ଲାଭ କରିବା ଅନେକ ପରିମାଣରେ ମୋର ବେଶଭୂଷାର ପରିପାଟି ଉପରେ ନିର୍ଭର କରୁଥିଲା ବୋଲି ମନେ କରୁଥିଲି, ଏପରି ଅବସ୍ଥାରେ ମୁଁ ଯେଉଁ କୁତ୍ସିତ ବେଶ ପିନ୍ଧିଥିଲି ତା ଅପେକ୍ଷା ଟିକିଏ ରୁଚିକର ଓ ସମ୍ଭ୍ରାନ୍ତ ପୋଷାକ ପାଇବା ପାଇଁ ମୁଁ ଅନେକ କିଛି ଦେଇପାରିଥାନ୍ତି । ଚନ୍ଦ୍ର ପ୍ରାଣୀବିହୀନ ହୋଇଥିବ ବୋଲି ମୁଁ ଏତେଦୂର ନିଶ୍ଚିତ ହୋଇ ଆସିଥିଲି ଯେ, ଏପରି

କୌଣସି ସତର୍କତା ଅବଲମ୍ବନ କରିବା ପ୍ରତି ମୁଁ ଆଦୌ ନଜର ଦେଇ ନ ଥିଲି । ମୁଁ ଗୋଟିଏ ଗରମ କୋଟ, ଚୁଡ଼ିଦାର ପାଇଜାମା, ଏବଂ ଗଲ୍‌ଫ ଖେଳିବାର ମୋଜା ଦ୍ୱାରା ବିଭୂଷିତ ହୋଇଥିଲି । ତାପରେ ପୁଣି ସେହି ପୋଷାକ ଚନ୍ଦ୍ରର ଯାବତୀୟ ମଳଦ୍ୱାରା ଆଚ୍ଛାଦିତ ହୋଇଥିଲା । ମୋର ଗୋଡ଼ରେ ଥିଲା ଚଟି ହଲେ (ବାଁ ଗୋଡର ଚଟି ଟିକୁ ଚୋଇଠି ଛାଡ଼ି ଯାଇଥିଲି), ଏବଂ ଗୋଟିଏ କମ୍ବଳରେ କଣା କରି ତା ଭିତରେ ମୁଁ ମୁଣ୍ଡ ଗଳେଇଥିଲି । (ଏହି ଲୁଗାପଟା ଏପର୍ଯ୍ୟନ୍ତ ମୁଁ ପିନ୍ଧିଛି ।) ଖାଡ଼ା ଖାଡ଼ା ବାଳଗୁଡ଼ିକ ମୋର ଚେହେରାକୁ ଆହୁରି କଦାକାର କରିଦେଇଥିଲା । ମୋର ପାଇଜାମାର ଆଣ୍ଠୁରେ ଠାଏ ଚିରି ଯାଇଥିଲା, ତେଣୁ ମୁଁ ଢୋଲିରେ ଆଣ୍ଠୁ-ମାଡ଼ି ବସିବାଦ୍ୱାରା ଚିରା ଜାଗାଟା ସ୍ପଷ୍ଟରୂପେ ଫୁଟି ଦିଶୁଥିଲା । ମୋର ଡାହାଣ ଗୋଡ଼ର ମୋଜା ମଧ୍ୟ ଥରକୁ ଥର ଫିଟି ପଡ଼ୁଥିଲା । ମୋର ଚେହେରା ମାନବ ଜାତିକୁ କେଡ଼େ ହଟହଟାରେ ପକାଉଥିଲା ତାହା ମୁଁ ବୁଝିପାରୁଥିଲି, ଏବଂ ଯଦି ଏହି ଚେହେରାକୁ ଆଉ ଟିକିଏ ସଜବାଜ ଓ ଭଦ୍ରଜନୋଚିତ କରିବାର କୌଣସି ଉପାୟ ଥାନ୍ତା ତାହାହେଲେ ମୁଁ ତାହା ନକରି ଛାଡ଼ି ନଥାନ୍ତି । କିନ୍ତୁ କୌଣସି ଉପାୟ ମୁଁ ପାଇଲି ନାହିଁ । କମ୍ବଳକୁ ଯାହା କରାଯାଇପାରେ ମୁଁ କଲି, ଅର୍ଥାତ ରୋମୀୟମାନଙ୍କ ପରିଚ୍ଛଦ ପରି ତାକୁ ପିଠି ପଛପଟେ ଝୁଲେଇ ଦେଲି ଏବଂ ବାକି ବିଷୟରେ ଏତିକି କରି ପାରିଲି ଯେ, ଢୋଲିର ଦୋହଲି ସହିତ ଯେତେଦୂର ସମ୍ଭବ ସ୍ଥିର ଫୁଲେଇ ବସି ରହିଲି ।

"ତୁମେ ଦେଖିଥିବା ପ୍ରକାଣ୍ଡତମ ହଲ ଘର କଥା ଭାବ ଦେଖ, ତାହା ନେଳିଆ ଆଲୁଅଦ୍ୱାରା ଅସମ୍ପୂର୍ଣ୍ଣ ଭାବରେ ଆଲୋକିତ ହୋଇଛି ଓ ଧୂସର ନୀଳ କୁହୁଡ଼ି ଦ୍ୱାରା ଆଚ୍ଛାଦିତ ହୋଇଛି ବୋଲି ମନେ କର, ମୁଁ ଯେଉଁ ବିଭିନ୍ନ ଅଦ୍ଭୁତ ଧରଣର ଜୀବମାନଙ୍କ କଥା କହୁଛି ସେହିପରି କୃଷ୍ଣ ବର୍ଣ୍ଣର ବା ପାଣ୍ଡୁର ଧୂସର ବର୍ଣ୍ଣର ଜୀବମାନଙ୍କଦ୍ୱାରା ସେହି ହଲଘର ପୂର୍ଣ୍ଣ ହୋଇଛି ବୋଲି କଳ୍ପନା କର । ମନେକର ଏହି ହଲଘର ଗୋଟିଏ ଖୋଲା ଖିଲ୍ଲଣରେ ଶେଷ ହୋଇ ଅଛି, ତା ପଛକୁ ଆହୁରି ବଡ଼ ହଲଘରଟିଏ ଅଛି, ଏବଂ ତା ପଛକୁ ତାଠାରୁ ଆହୁରି ବଡ଼ ହଲଘର, ଏହିପରି ଭାବରେ ଗଲାଛି । ଏହି

ଦୃଶ୍ୟର ଶେଷକରେ ଅସ୍ପଷ୍ଟ ଭାବରେ ଦେଖା ଯାଉଥିବା ଅନେକ ଗୁଡ଼ିଏ ପାହାଚ, ମନ୍ଦିରର ଆଗକୋଠାରେ ଥିବା ପାହାଚପରି, ସେଗୁଡ଼ିକ ଅନେକ ଉପରକୁ ଉଠି ଅଦୃଶ୍ୟ ହୋଇଯାଇଛନ୍ତି । ଏହି ପାହାଚ ଗୁଡ଼ିକର ପାଦଦେଶରେ ଯେତେ ନିକଟକୁ ଅଗ୍ରସର ହେଲି ସେଗୁଡ଼ିକ କ୍ରମେ କ୍ରମେ ଅଧିକ ଉଚ୍ଚକୁ ଉଠିଛନ୍ତି ବୋଲି ମନେ ହେଲା । ପରିଶେଷରେ ମୁଁ ଗୋଟିଏ ପ୍ରକାଣ୍ଡ ଖିଲାଣ ତଳେ ପହଞ୍ଚିଲି, ଏବଂ ପାହାଚଗୁଡ଼ିକର ଶିଖର ଦେଶ ଦେଖିପାରିଲି । ଶିଖର ଦେଶରେ ଗୋଟିଏ ସିଂହାସନ ଉପରେ ସମାସୀନ ହୋଇଥିଲେ ମହାଗୁରୁଜୀଙ୍କ ।

"ସେ ଆତ୍ମମଗ୍ନ ନୀଳିମାର ଉଗ୍ରଜ୍ୟୋତି ଭିତରେ ବସିଥିଲେ । ଏହାର ଯୋଗୁଁ ଏବଂ ତାଙ୍କର ଚତୁଃପାର୍ଶ୍ୱର ଅନ୍ଧକାର ଯୋଗୁଁ ସେ କଳା-ନୀଳ ଶୂନ୍ୟତା ମଝିରେ ଭାସିଲାପରି ଦିଶୁଥିଲେ । ପ୍ରଥମେ ସେ ଗୋଟିଏ ଆତ୍ମୋଜ୍ଜ୍ୱଳ କ୍ଷୁଦ୍ର ମେଘପରି ଦିଶୁଥିଲେ । ତାଙ୍କର କଳା ସିଂହାସନ ଉପରେ ସେ ଧ୍ୟାନମଗ୍ନ ଭାବରେ ବସିଥିଲେ । ତାଙ୍କର ମସ୍ତିଷ୍କ ଅନେକ ଫୁଟ ଉଚ୍ଚତା କୁ ଉଦ୍ଦେଶ୍ୟରେ କେଳାଣି, ଅନେକଗୁଡ଼ିଏ ନେଳିଆ ସନ୍ଧାନୀ-ଆଲୋକ ତାଙ୍କର ସିଂହାସନ ପଛପଟୁ ବିକଶିତ ହେଉଥିଲା, ଏବଂ ଗୋଟିଏ ଜ୍ୟୋତିମଣ୍ଡଳ ତାଙ୍କୁ ବେଷ୍ଟନ କରିଥିଲା । ତାଙ୍କ ପାଖରେ ଥିବା ଖାସ ସେବକମାନେ ଏହି ଜ୍ୟୋତି ସମକ୍ଷରେ କ୍ଷୁଦ୍ର ଓ ଅସ୍ପଷ୍ଟ ଦିଶୁଥିଲେ । ସେମାନେ ତାଙ୍କର ଶରୀରକୁ ସମ୍ଭାଳି ଧରିଥିଲେ । ତାଙ୍କ ତଳେ ସ୍ତରରେ ବୃହତ୍ତର ଅର୍ଦ୍ଧବୃତ୍ତାକାରରେ ଛିଡ଼ା ହୋଇଥିଲେ ତାଙ୍କର ବୁଦ୍ଧିଜୀବୀ ଅଧୀନସ୍ଥ କର୍ମଚାରୀମାନେ ତାଙ୍କର ସ୍ମାରକ ଓ ଗଣକମାନେ, ତାଙ୍କର ଗବେଷକ ଓ ଭୃତ୍ୟମାନେ, ଏବଂ ରାଜସଭାର ସମସ୍ତ ବିଶିଷ୍ଟ ଚାଟୁ-ସଭାସଦ୍‌ମାନେ । ଅନ୍ତର ତାଲକୁ ଛିଡ଼ା ହୋଇଥିଲେ ବାଟ କଢ଼ାଳୀ ଓ ଡକ୍ତରମାନେ ଏବଂ ତା ପରେ ସିଂହାସନର ଅଗଣିତ ପାହାଚଗୁଡ଼ିକ ତଳକୁ ଦେହରକ୍ଷୀମାନେ ଛିଡ଼ା ହୋଇଥିଲେ । ସବୁ ତଳକୁ ବିଭିନ୍ନ ଆକୃତିର ଅସ୍ପଷ୍ଟ ବିଶାଳ ଜନତା, ଚାକିର କ୍ଷୁଦ୍ରତର କର୍ମଚାରୀମାନଙ୍କର ସମାବେଶ, ଆନ୍ଦୋଳିତ ହେଉଥିଲା । ସେହି ଜନ ସମୁଦ୍ରର ଶେଷଭାଗ ସମ୍ପୂର୍ଣ୍ଣ ଅନ୍ଧକାରରେ ମିଶିଯାଇଥିଲା । ପଥୁରିଆ ଚଟାଣ ଉପରେ ସେମାନଙ୍କ ପାଦ ଘଷିହୋଇ

ଅବିରତ ସ୍ୱରରେ ଫସ୍ ଫସ୍ ଶବ୍ଦ ଜାତ କରୁଥିଲା, ଏବଂ ସେମାନଙ୍କର ଅଙ୍ଗ-ପ୍ରତ୍ୟଙ୍ଗର ସଞ୍ଚାଳନ ମହିନର ମଝିରେ କର୍କଶ ଗୁଞ୍ଜନ ସୃଷ୍ଟି କରୁଥିଲା ।

ମୁଁ ଶେଷ ହଲ୍‌ଘରର ପୂର୍ବବର୍ତ୍ତୀ ହଲ ଘରକୁ ପ୍ରବେଶକଲା ମାତ୍ରକେ ଅନେକଗୁଡ଼ିଏ ବାଦ୍ୟଯନ୍ତ୍ର ବାଜିଉଠି କ୍ରମେ କ୍ରମେ ପରିବର୍ତ୍ତିତ ହୋଇ ସ୍ୱଚ୍ଛନ୍ଦ ଆଡ଼ମ୍ବରପୂର୍ଣ୍ଣ ବାଜବାଜଣାରେ ପରିଣତ ହେଲା, ଏବଂ ସମ୍ମୁଖ ବାହାକମାନଙ୍କର ଚିତ୍କାର କ୍ରମେ କ୍ରମେ ଦୂରରେ ହଜିଗଲା ।

"ମୁଁ ସର୍ବଶ୍ରେଷ୍ଠ ଓ ବୃହତ୍ତମ ହଲ୍‌ଘର ଭିତରକୁ ପ୍ରବେଶ କଲି ।

ମୋତେ ଶୋଇବାଯାଇ ଥିବା ଖାଟପଙ୍ଖାପରି ଖୋଲିଗଲା । ମୋର ବାହକମାନେ ଓ ଦେହରକ୍ଷୀମାନେ ଡାହାଣ ଓ ବାମକୁ ଘୁଞ୍ଚିଗଲେ, ଏବଂ ମତେ ସିଧା ହୋଇ ଓ ସି-ଫଙ୍କ୍ସ'ବନ୍ଧନ କରିଥିବା ଟିକୋଟି ଡୋଲି ଝକ୍‌ଝକ୍ କରୁଥିବା କଳା ଚଟାଣ ଉପରେ ସେହି ପ୍ରକାଣ୍ଡ ପାହାଚମାନଙ୍କର ପାଦଦେଶ ପର୍ଯ୍ୟନ୍ତ ଅଗ୍ର-ସର ହେଲେ । ତା ପରେ ଗୋଟିଏ ବିପୁଳ କମ୍ପିତ ଗୁଞ୍ଜର ଉତ୍ଥିତ ହୋଇ ବାଜଣାର ଶବ୍ଦ ସନ୍ତୁଚ୍ଛ ମିଶିଗଲା । ଗୁଢ଼ିକ ଦୁଇଜଣ ଓହ୍ଲାଇଲେ, କିନ୍ତୁ ମତେ ଡୋଲିରେ ବସିରହିବାକୁ ଅନୁମତି ଦିଆଗଲା—ବୋଧହୁଏ ବିଶେଷ ସମ୍ମାନର ଚିହ୍ନ ସ୍ୱରୂପ । ବାଜଣା ବନ୍ଦ ହେଲା, କିନ୍ତୁ ସେହି ଗୁଞ୍ଜରଣ ବନ୍ଦ ହେଲାନାହିଁ । ଦଶହଜାର ସମ୍ଭ୍ରମ-ଅବନତ ମସ୍ତକ ଏକାଥରକେ ସଞ୍ଚାଳିତ ହେବାରୁ ମୋର ଊର୍ଦ୍ଧରେ ଭାସୁଥିବା ସେହି ଜ୍ୟୋତିମଣ୍ଡଳ ପରିବେଷ୍ଟିତ ପରମ ପ୍ରଜ୍ଞାଙ୍କ ଆଡ଼କୁ ମୋର ଦୃଷ୍ଟି ଆକୃଷ୍ଟ ହେଲା ।

"ପ୍ରଥମେ ଯେତେବେଳେ ମୁଁ ବିକାର୍ଣ୍ଣ ଜ୍ୟୋତି ଭିତରକୁ ଚାହିଁଲି, ଏହି ସର୍ବଶ୍ରେଷ୍ଠ ମସ୍ତିଷ୍କ କୋଟିଏ ଅସ୍ୱଚ୍ଛ ବସ୍ତୁପରି ମନେ ହେଲା, ରୂପବିହୀନ ଗୋଟିଏ ଟଙ୍ଗ ଟଙ୍କା, ତା ଭିତରେ ଗୁଡ଼େଇ ଗୁଡ଼େଇ ହୋଇଥିବା ଦୋଳାୟମାନ ମସ୍ତିଷ୍କର ସ୍ପନ୍ଦନ କ୍ଷୀଣଭାବରେ ଦୃଷ୍ଟ ହେଉଥିଲା । ତା ପରେ ସେହି ପ୍ରକାଣ୍ଡ ମସ୍ତିଷ୍କର ନିମ୍ନରେ ଏବଂ ସିଂହାସନ ଧାରର ଠିକ ଉପରେ ଆଲୋକ ଭିତରୁ ଦୁଇଟି ଅତି କ୍ଷୁଦ୍ର ପ୍ରେତବତ୍ ଚକ୍ଷୁ ମିଟି ମିଟି ଚାହୁଁଥିବାର ଦେଖି ମୁଁ ଚମକିପଡ଼ିଲି । ମୁହଁ ନାହିଁ, କେବଳ ଦୁଇଟି ଆଖି, ଯେତେ ଯେମିତ

ମସ୍ତିଷ୍କ ଭିତରୁ କଣା କରି ଆଖି ଦୁଇଟି ଚାହିଁ ଥିଲେ । ପ୍ରଥମେ ମୁଁ ଏଇ ତୀକ୍ଷ୍ଣ କ୍ଷୁଦ୍ର ଚକ୍ଷୁ ଦୁଇଟି ଛଡ଼ା ଅନ୍ୟ କିଛି ଦେଖିପାରିଲି ନାହିଁ, ଏବଂ ତା'ପରେ ତଳେ ଗୋଟିଏ ଖର୍ବ ସଙ୍କୁଚିତ ଦେହ ବାରିପାରିଲି । ସେହି ଦେହର କାଠି ତୁଲ୍ୟ ସପର୍ବ ପ୍ରତ୍ୟଙ୍ଗଗୁଡ଼ିକ ଶୁଷ୍କ, ସଙ୍କୁଚିତ ହୋଇ ଧଳା ଦେଖା ଯାଉଥିଲେ । ଆଖି ଦୁଇଟି ମୋ ଆଡ଼କୁ ଅଦ୍ଭୁତ ତୀକ୍ଷ୍ଣତା ସହିତ ଚାହିଁ ରହିଥିଲେ, ଏବଂ ସ୍ଫୀତ ବର୍ତ୍ତୁଳର ନିମ୍ନାଂଶ ରେଖା କୁଞ୍ଚିତ ହୋଇଥିଲା । ଅକ୍ଷମ ଦେହେଷର କ୍ଷୁଦ୍ର କ୍ଷୁଦ୍ର ହାଡ଼-ଗୁଣ୍ଡ ଏହି ବିଶାଳ ମସ୍ତିଷ୍କକୁ ସିଂହାସନ ଉପରେ ସମ୍ଭାଳି ଧରିଥିଲେ......

"ଏହା ଥିଲା ବିରାଟ । ଏହା ଥିଲା କରୁଣ । ଏହା ଦେଖି ସେହି ସମ୍ରାଟ ଓ ଜନତା କଥା ସ୍ମରଣ ହୋଇଯାଏ ।

"ମୁଁ ଦୋହଲି ଦୋହଲି ପାହାଚ ଗୁଡ଼ିକ ଚଢ଼ିବାକୁ ଲାଗିଲି । ମୋର ମନେ ହେଲା, ଊର୍ଦ୍ଧ୍ୱର ଏହି କୃଷ୍ଣୋଜ୍ଜ୍ୱଳ ମସ୍ତିଷ୍କ ଖୋଲ ମତେ ଅଭିଭୂତ କରି ଦେଉଛି, ଏବଂ ମୁଁ ତାର ଯେତେ ନିକଟକୁ ଯିବାକୁ ଲାଗିଲି ତାହା କ୍ରମେ କ୍ରମେ ମୋର ସମସ୍ତ ସତ୍ତାକୁ ଅଧିକାର କଲାପରି ବୋଧହେଲା । ମୋର ମନେ ହେଲା, ଦଳଦଳ ସେବକ ଓ ସାହାଯ୍ୟକାରୀ କ୍ରମଶଃ କ୍ଷୀଣ ହୋଇ ରାତ୍ରିର ଗର୍ଭରେ ଲୁଚିଯାଉଛନ୍ତି । ମୁଁ ଦେଖିଲି, ସେହି ପ୍ରକାଣ୍ଡ ମସ୍ତିଷ୍କକୁ ଶୁଶ୍ରୂଷାକୃତ ସେବକମାନେ ପାଣି ଛିଟିକା ଦ୍ୱାରା ଶୀତଳ କରୁଛନ୍ତି, ଧୀରେ ଧୀରେ ଆଉଁଷୁଛନ୍ତି ଓ ସମ୍ଭାଳି ଧରୁଛନ୍ତି । ମୁଁ ଦୋହୁଲ୍ୟମାନ ଗୋଡ଼କୁ ମୁଠେଇ ଧରି ବସି ସ୍ଥିର ଦୃଷ୍ଟିରେ ମହାଗୃଦ୍ଧକଙ୍କୁ ନିରୀକ୍ଷଣ କରୁଥିଲି, ତାଙ୍କ ଉପରୁ ଆଖି ଫେରାଇ ନେବାକୁ ମୋର ଶକ୍ତି ନ ଥିଲା । ଶେଷରେ ଯେତେବେଳେ ମୁଁ ସିଂହାସନର ଦଶ ପାହାଚ ଦୂରରେ ପହଞ୍ଚିଲି, ବାଜଣାର ଆଡ଼ମ୍ବର ଉଚ୍ଚତମ ଟ୍ରେକାଟୀକୁ ଉଠି ବନ୍ଦ ହୋଇଗଲା । ସେହି ବିରାଟ ସ୍ଥାନରେ ମହାଗୃଦ୍ଧକଙ୍କର ସ୍ଥିର ତୀକ୍ଷ୍ଣଦୃଷ୍ଟି ତଳେ ମୁଁ ନିଃସହାୟ ଭାବରେ ପଡ଼ିରହିଲା-ପରି ବୋଧହେଲା ।

"ଜୀବନରେ ଦେଖିଥିବା ପ୍ରଥମ ମଣିଷକୁ ସେ ତନ୍ନ ତନ୍ନ କରି ନିରୀକ୍ଷଣ କରୁଥିଲେ.......

"ଶେଷରେ ତାଙ୍କର ବିଶାଳତାରୁ ଆଖି ଫେରାଇ ମୁଁ ତାଙ୍କୁ ଘେରିଥିବା ମାଳ କୁହୁଡ଼ିବ୍ୟାପ୍ତ ଅସ୍ପଷ୍ଟ ଜିନଗୁଡ଼ିକଙ୍କ ଆଡ଼କୁ ଚାହିଁଲି, ଏବଂ ତା ପରେ ନିମ୍ନସ୍ଥ ଚଟାଣ ଉପରେ ଜମା ହୋଇଥିବା ହଜାର ହଜାର ଗୃଦ୍ଧଙ୍କଙ୍କ ଉପରେ ଦୃଷ୍ଟି ନ୍ୟସ୍ତ କଲି। ସେମାନେ ସ୍ଥିର ଭାବରେ ଅପେକ୍ଷା କରି ଠିଆ ହୋଇଥିଲେ। ପୁଣିଥରେ ଅକାରଣରେ ଗୋଟିଏ ଭୟ ମୋ ଆଡ଼କୁ ମାଡ଼ି ଆସିଲା......ଏବଂ ଚାଲିଗଲା।

"କ୍ଷଣିକ ବିରାମ ପରେ ଅଭିବାଦନ କରିବାର ପାଳିଆସିଲା। ମତେ ତୋଳିରୁ ତଳକୁ ଓହ୍ଲାଇବାକୁ ସାହାଯ୍ୟ କରାଗଲା। ଏବଂ ମୁଁ ବୋଦାଙ୍କ ପରି ଠିଆ ହୋଇଥିବା ଦେଖିଲି ଦୁଇଜଣ କ୍ଷୀଣକାୟ କର୍ମଚାରୀ ମୋ ପକ୍ଷରୁ ପ୍ରତିନିଧିତ୍ୱ କରି ଅନେକଗୁଡ଼ିଏ ଅଦ୍ଭୁତ ଅଥଚ ଚମତ୍କାର ଅର୍ଥପୂର୍ଣ୍ଣ ଭଙ୍ଗୀ କଲେ। ଶେଷ ହଲ୍‌ଘରର ନିର୍ଗମନମୁଖ ପର୍ଯ୍ୟନ୍ତ ଯେଉଁ ବିଦ୍ୟାକଳ୍ପଦ୍ରୁମ ପଣ୍ଡିତଗଣ ମୋ ସହିତ ଆସିଥିଲେ, ସେମାନେ ମୋଠାରୁ ଦୁଇଟି ପାହାଚ ଉପରେ ଡାହାଣ ଓ ବାମକୁ ଠିଆହୋଇ ମହାଗୃଦ୍ଧଙ୍କଙ୍କ ପ୍ରୟୋଜନ ନିମିତ୍ତ ପ୍ରସ୍ତୁତ ହୋଇରହିଲେ। ସିଡ଼ର ଶେତା ମସୃଣ ସିଂହାସନ ଏବଂ ମୋର ମଧ୍ୟସ୍ଥାନରେ ଏପରି ଭାବରେ ସ୍ଥାପିତ ହେଲା, ଯଦ୍ୱାରା କି ମହାଗୃଦ୍ଧଙ୍କଙ୍କ ଆଡ଼କୁ କିମ୍ବା ମୋ ଆଡ଼କୁ ପଛ ନ କରି ସେ ଆମ ଦୁହିଙ୍କ ମଧ୍ୟସ୍ଥରୂପେ କଥା କହିପାରିବ। ସି-ପଙ୍ ତା ପଛରେ ଠିଆ ହେଲା। କର୍ମକୁଶଳ ବାଟ କଢ଼ାଳୀମାନେ ମହାଗୃଦ୍ଧଙ୍କଙ୍କ ଆଡ଼କୁ ମୁହଁ ରଖି ମୋ ଆଡ଼କୁ କଡ଼େଇ ହୋଇ ଘୁଞ୍ଚିଆସି ଏକ ପାଖିଆ ହୋଇ ଠିଆ ହେଲେ। ମୁଁ ତକିଆମାଡ଼ି ବସିଲି, ଏବଂ ଫେ-ଇ ଓ ସିସ-ପଙ୍ ମଧ୍ୟ ମୋର କଚ୍ଛ ଉପରେ ଆଣୁମାଡ଼ି ବସିଲେ। କ୍ଷଣିକତ ନିରାମୟ ନିକଟସ୍ଥ ସଭାସଦମାନଙ୍କ ଦୃଷ୍ଟି ମୋ ଉପରୁ ମହାଗୃଦ୍ଧଙ୍କଙ୍କ ଉପରକୁ ଗଲା ଏବଂ ତାପରେ ପୁଣି ମୋ ଉପରକୁ ଫେରିଆସିଲା। ନିମ୍ନସ୍ଥ ଅନ୍ଧକାରରେ ଲୁକ୍କାୟିତ ଜନତା ଭିତରେ ପ୍ରତୀକ୍ଷାଜନିତ ଫୁସ୍‌ଫାସ୍ ଓ ଚାଁ ଚାଁ ଧ୍ୱନିର ଗୀତିରଣ ଖେଳିଯାଇ କ୍ଷାନ୍ତ ହେଲା।

"ସେହି ଗୁଞ୍ଜରଣ ମଧ୍ୟ କ୍ଷାନ୍ତ ହେଲା।

"ମୋର ଅଭିଜ୍ଞତାର ପ୍ରଥମ ଶେଷଥର ପାଇଁ ଚନ୍ଦ୍ର ସମ୍ପୂର୍ଣ୍ଣ ନୀରବ ହେଲା।

"ମୁଁ ଗୋଟିଏ କ୍ଷୀଣ ମର୍ମର ଧ୍ୱନି ଶୁଣି ପାରିଲି । ମହାଗୁରୁଙ୍କ ମୋ ଉଦ୍ଦେଶ୍ୟରେ କିଛି କହୁଥିଲେ । ହେତୁ ଶଙ୍କୁ କାଚ ଉପରେ ଆଙ୍ଗୁଠି ଘଷିବାର ଶବ୍ଦପରି ଶୁଭୁଥିଲା ।

"ମୁଁ ତାଙ୍କୁ କିଛିଟା ମନରେ କିଛି ସମସ୍ତ ପର୍ଯ୍ୟନ୍ତ ଲକ୍ଷ୍ୟ କଲି, ଏବଂ ତାପରେ ସତର୍କ ଫି-ଉ ଆଡ଼େ ଚାହିଁଲି । ଏହି କୁଶକାୟ ଜୀବମାନଙ୍କ ମଝିରେ ମୁଁ ଅତି ହାସ୍ୟାସ୍ପଦରକମର ସ୍ଥୂଳ,ମାଂସଳ ଓ କଦା ବୋଧ କରୁଥିଲି । ମୋର ମୁଣ୍ଡ କେବଳ ହନୁହାଡ଼ ଓ କଳାବାଳର ସମଷ୍ଟି ଥିଲା । ମୋର ଦୃଷ୍ଟି ପୁଣି ମହାଗୁରୁଙ୍କ ଆଡ଼କୁ ଫେରିଲେ । ତାଙ୍କର ବକ୍ତବ୍ୟ ସ୍ଥଗିତ ହୋଇ ଥିଲା; ତାଙ୍କର ସେବକମାନେ ବ୍ୟସ୍ତ ହୋଇ ଉଠିଥିଲେ ଏବଂ ତାଙ୍କର ଉଜ୍ଜ୍ୱଳ ମୁଣ୍ଡ କଳକଣା ଛୁଟିକାଦ୍ୱାରା ଚକ୍ ଚକ୍ କରୁଥିଲା, ଏବଂ ସେଥିରୁ ବୁନ୍ଦା ବୁନ୍ଦା ପାଣି ବଢ଼ିଯାଉଥିଲା ।

"ଫି-ଉ କିଛିକ୍ଷଣ ଥାଏ ହୋ ଜଳ । ସି-ଫଙ୍ ସହିତ ପରାମର୍ଶ କଲା । ତାପରେ ତାର ବୋଧଗମ୍ୟ ପାର୍ଥିବ ଭାଷାରେ ଚେଁ ଚେଁ କରି କହିବାକୁ ଆରମ୍ଭ କଲା, ପ୍ରଥମେ ଭୟଜଡ଼ିତ ସ୍ୱରରେ କହୁଥିବାରୁ ତାହା ସ୍ପଷ୍ଟଭାବରେ ବୁଝିବା ଦୁରୂହ ଥିଲା ।

"ଉ-ଉଁ—ମହାଗୁରୁଙ୍କ – କହିବାକୁ ଚାହାନ୍ତି—କହିବାକୁ ଚାହାନ୍ତି—ସେ ଶୁଣିଛନ୍ତି ତମେ—ଉଁ-ଉଁ—ମଣିଷ—ତମେ ପୃଥିବୀ ଗ୍ରହର ଗୋଟିଏ ମଣିଷ । ସେ କହିବାକୁ ଚାହାନ୍ତି ସେ ତୁମକୁ ସ୍ୱାଗତ କରୁଛନ୍ତି—ଏବଂ ଜାଣିବାକୁ ଚାହାନ୍ତି—ଚାହାନ୍ତି । ଅର୍ଥାତ୍ ମାନେ—ତୁମର ଦୁନିଆଁର ଅବସ୍ଥା କିପରି, ଏବଂ କି କାରଣରୁ ତୁମେ ଏଠାକୁ ଆସିଛ ।"

ସେ ଅଟକିଲା । ମୁଁ ଉତ୍ତର ଦେବାକୁ ଯାଉଥିବା ବେଳେ ସେ ପୁଣି କହିବାକୁ ଆରମ୍ଭ କଲା । ତାର ଉକ୍ତି ଗୁଡ଼ିକର ଉଦ୍ଦେଶ୍ୟ ଠିକ୍ ବୁଝି ହେଲା ନାହିଁ, ତେବେ ମୁଁ ଅନୁମାନ କରୁଛି ମୋ ପ୍ରତି ଶିଷ୍ଟାଚାର ପ୍ରଦର୍ଶନ ଉଦ୍ଦେଶ୍ୟରେ ସେସବୁ କୁହାଗଲା । ସେ କହିଲା, ସୂର୍ଯ୍ୟ ପୃଥିବୀ ତୁଳନାରେ ଯାହା ପୃଥିବୀ ଚନ୍ଦ୍ର ତୁଳନାରେ ଠିକ ସେଇଆ, ଏବଂ ଗୁରୁକମାନେ ପୃଥିବୀ ବିଷୟରେ ଓ ମଣିଷମାନଙ୍କ ବିଷୟରେ ଜ୍ଞାନ ଲାଭ କରିବାକୁ ଖୁବ ଇଚ୍ଛୁକ ।

ତା ପରେ ସେ ଚନ୍ଦ୍ର ଓ ପୃଥିବୀର ସାମୟିକ ଆକାର ଓ ବ୍ୟାସ ମଡେଲ କଟେଇ ଦେଲା—ଏହା ବି ବୋଧହୁଏ ଶିଷ୍ୟଙ୍କୁ 'ଦେଖେଇବା ଉଦ୍ଦେଶ୍ୟରେ' । ସେ ଆଉ ବି କହିଲା, ଚିରକାଳ ବିସ୍ମୟ ଓ ଅନୁସନ୍ଧିତ୍ସା ସହିତ ବୃଦ୍ଧକମାନେ ପୃଥିବୀକୁ ଲକ୍ଷ୍ୟ କରି ଆସିଛନ୍ତି । ମୁଁ ନିମ୍ନଦୃଷ୍ଟିରେ ଚିନ୍ତା କରିବାକୁ ଲାଗିଲି । ତା ପରେ ଉତ୍ତର ଦେଲି ଯେ, ମଣିଷମାନେ ମଧ୍ୟ ଚନ୍ଦ୍ରର ଅଭ୍ୟନ୍ତରରେ କଣ ଅଛି ଜାଣିବାପାଇଁ ଅତ୍ୟନ୍ତ କୌତୂହଳୀ, ଏବଂ ସେମାନେ ଚନ୍ଦ୍ରକୁ ଗୋଟିଏ ମୃତ ଗ୍ରହ ବୋଲି ଧରିନେଇଛନ୍ତି, ଆଜି ମୁଁ ଯେଉଁ ବିରାଟ ଆଡ଼ମ୍ବର ଏଠାରେ ଦେଖିଲି ସେମାନେ ସେ କଥା ଆଦୌ କଳ୍ପନା କରି ନାହାନ୍ତି । ମୋର ଉତ୍ତରରେ ସନ୍ତୁଷ୍ଟ ହୋଇ ମହାଚନ୍ଦ୍ରକ ତାଙ୍କର ମୀଳ ଜଣିଙ୍କୁ ଏପରିଭାବରେ ଘୂରେଇବାକୁ ଲାଗିଲେ ଯେ ମୁ ଏକଦମ୍ ଘାବରେଇ ଗଲି, ଏବଂ ସେହି ପ୍ରକାଣ୍ଡ ପ୍ରକୋଷ୍ଠର ଏକଡ଼ରୁ ସେ କଡ଼ ଯାଏଁ ମୋର ଉକ୍ତିର ପ୍ରତିଧ୍ୱନି ରେଁ ଗାଁ ଶବ୍ଦରେ ଫୁସ୍ ଫାସ୍ ଶବ୍ଦରେ ଓ କେଁ କଟର ଶବ୍ଦରେ ମୁଖରୁ ମୁଖକୁ ନୀତ ହେଲା । ତା ପରେ ସେ ଫି-ଉକୁ ଯେଉଁ ସବୁ ପ୍ରଶ୍ନ ପଚାରିଲେ ତାହାର ଉତ୍ତର ଦେବା ମୋ ପକ୍ଷରେ ସହଜ ଥିଲା ।

"ସେ କହିଲେ ଯେ ସେ ଶୁଣିଛନ୍ତି, ଆମେ ପୃଥିବୀର ପୃଷ୍ଠରେ ବାସ କରୁଁ, ଏବଂ ଆମର ବାୟୁ ଓ ସମୁଦ୍ର ଭୂମଣ୍ଡଳର ବାହାରପଟେ ଅଛି; ଶେଷୋକ୍ତ ବିଷୟଟି ସେ ତାଙ୍କର ଜ୍ୟୋତିଶାସ୍ତ୍ରୀମାନଙ୍କଠାରୁ ଆଗରୁ ଶୁଣିଥିଲେ । ଏହି ଅଦ୍ଭୁତ ଅବସ୍ଥା ବିଷୟରେ ଅଧିକ ସୂକ୍ଷ୍ମ ବିବରଣୀ ଜାଣିବାକୁ ଚାହାନ୍ତି ବୋଲି ସେ କହିଲେ । କାରଣ ପୃଥିବୀ ନଦା ହୋଇଥିବା ଯୋଗୁଁ ସେମାନଙ୍କର ବରାବର ଧାରଣା ଥିଲା ଯେ କୌଣସି ପ୍ରାଣୀ ସେଠାରେ ବାସ କରିବା ସମ୍ଭବ ନୁହେଁ । ପୃଥିବୀର ପ୍ରାଣୀମାନେ ଉଦୁଆଁରେ ଖରା ତାପ ଓ ଶୀତ ସହ୍ୟ କରି କିପରି ରହିପାରନ୍ତି ତାହା ସେ ଜାଣିବାକୁ ଚାହିଁଲେ, ଏବଂ ମେଘ ଓ ବୃଷ୍ଟି ବିଷୟରେ ମୋର ବର୍ଣ୍ଣନାକୁ ଅତୀବ ଆଗ୍ରହ ସହିତ ଶୁଣିଲେ । ରାତ୍ରିପଟେ ରହିଥିବା ବାହ୍ୟ ସୁଡ଼ଙ୍ଗ ଗୁଡ଼ିକରେ ଚନ୍ଦ୍ରର ବାୟୁମଣ୍ଡଳ ବେଳେବେଳେ କୁଜ୍ଝଟିକାଚ୍ଛନ୍ନ ହେଉଥିବାରୁ ମୋର ବର୍ଣ୍ଣନାକୁ ବୁଝିବା ତାଙ୍କ ପକ୍ଷରେ ସହଜ ହେଲା । ସୂର୍ଯ୍ୟ କିରଣର ପ୍ରଖରତାକୁ ଆମର ଆଖି କିପରି ସହ୍ୟ କରିପାରେ ଏହା ଭାବି ସେ ଚମତ୍କୃତ ହେଲେ । ବାୟୁର

ପ୍ରତିସରଣ ଯୋଗୁଁ ଆକାଶ କପରି ନୀଳ ବର୍ଣ୍ଣ ରଞ୍ଜିତ ହୁଏ ଏ ବିଷୟରେ ମୁଁ ଯେତେବେଳେ ବୁଝେଇବାକୁ ଚେଷ୍ଟା କଲି ସେ ମନ ଦେଇ ଶୁଣିଲେ, କିନ୍ତୁ ଏକଥା ସ୍ପଷ୍ଟରୂପେ ବୁଝିପାରିଲେ କି ନା ସନ୍ଦେହ । ମାନବ ଚକ୍ଷୁର କନୀନିକା କପରି ଆଖିପିତୁଳାକୁ ସଙ୍କୁଚିତ କରି ସୂର୍ଯ୍ୟ ରଶ୍ମିର ଆଧିକ୍ୟରୁ ଭିତରର କୋମଳ ଗଠନକୁ ରକ୍ଷା କରେ ତାହା ମୁଁ ବୁଝେଇଦେଲି । ଶ୍ରୀଛାମୁ ଏହି ଗଠନକୁ ଦେଖିବେ ବୋଲି ମୁଁ ତାଙ୍କର ଖୁବ ନିକଟକୁ ଯିବାକୁ ଅନୁମତି ପାଇଲି । ତାପରେ ଗ୍ରହ ଓ ପାର୍ଥିବ ଚକ୍ଷୁର ତୁଳନା ଚାଲିଲା । ମନୁଷ୍ୟମାନେ ଯେଉଁ ଆଲୋକ ଦେଖିପାରନ୍ତି ଗ୍ରହ ଚକ୍ଷୁ ସେ ଆଲୋକ ସହ୍ୟ କରିପାରେ ନାହିଁ, କିନ୍ତୁ ତାହା ଉତ୍ତାପ ମଧ୍ୟ ଦେଖି ପାରେ ଏବଂ ଚନ୍ଦ୍ର ଭିତରେ ତାପର ପ୍ରତ୍ୟେକ ପରିବର୍ତ୍ତନ ସଙ୍ଗେ ସଙ୍ଗେ ପଦାର୍ଥମାନ ସେହି ଚକ୍ଷୁ ପ୍ରତି ଦୃଶ୍ୟମାନ ହୁଅନ୍ତି ।

"ମହାଗ୍ରହଙ୍କ ପକ୍ଷରେ କନୀନିକା ଗୋଟିଏ ଅତି ନୂତନ ବସ୍ତୁ ଥିଲା । କିଛି ସମୟ ଯାଏଁ ସେ ତାଙ୍କର ରଶ୍ମିରେଖା ମୋର ମୁହଁ ଉପରେ ନିକ୍ଷିପ୍ତ କରି ମୋର ଆଖି ପିତୁଳା ସଙ୍କୁଚିତ ହୋଇଯିବାର ଦେଖି ଆମୋଦ ଅନୁଭବ କରିବାକୁ ଲାଗିଲେ । ଫଳତଃ କେତେକ ମୁହୂର୍ତ୍ତ ପାଇଁ ମୋର ଆଖି ଝଲସିଯାଇ ଚାରିଆଡେ ଅନ୍ଧାର ଦିଶିଲା ....

"କିନ୍ତୁ ଏହି ଅସ୍ୱାଚ୍ଛନ୍ଦ୍ୟ ସତ୍ତ୍ୱେ ଏହି ପ୍ରଶ୍ନୋତ୍ତର ବ୍ୟାପାରର ସୁସ୍ପଷ୍ଟ ଯୁକ୍ତିଯୁକ୍ତତା ଯୋଗୁଁ ମୁଁ କ୍ରମେ କ୍ରମେ ଭରସା ପାଇବାକୁ ଲାଗିଲି । ମୁଁ ଆଖି ବନ୍ଦ କରି ମୋର ଉତ୍ତର ମନେ ମନେ ଠିକ କରି ନେଉଥିଲି, ଏବଂ ପ୍ରାୟ ଭୁଲିଯାଉଥିଲି ଯେ ମହାଗ୍ରହଙ୍କର ମୁହଁ ନାହିଁ ......

"ମୁଁ ମୋର ପୂର୍ବ ସ୍ଥାନକୁ ଫେରିଆସିଲା ପରେ ମହାଗ୍ରହ୍କ ମତେ ପଚାରିଲେ ଆମେ ପ୍ରଖର ତାପ ଓ ଝଡ଼ରୁ ଆଶ୍ରୟ ନେଉଁ କପରି ? ମୁଁ ଗୃହନିର୍ମାଣ ଓ ଗୃହସଜ୍ଜାର ଶିଳ୍ପ ବିଷୟରେ ବ୍ୟାଖ୍ୟାନ କଲି । ମୁଁ ସ୍ୱୀକାର କରୁଛି ଯେ ଅଧିକାଂଶରେ ମୋର ବର୍ଣ୍ଣନାର ଅସ୍ପଷ୍ଟତା ଯୋଗୁଁ ଆମେ ପରସ୍ପରକୁ ଭୁଲ ବୁଝିଲୁଁ ଏବଂ ଉଭୟେ ସମ୍ପୂର୍ଣ୍ଣ ଓଲଟା ଦିଗରେ ଆଲୋଚନା କରିବାକୁ ଲାଗିଲୁଁ । କିଛି ସମୟ ପର୍ଯ୍ୟନ୍ତ 'ଘର'ଜିନିଷଟି କଣ, ତାହା ତାଙ୍କୁ

ବୁଝାଇବା ମୋ ପକ୍ଷରେ କାଠିକର ପାଠ ହୋଇ ଉଠିଲା । ତାଙ୍କୁ ଓ ତାଙ୍କର ସେବକ ବୃଦ୍ଧକମାନଙ୍କୁ ଏହା ଅବଶ୍ୟ ଅତି ବିଚିତ୍ର ଖିଆଲ ବୋଲି ମନେ ହୋଇଥିଲା ଯେ ଗାତ ଖୋଳି ତା ଭିତରେ ରହିବାର ସୁବିଧା ଥାଉଁ ଥାଉଁ ମଣିଷମାନେ ଅଯଥା ଘର ତିଆର କରିବାକୁ ଯାନ୍ତି । ଯେତେବେଳେ ମୁଁ ବୁଝାଇବାକୁ ଚେଷ୍ଟା କଲି ଯେ ମଣିଷମାନେ ପ୍ରଥମେ ଗୁମ୍ଫାକୁ ସେମାନଙ୍କର ବାସସ୍ଥାନ ରୂପେ ବ୍ୟବହାର କରୁଥିଲେ ଏବଂ ଆଜିକାଲି ସେମାନେ ସେମାନଙ୍କର ରେଳପଥ ଓ ଅନ୍ୟାନ୍ୟ ବହୁତ ଭୂମିତଳକୁ ନେଇଛନ୍ତି । ସେତେବେଳେ ବିଷୟଟି ଆହୁରି ଜଟିଳ ହୋଇଉଠିଲା । ଆମେ ମାନସିକ କ୍ଷମତାରେ ପରସ୍ପରଠାରୁ ଭିନ୍ନ କରୁଛୁ ବୋଲି ମୋର ଜଣେଇବାର ବାସନା ମଧ୍ୟ ଏଠି ଅପଦସ୍ଥ କଲା । ଖଣି ବିଷୟରେ ବର୍ଣ୍ଣନା କରିବାର ଏବଂ ବୋଧ ନବୋଧ ପ୍ରୟାସ ମଧ୍ୟ ଆଉ ଗୋଟିଏ ବିଷମ ଧନ୍ଦା ସୃଷ୍ଟି କଲା । ଶେଷରେ ଏହି ପ୍ରସଙ୍ଗକୁ ଅସମ୍ପୂର୍ଣ୍ଣ ଅବସ୍ଥାରେ ତ୍ୟାଗ କରି ମହାବୃଦ୍ଧକ ପଚାରିଲେ ଆମେ ଭୂମଣ୍ଡଳର ଅଭ୍ୟନ୍ତରକୁ କି ବ୍ୟବହାରରେ ଲଗାଉ ?

"ମୁଁ ଯେତେବେଳେ କହିଲି ଯେ ଯେଉଁ ଜଗତର ପୃଷ୍ଠ ଉପରେ ଆମର ପୂର୍ବପୁରୁଷମାନେ ଲକ୍ଷ ଲକ୍ଷ ବର୍ଷ ଧରି ବିବର୍ତ୍ତିତ ହୋଇ ଆସିଛନ୍ତି ସେହି ଜଗତର ଅଭ୍ୟନ୍ତରରେ କଣ ଅଛି ସେ କଥା ଆମେ ଜାଣୁ ନାହିଁ । ସେତେବେଳେ ସେହି ବିଶାଳ ଜନସମୁଦ୍ରର ଏକ ପାର୍ଶ୍ୱରୁ ଅପର ପାର୍ଶ୍ୱ ପର୍ଯ୍ୟନ୍ତ ଗୁଞ୍ଜନ ଓ କୂଜନର ଢେଉ ଖେଳିଗଲା । ତାହାପରେ ମତେ ପୁନରୁକ୍ତ କରିବାକୁ ପଡ଼ିଲା ଯେ ଭୂତ୍ୱକ୍‌ରୁ ଭୂଗର୍ଭର କେନ୍ଦ୍ରସ୍ଥଳ ପର୍ଯ୍ୟନ୍ତ ଯେଉଁ ୪୦୦୦ ମାଇଲର ପଦାର୍ଥ ଅଛି ସେଥିରୁ କେବଳ ମାଇଲେ ପର୍ଯ୍ୟନ୍ତ ମଣିଷମାନେ ଆବିଷ୍କାର କରିପାରିଛନ୍ତି, ଏବଂ ତାହା ମଧ୍ୟ ଅତି ଅସ୍ପଷ୍ଟ ଭାବରେ । ମହାବୃଦ୍ଧକ ମୋତେ ପଚାରିଲେ, ଆମର ନିଜ ଗ୍ରହର ଅଭ୍ୟନ୍ତରକୁ ଆମେ ଏପର୍ଯ୍ୟନ୍ତ କେବଳ ସ୍ପର୍ଶ କରିବାକୁ ଆରମ୍ଭ କରିଥିବା ସ୍ଥଳେ ଚନ୍ଦ୍ରରେ କଣ ଅଛି ଦେଖିବା ପାଇଁ ମୁଁ ଆସିଛି କାହିଁକି ? ଏହାର ଉତ୍ତର ଶୁଣିବା ପାଇଁ ସେ ମତେ ବ୍ୟସ୍ତ କଲେନାହିଁ, କାରଣ ତାଙ୍କର ସମସ୍ତ ଧାରଣାକୁ ଓଲଟ ପାଲଟ କରି-ଦେଇଥିବା ଏହି ଅଦ୍ଭୁତ ବ୍ୟାପାର ସମ୍ପର୍କରେ ଅଧିକ ତଥ୍ୟ ଶୁଣିବା ପାଇଁ ସେ ଅସ୍ଥିର ହେଉଥିଲେ ।

"ସେ ପାଣିପାଗିର ପ୍ରଶ୍ନକୁ ପୁଣି ଫେରି ଆସିଲେ, ଏବଂ ମୁଁ ଚିର-ପରିବର୍ତ୍ତନଶୀଳ ଆକାଶ, ଏବଂ ତୁଷାର, କୁହୁଡ଼ି ଓ ତୋଫାନ ବିଷୟ ବର୍ଣ୍ଣନା କରିବାକୁ ଚେଷ୍ଟାକଲି । ସେ ପଚାରିଲେ, 'କିନ୍ତୁ ଯେତେବେଳେ ରାତି ଆସେ, ତୁମର ସେଠି ଅନ୍ଧାର ହୁଏନା ?

"ମୁଁ କହିଲି, 'ଦିନ ଅପେକ୍ଷା ବେଶି ଅନ୍ଧାର ହୁଏ ।'

"'ତୁମର ବାୟୁମଣ୍ଡଳ ଅନ୍ଧାରରେ ଘନୀଭୂତ ହୋଇଯାଏନା ?'

"ମୁଁ କହିଲି, 'ନା, ତା ହୁଏନା, କାରଣ ଆମର ରାତି ଅଳ୍ପ ସମୟ ସ୍ଥାୟୀ ହୋଇଥିବାରୁ ସେତେଦୂର ଥଣ୍ଡା ହୁଏନା ।'

'ତରଳ ବି ଯାଏନା ?'

"ମୁଁ 'ନା' ବୋଲି କହିବାକୁ ଯାଉଥିଲି, କିନ୍ତୁ ତାପରେ ମୋର ମନେ ପଡ଼ିଗଲା ଯେ, ଆମର ବାୟୁମଣ୍ଡଳର ନିତ୍ୟାନ୍ତ ଏକାଂଶ, ଅର୍ଥାତ୍ ଜଳୀୟ-ବାଷ୍ପ, ବେଳେବେଳେ ତରଳିଯାଇ ଶିଶିରରେ ପରିଣତ ହୁଏ, ଏବଂ ବେଳେ-ବେଳେ ଘନୀଭୂତ ହୋଇ କୁହୁଡ଼ିରେ ପରିଣତ ହୁଏ—ଦୀର୍ଘତର ରାତିରେ ଚନ୍ଦ୍ରର ସମସ୍ତ ବାହ୍ୟ ବାୟୁମଣ୍ଡଳ ଘନୀଭୂତ ହୋଇଯିବା ସହିତ ଏ ଅବସ୍ଥାର ସମ୍ପୂର୍ଣ୍ଣ ସାଦୃଶ୍ୟ ଅଛି । ଏ ବିଷୟ ମୁଁ ବୁଝେଇ ସାରିଲା ପରେ ମହାବୃଦ୍ଧଙ୍କ ମୋ ସହିତ ନିଜ ବିଷୟରେ ଆଲୋଚନା କଲେ । ସବୁ ପ୍ରାଣୀ ପ୍ରତ୍ୟେକ ଚବିଶ ଘଣ୍ଟା ମଧ୍ୟରେ ନିୟମିତ ଭାବରେ ନିଜର ଆବଶ୍ୟକତା ଅନୁଭବ କରନ୍ତି—ପାର୍ଥିବ ଜୀବମାନେ ଜିଉଗାଧିକାର ସ୍ୱତ୍ତ୍ୱରେ ଏହି ପ୍ରକୃତି ଲାଭ କରିଛନ୍ତି । କିନ୍ତୁ ଚନ୍ଦ୍ରର ଜୀବମାନେ ଅତ୍ୟଧିକ ସମୟର ବ୍ୟବଧାନରେ ଏବଂ କେବଳ ଅସାଧାରଣ ପରିଶ୍ରମ ପରେ ବିଶ୍ରାମ ନିଅନ୍ତି । ମୁଁ ଗ୍ରୀଷ୍ମ ରାତିର ମଧୁର ସୁଷମା ବିଷୟରେ ବ୍ୟାଖ୍ୟାନ କଲି, ଏବଂ ତାପରେ ରାତିଚର ଓ ଦିବା-ନିଦ୍ରାଭ୍ୟସ୍ତ ଜନ୍ତୁମାନଙ୍କର ବର୍ଣ୍ଣନା ଦେଲି । ମୁଁ ତାଙ୍କୁ ସିଂହ ଓ ବାଘ ବିଷୟରେ କହିଲି, ଏବଂ ଏଥିଦ୍ୱାରା ପୁଣି ଦୁର୍ବୋଧତା ସୃଷ୍ଟି କଲି । କାରଣ କେବଳ କେତେକ ଜଳଜନ୍ତୁ ଛଡ଼ା ଚନ୍ଦ୍ରରେ ଏପରି କୌଣସି ଜୀବ ନାହାନ୍ତି ଯେଉଁମାନେ କି ସମ୍ପୂର୍ଣ୍ଣରୂପେ ପୋଷା ମାନନ୍ତି ନାହିଁ କିମ୍ବା ମହାବୃଦ୍ଧଙ୍କର ଇଚ୍ଛାର ଅଧୀନ ହୁଅନ୍ତି ନାହିଁ । କେବଳ ବର୍ତ୍ତମାନ ନୁହେଁ, ଲକ୍ଷ ଲକ୍ଷ ବର୍ଷ-

ଧର ଏହିପରି ଗ୍ରହକୁ ଆସିଛୁ । ସେଠି ଭୀଷଣ ଦର୍ଶନ ଜଳଜନ୍ତୁ, ଅଛନ୍ତି, କିନ୍ତୁ କୌଣସି ହିଂସ୍ର ପଶୁ ନାହାନ୍ତି, ଏବଂ 'ବାହାରେ' ଗ୍ରହିରେ କୌଣସି ବଳିଷ୍ଠ ଓ ବୃହତ ଜୀବ ବିଚରଣ କରୁଥିବାର ଧାରଣା ଗ୍ରହଣ କରିବା ସେମାନଙ୍କ ପକ୍ଷରେ ଦୁଷ୍କର.........

[ ଏଇଠି ପ୍ରାୟ କୋଡ଼ିଏଟି ଶବ୍ଦ ପର୍ଯ୍ୟନ୍ତ ପାଣ୍ଡୁଲିପି ଏଡ଼େ ଭଙ୍ଗା ଭଙ୍ଗା ହୋଇଛି ଯେ ତାହା ଲିପିବଦ୍ଧ କରିବା ଅସମ୍ଭବ । ]

"ସେ ତାଙ୍କର ସେବକମାନଙ୍କ ସହିତ କଥାବାର୍ତ୍ତା କଲେ । ମୁଁ ଅନୁମାନ କରୁଛି ଏହି କଥାବାର୍ତ୍ତା (ମଣିଷ)ର ବାହ୍ୟାଡ଼ମ୍ବର ଓ ଅର୍ଦ୍ଧମୁକ୍ତ୍ୟ-କାଙ୍କ୍ଷିତା ସଂକ୍ରାନ୍ତରେ ହୋଇଥିଲା । ସେ ବୋଧହୁଏ କହୁଥିଲେ ଯେ, ଯେଉଁ ମଣିଷ ଜଗତର କେବଳ ବାହାର ପଟେ ବାସ କରେ, ସମୁଦ୍ର ଢେଉ ଓ ପବନ ସ୍ରୋତ ଏବଂ ମହାଶୂନ୍ୟତାର ସମସ୍ତ ଘାତ ପ୍ରତିଘାତ ଯାହାକୁ ସହ୍ୟ କରିବାକୁ ପଡ଼େ, ତାକୁ ଶିକାର କରୁଥିବା ଶ୍ୱାପଦମାନଙ୍କୁ ମୂଳପୋଛ କରି-ଦେବା ପାଇଁ ଯାହାର ଏକତାବଦ୍ଧ ହେବାର ଶକ୍ତି ବି ନାହିଁ, ତାହାର ପୁଣି ଏଡ଼େ ସାହସ ଯେ ସେ ଅନ୍ୟ ଗୋଟିଏ ଗ୍ରହକୁ ଆକ୍ରମଣ କରିବାକୁ ଆସୁଛି ' ଏହି କଥାବାର୍ତ୍ତା ଚାଲୁଥିବା ସମୟ ଭିତରେ ମୁଁ ନୀରବରେ ବସିରହି ଚିନ୍ତା-କରୁଥିଲି । ତାପରେ ତାଙ୍କର ଅଭିଳାଷ ମୁତାବକ ମୁଁ ବିଭିନ୍ନ ପ୍ରକାରର ମଣିଷମାନଙ୍କ ବିଷୟରେ ବର୍ଣ୍ଣନା କଲି । ସେ ମତେ ପ୍ରଶ୍ନ ପରେ ପ୍ରଶ୍ନ ପଚାରିବାକୁ ଲାଗିଲେ । କହିଲେ, 'ସବୁ ରକମର କାମ ପାଇଁ ତୁମର କ'ଣ ଏକ ରକମର ମଣିଷଅଛନ୍ତି ? କିନ୍ତୁ କେଉଁମାନେ ଚିନ୍ତାକରନ୍ତି ? କିଏ ଶାସନ କରେ ?'

"ମୁଁ ଗଣତାନ୍ତ୍ରିକ ପ୍ରଣାଳୀର ଗୋଟିଏ ସଂକ୍ଷିପ୍ତ ପରିଚୟ ତାଙ୍କୁ ଦେଲି ।

"ମୁଁ କହି ସାରିଲା ପରେ ସେ ତାଙ୍କ କପାଳରେ ପାଣି ଛିଟିକା ମାରିବା ପାଇଁ ଭୃତ୍ୟମାନଙ୍କୁ ଆଦେଶ ଦେଲେ, ଏବଂ ତାପରେ ମୋର ବ୍ୟାଖ୍ୟାର ପୁନରୁକ୍ତି କରିବା ପାଇଁ ମତେ ଅନୁରୋଧ କଲେ, କାରଣ ତାଙ୍କର ଧାରଣା-ଥିଲା ମୋର କଥାକୁ ସେ ଠିକ ଶୁଣିପାରି ନାହାନ୍ତି ।

"ଫି-ଉ ପଚାରିଲା, 'ତେବେ ସେମାନେ କଣ ଭିନ୍ନ ଭିନ୍ନ ବୃତ୍ତି ଅନୁସରଣ କରନ୍ତି ନାହିଁ ।'

ମୁଁ ସ୍ୱୀକାରି କଲି ଯେ କେହି କେହି କ୍ଷୁଦ୍ରକ, ଓ କେହି କେହି ରାଜକର୍ମଚାରୀ ଅଟନ୍ତି; କେହି କେହି ଶୀକାରୀ, କେହି କେହି ବା ଯନ୍ତ୍ରଶିଳ୍ପୀ ଅଟନ୍ତି ; କେହି କେହି ଚାଷକର, ଓ କେହି କେହି ଶ୍ରମିକ ଅଟନ୍ତି । କିନ୍ତୁ ସମସ୍ତେ ଶାସନ କରନ୍ତି ।'

"ଫି ହ୍ର ପଚ୍ଛରିଲେ, 'ବିଭିନ୍ନ କାର୍ଯ୍ୟପାଇଁ ଉପଯୋଗୀ କରିବାକୁ ସେମାନଙ୍କର ଆକୃତି ବିଭିନ୍ନ ହୁଏନାହିଁ ?"

'ନା, ସେପରି କିଛି ଜଣାପଡ଼େ ନାହିଁ, କେବଳ ପୋଷାକର ବିଭିନ୍ନତା ଛଡ଼ା ।' ପରେ ଚନ୍ଦ୍ରାକର କହିଲି । 'ବୋଧହୁଏ ସେମାନଙ୍କର ମନ କେତେକାଂଶରେ ଭିନ୍ନ ଭିନ୍ନ ହୁଏ ।'

ମହାଗୁରୁକ କହିଲେ, 'ସେମାନଙ୍କର ମନ ନିଶ୍ଚୟ ଅନେକ ପରିମାଣରେ ଭିନ୍ନ ଭିନ୍ନ ହୋଇଥିବ, ନହେଲେ ସମସ୍ତେ ଏକ ପ୍ରକାରର କାମ କରିବାକୁ ଚାହାନ୍ତେ ।'

ତାଙ୍କର ଅନୁମାନ ସହିତ ମୋର ମତ ମିଳାଇବାକୁ ଚେଷ୍ଟାକରି ମୁଁ କହିଲି ଯେ ତାଙ୍କର ଧାରଣା ଯଥାର୍ଥ । ମୁଁ କହିଲି, 'ଏହା ସେମାନଙ୍କର ମନତଳେ ଲୁଚି ରହିଥାଏ, ତଥାପି ବିଭିନ୍ନତା ନିଶ୍ଚୟ ଅଛି । ବୋଧହୁଏ, ଯଦି ମଣିଷମାନଙ୍କର ମନ ଓ ଆତ୍ମାକୁ ଦେଖି ହୁଅନ୍ତା, ତାହାହେଲେ ତାହା ଚନ୍ଦ୍ରକମାନଙ୍କ ପରି ବିଭିନ୍ନ ଓ ଅସମାନ ବୋଲି ଜଣା ଯାଆନ୍ତା । ପୃଥିବୀରେ ମହାମାନବ ଅଛନ୍ତି, ପୁଣି କ୍ଷୁଦ୍ର ମାନବ ବି ଅଛନ୍ତି । ଅନେକ ଗଭୀର ଓ ସୁଦୂର ଚିନ୍ତା କରିପାରିବା ଭଳିଆ ମଣିଷ ଅଛନ୍ତି, ଏବଂ ଶୀଘ୍ର ଦ୍ରୁତ ଚିନ୍ତାଶୀଳ ମଣିଷ ବି ଅଛନ୍ତି; କୋଳାହଳପ୍ରିୟ ଓ ଭେଣ୍ଡିଭଳିଆ ମନ ବାଲି ମଣିଷ ଅଛନ୍ତି, ଏବଂ ଏପରି ମଣିଷ ବି ଅଛନ୍ତି ଯେଉଁମାନେ କି ଚିନ୍ତା ନ କରି ମନେ ରଖି ପାରନ୍ତି ..... [ତିନୋଟି ଶବ୍ଦ ପର୍ଯ୍ୟନ୍ତ ଲେଖାଟି ଅସ୍ପଷ୍ଟ ହୋଇଯାଇଛି । ]

"ମୋର ପୂର୍ବର ଉକ୍ତି ସ୍ମରଣ କରାଇବା ପାଇଁ ସେ ମୋର କଥା ମଝିରେ ବାଧାଦେଲେ । ସେ ଜିଦ୍‌ଧରି କହିଲେ, 'କିନ୍ତୁ, ତୁମେ ଯେ କହିଲ ସବୁ ମଣିଷ ଶାସନ କରନ୍ତି ?'

ମୁଁ କହିଲି, 'ହଁ, କେତେକ ପରିମାଣରେ,' ଏବଂ ଏପରି ବ୍ୟାଖ୍ୟାଦ୍ୱାରା ବୋଧହୁଏ ଆହୁରି ଗଭୀର ଦୁର୍ବୋଧତା ସୃଷ୍ଟିକଲି ।

ସେ ଗୋଟିଏ ମର୍ମପ୍ରଶ୍ନ ଉଠେଇଲେ । ପଚାରିଲେ, 'ତୁମେ କଣ କହିବାକୁ ଚାହଁ ଯେ ସେଠି କୌଣସି ମହାପାର୍ଥିବ ନାହାନ୍ତି ?'

"ମୁଁ ଅନେକ ଲୋକଙ୍କ କଥା ଭାବିଲି, କିନ୍ତୁ ପରିଶେଷରେ ତାଙ୍କୁ ନିଶ୍ଚିତ ଭାବରେ କହିଲି ଯେ ସେପରି କୌଣସି ଲୋକ ନାହାନ୍ତି । ମୁଁ ବୁଝେଇ ଦେଲି ଯେ ପୃଥିବୀରେ ଆମେ ଏତାଦୃଶ ଯେଉଁ କେଇଜଣ ସମ୍ରାଟ ଓ ସ୍ୱେଚ୍ଛାଚାରୀମାନଙ୍କୁ ପରୀକ୍ଷା କରି ଦେଖିଛୁଁ, ସେମାନେ ସାଧାରଣତଃ ମଦ୍ୟପାନ, ଅନାଚାର, କମ୍ବା ହାଣକାଟରେ ଲୋପ ପାଇ ଯାଇଛନ୍ତି, ଏବଂ ପୃଥିବୀର ଅଧିକ ସଂଖ୍ୟକ ଓ ଅଧିକ ପ୍ରଭାବଶାଳୀ ଓ୍ଵାନ୍ଦମାନେ ଅର୍ଥାତ୍ ଏଙ୍ଗ୍ଲୋ-ସ୍ୟାକ୍ସନମାନେ (ମୁଁ ଯେଉଁମାନଙ୍କର ଅନ୍ତର୍ଭୁକ୍ତ) ପୁଣିଥରେ ଏପରି ପରୀକ୍ଷାକରି ଦେଖିବାକୁ ଚାହାନ୍ତି ନାହିଁ । ଏକଥା ଶୁଣି ମହାଚାନ୍ଦ୍ରିକ ଆହୁରି ବିସ୍ମିତ ହୋଇଗଲେ ।

"ସେ ପଚାରିଲେ, 'କିନ୍ତୁ ତୁମ୍ଭମାନଙ୍କର ଯାହା ଜ୍ଞାନଅଛି ତାକୁ କିପରି ସଂରକ୍ଷଣ କର ?' ମୁଁ ବୁଝେଇଦେଲି, ଆମେ ଆମର ସୀମାବଦ୍ଧ [ ଏଇଠି ଗୋଟିଏ ଶବ୍ଦ ବାଦ ଯାଇଛି, ତାହା ବୋଧହୁଏ "ମସ୍ତିଷ୍କ"]କୁ ପୁସ୍ତକାଗାର ଦ୍ୱାରା ସାହାଯ୍ୟ କରୁଁ । ଅସଂଖ୍ୟ କ୍ଷୁଦ୍ରମାନବଙ୍କର ସଂଯୁକ୍ତ ପରିଶ୍ରମ ଦ୍ୱାରା ଆମର ବିଜ୍ଞାନ କିପରି ସଂବୃଦ୍ଧି ଲାଭ କରୁଛି ତାହା ମୁଁ ତାଙ୍କୁ ବୁଝେଇଦେଲି । ଏ ବିଷୟରେ ସେ କୌଣସି ମନ୍ତବ୍ୟ ଦେଲେନାହିଁ, କେବଳ କହିଲେ ଯେ, ଜଣାପଡୁଛି ଆମର ସାମାଜିକ ବର୍ବରତା ସତ୍ତ୍ୱେ ଆମେ ଅନେକ କିଛି ଆୟତ୍ତ କରି ପାରିଛୁଁ, ନ ହେଲେ ଆମେ ଚନ୍ଦ୍ରକୁ ଆସି ପାରି ନ ଥାନ୍ତୁ । କିନ୍ତୁ ତଥାପି ଚାନ୍ଦ୍ରିକ ମାନଙ୍କ ସହିତ ଆମର ପାର୍ଥକ୍ୟ ଅତି ସ୍ପଷ୍ଟ । ଜ୍ଞାନ ସହିତ ଚାନ୍ଦ୍ରିକମାନେ ବୃଦ୍ଧିଲାଭ କରନ୍ତି ଓ ପରିବର୍ତ୍ତିତ ହୁଅନ୍ତି, କିନ୍ତୁ ମନୁଷ୍ୟ ତାର ଜ୍ଞାନ ତାର ଚତୁର୍ଦ୍ଦିଗରେ ସଞ୍ଚିତ କରି ରଖେ ଏବଂ ନିଜେ ବର୍ବର ହୋଇଯାଏ—ତାର ସମସ୍ତ ସଂଗ୍ରହ ସତ୍ତ୍ୱେ । ସେ ଏହା କହିଲେ·····

[ଏଇଠି କିଛିଦୂର ଯାଏଁ ବାର୍ତ୍ତା ଅସ୍ପଷ୍ଟହୋଇ ଯାଇଛି । ]

"ଆମ୍ଭେ ପୃଥିବୀର ଏକସ୍ଥାନରୁ ଅନ୍ୟ ସ୍ଥାନକୁ କିପରି ଯାଉଁ ତାହା ସେ ମତେ ପଚାରିଲେ, ଏବଂ ମୁଁ ଆମର ରେଳ ଓ ଜାହାଜ ବିଷୟରେ ବର୍ଣ୍ଣନା କଲି । କିନ୍ତୁ କ୍ରମଶଃ ପର୍ଯ୍ୟନ୍ତ ସେ ଏକଥା ବୁଝିପାରିଲେ ନାହିଁ ଯେ ଆମେ କେବଳ ଶହେବର୍ଷ ହେଲା ବାଷ୍ପ ବ୍ୟବହାର କରି ଆସିଛୁଁ, କିନ୍ତୁ ଯେତେବେଳେ ବୁଝିଲେ, ଅତି ବିସ୍ମିତ ହୋଇଗଲେ । (ଗୋଟିଏ ବିଚିତ୍ର କଥା ମୁଁ ଏଠି ଉଲ୍ଲେଖ କରିବା ଉଚିତ । ଠିକ ଆମରି ପରି ଗୃଦ୍ଧ୍ରକମାନେ ବର୍ଷ ହିସାବରେ ଗଣନା କରନ୍ତି । କିନ୍ତୁ, ସେମାନଙ୍କର ସଂଖ୍ୟାପ୍ରଣାଳୀ ବିଷୟରେ ମୁଁ କିଛି ବୁଝିପାରେ ନାହିଁ । ଯାହାହେଉ, ଏଥିରେ କିଛି ଯାଏ ଆସେ ନା, କାରଣ ସି-ଉ ଆମର ସଂଖ୍ୟା ପ୍ରଣାଳୀ ବୁଝେ ।) ଏହାପରେ ମୁଁ ତାଙ୍କୁ ଜଣେଇଲି ଯେ ମନୁଷ୍ୟ ଜାତି ପୃଥିବୀରେ କେବଳ ନଅ କି ଦଶ ହଜାର ବର୍ଷହେଲା ବାସକରି ଆସୁଛନ୍ତି । ଆଉ ବି ମୁଁ କହିଲି ଯେ, ଆମେ ଏପର୍ଯ୍ୟନ୍ତ ଏକତା ଲାଭକରି ପାରିନାହୁଁ, ଏବଂ ବିଭିନ୍ନ ପ୍ରକାରର ସରକାର ଦ୍ୱାରା ଶାସିତ ହେଉଛୁଁ । ମହାଗୃଦ୍ଧ୍ରକ ଯେତେବେଳେ ଏକଥା ବୁଝିପାରିଲେ, ସେ ଅତିଶୟ ଆଶ୍ଚର୍ଯ୍ୟ ହୋଇଗଲେ । ପ୍ରଥମେ ସେ ମନେ କରିଥିଲେ ଯେ ମୁଁ କେବଳ ଏକ ଟ୍ରାକ୍ୟର ବିଭିନ୍ନ ସ୍ୱାୟତ୍ତଶାସିତ ଅଞ୍ଚଳ ଗୁଡ଼ିକ କଥା କହୁଛି ।

"ମୁଁ କହିଲି, 'ଭବିଷ୍ୟତରେ ଶୃଙ୍ଖଳାର ରୂପ ଯେପରି ହେବ ତାହାର କେବଳ ଅତି ଅସ୍ପଷ୍ଟ ପୂର୍ବାଭାସ ଆମର ଦେଶ ଓ ସାମ୍ରାଜ୍ୟ ଗୁଡ଼ିକ ଦେଉଛନ୍ତି ।' ଏକଥାରୁ ମୁଁ ତାଙ୍କୁ ଜଣେଇଲି·····[ଏଇଠି ବାର୍ତ୍ତାର ପ୍ରାପ୍ତ ବିବରଣ କିଛିଲଗୋଟି ଶବ୍ଦ ସମ୍ପୂର୍ଣ୍ଣ ଅସ୍ପଷ୍ଟ ହୋଇଯାଇଛି । ]

"ବିଭିନ୍ନ ଭାଷାର ଅସୁବିଧା ସତ୍ତ୍ୱେ ମଣିଷମାନେ ଯେ ମୂର୍ଖପରି ଏହି ଅସୁବିଧାକୁ ମୁଣ୍ଡେଇ ନେଉଛନ୍ତି, ଏହା ଶୁଣି ମହାଗୃଦ୍ଧ୍ରକ ଅବାକ୍ ହୋଇଗଲେ । ସେ କହିଲେ, 'ସେମାନେ ଭାବର ଯୋଗାଯୋଗ ସ୍ଥାପନ କରିବାକୁ ଚାହାନ୍ତି, ଅଥଚ ଚାହାନ୍ତି ନାହିଁ ।' ଏହାପରେ ସେ ଅନେକ ବେଳଯାଏ ମତେ ଯୁଦ୍ଧ ବିଷୟରେ ଭିନ୍ନ ଭିନ୍ନ କରି ପ୍ରଶ୍ନ କଲେ ।

"ପ୍ରଥମେ ସେ ସ୍ପଷ୍ଟ ବୁଝିପାରିଲେ ନାହିଁ, ଏବଂ ବିଶ୍ୱାସ କରିପାରିଲେ ନାହିଁ । ବିଷୟଟି ନିର୍ଭୁଲଭାବେ (?) ଜାଣିବାପାଇଁ ସେ ପଚାରିଲେ, 'ତୁମେ

କହିବାକୁ ଚାହେଁ ଯେ ଯେଉଁ ଜଗତର ଧନରତ୍ନର ଅତି ସାମାନ୍ୟ ସନ୍ଧାନ ତୁମେମାନେ ଏ ପର୍ଯ୍ୟନ୍ତ ପାଇ ପାରିଛ ସେହି ଜଗତ ଉପରେ ତୁମେମାନେ 'ପରସ୍ପରକୁ ହାଣ କାଟ କରିବାରେ ମାତିଛ, କେବଳ ବନ୍ୟଜନ୍ତୁଙ୍କର ଖାଦ୍ୟ ଯୋଗାଇବା ପାଇଁ ?'

"ମୁଁ କହିଲି ଯେ ସେ କଥା ସମ୍ପୂର୍ଣ୍ଣ ସତ୍ୟ ।

"ତାଙ୍କର କଳ୍ପନାକୁ ସାହାଯ୍ୟ କରିବା ପାଇଁ ସେ ବିଶେଷ ବିବରଣୀ ଜାଣିବାକୁ ଚାହିଁଲେ । ସେ ପଚାରିଲେ, 'କିନ୍ତୁ ତୁମର ଅଖ୍ରଗା ସହରଗୁଡ଼ିକ ଓ ଜାହାଜ ଗୁଡ଼ିକ ନଷ୍ଟ ହୋଇ ଯାଏ ନାହିଁ କି ?' ମୁଁ ବୁଝାଇଲି ଯେ, ହାଣକାଟ ଯୋଗୁଁ ସେ ଯେତିକି ବିଚଳିତ ସମ୍ପତ୍ତିବାଡ଼ି ଓ ସୁଖ ସୁବିଧାର ଧ୍ୱଂସ ଯୋଗୁଁ ପ୍ରାୟ ସେତିକି ପରିମାଣରେ ବିଚଳିତ । ସେ କହିଲେ, 'ଏ ବିଷୟରେ ଅଧିକ ବୃତ୍ତାନ୍ତ ମତେ କହ, ଉଦାହରଣ ଦିଅ । ଏ ସବୁ ବିଷୟରେ ମୁଁ ଧାରଣା କରିପାରୁ ନାହିଁ ।'

"ତେଣୁ ମୋର ଅନିଚ୍ଛା ସତ୍ତ୍ୱେ ମୁଁ କିଛି ବେଳଯାଏଁ ତାଙ୍କୁ ପୃଥିବୀର ଯୁଦ୍ଧ ବୃତ୍ତାନ୍ତ ଶୁଣେଇଲି ।

"ଯୁଦ୍ଧର ପ୍ରଥମ ଆୟୋଜନ ଓ ଶତ୍ରୁମିତ୍ର, ସତର୍କକରଣ ଓ ଚରମ-ପତ୍ର, ଏବଂ ସୈନ୍ୟସଜ୍ଜା ଓ ସୈନ୍ୟଚାଳନା ବିଷୟରେ ମୁଁ ତାଙ୍କୁ କହିଲି । ଯୁଦ୍ଧ ପୂର୍ବରୁ ପଇନ୍ତରା ମାରିବା, ଘାଟି ସ୍ଥାପନ କରିବା, ତାପରେ ଯୁଦ୍ଧ ଆରମ୍ଭ କରିବାର କୌଶଳ ବିଷୟରେ ମୁଁ ତାଙ୍କୁ ଧାରଣା ଦେଲି । ଅବରୋଧ କରିବା ଓ ଚଢ଼ାଉ କରିବା, ଖନ୍ଦକ ଭିତରେ ସୈନ୍ୟମାନଙ୍କର ଉତ୍ସାହ ଓ କଷ୍ଟ ସହ୍ୟ କରିବା, ଏବଂ ବରଫ ଭିତରେ ଜଗୁଆଳିମାନଙ୍କର ଦେହ କୋଳ ମାରିଯିବା ଇତ୍ୟାଦି ବିଷୟ ବ୍ୟାଖ୍ୟାନ କଲି । ସୈନ୍ୟ ବାହିନୀର ମୂଳ ପୋଛ ଓ ହଠାତ୍ ଆକ୍ରମଣ, ପ୍ରାଣମୂର୍ଚ୍ଛା ଶେଷ ଚେଷ୍ଟା ଓ କ୍ଷୀଣ ଆଶା ଉପରେ ନିର୍ଭର, ପଳାତକମାନଙ୍କ ପଛରେ ନିର୍ଦ୍ଦୟ ଭାବରେ ଅନୁସରଣ, ଏବଂ ଯୁଦ୍ଧକ୍ଷେତ୍ରରେ କୁଢ଼ କୁଢ଼ ମୃତ ଦେହ କଥା ମୁଁ ବର୍ଣ୍ଣନା କଲି । ପୁରା-କାଳର ଆକ୍ରମଣ ଓ ଧ୍ୱଂସଲୀଳା କଥା ମଧ୍ୟ ମୁଁ କହିଲି—ହୁଣ ଓ ତାତାର-

ମାନଙ୍କର ଧ୍ୱଂସକାଣ୍ଡ, ମହମ୍ମଦ ଓ ଖଲିଫାମାନଙ୍କର ଯୁଦ୍ଧ, ଏବଂ ୟୁରୋପର ଧର୍ମଯୁଦ୍ଧ ବିଷୟରେ କହିଲି । ମୁଁ ଯେତେ ସମୟ ବିସ୍ତୃତ ବର୍ଣ୍ଣନା କରି ଚାଲିଥିଲି, ଓ. ଫି-ଙ୍ଗ୍ ଅନୁବାଦ କରି ଦେଉଥିଲା, ବୃଦ୍ଧ କର୍ମୀମାନେ କ୍ରମାଗତ ପ୍ରବଳତର ଉତ୍ତେଜନାରେ ଗୁଞ୍ଜନ ଓ କୂଜନ କରୁଥିଲେ ।

"ମୁଁ ସେମାନଙ୍କୁ କହିଲି ଯେ ଗୋଟିଏ ଯୁଦ୍ଧଜାହାଜ ଏକଟନ ଓଜନର ଗୋଳାକୁ ବାର ମାଇଲ ଦୂର ପର୍ଯ୍ୟନ୍ତ ନିକ୍ଷେପ କରିପାରେ, ଏବଂ ତାହା ୨୦ ଫୁଟ ବହଳର ଲୁହା ଭିତରେ ଗଳିଯାଇପାରେ । ଆମେ ପାଣି-ତଳେ କିପରି ଟର୍‌ପେଡୋ ମାରିପାରୁ ତାହା ମଧ୍ୟ କହିଲି । ମ୍ୟାକ୍‌ସିମ୍ ତୋପ କିପରି ଫୁଟେ ମୁଁ ବୁଝେଇଦେଲି, ଏବଂ 'କୋଲେନ୍‌ସୋ ସମର' ନ ଦେଖି ଥିଲେ ମଧ୍ୟ ଅନ୍ଦାଜ କରି ବର୍ଣ୍ଣନା କଲି । ମହାବୃଦ୍ଧକ ମୋ କଥାରେ ବିଶ୍ୱାସ କରି ନ ପାରି ଅନୁବାଦ ମଝିରେ ବାଧା ଦେଲେ ଏବଂ ମୋ ନିଜ ମୁହଁରୁ ଶୁଣିବାକୁ ଚାହିଁଲେ ଯେ ଯାହା ତାଙ୍କୁ କୁହାଯାଇଛି ତାହା ପ୍ରକୃତରେ ସତ୍ୟ । ବିଶେଷତଃ, ମଣିଷମାନେ ଯୁଦ୍ଧ କରିବାକୁ ଗଲାବେଳେ ହର୍ଷଧ୍ୱନି ଓ ଉତ୍ସବ କରନ୍ତି ବୋଲି ଶୁଣି ସେ ବିଶ୍ୱାସ କରିପାରିଲେ ନାହିଁ ।

"ଫି ଙ୍ଗ୍ ଅନୁବାଦ କଲା, 'କିନ୍ତୁ, ସତରେ କଣ ସେମାନେ ଏହା ଭଲ ପାନ୍ତି ?'

"ମୁଁ ସେମାନଙ୍କୁ ନିର୍ଭର ଜବାବ ଦେଲି 'ଯେ ମୋ ଜାତିର ମଣିଷ-ମାନେ ଲଢ଼େଇକୁ ଜୀବନର ସର୍ବଶ୍ରେଷ୍ଠ ଗୌରବମୟ ଅନୁଭୂତି ବୋଲି ମନେ କରନ୍ତି । ଏକଥା ଶୁଣି ସମସ୍ତସଭା ବିସ୍ମୟରେ ହତବାକ୍ ହୋଇଗଲା ।

"ପ୍ରସଙ୍ଗଟି, ଅନୁସରଣ କରି ମହାବୃଦ୍ଧକ ପଚାରିଲେ, 'କିନ୍ତୁ, ଏହି ଯୁଦ୍ଧରୁ କି ଲଭ ମିଳେ ?'

"ମୁଁ କହିଲି, 'ଓ, ଲଭ ? ଏହା କେବଳ ଲୋକସଂଖ୍ୟା କମାଏ !'

" 'କିନ୍ତୁ କି ଦରକାର— ?'.........

"କିଛି ସମୟ ଚୁପଚାପ କଟିଲା । ଥଣ୍ଡା ପାଣି ଛିଟିକା ତାଙ୍କ କପାଳ ଉପରେ ଛୁଆଁଗଲା । ତାପରେ ସେ ପୁଣି କହିବାକୁ ଆରମ୍ଭ କଲେ ।"

[ ଏଇଠି ବାର୍ତ୍ତା ଗ୍ରହଣ କରୁଥିବା ରେକର୍ଡ଼ ଉପରେ ଅନେକ ଗୁଡ଼ାଏ କୁଞ୍ଚିତ ରେଖା ପଡ଼ି ବାର୍ତ୍ତାକୁ ନଷ୍ଟପ୍ରାୟ କରିଦେଇଛି । କେଭରର ଯେଉଁ ସମୟରେ କହୁଛି ଯେ ମହାଶୂନ୍ୟକଙ୍କର ପ୍ରଥମ ବଚନ ପୂର୍ବରୁ ସଙ୍କୁଚିତ ହୋଇ ଗଲା, ସେହି ସମୟଠାରୁ ଏଥି ବ୍ୟାଘାତ ଜାତ କରିବାର ଚେଷ୍ଟା ଆରମ୍ଭ ହୋଇଛି । ଏ ପର୍ଯ୍ୟନ୍ତ ଏହା ଜଟିଳତା ସୃଷ୍ଟି କରୁଥିଲେ ମଧ୍ୟ ସମ୍ପୂର୍ଣ୍ଣ ଦୁର୍ବୋଧତା ସୃଷ୍ଟି କରୁନଥିଲା । କିନ୍ତୁ ବର୍ତ୍ତମାନ ଠାରୁ ଏହି କୁଞ୍ଚିତ ରେଖା ଗୁଡ଼ିକ ଅତ୍ୟଧିକ ପ୍ରବଳ ହୋଇ ବାର୍ତ୍ତାକୁ ସମ୍ପୂର୍ଣ୍ଣ ଗୋଳମାଳିଆ କରିଦେଇଛି । ସମ୍ଭବତଃ, ଏହି ଗାର ଗୁଡ଼ିକ ଚନ୍ଦ୍ରର କୌଣସି ବେତାର ଯନ୍ତ୍ରଚାଳକ ଦ୍ୱାରା ପଠା ହେଉଥିବା ବୈଦ୍ୟୁତିକ ତରଙ୍ଗରୁ ଉତ୍ପନ୍ନ ହେଉଥିଲା । କେଭରର ଏକାନ୍ତ ସଙ୍କେତ ସହିତ ଏହି ଗାରଗୁଡ଼ିକ ବରାବର ମିଳିଯିବାକୁ ଚେଷ୍ଟା କରୁଥିବାରୁ ବୁଝାଯାଉଥିଲା ଯେ କେହି ଜାଣି ଶୁଣି କେଭରର ବାର୍ତ୍ତା ସହିତ ସେଗୁଡ଼ିକ ଗୋଳେଇ ଦେଇ ତାକୁ ସମ୍ପୂର୍ଣ୍ଣ ଅପଠନୀୟ କରି ଦେବାକୁ ଚାହୁଁଥିଲା ! ଏହି ରେଖାଗୁଡ଼ିକ ପ୍ରଥମେ କ୍ଷୀଣ ଓ ସମାନ ଭାବରେ ପଡ଼ିଛନ୍ତି, ତେଣୁ ଅଳ୍ପ ଯତ୍ନ ଦ୍ୱାରା ଏବଂ ଅତି କମ ଶବ୍ଦ ହରାଇ ଆମେ କେଭରର ବାର୍ତ୍ତାର ଅର୍ଥ ଗ୍ରହଣ କରି ପାରିଛୁ । ତାପରେ ସେଗୁଡ଼ିକ ଦୀର୍ଘତର ଓ ସ୍ଥୂଳତର ଭାବରେ ପଡ଼ିଛନ୍ତି, ଏବଂ ତାପରେ ହଠାତ୍ ଅସମାନ ହୋଇ ଯାଇଛନ୍ତି । ଏହି ଅସମାନତା ଦ୍ୱାରା ମନେ ହେଉଛି ଯେପରିକି କେହି ଗୋଟିଏ ଲେଖା ଧାଡ଼ି ଉପରେ ଏଣୁ ତେଣୁ ଗୁଡ଼ିଏ ଗାର ପକେଇଛି । ଅନେକ ଦୂର ପର୍ଯ୍ୟନ୍ତ ଏହି ବଙ୍କାଟଙ୍କା ଚିହ୍ନର କୌଣସି ଅର୍ଥ ହେଉନାହିଁ ; ତାପରେ ହଠାତ୍ ବ୍ୟାଘାତ କ୍ଷାନ୍ତ ହୋଇଛି । କେତୋଟି ଶବ୍ଦ ସ୍ପଷ୍ଟ ହୋଇ ଉଠିଛି, ଏବଂ ତାପରେ ପୁଣି ତାହା ଆରମ୍ଭ ହୋଇ ଅବଶିଷ୍ଟ ବାର୍ତ୍ତାର ଶେଷ ପର୍ଯ୍ୟନ୍ତ ଚାଲିଛି । ଫଳତଃ କେଭରର ଅବଶିଷ୍ଟ ବକ୍ତବ୍ୟ ସମ୍ପୂର୍ଣ୍ଣ ରୂପେ ବିନଷ୍ଟ ହୋଇଛି । ଯଦି ଏହି ହସ୍ତକ୍ଷେପ ଇଚ୍ଛାକୃତ ହୋଇଥାଏ, ତେବେ କେଭରର କାର୍ଯ୍ୟ କଳାପକୁ ଯେ କୌଣସି ମୁହୂର୍ତ୍ତରେ ବନ୍ଦ କରି ଦେବାର ଶକ୍ତି ସେମାନଙ୍କର ଥିବା ସତ୍ତ୍ୱେ ଏବଂ ଏହା ଅଧିକ ସହଜ ଓ ସୁବିଧା ଜନକ ପନ୍ଥା ହୋଇଥିବା ସତ୍ତ୍ୱେ ସେମାନେ ତା ନ କରି କାହିଁକି ଯେ କେଭରକୁ ବାର୍ତ୍ତା-ପ୍ରେରଣ କରିବାକୁ ଛାଡ଼ି ଦେଇ ଏଣେ ତାର ଅଙ୍କିତ ସାରରେ ବାର୍ତ୍ତାକୁ ବିନାଶ କରୁଥିଲେ, ଏ

କଥାର ଉତ୍ତର ଦେବାର ଶକ୍ତି ମୋର ନାହିଁ । ଏହି ପରି ମନେ ହେଉଛି, ଏତିକି ମାତ୍ର ମୁଁ କହିପାରେଁ । 'ମହାଶୂନ୍ୟ' ରିକ୍ସ ବିଷୟରେ ତାର ଶେଷ ବୃତ୍ତାନ୍ତ ଏହିପରି ଖଣ୍ଡିଆ ବିବେଚ୍ଛ ବାକ୍ୟ ମଧ୍ୟରୁ ଆବିଷ୍କୃତ ହୋଇଛି । ]

"—ମୋର୍ଜ୍ ଗୁପ୍ତଜ୍ଞାନ ବିଷୟରେ ଭିନ୍ନ ଭିନ୍ନ କରି କେତେ କଲେ । କିଛି ସମୟ ଭିତରେ ମୁଁ ସେମାନଙ୍କ ସହିତ ଏକ ରକମ୍ ବୁଝାମଣା କରିବାକୁ ସମର୍ଥ ହେଲି, ଏବଂ ସେମାନେ ନିଜେ କାହିଁକି ଏପର୍ଯ୍ୟନ୍ତ 'କେଭରାଇଟ୍' ଆବିଷ୍କାର କରି ପାରି ନାହାନ୍ତି ଏ କଥାର ଉତ୍ତର ସେମାନଙ୍କଠାରୁ ଶେଷରେ ଆଦାୟ କରିପାରିଲି । ସେମାନେ ଏହା କାହିଁକି କରି ପାରି ନାହାନ୍ତି ଏ କଥା ଶୁଣି ମୁଁ ଅତ୍ୟନ୍ତ ବିସ୍ମିତ ହେଉଥିଲି । କାରଣ ମୁଁ ଜାଣିଥିଲି ସେମାନଙ୍କର ବିଜ୍ଞାନ କେତେ ଉନ୍ନତ । ପ୍ରକୃତରେ ସେମାନେ କେଭରାଇଟ୍କୁ ଗୋଟିଏ ତାତ୍ତ୍ୱିକ ବସ୍ତୁ ହିସାବରେ ଜାଣନ୍ତି, କିନ୍ତୁ ଏହା ବାସ୍ତବ କ୍ଷେତ୍ରରେ ସମ୍ଭବ ହୋଇ ପାରିବ ନାହିଁ ବୋଲି ସେମାନେ ବୁଝିପାରନ୍ତି । କାରଣ ଚନ୍ଦ୍ରରେ ହେଲିୟମ୍ ନାହିଁ, ଏବଂ ହେଲିୟମ୍—"

[ ସେହି ଗୋଳମାଳିଆ ରେଖାଚିହ୍ନ ପୁଣି ଆରମ୍ଭ ହୋଇ "ହେଲିୟମ୍" ଶବ୍ଦର ଶେଷ ଅକ୍ଷରକୁ କାଟି ପକେଇଛି । "ଗୁପ୍ତଜ୍ଞାନ" ଶବ୍ଦଟି ଭଲରୂପେ ଲକ୍ଷ୍ୟ କର, କାରଣ ଏହାର ଉପରେ ନିର୍ଭର କରିକି ମୁଁ ପରବର୍ତ୍ତୀ ବାର୍ତ୍ତାର ତର୍ଜମା କରି ପାରିଛି । ଓ୍ୱେଣ୍ଡିଗି ସାହେବ ଓ ମୁଁ ଉଭୟେ ବିଶ୍ୱାସ କରୁଁ ଯେ ପରବର୍ତ୍ତୀ ବାର୍ତ୍ତା କେଭରର ଶେଷ ବାର୍ତ୍ତା, ଏହା ପରେ ଆମକୁ ସେ ଆଉ କୌଣସି ସଙ୍କେତ ପଠେଇବ ନାହିଁ । ]



# ୨୭

# ପୃଥିବୀକୁ କେଭରର ଶେଷ ବାର୍ତ୍ତା

ଏହିପରି ଅସନ୍ତୋଷ ଜନକ ଭାବରେ କେଭରର ଶେଷ ବାର୍ତ୍ତାର ପୂର୍ବବାର୍ତ୍ତା ବିଲୁପ୍ତ ହୋଇଛି । କଳ୍ପନା କରାଯାଇ ପାରେ, ସେ ସେହି ନୀଳ ତମସା କ୍ରୋଡ଼ରେ ତାର ଯନ୍ତ୍ରପାତି ଧରି ନିବିଷ୍ଟ ଚିତ୍ତରେ ଶେଷ ମୁହୂର୍ତ୍ତଯାଏ ଆମକୁ ସଙ୍କେତ ପଠେଇ ଚାଲିଛି; ଆମ ମନ୍ଦିରେ ଖସି ପଡ଼ିଥିବା ଗୋଲମାଳର ଯବନିକା ବିଷୟରେ ତାକୁ କିଛି ଜଣା ନାହିଁ; ଏପରିକି ସେହି ମୁହୂର୍ତ୍ତରେ ଯେଉଁ ଶେଷ ବିପଦ ତା ଆଡ଼କୁ ମାଡ଼ି ଆସୁଥିଲା, ତାହା ମଧ୍ୟ ସେ ଜାଣି ପାରି ନାହିଁ । ତୁଚ୍ଛ ସାଧାରଣ ବୁଦ୍ଧିରେ ତାର ଶୋଚନୀୟ ଅଭାବ ତାକୁ ବିପଦଗ୍ରସ୍ତ କରିଥିଲା । ସେ ଯୁଦ୍ଧ ବିଷୟରେ ଗପିଥିଲା, ମଣିଷ ମାନଙ୍କର ନିଷ୍ଠୁର ଓ ବିବେକଶୂନ୍ୟ ହିଂସା ବିଷୟରେ ଗପିଥିଲା, ସେମାନଙ୍କର ଅତୃପ୍ତ ଆକ୍ରମଣ କ୍ଷୁଧା ଓ ଅଶ୍ରାନ୍ତ ନିଷ୍ଫଳ ବିବାଦ ବିଷୟରେ ଗପିଥିଲା । ସମସ୍ତ ଚନ୍ଦ୍ରଜଗତର ମନରେ ସେ ମାନବ ଜାତି ବିଷୟରେ ଏହି ଧାରଣା ବଦ୍ଧମୂଳ କରି ଦେଇ-ଥିଲା । ଏହା ମଧ୍ୟ ମୁଁ ଅନୁମାନ କରି ପାରୁଛି । ସେ ଏହି ମାରାତ୍ମକ ସ୍ୱୀକାର କରି ପକେଇଥିଲା ଯେ ଅନ୍ୟ କୌଣସି ମଣିଷ ଚନ୍ଦ୍ରରେ ପହଞ୍ଚିବାର ସମ୍ଭାବନା (ଅନ୍ତତଃ ଆହୁରି ଅନେକ କାଳ ଯାଏଁ) କେବଳ ତାହାରି ଉପରେ ନିର୍ଭର କରେ । ଏ ସବୁ କଥା ଶୁଣି ଚନ୍ଦ୍ରିକମାନଙ୍କର କଠୋର ଅମାନୁଷିକ ବିଚାର କେଉଁ ଦିଗରେ ଗତି କରିଥିବ ତାହା ମୁଁ ସ୍ପଷ୍ଟ ବୁଝି ପାରୁଛି, ଏବଂ କେଭର ନିଶ୍ଚୟ ପ୍ରଥମେ ଏହା ଅସ୍ପଷ୍ଟ ଭାବରେ ସନ୍ଦେହ କରିଥିବ ଏବଂ ପରେ ହୁଏତ ହଠାତ୍ ତୀବ୍ର ଭାବରେ ଉପଲବ୍ଧି କରି ପାରିଥିବ । ଏହି ମାରାତ୍ମକ ଭୁଲ ଯୋଗୁଁ ଅନୁତାପରେ ଦଗ୍ଧୀଭୂତ ହୋଇ ସେ ଚନ୍ଦ୍ରରେ ଏଣେ ତେଣେ ବୁଲୁଥିବ । ମୁଁ ଅନୁମାନ କରୁଛି, କିଛି ଦିନ ଯାଏଁ ମହାଚନ୍ଦ୍ରିକ ଏହି ନୂତନ ପରିସ୍ଥିତିକୁ ବିବେଚନା କରି ଦେଖୁଥିଲେ ଏବଂ ସେହି ସମୟ ଭିତରେ

କେଭର୍ ପ୍ଟୁପର ସ୍ୱାଧୀନ ଭାବରେ ବିଚରଣ କରି ପାରୁଥିଲି । କିନ୍ତୁ ପୂର୍ବୋ-ଲ୍ଲିଖିତ ବାର୍ତ୍ତା ପରେ କୌଣସି ପ୍ରକାର ପ୍ରତିବନ୍ଧକ ଉପସ୍ଥିତ ହୋଇ କେଭରକୁ ତାର ବିଦ୍ୟୁତ ଚୁମ୍ବକୀୟ ଯନ୍ତ୍ର ନିକଟକୁ ଫିରିବାରେ ବାଧା ଦେଲା । କିଛି ଦିନ ଯାଏଁ ଆମେ କୌଣସି ସଙ୍କେତ ପାଇଲୁଁ ନାହିଁ । ହୁଏତ ସେ ମହାଶୃଙ୍ଖଳକଙ୍କ ସହିତ ପୁଣି ସାକ୍ଷାତ କରୁଥିଲା, ଏବଂ ତାର ପୂର୍ବର ସ୍ୱୀକାରକୁ ଖଣ୍ଡନ କରିବାକୁ ଚେଷ୍ଟା କରୁଥିଲା । ପ୍ରକୃତ ଘଟଣା କିଏ କହି ପାରିବ ?

ଏବଂ ତାପରେ ସହସା, ରାତିର ବକ୍ଷ ଭେଦ କରି ଉଠିଥିବା ଚିତ୍କାର ପରି, ଜନ୍ମବଧିତା ମାଡ଼ିଆସିବାର ଠିକ ପୂର୍ବରୁ ଶୁଭିଥିବା ଚିତ୍କାର ପରି ଶେଷ ବାର୍ତ୍ତାଟି ଆସିଲା । ଏହା ଗୋଟିଏ ଅତି କ୍ଷୁଦ୍ର ଖଣ୍ଡ-ବାର୍ତ୍ତା, ଦୁଇଟି ବାକ୍ୟର ଖାପ ଛଡ଼ା ଆରମ୍ଭ ମାତ୍ର ।

ପ୍ରଥମ ବାକ୍ୟଟି କହୁଛି ! "ମହାଶୃଙ୍ଖଳକଙ୍କୁ ଜଣେଇ ଦେଇ ମୁଁ ମସ୍ତବଡ଼ ଭୁଲ୍ କରିଛି—"

ତାପରେ ମିନିଟ୍‌କର ବିରାମ । ବୋଧହୁଏ ବାହାରୁ କୌଣସି ବ୍ୟାଘାତ ଆସିଲା । ସେ ବୋଧହୁଏ ଯନ୍ତ୍ରକୁ ଛାଡ଼ି ବାହାରକୁ ଗଲା—ସେହି ଝାପସା ମାଲାଲୋକିତ ବିବରରେ ଯନ୍ତ୍ରପାତିର ସ୍ତୁପ ଭିତରେ ଭୟଜନିତ ଦ୍ୱିଧା—ତାପରେ ହୁଏତ ହଠାତ୍ ଦୃଢ଼ ପ୍ରତିଜ୍ଞ ହୋଇ ଯନ୍ତ୍ର ନିକଟକୁ ଦୌଡ଼ିଆସିଲା, କିନ୍ତୁ ଅତି ଡେରିରେ । ତାପରେ ତରବରରେ ପଠା ହୋଇଥିବା ସଙ୍କେତ ପରି ଏହା ଆସିଛି : "କେଭରାଇଟ୍ ଏହିପରି ଭାବରେ ତିଆରି ହୁଏ । ପ୍ରଥମେ—"

ତାପରେ କେବଳ ଗୋଟିଏ ମାତ୍ର ଶବ୍ଦ ଆସିଛି, ଗୋଟିଏ ଅର୍ଥହୀନ ଶବ୍ଦ: "ସବୁଥା ।"

ସେତିକି ମାତ୍ର !

ହୁଏତ ଯେତେବେଳେ ତାର ଦୁର୍ଭାଗ୍ୟ ତାକୁ ଗ୍ରାସ କଲା, ସେ ଚଞ୍ଚଳ "ସବୁ ବୃଥା" ବୋଲି ବନାନ କରିବାକୁ ଚେଷ୍ଟା କରୁଥିଲା । ସେହି ଯନ୍ତ୍ର ଗୃହପଛେ ପ୍ରକୃତରେ କଣ ଘଟିଥିଲା ତାହା କହି ହେବ ନାହିଁ । ଯାହା ବି ଘଟିଥାଉ, ମୁଁ ବୁଝି ପାରୁଛି, ଚନ୍ଦ୍ରରୁ ଆମେ ଆଉ କୌଣସି ବାର୍ତ୍ତା ପାଇବୁ ନାହିଁ । ମୋର ଭାଗ୍ୟକୁ ମୁଁ ଗୋଟିଏ ଉଜ୍ଜ୍ୱଳ ସ୍ୱପ୍ନ ଦେଖିଛି, ଏବଂ ମୁଁ ଘଟଣା

ସ୍ଥଳରେ ନକ୍ଷେ ଉପସ୍ଥିତ ଥିଲେ ଯେପରି ଦେଖିଥାନ୍ତି ସେହିପରି ସ୍ପଷ୍ଟଭାବରେ ଦୃଶ୍ୟଟି ମୋର ଆଖି ଆଗରେ ଫୁଟି ଉଠିଛି—ଏହି ପୋକ ଗୃଦ୍ଧ ବର୍ମାନଙ୍କର କବଳରେ ନୀଳ ଆଲୋକ ରଞ୍ଜିତ ଛାୟା ତୁଲ୍ୟ ବିପର୍ଯ୍ୟସ୍ତ ବେଶ କେଶର ଛୁଁ ଝିଟି ହେଉଛି । ସେମାନେ ତାକୁ ଯେତେ ଜୋରରେ ମାଡ଼ି ଧରୁଛନ୍ତି ସେ ସେତେ ପ୍ରାଣପଣେ ଓ ବ୍ୟର୍ଥ ଭାବରେ ଭିଡ଼ି ଓଟାରି ହେଉଛି, ଚିତ୍କାର କରୁଛି, ଗାଳି ଦେଉଛି। ବୋଧହୁଏ ଶେଷରେ ଲଢେଇ କରୁଛି, ଏବଂ ଜନ-ମାନବର ସମସ୍ତ ଚିନ୍ତା ଓ ବଚନର ସୀମା ବାହାରକୁ ତାକୁ ପାଦ ପାଦ କରି ଜବରଦସ୍ତି ଟାଣିନିଆ ହେଉଛି, ଚିରଦିନ ପାଇଁ ଟାଣିନିଆ ହେଉଛି ସେଇ ଅଜଣା ଭିତରକୁ—ସେହି ଅନ୍ଧକାର ଭିତରକୁ, ଶେଷ ସ୍ଥାନ ନୀରବତା ଭିତରକୁ··· ·········

## ସମାପ୍ତ

ମୁଦ୍ରାକର—ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ର, ପ୍ରଜ୍ଞା ପ୍ରେସ୍, କଟକ-୨